ଗୋପୀନାଥ ଦାସଙ୍କ କୃତ

# ବାମନ ପୁରାଣ



ପ୍ରକାଶକ - ଧର୍ମଗ୍ରନ୍ଥ ଷ୍ଟୋର, ଓଡ଼ିଶା ବଜାର, କଟକ - ୨

ବ୍ୟାସଦେବ କୃତ

# ବାମନ ପୁରାଣ

(ନୂତନ ମୁଦ୍ରଣ)



୨୦୧୭


ପ୍ରକାଶକ ଓ ପ୍ରାପ୍ତିସ୍ଥାନ :

**ଧର୍ମଗ୍ରନ୍ଥ ଷ୍ଟୋର**

ପରିଚାଳକ : ଶ୍ରୀ ବିଦ୍ୟାଧର ସାହୁ

ଅଲିଶା ବଜାର, କଟକ- ୨

ଫୋନ୍: ୨୫୦। ୨୯୬

ମୂଲ୍ୟ : ଟ. ୧୧୦.୦୦

# ସୂଚିପତ୍ର

**: ବାମନ ପୁରାଣ ସୂଚିପତ୍ର ସମାପ୍ତ :**

## ଅଷ୍ଟାଦଶ ପୁରାଣ



ଅକ୍ଷର ସଜ୍ଜା : ସୋମନାଥ ଡି.ଟି.ପି. ସେଣ୍ଟର, କଟକ -୮, ଫୋନ୍ : ୨୩୦୨୫୯୬

# ବାମନ ପୁରାଣ

ହରଲଳିତ ଓ ଜୀମୁତକେତୁ ନାମ ଧାରଣ ।
ତ୍ରୈଲୋକ୍ୟ ରାଜ୍ୟ ମାଛିଦ୍ୟ ବଳେ ରିନ୍ଦ୍ରାୟ ଯୋ ଦଦୌ ।୧।
ନମସ୍ତସ୍ମୈ ସୁରେଶାୟ ସଦା ବାମନରୂପିଣେ ।୨।
ନାରାୟଣଂ ନମସ୍କୃତ୍ୟ ନରଂଚୈବ ନରୋତ୍ତମଂ ।୩।
ଦେବୀ ସରସ୍ୱତୀଂ ବ୍ୟାସଂ ତତୋଜୟ ମୁଦୀରୟେତ୍ ।୪।



ବଳେ ବଳିଠାରୁ ତିନିଭୁବନକୁ ହରି
ଇନ୍ଦ୍ରଙ୍କୁ ପ୍ରଦାନ କରିଥିଲେ ଯେଉଁ ହରି ।
ସୁରେଶ୍ୱର ନିରାକାର ନିତ୍ୟ ନିର୍ବିକାର
ସେ ବାମନରୂପୀଙ୍କି ମୁଁ କରେ ନମସ୍କାର ।
ନାରାୟଣ ନରୋତ୍ତମ ଯେ ନର ମୂରତି
ଦେବୀ ସରସ୍ୱତୀ ଆଉ ବ୍ୟାସ ମହାଯତି ।
ଏମାନଙ୍କ ପାଦପଦ୍ମେ କରେ ନମସ୍କାର ।
ହରଗୌରୀ ପାଦତଳେ ଚିତ୍ତ ରଖି ମୋର ।
କାଳିକା ସାରଦା ପାଦତଳେ ଶିର ଦେଇ
ଗଣନାଥଦେବଙ୍କୁ ଯେ ହୃଦପଦ୍ମେ ଧ୍ୟାୟି ।
ନିରଞ୍ଜନ ଦେବତାଙ୍କ ଚରଣେ ଶରଣ
ନୀଳାଚଳବିହାରୀଙ୍କୁ ବନ୍ଦେ ଅନୁକ୍ଷଣ ।
ଜୟ ଜୟ ବଳଭଦ୍ର ଜୟ ହଳଧାରୀ
ଜୟ ଜୟ ରାମଚନ୍ଦ୍ର ଜୟ ରାବଣାରୀ ।
ଜୟ ଜୟ ମୀନରୂପୀ କଚ୍ଛପାବତାର
ନୃସିଂହ ବରାହ ଯମଦଗ୍ନିଙ୍କ କୁମାର ।
ଏମାନଙ୍କ ପାଦପଦ୍ମ କରିଣ ବନ୍ଦନ
ପ୍ରାର୍ଥନା କରୁଛି ତୋତେ ହେ ନନ୍ଦନନ୍ଦନ ।
ଦିଅ ସଦବୁଦ୍ଧି ତବ ପାଦେ ରହୁ ଚିତ୍ତ
ଲେଖିବାକୁ ଇଚ୍ଛାକରେ ମୁଁ ତୁମ୍ଭ ଚରିତ ।
ସାଗର ସମାନ ଏହି ବାମନ ପୁରାଣ
ତରିବାକୁ ମନକରେ ମୁଁ ମୂଢ଼ ଅଜ୍ଞାନ ।
ତୁମ୍ଭ କୃପା - ନାବରେ ମୁଁ ଆଶ୍ରୟ ନେଇଛି
ପ୍ରାକୃତ ପ୍ରବନ୍ଧେ ତେଣୁ ତାହାକୁ ଲେଖୁଛି ।
ଆହେ ସାଧୁଜନେ ମୋର ନ ଘେନିବଦୋଷ
ମୁହିଁ ତୁମ୍ଭମାନଙ୍କର ପାଦତଳ ଦାସ ।

### ନାରଦ ଉବାଚ

ଆଶ୍ରମେ ପୁଲସ୍ତ୍ୟ ମୁନି ବସିଥିଲେ ଦିନେ
ଯେ ବକ୍ତାମାନଙ୍କ ମଧ୍ୟେ ଶ୍ରେଷ୍ଠ ତ୍ରିଭୁବନେ ।
ତାହାଙ୍କ ସମୀପେ ବସି ଦେବର୍ଷି ନାରଦ
ବୋଇଲେ ହେ ମୁନି ତୁମ୍ଭେ ଶାସ୍ତ୍ରବିଶାରଦ ।
ବେଦ ବେଦାଙ୍ଗାଦି ସବୁ ଶାସ୍ତ୍ର ତୁମ୍ଭେ ଜାଣ
ଅନୁଗ୍ରହ କରି କହ ବାମନପୁରାଣ ।
ନିଗ୍ରହାନୁଗ୍ରହକାରୀ ଦେବ ଭଗବାନ
କେଉଁପରି ହୋଇଥିଲେ ପୂର୍ବେ ସେ ବାମନ ।
ବିସ୍ତାରି ସେ ସବୁ କଥା ମୋ ଆଗେ କହିବ
ଆହୁରି କଥାଏ ଶୁଣ ହେ ମୁନିପୁଙ୍ଗବ ।
ଦୈତ୍ୟଶ୍ରେଷ୍ଠ ପ୍ରହଲାଦ ଯେ ବିଷ୍ଣୁ ଭକତ
କିମ୍ପାଇଁ ସେ ଯୁଦ୍ଧ କଲେ ଦେବଙ୍କ ସହିତ ।
ମୋ ମନରୁ ଏ ସନ୍ଦେହ ନିବାରଣ କର
ଆଉ ଯାହା ପଚାରୁଛି ଶୁଣ ଦ୍ୱିଜବର ।
ଯେଉଁ ସତୀ ଦକ୍ଷପ୍ରଜାପତିଙ୍କ ନନ୍ଦିନୀ
ଦେବ ଦେବ ଶିବଙ୍କର ଚିତ୍ତବିମୋହିନୀ ।

ସେହି ସତୀ ଙ୍କ ନିମନ୍ତେ ଦେହ ତ୍ୟାଗକଲେ
ଗିରିରାଜ ହିମାଳୟ ଘରେ ଜନମିଲେ ।
ପୁନରପି ଭାର୍ଯ୍ୟା ହେଲେ ମହାଦେବଙ୍କର
ମୋ ମନରୁ ଏ ସନ୍ଦେହମାନ ଦୂରକର ।
ତୁମ୍ଭେ ମହାଜ୍ଞାନୀ ଅଟ ଆହେ ତପଚାରୀ
ତୀର୍ଥଙ୍କ ମାହାତ୍ମ୍ୟ କହ ଅନୁଗ୍ରହ କରି ।
ଦାନବ୍ରତ ମହିମାକୁ ବିସ୍ତାରି କହିବ
ଯେମନ୍ତେ ସଂଶୟମାନ ମନୁ ଦୂର ହେବ ।

**ପୁଲସ୍ତ୍ୟ ଉବାଚ .**

ନାରଦଙ୍କ କଥା ଶୁଣି ସେ ପୁଲସ୍ତ୍ୟ ଋଷି
ଆନନ୍ଦିତ ହୋଇ ତାଙ୍କୁ ବହୁତ ପ୍ରଶଂସି ।
ବୋଇଲେ ହେ ମୁନିବର ବାମନ ପୁରାଣ
ଆଦ୍ୟପ୍ରାନ୍ତ କରି ଏବେ କହୁଅଛି ଶୁଣ ।
ହିମାଳୟ ନନ୍ଦିନୀ ଯେ ଦେବୀ ମାହେଶ୍ୱରୀ
ନିଦାଘ ସମୟକୁ ସେ ଦରଶନ କରି ।
ମନ୍ଦରକନ୍ଦରବାସୀ ଶିବଙ୍କୁ କହିଲେ
ଆହେ ନାଥ ଗ୍ରୀଷ୍ମଋତୁ ପ୍ରବେଶ ହୋଇଲେ ।
ଘରଦ୍ୱାର ନାହିଁ ପ୍ରଭୁ ଆମ୍ଭ ଦୁହିଁଙ୍କର
ସୂର୍ଯ୍ୟ କିରଣରେ ପୋଡ଼ିଯିବ କଳେବର ।
ଖରାତାପ ନିବାରିବା ରହି କେଉଁଠାରେ
ଏହା ଶୁଣି ସଦାଶିବ ବୋଇଲେ ସଧୀରେ ।
ସର୍ବଦା ଅରଣ୍ୟମଧ୍ୟେ ମୋହର ବସତି
ମୁହିଁ ନିରାଶ୍ରୟ, ଆଶ୍ରା କି ହେବ ସୁମତି ।
ଶଙ୍କରଙ୍କ କଥା ଶୁଣି ସେ ସତୀ ପାର୍ବତୀ
ବୃକ୍ଷଛାୟା ଆଶ୍ରା କଲେ ଘେନି ପଶୁପତି ।
ଭୟଙ୍କର ସେ ନିଦାଘକାଳ କଟାଇଲେ
ବୃକ୍ଷମୂଳେ ରହି ଖରାତାପକୁ ସହିଲେ ।
ଉପସ୍ଥିତ ହେଲା ଆସି ବରଷା ସମୟ
ଦିଗବିଦିଗ ଯେ ହେଲା ଅନ୍ଧକାରମୟ ।
ଗମନାଗମନ ପଥ ନିରୋଧ ହୋଇଲା
ଗଗନମଣ୍ଡଳ ମେଘମାଳ ଆଚ୍ଛାଦିଲା ।
ଘନ ଘନ ଘଡ଼ଘଡ଼ି ବିଜୁଳି ମାରଇ
ଦିଗବାରି ନ ହୁଅଇ ପଥ ନ ଦିଶଇ ।
ଦକ୍ଷପ୍ରଜାପତି ସୁତା ଚାହିଁ ବରଷାକୁ
ପ୍ରେମଭରେ କହିଲେକ ପୁଣି ଶଙ୍କରଙ୍କୁ ।
ଆହେ ମହେଶ୍ୱର ଦେଖ ଏ ବରଷା କାଳ
ବହଇ ପ୍ରବଳବାୟୁ ଅତ୍ୟନ୍ତ ଶୀତଳ ।
ମେଘ ଗରଜନ ଶୁଣି ଭୟ ହୁଏ ଜାତ
ନୀଳମେଘକାଳେ ଦେଖ ବିଜୁଳି ଶୋଭିତ ।
କେକା ରବ କରୁଛନ୍ତି ମୟୂର ମୟୂରୀ
ଗଗନରୁ ନିରନ୍ତର ପଡୁଅଛି ବାରି ।
ମେଘ ସେବା କରୁଛନ୍ତି ବକ ବଳାକାଏ
କଦମ୍ବ ଅର୍ଜ୍ଜୁନ ପୁଷ୍ପେ ମହୀ ଶୋଭାପାଏ ।
ବାୟୁଯୋଗୁଁ ସର୍ଜ ବୃକ୍ଷୁ ଝଡ଼ି ପଡ଼େ ଫୁଲ
କେତକୀ କୁସୁମେ ଶୋଭାପାଏ ଧରାତଳ ।
ସୁଜନ ତ୍ୟଜନ୍ତି ନୀଚଲୋକଙ୍କୁ ଯେସନ
ହଂସହଂସୀ ଶୁଣି ମେଘ ଗଭୀର ଗର୍ଜନ ।
ହ୍ରଦ ନଦଜଳାଶୟମାନ ତ୍ୟାଗକରି
ଯାଉଛନ୍ତି ମାନସରୋବରକୁ କିପରି ।
ଦେଖ କି ସୁନ୍ଦର ଦିଶେ ମୃଗଙ୍କର କାନ୍ତି
ମଳି ଧୋଇ ଯିବାରୁ ହେ ଦେବ ପଶୁପତି ।
ସେମାନେ ବରଷାକାଳେ ଧାଇଁବାରୁ ବନେ
ବଢ଼ିବାରୁ ଘାସଶସ୍ୟ ବୃକ୍ଷଲତା ମାନେ ।
ଅଳଙ୍କାର ପିନ୍ଧିଥିବା ନାରୀ ପ୍ରାୟ କ୍ଷିତି
କି ଶୋଭା ପାଉଛି ଦେଖ ଆହେ ପଶୁପତି ।
ନୀଳମେଘ କୋଳେ ଦେଖ ବିରାଜେ ବିଜୁଳି
ଆକାଶ କି ଶୋଭା ପାଏ ଦେଖ ହେ କପାଳି ।
ଶାଳବୃକ୍ଷେ ଫୁଲ ଫୁଟି ଦିଶେ କି ସୁନ୍ଦର
କଦମ୍ବ ମୁକୁଳ ଦେଖ କେଡ଼େ ମନୋହର ।
ଫଳ ଫଳିବାରୁ ବୃକ୍ଷେ ଦିଶନ୍ତି ସୁରମ୍ୟ
ନଦୀ ସବୁ ବଢ଼ି ଦିଶେ କେଡ଼େ ମନୋରମ ।
ପଦ୍ମପତ୍ରେ ସରୋବରେ ଶୋଭା ପାଉଛନ୍ତି
ଏ ଭୀଷଣ ବର୍ଷାକାଳ ଦେଖ ପଶୁପତି ।
କିପରି ରହିବା ସହ୍ୟକରି ଗଛମୂଳେ
ଏକାରଣୁ କହୁଅଛି ଏ ବରଷା କାଳେ ।
ଘର କର ଏ ମନ୍ଦର ପର୍ବତ ଉପରେ
ବର୍ଷାକାଳ କଟାଇବା ରହି ଆନନ୍ଦରେ ।
ଏହାଶୁଣି ଧୀରେ ଧୀରେ ବୋଇଲେ ଶଙ୍କର
ତୁମ୍ଭ କଥା ମାନି ପ୍ରିୟେ କରନ୍ତି ମୁଁ ଘର ।
ଅତ୍ୟନ୍ତ ଦରିଦ୍ର କାହୁଁ ପାଇବି ମୁଁ ଧନ
ଦେଖୁଛ ତ ଅଙ୍ଗେ ନାହିଁ ଖଣ୍ଡିଏ ବସନ ।

ବାଘଛାଲ ଖଣ୍ଡେ ପିନ୍ଧି ବୁଲୁଅଛି ବନେ
ସୂତାଖିଏ ମିଳୁନାହିଁ ଦେଖୁଛ ନୟନେ ।
ଶାପକୁ ପଇତା କରି କାନ୍ଧେ ପକାଇଛି
ସର୍ପକୁ କୁଣ୍ଡଳ କରି କାନରେ ନାଇଛି ।
ଦୁଇଗୋଟା ସାପ ମୋର ହସ୍ତର କେୟୁର
ନୀଳଭୁଜଙ୍ଗମ ଦେଖ ମୋର ଗଳାହାର ।
ବୋଇଲେ ପୁଲସ୍ତ୍ୟ ଋଷି ହେ ନାରଦମୁନି
ଶିବଙ୍କର ପରିହାସ ଶୁଣିଣ ଭବାନୀ ।
ଲାଜ ଭୟ କ୍ରୋଧେ କଲେ ତଳକୁ ବଦନ
ନିଃଶ୍ୱାସ ପକାଇ ପୁଣି ବୋଇଲେ ଏସନ ।
ଆହେ ପ୍ରାଣନାଥ ଏହି ଘୋର ବର୍ଷାକାଳେ
ରହିବାକି ଶୀତଜଳ ସହି ଗଛମୂଳେ ।
ଅନୁଗ୍ରହ କରି ମୋତେ କହ ଆହେ ନାଥ
ଶଙ୍କର ବୋଇଲେ ପ୍ରିୟେ ନହୁଅ ଆରତ ।
ଚାଲ ମେଘମଣ୍ଡଳର ଉପରେ ରହିବା
ଏ ଘୋର ବରଷା କାଳ ସୁଖେ କଟାଇବା ।
ବର୍ଷାଜଳ ନ ପଡ଼ିବ ତୁମ୍ଭ କଳେବରେ
ପାର୍ବତୀ ଆନନ୍ଦ ହୋଇ ଉଠିଲେ ସତ୍ୱରେ ।
ବେନି ଜନେ ଯାଇଁ ମେଘ ଉପରେ ରହିଲେ
ସେଦିନୁ ଜିମୂତକେତୁ ନାମକୁ ବହିଲେ ।
ସେ ହର ପାର୍ବତୀ ପାଦପଦ୍ମେ କରି ଧ୍ୟାନ
ଦ୍ୱିଜ ଗୋପିନାଥ ବୋଲେ ଶୁଣ ସାଧୁଜନ ।

=✦=

## ନରୋତ୍ପତ୍ତି ପ୍ରଳୟ କଥନ

ପୁଲସ୍ତ୍ୟ ବୋଇଲେ ଶୁଣ ଆହେ ତପୋଧନ
ପାର୍ବତୀଙ୍କି ସଙ୍ଗେ ଘେନି ଦେବ ତ୍ରିଲୋଚନ ।
ମେଘର ଉପରେ ରହି ବର୍ଷା କଟାଇଲେ
ଗଗନମଣ୍ଡଳୁ ମେଘେ ଅନ୍ତର୍ଦ୍ଧାନ ହେଲେ ।
କଙ୍କପକ୍ଷୀ ବୃକ୍ଷ ନଦୀତଟ ତ୍ୟାଗ କଲେ
ପକ୍ଷୀଗଣ ଆପଣାର ବସାକୁ ଛାଡ଼ିଲେ ।
ଶୃଙ୍ଗ ଭାଙ୍ଗିଗଲା ରୁରୁ ମୃଗମାନଙ୍କର
ନିର୍ମଳ ହୋଇଲା ନଦୀ ସରୋବର ନୀର ।
ପଦ୍ମଫୁଲ ଫୁଟିବାରୁ ଶୋଭା ପ୍ରକାଶିଲା
ଚନ୍ଦ୍ରକିରଣ ଯେ ଅତି ଶୋଭାକୁ ଧଇଲା ।
କୁସୁମସ୍ତବକେ ଲତା ସୁନ୍ଦର ଦିଶିଲେ
ଆନନ୍ଦରେ ଗୋରୁପଲ ହମ୍ବା ରାବ କଲେ ।
ଗଗନେ ତାରକାପନ୍ତି ଜଳାଶୟ ଜଳ
ସାଧୁଜନ ଚିତ୍ତପଦ୍ମ ଚନ୍ଦ୍ର ଦିଗ୍‌ମଣ୍ଡଳ ।
ଏହାଙ୍କ ସମାନ ଶୋଭା ଦେଖି ତ୍ରିଲୋଚନ
ବିଚାରିଲେ ହେଲା ପରକାଳ ଆଗମନ ।
ପାର୍ବତୀଙ୍କୁ ଘେନି ମେଘମଣ୍ଡଳୁ ଅଇଲେ
ସୁନ୍ଦର ସୁନ୍ଦର ଗିରି ଉପରେ ରହିଲେ ।
ଆନନ୍ଦେ ବିହାର କଲେ ସେ ହର ପାର୍ବତୀ
ଏଥୁଅନନ୍ତରେ ଦିନେ ଦକ୍ଷପ୍ରଜାପତି ।
ଯଜ୍ଞ କରିବାକୁ ମନମଧେ ବିଚାରିଲେ
ଇନ୍ଦ୍ର ଆଦି ଶ୍ରେଷ୍ଠ ଶ୍ରେଷ୍ଠ ଦେବଙ୍କୁ ବରିଲେ ।
ଦ୍ୱାଦଶ ଆଦିତ୍ୟ ଆଉ କଶ୍ୟପ ଅଦିତି
ମହାଋଷି ବଶିଷ୍ଠଙ୍କ ସହ ଅରୁନ୍ଧତୀ ।
ଅନସୂୟା ସହ ଅତ୍ରି ଋଷିଙ୍କି ବରିଲେ
ଧୃତି ସହ କୌଶିକଙ୍କୁ ନିମନ୍ତ୍ରି ଆଣିଲେ ।
ଅହଲ୍ୟା ସହିତ ଗଉତମ ମହାଋଷି
ଆବର ମାୟାର ସହ ଭରଦ୍ୱାଜ ଋଷି ।
ଚନ୍ଦ୍ରାଦେବୀ ସହିତରେ ମହର୍ଷି ଅଙ୍ଗିରା
ଆମନ୍ତ୍ରଣ ପାଇ ଉପସ୍ଥିତ ହେଲେ ତ୍ୱରା ।
ଏ ସମସ୍ତେ ଦକ୍ଷଯଜ୍ଞେ ସଦସ୍ୟ ହୋଇଲେ
ଦକ୍ଷ ପ୍ରଜାପତି ପୁଣି ଧର୍ମକୁ ବରିଲେ ।
ତାହାଙ୍କ ଭାରିଯା ନାମ ଅହିଂସା ଅଟଇ
ତାଙ୍କୁ ଘେନି ଉପସ୍ଥିତ ହେଲେ ଧର୍ମ ତହିଁ ।
ଯଜ୍ଞେ ଦ୍ୱାରପାଳ ହୋଇ ଯଜ୍ଞ ରକ୍ଷାକଲେ
ଅରିଷ୍ଟନେମୀଙ୍କି ଚାହିଁ ଦକ୍ଷ ଯେ ବୋଇଲେ ।
ଅଙ୍ଗିରା ଋଷିଙ୍କି ସଙ୍ଗେ ଘେନି ତୁମ୍ଭେ ଯାଅ
ଯଜ୍ଞକାଷ୍ଠ ବାଛି ବନମଧ୍ୟରୁ ଅଣାଅ ।
ଯଜ୍ଞକୁ ସଂସ୍କାର କର ବୋଇଲେ ଭୃଗୁଙ୍କୁ
ଭଣ୍ଡାରରେ ଅଧିକାରୀ କଲେ ଚନ୍ଦ୍ରମାଙ୍କୁ ।
ଏହିପରକାରେ ଯଜ୍ଞେ ଦକ୍ଷ ପ୍ରଜାପତି
ସବୁ ଝିଅ ଜୋଇଁଙ୍କି ଯେ ନିଯୁକ୍ତ କରନ୍ତି ।
ଦୌହିତ୍ରବର୍ଗଙ୍କୁ ଯଜ୍ଞେ ନିମନ୍ତ୍ରି ଆଣିଲେ
ଶିବପାର୍ବତୀଙ୍କି ଛାଡ଼ି ସମସ୍ତେ ଅଇଲେ ।

### ନାରଦ ଉବାଚ

ନାରଦ ବୋଇଲେ ଯାହା କହିଲ ହେ ମୁନି
ମୋ ମନେ ସଂଶୟ ଜାତ ହୋଇଲା ତା ଶୁଣି ।

ସବୁ ଜୋଇଁ ମଧ୍ୟେ ଶ୍ରେଷ୍ଠ ଅଟନ୍ତି ଯେ ହର
ମହାମାନ୍ୟ ଜ୍ୟେଷ୍ଠ ପୁଣି ବଳିଷ୍ଠ ଆବର ।
ବରଣ ନ କଲେ ଦକ୍ଷ କିମ୍ପାଇଁ ତାହାଙ୍କୁ
ମନରୁ ସଂଶୟ ଫେଡ଼ି କହ ତା ଆମ୍ଭଙ୍କୁ ।
ପୁଲସ୍ତ୍ୟ କହିଲେ ଶୁଣ ଆହେ ମୁନିବର
ଜ୍ୟେଷ୍ଠ ଶ୍ରେଷ୍ଠ ଆଦିଭୂତ ଦେବଦେବ ହର ।
ଯେହେତୁ ସେ କରିଛନ୍ତି କପାଳ ଧାରଣ
ନକଲେ ତାହାଙ୍କୁ ତେଣୁ ଦକ୍ଷ ଆମନ୍ତ୍ରଣ ।
ନାରଦ ବୋଇଲେ କହ ଆହେ ତପୋଧନ
କପାଳ ଧାରଣ କଲେ କିମ୍ପା ତ୍ରିଲୋଚନ ।

**ପୁଲସ୍ତ୍ୟ ଉବାଚ**

ପୁଲସ୍ତ୍ୟ ବୋଇଲେ ଶଣ ସାବଧାନ ହୋଇ
ବହୁକାଳ କଥା ତୁମ୍ଭ ଆଗେ କହିବଇଁ ।
ବ୍ରହ୍ମା ନିଜେ କହିଛନ୍ତି ଆଦି ପୁରାଣରେ
ସୃଷ୍ଟି ନଷ୍ଟ ହେଲା ମହାପ୍ରଳୟ ଜଳରେ ।
ସ୍ଥାବର ଜଙ୍ଗମ ଗ୍ରହ ନକ୍ଷତ୍ର ସକଳ
ବିନଷ୍ଟ ହୋଇଲେ ପୁଣି ଅନୀଳ ଅନଳ ।
ଘୋର ଅନ୍ଧକାର ହେଲା କିଛି ନ ଦିଶିଲା
ତୃଣ ବୃକ୍ଷ ଲତା ସବୁ ଜଳେ ବୁଡ଼ିଗଲା ।
ସେହି ଏକାର୍ଣ୍ଣବେ ଦେବଦେବ ଭଗବାନ
ସହସ୍ର ବରଷ ଯାଏ କଲେକ ଶୟନ ।
ରଜନୀ ଶେଷରେ କଲେ ରାଜସ ଆଶ୍ରୟ
ପୁରୁଷେକ ଜାତ ହେଲା ସେହି ରଜୋମୟ ।
ସେ ଅଦ୍ଭୁତ ପୁରୁଷର ପାଞ୍ଚୋଟି ବଦନ
ବେଦ ବେଦାଙ୍ଗେ ପାରଗ ଅଟେ ଜ୍ଞାନବାନ ।
ଏହି ସଂସାରର ସୃଷ୍ଟିକର୍ତ୍ତା ସେ ଅଟଇ
ଏଥୁଅନ୍ତେ ହେ ନାରଦ ଶୁଣ ମନଦେଇ ।
ତମୋଗୁଣ ଆଶ୍ରାକଲେ ପୁଣି ଭଗବାନ
ତହୁଁ ପୁଣି ପୁରୁଷେକ ହେଲା ଉତପନ୍ନ ।
ତିନିଗୋଟି ନେତ୍ର ହସ୍ତେ ଶୂଳ ଧରିଛନ୍ତି
କପର୍ଦ୍ଦ ଆବର ଅକ୍ଷମାଳା ବହିଛନ୍ତି ।
ଏଥୁଅନ୍ତେ ପୁନରପି ଦେବ ଭଗବାନ
ଅଙ୍ଗରୁ ଯେ ଅହଙ୍କାର ହେଲା ଉତପନ୍ନ ।
ବ୍ରହ୍ମାରୁଦ୍ରଙ୍କୁ ସେ ଆସି କଲା ଆକ୍ରମଣ
ଘୋର ଅନ୍ଧକାରେ ରୁଦ୍ର ହୋଇଲେ ଆଚ୍ଛନ୍ନ ।
ପିତାମହ ବଦନକୁ ଚାହିଁ ପଚାରିଲେ
କେଉଁ ବ୍ୟକ୍ତି ତୁମ୍ଭଙ୍କୁ ସେ ଉତପନ୍ନ କଲେ ।
କିଏ ତୁମ୍ଭେ କାହିଁପାଇଁ ଆସିଲ ଏଠାକୁ
ଏହା ଶୁଣି ପିତାମହ ବୋଇଲେ ତାହାଙ୍କୁ ।
ତୁମ୍ଭେ କିଏ କହ ତୁମ୍ଭ ପିତାମାତା କିଏ
ହେ ନାରଦ ତୁମ୍ଭେ ଜନ୍ମହେଲ ଏ ସମୟେ ।
ବୀଣା ଧରି ଗାଇ ଗାଇ ଗଲ ଗଗନରେ
ବ୍ରହ୍ମାରୁଦ୍ର କଥା ଶୁଣ ଏଥୁ ଅନନ୍ତରେ ।
ଏହା କହି ବ୍ରହ୍ମା ଅଧୋବଦନେ ରହିଲେ
ମହାକ୍ରୋଧେ ପଶୁପତି ଅବଶ ହୋଇଲେ ।
ପଞ୍ଚମୁଖ ବ୍ରହ୍ମା ତାଙ୍କୁ ବୋଇଲେ ଏମନ୍ତ
ଆହେ ତ୍ରିଲୋଚନ ଜାଣେ ମୁଁ ତୁମ୍ଭ ବୃତ୍ତାନ୍ତ ।
ତୁମ୍ଭେ ତ ଲଙ୍ଗଳା ପୁଣି ବଳଦ ବାହନ
ତମୋ ଗୁଣ ବହି କର ଲୋକ ବିନାଶନ ।
ଏହା ଶୁଣି ଅତି କ୍ରୁଦ୍ଧ ହୋଇଲେ ଶଙ୍କର
ତିନିଗୋଟି ନେତ୍ର ଦେଖାଗଲା ଭୟଙ୍କର ।
ପୋଡ଼ିଦେବା ମାନସରେ ବ୍ରହ୍ମାଙ୍କ ବଦନ
ବାରମ୍ବାର ଅନାଇଲେ ତରାଟି ନୟନ ।
ଅଦ୍ଭୁତରେ ପାଞ୍ଚମୁଖ ହେଲା ତାହାଙ୍କର
ଦେଖିବାକୁ ସେ ବଦନ ଦିଶେ ଭୟଙ୍କର ।
କେଉଁ ମୁଖଗୋଟି ଶ୍ୱେତ କେଉଁ ମୁଖ ରକ୍ତ
କେ ନୀଳପିଙ୍ଗଳ ବର୍ଣ୍ଣ କେଉଁ ମୁଖ ପୀତ ।
ପିତାମହ ତାଙ୍କ ମୁଖ ଦରଶନ କରି
ପୁନରପି ବୋଇଲେକ ଉପହାସ କରି ।
ଆହତ ଜଳରୁ ଜାତ ବୁଦ୍‌ବୁଦ୍ ହୁଅଇ
ସେହି ବୁଦ୍‌ବୁଦ୍‌ର ପରାକ୍ରମ କି ଅଛଇ ।
ଜଳୁ ଜାତ ହୋଇ ବଳେ ହୁଅଇ ସେ ଲୀନ
ତୁମ୍ଭ ଶରୀରରୁ କ୍ରୋଧ ଉପୁଜି ତେସନ ।
ଲୀନ ହେବ କିଛି କାର କରି ନ ପାରିବ
ଏହା ଶୁଣି ଅତି କ୍ରୁଦ୍ଧ ହେଲେ ମହାଦେବ ।
ଜ୍ୱଳନ୍ତା ଅନଳେ ଘୃତ ଢାଳିଲେ ଯେସନ
ପ୍ରବଳ ହୁଅଇ କ୍ରୋଧ ଅନଳ ତେସନ ।
ପ୍ରଜ୍ୱଳିତ ହୋଇ ଶିଖା ଦିଗ ବ୍ୟାପିଗଲା
ଦେବଦେବ ଶଙ୍କରଙ୍କୁ ଅସ୍ଥିର ସେ କଲା ।
ନଖେ କଲେ ବ୍ରହ୍ମାଙ୍କର ମସ୍ତକ ଛେଦନ
କଳିଦ୍ୱନ୍ଦ୍ୱ କରୁଥିଲା ଯେବଣ ବଦନ ।

ସେ ବଦନ ଗୋଟି ଛିଡ଼ି ତଳେ ନ ପଡ଼ିଲା
ସଦାଶିବଙ୍କର ବାମହାତରେ ଲାଗିଲା ।
ଯେତେ ଯତ୍ନ କଲେ ହର ନ ଖସିଲା ଶିର
ହସ୍ତରେ କଳାପ ଦେଖି ବିସ୍ମିତ ଶଙ୍କର ।
ଏଥି ଅନ୍ତେ ସେ ଅଦ୍ଭୁତକର୍ମା ପ୍ରଜାପତି
କ୍ରୋଧେ କଲେ ଅଙ୍ଗୁ ଏକ ପୁରୁଷ ଉତ୍ପତ୍ତି ।
କବଚ କୁଣ୍ଡଳେ ଶୋଭାପାଏ ତା ଶରୀର
ଭୟଙ୍କର ଧନୁଶର ଧରିଛି ଆବର ।
ତାହାର କାଖରେ ଦୁଇ ତୂଣୀର ଝୁଲଇ
ଅତିଦୀର୍ଘ ସୁବିଶାଳ ତାର ବାହୁ ଦୁଇ ।
ଅଟଇ ତାହାର ତେଜ ଆଦିତ୍ୟ ସମାନ
ଅନଳସଦୃଶ ଶକ୍ତି କରିଛି ଧାରଣ ।
ସେ ପୁରୁଷବର ମହାଦେବଙ୍କୁ କହଇ
ରେ ଦୁର୍ବୁଦ୍ଧି ଏଠାରୁ ତୁ ବେଗେ ଯା ପଳାଇ ।
ତୁହି ମହାପାପୀ ତୋତେ ବଧ ନ କରିବି
କଥା ନ କହିବି ତୋର ମୁଖ ନ ଚାହିଁବି ।
ସେ ପୁରୁଷବର କଥା ଶୁଣି ତ୍ରିଲୋଚନ
ବଦରିକା ଆଶ୍ରମକୁ କଲେକ ଗମନ ।
ସେହି ସ୍ଥାନ ଗୋଟି ଅଟେ ଅତି ପୁଣ୍ୟମୟ
ସେ ସ୍ଥାନରେ ନର ନାରାୟଣଙ୍କ ଆଳୟ ।
ପୁଣ୍ୟତୋୟା ସରସ୍ୱତୀ ନଦୀ ଅଛି ତହିଁ
ଉପମା ଦେବାକୁ ଆଉ ସେ ସ୍ଥାନକୁ ନାହିଁ ।
ମିଳିଲେ ସେ ଆଶ୍ରମରେ ଦେବ ତ୍ରିଲୋଚନ
ନର ନାରାୟଣଙ୍କୁ ଯେ କଲେ ଦରଶନ ।
ବୋଇଲେ ହେ ପ୍ରଭୁ ତୁମ୍ଭେ ଅଟ ଦୟାମୟ
ଅନୁଗ୍ରହ କରି ମୋତେ ଉପଦେଶ ଦିଅ ।
ମହେଶଙ୍କ କଥା ଶୁଣି ନର ନାରାୟଣ
ଦୟାବହି ବୋଇଲେକ ହେ ଶୂଳଧାରଣ ।
ମୋର ବାମଭୁଜେ କର ତ୍ରିଶୂଳ ଆଘାତ
ତାହାଙ୍କର ଏ ବଚନ ଶୁଣି ଶୂଳହସ୍ତ ।
ତ୍ରିଶୂଳରେ ବାମବାହୁ କଲେ ବିଦାରଣ
ତିନିଗୋଟି ଗର୍ତ୍ତହେଲା ଅତ୍ୟନ୍ତ ଭୀଷଣ ।
ତା ମଧ୍ୟରୁ ତିନିଧାରା ହେଲା ଉତପତ୍ତି
ଏକ ଧାରା ଗଗନରେ କଲା ଅବସ୍ଥିତି ।
ଦ୍ୱିତୀୟ ଧାରାଟି ଭୂମି ଉପରେ ପଡ଼ିଲା
ତପୋଧନ ଅତ୍ରିଙ୍କର ଆଶ୍ରୟେ ରହିଲା ।
ମହାଦେବ ଅଂଶେ ତହୁଁ ଦୁର୍ବାସା ଜନ୍ମିଲେ
ତୃତୀୟ ଧାରା ପଡ଼ିଲା ଶିବଙ୍କ କପାଳେ ।
ଯୁବା ପୁରୁଷେକ ହେଲା ତହିଁରୁ ସମ୍ଭୂତ
ଧନୁଶରେ ଶୋଭାପାଏ ତାର ବେନି ହସ୍ତ ।
କବଚରେ ଶୋଭାପାଏ ତାର କଳେବର
ଶ୍ୟାମଳ ବରନ କାନ୍ତି ଅତିଭୟଙ୍କର ।
ବର୍ଷାକାଳ ମେଘ ପ୍ରାୟ ଗରଜନ କରେ
ବେଳୁବେଳ ଭୟଙ୍କର ମୂରତି ସେ ଧରେ ।
ବୋଲେ କି କରିବି କହ ବିଳମ୍ବ ନ କର
ଖଣ୍ଡ ଖଣ୍ଡ କରିବଇଁ ମସ୍ତକ କାହାର ।
କାହା ଭୁଜ ଉପାଡ଼ିବି ଛାତି ବିଦାରିବି
ବେଗେ ଆଜ୍ଞାଦେଲେ ମୁହିଁ ଏହିକ୍ଷଣି ଯିବି ।
ମହାଦେବ ସେ ଭୀଷଣ ନରକୁ ଅନାଇ
କହିଲେ ତୁ ବ୍ରହ୍ମାନନ୍ଦନକୁ ମାର ଯାଇ ।
ଶଙ୍କରଙ୍କ ଆଜ୍ଞା ପାଇ ସେହି ନରବର
ଅଜଗବ ଧନୁ ଆଉ ଅକ୍ଷୟ ତୂଣୀର ।
ଧରି ସେ ପୁରୁଷ ସଙ୍ଗେ ଯୁଝିବାକୁ ଗଲା
ଦେଖି ବ୍ରହ୍ମାନନ୍ଦନ ଯେ ମହାକୋପ କଲା ।
ସେ କୋପ ପୁରୁଷ ଦୁଇ କଲେ ଘୋରରଣ
ଦୁହେଁ ମହାପରାକ୍ରମୀ ଯୁଦ୍ଧରେ ନିପୁଣ ।
ସହସ୍ର ବରଷ ବହିଗଲା ଏହିପରି
କହିଲେ ବ୍ରହ୍ମାକୁ ଚାହିଁ ଦେବ ତ୍ରିପୁରାରି ।
ନାରାୟଣ ବାହୁଜାତ ସେ ଅଦ୍ଭୁତ ନର
ତୋର କୋପ- ପୁରୁଷକୁ କରିବି ସଂହାର ।
ଦଶଦିଗ କଲାଣି ସେ ବାଣେ ଆଚ୍ଛାଦନ
ଏହା ଶୁଣି ବୋଇଲେକ କମଳଆସନ ।
ମହାବଳୀ ମୋ ପୁରୁଷ କେଭେ ନ ହାରିବ
ତାର ଜନ୍ମ ଇହଲୋକେ ନୁହଇ ହେ ଶିବ ।
ଏହା କହି ନିଜ କୋପ-ପୁରୁଷକୁ ନେଇ
ରଖିଲେ ସୂର୍ଯ୍ୟଙ୍କଠାରେ ପୁଣି ତହୁଁ ଯାଇ ।
ନାରାୟଣ କୋପଜାତ ନରକୁ ସେ ନେଲେ
ଧର୍ମପୁତ୍ର ନାରାୟଣ ଅଙ୍ଗରେ ରଖିଲେ ।
ଏ ବାମନ ପୁରାଣର ଅପୂର୍ବ ଚରିତ
ପଢ଼ି ଶୁଣି ନରେ ହୁଅ ପରମ ପବିତ୍ର ।
ଶିବ ବ୍ରହ୍ମା ନରନାରାୟଣଙ୍କ ଚରଣେ
ଦ୍ୱିଜ ଗୋପୀନାଥ ଚିତ୍ତ ରହୁ ଅନୁକ୍ଷଣେ ।

## ଶିବଙ୍କ ହସ୍ତର କପାଳ ମୋଚନ ଓ କପାଳୀ ନାମ ଧାରଣ

ପୁଲସ୍ତ୍ୟ କହିଲେ ଶୁଣ ଆହେ ମୁନିବର
ସେହି ଅତି ନିଦାରୁଣ ବ୍ରହ୍ମାଙ୍କର ଶିର ।
ରୁଦ୍ରଙ୍କର ବାମକରତଳରେ ରହିଲା
ତାଙ୍କ ଅନ୍ତଃକରଣକୁ ବ୍ୟାକୁଳିତ କଲା ।
ନିରନ୍ତର ସନ୍ତାପିତ ହେଲେ ତ୍ରିଲୋଚନ
ଏଥୁ ଅନନ୍ତରେ ଶୁଣ ଆହେ ତପୋଧନ ।
ମହାଭୟଙ୍କର ସେହି ବ୍ରହ୍ମହତ୍ୟା ପାପ
ରୌଦ୍ରମୂର୍ତ୍ତି ଧରି ଆସେ ରୁଦ୍ରଙ୍କ ସମୀପ ।
ସିନ୍ଦୂର ପରାୟ ରଙ୍ଗବର୍ଣ୍ଣ ଦିଶେ କେଶ
ଦେହ ତାର ନୀଳବର୍ଣ୍ଣ ଅଞ୍ଜନ ସଦୃଶ୍ୟ ।
ତାର ସେ କରାଳମୂର୍ତ୍ତି କରି ଦରଶନ
ଧୀରେ ଧୀରେ ପଚାରିଲେ ଦେବ ତ୍ରିଲୋଚନ ।
କିଏ ତୁମ୍ଭେ ଭୟଙ୍କର ଦିଶେ ତୁମ୍ଭ ଦେହ
କି ନିମନ୍ତେ ଏ ସ୍ଥାନକୁ ଆସିଅଛ କହ ।
ସେ ଦାରୁଣ ବ୍ରହ୍ମହତ୍ୟା ବୋଲେ ହସିକରି
ମୋର ନାମ ବ୍ରହ୍ମହତ୍ୟା ହେ କପାଳଧାରୀ ।
ଆସିଅଛି ତୁମ୍ଭ ଦେହେ କରିବି ବିଶ୍ରାମ
ଏହାକହି ରୁଦ୍ରଙ୍କୁ ସେ କଲାକ ଆକ୍ରମ ।
କ୍ରମେ ସନ୍ତାପିତ ହେଲା ଦେହ ତାହାଙ୍କର
ବଦରିକା ଆଶ୍ରମକୁ ଚାଲିଗଲେ ହର ।
ସେ ସ୍ଥାନରେ ନରନାରାୟଣଙ୍କୁ ନ ଦେଖି
ଚିନ୍ତାଭରେ ତାହାଙ୍କର ଦେହଗଲା ଶୁଖି ।
ସେଠାରୁ ହତାଶ ହୋଇ ଅତି ଦୁଃଖେ ଗଲେ
ଯମୁନା ଜଳରେ ସ୍ନାନ କରିବେ ବାଞ୍ଛିଲେ ।
ମିଳନ୍ତେ ସେ ନଦୀକୂଳେ ସେ ଯମୁନା ଜଳ
ଶୁଖିଗଲା ତାହା ଦେଖି ହୋଇଲେ ବ୍ୟାକୁଳ ।
ତହୁଁ ଅତି ବେଗେ ଗଲେ ପ୍ଲକ୍ଷଜା କୂଳକୁ
ଅନ୍ତର୍ଦ୍ଧାନ ହେଲେ ଦେଖି ସେ ନଦୀ ତାହାଙ୍କୁ ।
ଜଳ ନ ପାଇଣ ତହୁଁ ଦୁଃଖେ ତ୍ରିଲୋଚନ
କଲେ ଇଚ୍ଛା ଅନୁସାରେ ବନକୁ ଗମନ ।
ପୁଷ୍କର ଅରଣ୍ୟ ପୁଣି ମଗଧ କାନନ
ଭ୍ରମିଲେ ସେ ସୈନ୍ଧବାଦି ନାନାବିଧ ବନ ।
ଶ୍ରାନ୍ତହୋଇ ପଡ଼ିଗଲେ ଉଠି ନ ପାରିଲେ
ଅତି କଷ୍ଟେ ପୁଣି ଉଠି ଧୀରେ ଧୀରେ ଗଲେ ।
ପହଞ୍ଚିଲେ ନଇମିଷ ଅରଣ୍ୟରେ ଯାଇ
ତଥାପି ସେ ବ୍ରହ୍ମହତ୍ୟା ତାଙ୍କୁ ନ ଛାଡ଼ଇ ।
ଯୋଗମାର୍ଗ ଆଶ୍ରା କଲେ ପ୍ରଭୁ ପଞ୍ଚାନନ
ପୃଥିବୀ ମଧ୍ୟରେ ଥିଲେ ଯେତେ ତୀର୍ଥସ୍ଥାନ ।
ସ୍ନାନ କରି ନ ଛାଡ଼ିଲା ବ୍ରହ୍ମହତ୍ୟା ପାପ
ଦେବତାଙ୍କ ଆଳୟରେ ରହି କଲେ ଜପ ।
କଲେ ଯୋଗୀ ମୁନି ସିଦ୍ଧ ସାଧୁଙ୍କ ଦର୍ଶନ
ନଦୀହ୍ରଦ ସରିତରେ ପଶି କଲେ ସ୍ନାନ ।
ତଥାପି ସେ ବ୍ରହ୍ମହତ୍ୟା ପାପ ନ ଛାଡ଼ିଲା
ଅଧିକ ପ୍ରମାଣେ ତାଙ୍କୁ ଆକ୍ରମଣ କଲା ।
ନିର୍ବେଦ ଚିତ୍ତରେ ତହୁଁ ଦେବ ପଞ୍ଚାନନ
କୁରୁଜାଙ୍ଗଳ ଦେଶକୁ କଲେକ ଗମନ ।
ଅନ୍ତର୍ଯ୍ୟାମୀ ପୁରୁଷଙ୍କୁ ଦେଖିଲେ ସେଠାରେ
ବିଜେ କରି ଅଛନ୍ତି ସେ ଗରୁଡ଼ପୃଷ୍ଠରେ ।
ଶଙ୍ଖ ଚକ୍ର ଗଦାପଦ୍ମେ ଶୋଭାପାଏ ଭୁଜ
ବଦନରେ ଶୋଭାପାଏ ନୟନପଙ୍କଜ ।
ସେ ଦେବରାଜଙ୍କୁ ଦେଖି ଯୋଡ଼ି ବେନିକର
ଏକାଗ୍ରଚିତ୍ତରେ ସ୍ତବ କଲେ ଦେବ ହର ।
ଆହେ ଦେବ ତୁମ୍ଭେ ଦେବଗଣ ରକ୍ଷାକାରୀ
ତୁମ୍ଭଙ୍କୁ ମୁଁ ନମସ୍କାର କରୁଛି ହେ ହରି ।
ତୁମ୍ଭେ ଶଙ୍ଖ ଚକ୍ର ଗଦାଧର ବାସୁଦେବ
ତୁମ୍ଭଙ୍କୁ ମୁଁ ନମସ୍କାର କରେ ହେ ମାଧବ ।
ତୁମ୍ଭେ ତ ନିର୍ଗୁଣ ପୁଣି ଅଟ ଗୁଣମୟ
ତୁମ୍ଭେ ଦେଶ - କାଳ ପାତ୍ର ଜ୍ଞାତା ଦେବରାୟ ।
ତୁମ୍ଭଙ୍କୁ ମୁଁ ନମସ୍କାର କରୁଛି ହେ ହରି
ବିଧାତା ପୁରୁଷ ତୁମ୍ଭେ ଅଟ ଦଇତ୍ୟାରି ।
କେ ନିର୍ଣ୍ଣୟ କରିପାରେ ତୁମ୍ଭର ସ୍ୱରୂପ
ତୁମ୍ଭେ ରୂପଧାରୀ ପୁଣି ଅଟତ ଅରୂପ ।
ତୁମ୍ଭେ ଜ୍ଞାନମୟ ପୁଣି ଜ୍ଞାନର ଅତୀତ
ତୁମ୍ଭେ ଅନାଶ୍ରିତ ପୁଣି ଜଗତ ଆଶ୍ରିତ ।
ନମସ୍କାର କରୁଅଛି ମୁଁ ତୁମ ପୟରେ
ତୁମ୍ଭେ ସନାତନ ବ୍ରହ୍ମରୂପୀ ସାକ୍ଷାତରେ ।
ତୁମ୍ଭଙ୍କୁ ମୁଁ ନମସ୍କାର କରୁଛି ହେ ନାଥ
ତୁମ୍ଭେ ଅନାଥରନାଥ ଅଟ ଜଗନ୍ନାଥ ।
ତୁମ୍ଭେ ଏହି ଚରାଚର ସୃଷ୍ଟିର କରତା
ବିନାଶ-ପାଳନକାରୀ ତୁମ୍ଭେ ତ ନିର୍ମାତା ।

ତୁମ୍ଭେ ଅଧୋକ୍ଷଜ ତୁମ୍ଭେ ଜଗତ ଈଶ୍ୱର
ବିଷ୍ଣୁରୂପୀ ଜନାର୍ଦ୍ଦନ କରୁଣାସାଗର ।
ଆହେ ମହାବାହୁ ତୁମ୍ଭ ଚରଣ ତଳରେ
ଶରଣ ପଶୁଛି ମୋତେ ରକ୍ଷାକର ବାରେ ।
ତୁମ୍ଭେ ତମୋଗୁଣଧାରୀ ହେ ବିଶ୍ୱମୋହନ
ମୁହିଁ ତୁମ୍ଭ ଅଂଶୁ ଜାତ ହେ ଲୋକପାବନ ।
ତୁମ୍ଭେ ଦେବ ଦେବ ଦେବଗଣଙ୍କ ଈଶ୍ୱର
ବିଷ୍ଣୁରୂପେ ବ୍ୟାପିଅଛ ତୁମ୍ଭେ ଏ ସଂସାର ।
ଗୁଣର ଆଧାର ତୁମ୍ଭେ ଅଟ ଆହେ ହରି
ନମସ୍କାର କରୁଅଛି ଚରଣେ ତୁମ୍ଭରି ।
ଆହେ ଜଗନ୍ନାଥ ତୁମ୍ଭେ ପୃଥିବୀ ସଲିଳ
ଆକାଶ ପାତାଳ ତୁମ୍ଭେ ଅନଳ ଅନିଳ ।
ତୁମ୍ଭେ ବୁଦ୍ଧି ମନ ତୁମ୍ଭ ଦିବସ ରଜନୀ
ତୁମ୍ଭ ପାଦପଦ୍ମେ ମୁହିଁ କରୁଛି ଦୟିନୀ ।
ତୁମ୍ଭେ ଧର୍ମ କର୍ମ ଯାଗ ଯଜ୍ଞ ତପ ଜପ
ସତ୍ୟ ଶୌଚ ଦୟା କ୍ଷମା ଅହିଂସା ସ୍ୱରୂପ ।
ତୁମ୍ଭେ ଦାନ ଧ୍ୟାନ ଜ୍ଞାନରୂପୀ ଆହେ ହରି
ତୁମ୍ଭେ ଧୃତି ତୁମ୍ଭେ ଶ୍ରୁତି ତୁମ୍ଭେ ବ୍ରହ୍ମଚାରୀ ।
ବେଦବେଦାଙ୍ଗାଦି ଶାସ୍ତ୍ର ତୁମ୍ଭର ସ୍ୱରୂପ
ତୁମ୍ଭେ ଏକାମାତ୍ର ଏହି ଜଗତେ ନିଷ୍ପାପ ।
ତୁମ୍ଭେ ବେଦ୍ୟ ବେଦ ଉପବେଦର ପାରଗ
ଅଚ୍ୟୁତ ଅନନ୍ତ ତୁମ୍ଭେ ଅଟ ମହାନାଗ ।
ନମସ୍କାର କରୁଅଛି ହେ ବଟୁ ବାମନ
କେଶବ ମାଧବ ଆହେ ପତିତପାବନ ।
ମୋତେ ଏହି ମହାପାପୁ କର ପରିତ୍ରାଣ
ବିପଦଭଞ୍ଜନ ଆହେ ଶରଣରକ୍ଷଣ ।
ବ୍ରହ୍ମହତ୍ୟା ପାପ ରହି ମୋର କଳେବରେ
ବ୍ୟାକୁଳ କରୁଛି ମୋତେ ଏଥୁ ରଖ ବାରେ ।
ସର୍ବଦା ମୋ ଦେହ ଦଗ୍ଧ ହେଉଛି ହେ ହରି
ମୋ ସମାନ ଜଣେ କେହି ନାହିଁ ପାପକାରୀ ।
ମୋର କଳାକର୍ମ ଭୋଗ କରୁଅଛି ମୁହିଁ
ଏ ଦାରୁଣ ସଂକଟରୁ କର ମୋତେ ତ୍ରାହି ।
ଆହେ କୃପାସିନ୍ଧୁ କୃପା କରି ମୋହପ୍ରତି
ବାରମ୍ବାର ଶ୍ରୀପୟରେ କରୁଛି ବିନତି ।
ବୋଇଲେ ପୁଲସ୍ତ୍ୟ ଋଷି ଆହେ ମୁନିବର
ଏମନ୍ତେ ବହୁତ ସ୍ତୁତି କଲେକ ଶଙ୍କର ।
ଦୟାମୟ ଦୟା ବହି କହିଲେ ସଧୀରେ
କହୁଅଛି ପୁଣ୍ୟ କଥା ମୁଁ ତୁମ୍ଭ ଆଗରେ ।
ଶୁଣିବ ଯଦ୍ୟପି ତାହା ଆହେ ମହେଶ୍ୱର
ବ୍ରହ୍ମହତ୍ୟା ପାପକ୍ଷୟ ହୋଇବ ତୁମ୍ଭର ।
ପୁଣ୍ୟର ସଞ୍ଚାର ହେବ ତୁମ୍ଭ କଳେବରେ
ପରମ ପବିତ୍ର ଏହି ବ୍ରହ୍ମାଣ୍ଡ ମଧରେ ।
ଯେ ମୋ ଅଂଶୁ ଜାତ ଯାର କ୍ଷୟ ବୃଦ୍ଧି ନାହିଁ
ପ୍ରୟାଗ ତୀର୍ଥରେ ନିତ୍ୟ ବାସକରେ ସେହି ।
ଯାର ନାମ ଯୋଗଶାୟୀ ତ୍ରିଭୁବନେ ଖ୍ୟାତ
ତା ଦକ୍ଷିଣପାଦୁଁ ହେଲା ନଦୀ ଏକ ଜାତ ।
ତା ନାମ ବରଣା ସେହି ପାପବିନାଶିନୀ
ମଙ୍ଗଳରୂପିଣୀ ପୁଣି ମଙ୍ଗଳ ଦାୟିନୀ ।
ଅସି ନାମେ ସୁବିଖ୍ୟାତା ପୁଣି ଏକ ନଈ
ସେ ଯୋଗଶାୟୀର ଦକ୍ଷ ପାଦୁଜାତ ହୋଇ ।
ସେହି ଦୁଇ ନଈ ଶ୍ରେଷ୍ଠ ହେବାରୁ ସମସ୍ତେ
ବିଧି ଅନୁସାରେ ପୂଜା କରନ୍ତିତ ନିତ୍ୟେ ।
ସେହି ଦୁଇ ନଦୀ ମଧ ଅଛି ଯେଉଁ ସ୍ଥାନ
ତହିଁ ବାସ କରୁଛନ୍ତି ପୁରୁଷ ପ୍ରଧାନ ।
ଏହି କାରଣରୁ ଅଟେ ସେ ପ୍ରଧାନ ତୀର୍ଥ
ଯୋଗଶାୟୀ ନାମେ ତିନିଭୁବନରେ ଖ୍ୟାତ ।
ତା ସେବା କରିଲେ ସର୍ବ ପାପ ଯାଏ କ୍ଷୟ
ତା ସମାନ ତୀର୍ଥନାହିଁ କହିଲି ନିଶ୍ଚୟ ।
ତାରତୁଲ୍ୟ ଆଉ ଏକ ସ୍ଥାନ ଅଛି ଶୁଣ
ବାରାଣସୀ ନାମେ ଖ୍ୟାତ ନଗରୀ ପ୍ରଧାନ ।
ଲମ୍ପଟ ପୁରୁଷେ ଯହିଁ କରିଛନ୍ତି ବାସ
ଯହିଁ ବାସ କଲେ ହୁଏ ସର୍ବପାପ ଧ୍ୱଂସ ।
ଉତ୍ତମ ବ୍ରାହ୍ମଣଙ୍କର ଯହିଁ ବେଦଧ୍ୱନି
ଆବର ରମଣୀଗଣଙ୍କର କାଞ୍ଚିଧ୍ୱନି ।
ଦୁହେଁ ମିଶିବାରୁ ହୁଏ ମଧୁର ସୁସ୍ୱର
ସେ ସ୍ୱର ଶୁଣିଲେ ସବୁ ଦୁଃଖ ହୁଏ ଦୂର ।
ସେ ନଗର ଦାଣ୍ଡେ ଚାଲୁଥିବା ନାରୀଙ୍କର
ଅଳତାରଞ୍ଜିତ ପାଦ ଦିଶେ କି ସୁନ୍ଦର ।
ତେଣୁ ଜଣାଯାଏ ପଦ୍ମ ଫୁଟିଛି କି ସ୍ଥଳେ
ଶୋଭାପାଏ ମହୀତଳ ସେ ସ୍ଥଳ କମଳେ ।
ସେ ନଗର କାନ୍ଥେଲେଖା ହୋଇଥିବା ନାରୀ
ଚନ୍ଦ୍ରକାନ୍ତ ମଣିରେ ଯେ ହେବାରୁ ତିଆରି ।

ତାହାଙ୍କର ମୁଖ-ପଦ୍ମ ଅତ୍ୟନ୍ତ ନିର୍ମଳ
ପ୍ରଫୁଲ୍ଲ-କୁସୁମ ଭ୍ରମବଶୁଁ ଅଳିକୁଳ ।
ଲୋଭେ ପଡ଼ି ଅନ୍ୟପୁଷ୍ପ ପାଖକୁ ନ ଯାନ୍ତି
କି ବର୍ଣ୍ଣିବି ସେ ନଗରୀ ଶୋଭା ପଶୁପତି ।
ଆନନ୍ଦରେ ନରନାରୀ ଅଛନ୍ତି ସେ ପୁରେ
ବଳାତ୍କାରେ ନ ପଶନ୍ତି କେହି କାହା ଘରେ ।
ଚୋର ତସ୍କରାଦି ଭୟ ନାହିଁ ହେ ଶଙ୍କର
ସେହି ନଗରୀରେ ଅଛି ଆଶ୍ରମ ମୋହର ।
ଲୋଳନାମେ ରବି ବାସ କରିଛନ୍ତି ତହିଁ
ସର୍ବବିଧ ପାତକକୁ ହରନ୍ତିଟି ସେହି ।
ଅଛଇ ଦଶାଶ୍ୱମେଧ ନାମେ ତହିଁ ଦେଶ
କେଶବ ନାମରେ ଦେବ କରିଛନ୍ତି ବାସ ।
ସେହିଦେବ ମୋର ଅଂଶ ଆହେ ସୁରେଶ୍ୱର
ସେ ସ୍ଥାନକୁ ଯାଇ ବ୍ରହ୍ମହତ୍ୟା ପାପହର ।
କହନ୍ତେ ଗରୁଡ଼ଧ୍ୱଜ ଏମନ୍ତ ପ୍ରକାରେ
ପଡ଼ିଲେ ବୃଷଭଧ୍ୱଜ ତାଙ୍କ ଚରଣରେ ।
ଗରୁଡ଼ପରାୟ କଲେ ସତ୍ୱରଗମନ
ବାରାଣସୀ ପୁଣ୍ୟସ୍ଥାନ କଲେ ଦରଶନ ।
ତହିଁ ଥିବା ତୀର୍ଥଜଳେ ସ୍ନାନକ୍ରିୟା ସାରି
ଲୋକ ଦଶାଶ୍ୱମେଧକୁ ଦରଶନ କରି ।
ତହୁଁ ଯାଇଁ କେଶବଙ୍କୁ କଲେ ଦରଶନ
କରଯୋଡ଼ି ତାଙ୍କ ଆଗେ କଲେ ନିବେଦନ ।
ଆହେ ଦେବ ହୃଷୀକେଶ ତବ ଦରଶନେ
ମୋର ବ୍ରହ୍ମହତ୍ୟା ପାପ ପଳାଇଲା କେଣେ ।
କେବଣ କପାଳ ଗୋଟି ମୋ କରୁ ନ ଯାଏ
ତାହାର କାରଣ କହ ପଚ୍ଛୁଅଛି ପାଏ ।
ବୋଇଲେ ପୁଲସ୍ତ୍ୟ ଋଷି ଏଥୁ ଅନନ୍ତରେ
ଗିରିଜାପତିଙ୍କ କଥା ଶୁଣି ସେ କର୍ଣ୍ଣରେ ।
ବୋଇଲେକ ଭଗବାନ ଯେ ଭୂତଭାବନ
ଆରେ ବତ୍ସ କହୁଅଛି ହୁଅ ସାବଧାନ ।
ଦୃଶ୍ୟ ହୁଏ ଯେଉଁ ହ୍ରଦ ମୋର ସମ୍ମୁଖରେ
ଶୋଭା ପାଉଅଛି ଶ୍ୱେତ - ରକ୍ତ- ଉତ୍ପଳରେ ।
ସେହିଟି ତୀର୍ଥଙ୍କ ରାଜା ପବିତ୍ର ତା ଜଳ
ପୂଜନ୍ତି ତାହାଙ୍କୁ ନିତ୍ୟ ଦେବତା ସକଳ ।
ସେ ହ୍ରଦରେ ସ୍ନାନ କର ବିଧି ଅନୁସାରେ
ହସ୍ତରୁ କପାଳ ଖସି ପଡ଼ିବ ତଳରେ ।
କିନ୍ତୁ ତୁ କପାଳୀ ନାମେ ହୋଇବୁ ବିଖ୍ୟାତ
କପାଳମୋଚନ ନାମ ବହିବ ଏ ତୀର୍ଥ ।

### ପୁଲସ୍ତ୍ୟ ଉବାଚ

ବୋଇଲେ ପୁଲସ୍ତ୍ୟ ଋଷି ହେ ନାରଦ ଶୁଣ
ଦେବଦେବ ମହାଦେବ ଖଟ୍ୱାଙ୍ଗଧାରଣ ।
ସୁରେଶ୍ୱର କେଶବଙ୍କ କଥା ଶିରେ ଧରି
ବେଦବିଧି ଅନୁସାରେ ହ୍ରଦେ ସ୍ନାନ କରି ।
କୂଳେ ଉଭା ହେବାମାତ୍ରେ କରରୁ କପାଳ
ଖସିପଡ଼ି ସ୍ପର୍ଶ କଲା ତକ୍ଷଣେ ଭୂତଳ ।
ତାହାଦେଖି ଆନନ୍ଦିତ ହେଲେ ତ୍ରିଲୋଚନ
ସେ ଦିନୁ ଏ ତୀର୍ଥନାମ କପାଳ ମୋଚନ ।
ଯେ ଶୁଣିବ ଏ ବାମନ ପୁରାଣ ଶ୍ରଦ୍ଧାରେ
ଶୁଣାଇବ ପଢ଼ିବ ବା ଯେ ଭକତିଭରେ ।
ତାର ସର୍ବପାପ ଧ୍ୱଂସ ହୋଇବ ନିଶ୍ଚୟ
ନାରାୟଣଙ୍କର ସେହୁ ହେବ ଅତିପ୍ରିୟ ।
ଏ ହର ଲଳିତ କଥା ଅତି ସୁଲଳିତ
ଗୋପୀନାଥ କହେ ତାଙ୍କ ପାଦେ ରଖି ଚିତ୍ତ ।

=+=

## ବୀରଭଦ୍ର ଯୁଦ୍ଧ

ବୋଇଲେ ପୁଲସ୍ତ୍ୟ ମୁନି ହେ ନାରଦଋଷି
ଏମନ୍ତେ କପାଳୀ ହେଲେ ଦେବ କାଶୀବାସୀ ।
ଏ କାରଣୁ ଦକ୍ଷ ତାଙ୍କୁ ଯଜ୍ଞେ ନ ବରିଲେ
ବ୍ରହ୍ମହତ୍ୟା ପାପୀ ବୋଲି ମନେ ଘୃଣାକଲେ ।
ସେହି ଦକ୍ଷ ଯଜ୍ଞକାଳେ ଗୌତମ ଦୁହିତା
ଯାର ନାମ ଜୟା ଯେହୁ ଅଟେ ପତିବ୍ରତା ।
ସେ ସୁନ୍ଦରୀ ସତୀଙ୍କର ଦର୍ଶନ ଲାଳସେ
ଏକାକିନୀ ହୋଇ ଆସି ମନର ବିରସେ ।
ସୁନ୍ଦର କନ୍ଦରଯୁକ୍ତ ମନ୍ଦର ଭୂଧରେ
ବନ୍ଦିଲେ ସତୀଙ୍କ ପାଦଦ୍ୱୟକୁ ସାଦରେ ।
ପଚାରିଲେ ସତୀ ଦେବୀ ଜୟାଙ୍କୁ ଅନାଇ
ଜୟନ୍ତୀ ଅପରାଜିତା ବିଜୟାତ ନାହିଁ ।
ଏକାକେତ ଆସିଅଛ ଶୁଖିଛି ବଦନ
ଏ ସ୍ଥାନକୁ ନ କଲେ ସେ କିପାଁ ଆଗମନ ।
ଜୟା ଦେବୀ ଶୁଣି ସତୀ ଦେବୀଙ୍କର କଥା
ବୋଇଲେ ସେ ଦକ୍ଷଯଜ୍ଞେ ହୋଇ ନିମନ୍ତ୍ରିତା ।

ମୋ ପିତା ଗୌତମ ଆଉ ଅହଲ୍ୟା ଜନନୀ
ସଙ୍ଗ ହୋଇ ଗଲେ ଅଜାଘରକୁ ସେ ତିନି ।
ମତେ ସଙ୍ଗେ ନ ନେବାରୁ ବିରସ ମୋ ମନ
ତେଣୁ ତୁମ୍ଭ ନିକଟକୁ ଆସିଲି ବହନ ।
ଭାଗ୍ୟବଳୁଁ ପାଇଲି ମୁଁ ତୁମ୍ଭ ଦରଶନ
ଚାଲ ଅଜାଘରକୁ ତ କରିବା ଗମନ ।
ମଉସାଙ୍କୁ ନିମନ୍ତ୍ରଣ କରିଥିବେ ଅଜା
ସମସ୍ତଙ୍କ ଆଗରେତ ପାଇବେ ସେ ପୂଜା ।
ସବୁ ଝିଅ ମଧ୍ୟେ ଜ୍ୟେଷ୍ଠ ଅଟନ୍ତି ଆପଣ
ଆଗ ତୁମ୍ଭଙ୍କୁତ କରିଥିବେ ନିମନ୍ତ୍ରଣ ।
ଗଲେଣିତ ସବୁ ଝିଅ ଜୋଇଁ ତାହାଙ୍କର
ଯେତେ ଋଷି ଋଷିପତ୍ନୀ ଦେବତା ନିକର ।
ଚଉଦଭୁବନେ ଯେତେ ଚରାଚର ପ୍ରାଣୀ
ନିମନ୍ତ୍ରଣ ପାଇ ସେହି ଯଜ୍ଞକୁ ଗଲେଣି ।
ଆଗୋ ମାତ ତୁମ୍ଭରତ ବିଳମ୍ବ କାହିଁକି
ତୁମ୍ଭଙ୍କୁ ବରଣ ଅଜା ଦେଇନାହାନ୍ତି କି ।
ପୁଲସ୍ତ୍ୟ କହିଲେ ଶୁଣ ହେ ନାରଦ ମୁନି
କହିଲେ ସତୀଙ୍କ ଆଗେ ଗୌତମ - ନନ୍ଦିନୀ ।
ଏ ସମସ୍ତ କଥା ଶୁଣି ସତୀ ଦେବୀଙ୍କର
କ୍ରୋଧଭରେ କମ୍ପମାନ ହେଲା କଳେବର ।
ବଜ୍ର ଖସିପଡ଼ିଲା କି ତାହାଙ୍କର ଶିରେ
ଅଚେତନ ହୋଇ ଦେବୀ ପଡ଼ିଲେ ମହୀରେ ।
ପ୍ରାଣ ବାୟୁ ଶରୀରରୁ ଛାଡ଼ି ଚାଲିଗଲା
ଦେଖି ଜୟା ଦେବୀଙ୍କର ବାକ୍ୟ ନ ସ୍ଫୁରିଲା ।
ଚିତ୍ର ପୁତ୍ତଳିକା ପ୍ରାୟ ରହିଲା ସୁନ୍ଦରୀ
ବହିଲା ଲୋତକ ବାରି ଜଳଧାରା ପରି ।
କୋଳେ ଧରି ଉଚ୍ଚସ୍ୱରେ କଲେକ ରୋଦନ
ସେ ରୋଦନ ଶବ୍ଦ ଶୁଣି ଦେବ ତ୍ରିଲୋଚନ ।
କି ହେଲା କି ହେଲା ବୋଲି ଅଇଲେକ ଧାଇଁ
ଜୟା ଦେବୀଙ୍କର ପାଶେ ପହୁଞ୍ଚିଲେ ଯାଇଁ ।
ଦେଖିଲେକ ସତୀ ପଡ଼ିଅଛନ୍ତି ଭୂମିରେ
କୁରାଢ଼ୀରେ ଛିଡ଼ିଥିବା ଲତା ପରକାରେ ।
କିଛିକ୍ଷଣ ନିରୀକ୍ଷଣ କରି ତ୍ରିଲୋଚନ
ପଚାରିଲେ କହ ଜୟେ ଏଥିର କାରଣ ।
କିପାଁ ଛିନ୍ନ ଲତାପ୍ରାୟ ପଡ଼ିଛନ୍ତି ସତୀ
ଈଶ୍ୱରଙ୍କ କଥା ଶୁଣି ଜୟା ଯେ କହନ୍ତି ।
ଯଜ୍ଞ କରୁଅଛନ୍ତି ତ ଏହାଙ୍କର ପିତା
ଅଛନ୍ତିତ ତାହାଙ୍କର ଯେତେକ ଜାମାତା ।
ସମସ୍ତଙ୍କୁ ଆମନ୍ତ୍ରଣ କରଛନ୍ତି ଦକ୍ଷ
ଦେବତା କିନ୍ନର ଆଦି ଯେତେ ଯକ୍ଷ ରକ୍ଷ ।
ଆବର ଯେତେକ ଋଷି ମୁନିଏ ଅଛନ୍ତି
ସମସ୍ତଙ୍କୁ ବରିଛନ୍ତି ଦକ୍ଷ ପ୍ରଜାପତି ।
ଯେତେ ପ୍ରାଣୀ ଅଛନ୍ତି ଏ ଚଉଦ ଭୁବନେ
ଆମନ୍ତ୍ରଣ ପାଇ ସର୍ବେ ଗଲେଣି ସେ ସ୍ଥାନେ ।
ଏ ସମସ୍ତ କଥା ଯହୁଁ ମୋ ମୁଖୁଁ ଶୁଣିଲେ
ଜ୍ଞାନଶୂନ୍ୟ ହୋଇ ଦେଖ ଭୂତଳେ ପଡ଼ିଲେ ।
ଯେତେ ମୁହିଁ ଡାକିଲି ତ ନ ଶୁଣିଲେ ସେହି
ନାକେ ହାତ ଦେଲି ପ୍ରାଣବାୟୁ ବହୁନାହିଁ ।
ତାହାଦେଖି ଉଚ୍ଚସ୍ୱରେ କାନ୍ଦିଲି ହେ ତାତ
ହୃଦମଧ୍ୟେ ବିଚାରନ୍ତି ଏ କି ଅଦଭୁତ ।
ପୁଲସ୍ତ୍ୟ ବୋଇଲେ ରୁଦ୍ର ଶୁଣି ଏ ବଚନ
କ୍ରୋଧଭରେ ତାଙ୍କ ଅଙ୍ଗ ହେଲା କମ୍ପମାନ ।
ସର୍ବାଙ୍ଗରୁ ଅଗ୍ନି ଶିଖା ବାହାରି ପଡ଼ିଲା
ଲୋମମୂଳୁଁ ଗଣଙ୍କର ଉତପତ୍ତି ହେଲା ।
ସିଂହ ମୁଖପ୍ରାୟ ଦିଶେ ତାହାଙ୍କ ବଦନ
ସେମାନଙ୍କ ମଧ୍ୟେ ବୀରଭଦ୍ର ଯେ ପ୍ରଧାନ ।
ସେ ଶିବଗଣଙ୍କୁ ଘେନି କ୍ରୋଧଭରେ ହର
ସେ ମନ୍ଦର ପରବତୁଁ ଗଲେ ଖରତର ।
ହିମାଳୟ ଗିରିଶିଖେ ପରବେଶ ହେଲେ
ଯହିଁ ଦକ୍ଷପ୍ରଜାପତି ଯଜ୍ଞ କରୁଥିଲେ ।
ତାର ନାମ କନଖଳ ସେ ଯଜ୍ଞଭୂମିରେ
ପ୍ରବେଶ ହୋଇଲେ ଶିବ ତ୍ରିଶୂଳ ହସ୍ତରେ ।
ଶୂଳ ଧରି ବୀରଭଦ୍ର ପଶ୍ଚିମ ଜଗିଲେ
ଆଉ ଗଣମାନେ ଯାଇ ଉତ୍ତରେ ରହିଲେ ।
ଗଦା ଧରି କ୍ରୋଧେ ଜୟା ଜଗିଲେ ଦକ୍ଷିଣ
ମଧ୍ୟରେ ବିଜୟ କଲେ ଦେବ ତ୍ରିଲୋଚନ ।
ସେ ବୀରଭଦ୍ରର ମୁଖ କରି ଦରଶନ
ଆଚମ୍ବିତ ହେଲେ ଇନ୍ଦ୍ରଆଦି ଦେବଗଣ ।
ଚିନ୍ତିତ ହୋଇଲେ ଋଷି ଗନ୍ଧର୍ବ ସକଳ
ଧର୍ମଦେବତା ସେ ଯଜ୍ଞେ ଥିଲେ ଦ୍ୱାରପାଳ ।
ହସ୍ତେ ଧନୁଶର ଧରି ନ ଛାଡ଼ିଲେ ଦ୍ୱାର
କ୍ରୋଧେ ସେହି ବୀରଭଦ୍ର ଗଣଙ୍କ ଈଶ୍ୱର ।

ଏକ ହସ୍ତେ ଧରେ ଶୂଳ ଏକ ହସ୍ତେ ଶର
ଏକ ହସ୍ତେ ଧନୁ ଏକ ହସ୍ତେ ଗଦାବର ।
ତାର ଚାରିଗୋଟା ଭୁଜ ଦେଖି ଧର୍ମରାଜ
ନିଜ ଅଙ୍ଗୁ ଜାତ କଲେ ଆଠଗୋଟା ଭୁଜ ।
ଆଠଗୋଟା ଅସ୍ତ୍ର ଶୋହେ ସେ ଅଷ୍ଟଭୁଜରେ
ତାହାଙ୍କର ନାମ ଶୁଣ ଆହେ ମୁନିବରେ ।
ଅତି ଭୟଙ୍କର ଖଡ଼୍ଗ ଚର୍ମ ଗଦା ପାଶ
ପରଶ୍ୱଧ ଧନୁଶର ଆବର ଅଙ୍କୁଶ ।
ଏ ଭୀଷଣ ରୂପ ଦେଖି ଧର୍ମଦେବଙ୍କର
ମହାକ୍ରୋଧେ ବୀରଭଦ୍ର ଧରି ଧନୁଶର ।
ବରଷାକାଳରେ ମେଘ ବରଷେ ଯେପରି
ଅନୁକ୍ଷଣ ବାଣବୃଷ୍ଟି କଲା ସେହିପରି ।
ସେ ତୀକ୍ଷ୍ଣ ନାରାଚ ପଡ଼େ ଧର୍ମଙ୍କ ଉପରେ
ଧର୍ମରାଜ ନିବାରନ୍ତି ତାହା ପ୍ରତିଶରେ ।
ଉଭୟେ ତ ମହାବଳୀ ପ୍ରତାପୀ ଅଟନ୍ତି
ହସ୍ତେ ଧନୁଶର ଧରି ଯୁଦ୍ଧ କରୁଛନ୍ତି ।
ଦୁହିଁଙ୍କର ଦେହରୁ ତ ବହଇ ରୁଧିର
ଦିଶନ୍ତି କିଂଶୁକ ବୃକ୍ଷ ଦ୍ୱୟ ପରକାର ।
ବୀରଭଦ୍ର ଦିବ୍ୟ ଅସ୍ତ୍ର ଯହୁଁ ପ୍ରହାରିଲେ
ଭୟ ପାଇ ଧର୍ମରାଜ ଦ୍ୱାର ଛାଡ଼ିଦେଲେ ।
ବୀରଭଦ୍ର ସେ ଦ୍ୱାରରେ କରନ୍ତେ ଗମନ
ଉଠି ଦେବଗଣ କଲେ ଆୟୁଧ ଧାରଣ ।
ଅଷ୍ଟ ବସୁ ନବଗ୍ରହ ଦ୍ୱାଦଶ ଆଦିତ୍ୟ
ହସ୍ତରେ ଆୟୁଧ ଧରି ଉଠିଲେ ତ୍ୱରିତ ।
ଏକ ଦଶ ରୁଦ୍ର ଆଉ ବିଶ୍ୱେ ଦେବାଗଣ
ସାଧଗଣ ସିଦ୍ଧଗଣ ଗନ୍ଧର୍ବ ଚାରଣ ।
ନାଗଗଣ ଯକ୍ଷଗଣ କିଂପୁରୁଷଗଣ
ଭୂତ ବିହଙ୍ଗମ ଗଣ ଚକ୍ରଧରଗଣ ।
ବୈବସ୍ୱତ ବଂଶୋଦ୍ଭବ ପ୍ରସିଦ୍ଧ ରାଜାଏ
ସୋମବଂଶ ନୃପ ଭୋଜ କୀର୍ତ୍ତି ନରରାୟେ ।
ଏମାନଙ୍କ ସହ ଅନ୍ୟ ନରପତି ଗଣ
ବେଗେ ଉଠି କଲେ ହସ୍ତେ ଆୟୁଧ ଧାରଣ ।
ଦୈତ୍ୟ ଦାନବଙ୍କୁ ଆଦିକରି ଯେତେ ଜନ
ସେ ଯଜ୍ଞରେ ଥିଲେ ସର୍ବେ ଉଠିଲେ ବହନ ।
ବାଟ ଛାଡ଼ି ନ ଦେଲେ ଯେ ସେ ବୀରଭଦ୍ରକୁ
ଗଣଶ୍ରେଷ୍ଠ ବୀରଭଦ୍ର ଦେଖି ସେମାନଙ୍କୁ ।

ବାଛି ବାଛି ତୀକ୍ଷ୍ଣ ବାଣ କଲା ବରଷଣ
ଏକାବେଳେ ସମସ୍ତେ ତା ସଙ୍ଗେ କଲେ ରଣ ।
କ୍ରୋଧଭରେ ବୀରଭଦ୍ର ମାରି ଦିବ୍ୟ ଶର
ଛିନ୍ନଭିନ୍ନ କରିଦେଲା ତାହାଙ୍କ ଶରୀର ।
ଜିଣି ନ ପାରିଲେ ଯହୁଁ ସେ ବୀରଭଦ୍ରକୁ
ବାଟ ଛାଡ଼ିଦେଲେ ଗଲା ସେ ଯଜ୍ଞସ୍ଥାନକୁ ।
ଯହିଁ ଋଷିଗଣ ବସି ଦିଅନ୍ତି ଆହୁତି
ତହିଁ ଯାଇଁ ବୀରଭଦ୍ର ମିଳିଲା ଝଟତି ।
ତାର ସେହି ସିଂହମୁଖ ଦେଖି ଋଷିଗଣ
ମହାଭୟ ପାଇ କଲେ ଆହୁତି ବର୍ଜନ ।
ଅଚ୍ୟୁତଙ୍କ ପାଦପଦ୍ମେ ପଶିଲେ ଶରଣ
ଋଷିଙ୍କ ଆରତ ଦେଖି ଦେବ ନାରାୟଣ ।
ନ କର ନ କର ଭୟେ ଆହେ ଋଷିମାନେ
ଏହା କହି କ୍ରୋଧେ ଗୁଣେଦେଲେ ଶରାସନେ ।
ସେ ଶାରଙ୍ଗ ଧନୁ ଦିଶେ ଇନ୍ଦ୍ରଧନୁ ପରି
ବାରମ୍ବାର ଟଙ୍କାରନ୍ତେ କମ୍ପେ ତିନିପୁରୀ ।
ସର୍ପତୁଲ୍ୟ ଭୟଙ୍କର ନାରାଚ ନିକର
ଗୁଣେ ଯୋଚି ଛାଡ଼ିଦ୍ୟନ୍ତେ ଗଲା ଖରତର ।
ନାସ୍ତିକ ପାଖକୁ ମାଗି ଯାଇଥିବା ଜନ
ହତାଶ ହୋଇଣ ଫେରି ଆସଇ ଯେସନ ।
ସେହିପରି ବୀରଭଦ୍ର ଅଙ୍ଗେ ବାଜି ଶର
ମୁଖ ମୋଡ଼ିହୋଇ ଖସି ପଡ଼ିଲେ ଭୂମିର ।
ସେ ଅବ୍ୟର୍ଥ ଶରମାନ ବ୍ୟର୍ଥ ହେବା ଦେଖି
ମନେ ମନେ ନାରାୟଣ ହେଲେ ମହାଦୁଃଖୀ ।
ପୁନରପି ଦିବ୍ୟ ଅସ୍ତ୍ର କଲେକ ସନ୍ଧାନ
ଅସ୍ତ୍ର ତେଜେ ତିନିପୁର ହେଲା କମ୍ପମାନ ।
ତାହା ଦେଖି ବୀରଭଦ୍ର ହସ୍ତେ ଗଦାଧରି
ବୁଲାଇଣ ରୋଷେ କୁମ୍ଭକାର ଚକ୍ରପରି ।
ନାରାୟଣଙ୍କର ସେହି ଭୟଙ୍କର ବାଣେ
ଗଦାଘାତେ ଭାଙ୍ଗିପଡ଼ିଗଲେ ଏଣେ ତେଣେ ।
ବୀରଭଦ୍ର ଅଙ୍ଗ ସ୍ପର୍ଶ କରି ନ ପାରିଲେ
ବାଣବ୍ୟର୍ଥ ହେବା ଦେଖି ବିଷ୍ଣୁ କ୍ରୋଧକଲେ ।
ଭୀଷଣ ଯେବଣ ଗଦା ନାମ କୌମୋଦକୀ
ରାକ୍ଷସ ରୁଧିରପାନେ ସର୍ବଦା କୌତୁକୀ ।
ବୁଲାଇଣ ଫିଙ୍ଗିଦେଲେ ସେହି ଗଦା ଧରି
ତାହାଦେଖି ବୀରଭଦ୍ର ମନେ କ୍ରୋଧ କରି ।

ଶୂଳ ଅସ୍ତ୍ରେ ସେ ଗଦାକୁ ବ୍ୟର୍ଥ କରିଦେଲା
ନାରାୟଣଙ୍କର ଚିତ୍ତେ କ୍ରୋଧ ଜାତ ହେଲା ।
ବୁଲାଇ ଲାଙ୍ଗଳ ଏକ ପ୍ରହାରିଲେ ରୋଷେ
ବୀରଭଦ୍ର ଗଦାବର ଧରି ଅଟ୍ଟହାସେ ।
ମାରି ସେ ଲାଙ୍ଗଳ ବ୍ୟର୍ଥ କରିଦେଲା ଯହୁଁ
ମୂଷଳ ଅସ୍ତ୍ରକୁ ଧରି ନାରାୟଣ ତହୁଁ ।
ଫିଙ୍ଗି ଦେଲେ କ୍ରୋଧଭରେ କରି ଗରଜନ
ମୂଷଳ ଆକାଶମାର୍ଗେ କରନ୍ତେ ଗମନ ।
ଦେଖି ବୀରଭଦ୍ର ବୀର ଶୂଳେକ ମାଇଲା
ତେଣେ ସେ ମୂଷଳ ଗୋଟା ଭଗ୍ନ ହୋଇଗଲା ।
ତା ଦେଖି ଗରୁଡ଼ଧ୍ୱଜ ହୋଇଲେ ବିସ୍ମୟ
କ୍ରୋଧଭରେ କମ୍ପିଗଲା ତାଙ୍କ ଓଷ୍ଠଦ୍ୱୟ ।
ସୁଦର୍ଶନ ଚକ୍ରକୁ ଯେ ଧଇଲେ ହସ୍ତରେ
ରଣ ଛାଡ଼ି ପଳାଇଲେ ଦେବଗଣ ଡରେ ।
ହୋଇଲା ଉଲ୍କାପାତ ଶୂନ୍ୟ ଅକସ୍ମାତେ
କମ୍ପିଗଲା ଭୂମଣ୍ଡଳ ଆକାଶ ସହିତେ ।
ବହିଲା ପ୍ରଚଣ୍ଡ ବାତ ଗଗନ ମଣ୍ଡଳେ
ଦିଗମାନେ ଆଚ୍ଛାଦିଲେ ପ୍ରଚଣ୍ଡ ଅନଳେ ।
ମହାବଳବନ୍ତ ସେହି ବୀରଭଦ୍ର ବୀର
ଶତସୂର୍ଯ୍ୟ ସମ ସେହି ଚକ୍ର ଅସ୍ତ୍ରବର ।
ନାରାୟଣ ପେଷନ୍ତେ ଯେ ଆସେ ଖରତରେ
ଶୂଳ ପ୍ରହାରିଲା ତାକୁ ଭେଟିଲା ବାଟରେ ।
ଯେଉଁପରି ମୀନରୂପେ ପ୍ରଭୁ ନାରାୟଣ
କରିଥିଲେ ମଧୁଦୈତ୍ୟ ମସ୍ତକ ହରଣ ।
ସେହିପରି ଶୂଳ ଅସ୍ତ୍ର ଚକ୍ରକୁ ଛେଦିଲା
ତା ଦେଖି ଦେବଙ୍କ ଚିତ୍ତେ ଭୟ ଉପୁଜିଲା ।
ଚାରୁସ୍ମିତ ପଦ୍ମନେତ୍ର ସେ ମୁର ଅଇରି
ନୟନ ଦିଶିଲା ରକ୍ତ କଇଁଫୁଲ ପରି ।
କ୍ରୋଧଭରେ ତାଙ୍କ ଭ୍ରୁରୁ ଅଧର କମ୍ପିଲା
ବେଗେ ଧାଇଁଯାଇ ବୀରଭଦ୍ରକୁ ଧଇଲା ।
ଭୂତଳେ ପକାଇ ମାଡ଼ି ବସିଲେ ତାହାକୁ
ତୀକ୍ଷ୍ଣ ନଖ ମାରି ତାର ବିଦାରିଲେ ବୁକୁ ।
ଶ୍ରୀହରିଙ୍କ ଭୁଜ ଉରୁ ଘାତରେ ତାହାର
ମୁଖରୁ ଯେ ନାସିକାରୁ ବହିଲା ରୁଧିର ।
ତାର ସଙ୍ଗେ ସଙ୍ଗେ ଏକ ଚକ୍ର ବାହାରିଲା
ସେ ଚକ୍ରର ତେଜ ଦଶ ଦିଶେ ବିକାଶିଲା ।
ସେ ଚକ୍ରକୁ ଦେଖି ସେହି କୈଟଭନାଶନ
ବୀରଭଦ୍ରକୁ ଯେ ଛାଡ଼ି ଉଠିଲେ ବହନ ।
ହସ୍ତରେ ଧରିଲେ ସେହି ଚକ୍ରକୁ ଝଟତି
ପଳାଇଲେ ବୀରଭଦ୍ର ଯହିଁ ପଶୁପତି ।
ଯୁଦ୍ଧ କଥା ସବୁ ତାଙ୍କ ଆଗେ ଗଲା କହି ।
ବୀରଭଦ୍ର ବଦନକୁ ଶିବ ଦେଲେ ଚାହିଁ
ବହଇ ରୁଧିରଧାର ମୁଖରୁ ତାହାର
ନିଃଶ୍ୱାସ ପବନ ବହୁଅଛି ଖରତର ।
ଦେଖି ଅତି କ୍ରୋଧଭରେ ଶଙ୍କର ଧାଇଁଲେ
ବୀରଭଦ୍ରକୁ ଯେ ପୁଣି ସଙ୍ଗତରେ ନେଲେ ।
ଭଦ୍ରକାଳୀ ଦେବୀଙ୍କି ସେ ସଙ୍ଗେ ନେଲେ ପୁଣି
ତ୍ରିଶୂଳ ହସ୍ତରେ ଧରିଛନ୍ତି ଶୂଳପାଣି ।
ଦକ୍ଷ ଯଜ୍ଞ କରୁଥିବା ସ୍ଥାନେ ପହୁଞ୍ଚିଲେ
ତାଙ୍କୁ ଦେଖି ସୁରଗଣ ମହାଭୟ କଲେ ।
ମହାଭୟଙ୍କର ରୂପୀ ସେ ଶିବଙ୍କ ପାଦେ
ଦ୍ୱିଜ ଗୋପୀନାଥ ମନ ରହୁ ଅପ୍ରମାଦେ ।

=+=

## ଦକ୍ଷ ଯଜ୍ଞ ଭଙ୍ଗ

କହିଲେ ପୁଲସ୍ତ୍ୟ ମୁନି ଶୁଣ ତପୋଧନ
ରୁଦ୍ରଙ୍କର କ୍ରୋଧ ଦେଖି ଦେବ ଭଗବାନ ।
ଅଙ୍ଗ ପ୍ରତ୍ୟଙ୍ଗକୁ କୁଜା କରିଦେଲେ ଡରେ
ଲୁଚି ରହିଲେ ସେ ଆମ୍ର ବୃକ୍ଷର କ୍ରୋଟରେ ।
ଏଥୁ ଅନନ୍ତରେ ଶୁଣ ଆହେ ମୁନିବର ।
ଶିବଙ୍କର ରୂପ ଦିଶେ ମହାଭୟଙ୍କର ।
ଚନ୍ଦ୍ର ସୂର୍ଯ୍ୟ ଅଗ୍ନି ପ୍ରାୟ ଦିଶେ ତିନିନେତ୍ର
ପିଙ୍ଗଳ ବରନ ଜଟା ଭୟଙ୍କର ଗାତ୍ର ।
ତ୍ରିଶୂଳ ପିନାକ ଧନୁ ଡମ୍ବରୁ ଆବର
ଖଟ୍ୱାଙ୍ଗ ପ୍ରଭୃତି ଅସ୍ତ୍ର ଧରିଛନ୍ତି କର ।
ତାଣ୍ଡବ ନୃତ୍ୟରେ ମସ୍ତ ହୋଇଛନ୍ତି ସେହି
ବୀରଭଦ୍ର ଭଦ୍ରକାଳୀ ପାଶେ ଛନ୍ତି ରହି ।
ଭଦ୍ରକାଳୀ ହସ୍ତେ ଖଣ୍ଡା ଖଡ଼ଗ ଖର୍ପର
ଲହ ଲହ ଜିହ୍ୱା ମୁଖ ଅତି ଭୟଙ୍କର ।
ତାହାଙ୍କର ଅଟ୍ଟହାସେ କମ୍ପେ ତ୍ରିଭୁବନ
ଅଷ୍ଟ ବସୁ ତାଙ୍କ ରୂପ କରି ଦରଶନ ।
ନଦୀରୂପ ଧରି ତହୁଁ ପଳାଇଲେ ଡରେ
ସରସ୍ୱତୀ ନାମେ ଖ୍ୟାତ ହେଲା ସେ ସଂସାରେ ।

ଅଗ୍ନି ବାୟୁ ସୂର୍ଯ୍ୟ ସାଧ୍ୟ ଅଶ୍ୱିନୀକୁମାର
ଆବର ଯେ ବିଶ୍ୱେଦେବା ଭୟେ ଥରହର ।
ପୁରୋଡ଼ାଶ ମୁଖେ ଭକ୍ଷି ଲୁଚିଲେ କାତରେ
ଏକାଦଶ ରୁଦ୍ରଥିଲେ ପଳାଇଲେ ଡରେ ।
ଚନ୍ଦ୍ର ଚନ୍ଦ୍ରଶେଖରଙ୍କ ନୟନକୁ ଚାହିଁ
ଭୟ ପାଇ ଆକାଶକୁ ଗଲେ ଯେ ପଳାଇ ।
କଶ୍ୟପ ଅଙ୍ଗିରା ଆଦି ଯେତେ ଋଷିଗଣ
ମହାଭୟେ କଲେ ଯଜ୍ଞ ସ୍ଥାନରେ ଭ୍ରମଣ ।
ଯାଇ ନ ପାରି ସେ କରଯୋଡ଼ି ଉଚ୍ଚସ୍ୱରେ
ଶତରୁଦ୍ର ପାଠ କଲେ ଶିବଙ୍କ ଆଗରେ ।
ଦେବଙ୍କର ଏ ଦୁର୍ଦ୍ଦଶା ଦେଖି ଦକ୍ଷନାରୀ
କାନ୍ଦିଲେକ କପାଳରେ କର ଦ୍ୱୟ ମାରି ।
ଏଥୁ ଅନ୍ତେ କ୍ରୋଧଭରେ ମହାତ୍ମା ଶଙ୍କର
ଚାପୋଡ଼ ପ୍ରହାରି କଲେ ଦେବତା ସଂହାର ।
ରାଗେ ବା କାହାକୁ କଲେ ପାଦେ ମରଦନ
ଶୂଳ ମାରି କଲେ କାର ମସ୍ତକ ଛେଦନ ।
କେହି ତାଙ୍କୁ ଦେଖି ଭୟେ ପ୍ରାଣତ୍ୟାଗ କଲେ
କେହି ତାଙ୍କ ନୃତ୍ୟ ଦେଖୁ ଦେଖୁ ମରିଗଲେ ।
ଏହିପରି ସୁରାସୁରଗଣକୁ ସଂହାର
କରନ୍ତେ ତା ଦେଖି ଦେବଦେବ ଦିବାକର ।
ସହି ନ ପାରି ଯେ ରାଗେ ହସ୍ତ ବଢ଼ାଇଲେ
ତାହା ଦେଖି ଶିବ ତାଙ୍କ ହସ୍ତକୁ ଧଇଲେ ।
ସୂର୍ଯ୍ୟଙ୍କର ଅଙ୍ଗୁଳିରୁ ବହିଲା ରକତ
ଏଥୁ ଅନନ୍ତରେ ଦେବଦେବ ଭୂତନାଥ ।
ସୂର୍ଯ୍ୟଙ୍କ ବାହୁକୁ ଧରି ବୁଲାଇଲେ ରୋଷେ
ଭ୍ରମିଲେ କୁରାଳଚକ୍ର ପ୍ରାୟ ଦଶଦିଶେ ।
ଛିଡ଼ିଗଲା ସୂର୍ଯ୍ୟଙ୍କର ସ୍ନାୟୁନାଡ଼ୀମାନ
ନବଦ୍ୱାର ବାଟେ କଲେ ରୁଧିର ବମନ ।
ସୂର୍ଯ୍ୟଙ୍କର ଏ ଦୁର୍ଦ୍ଦଶା ଦେଖି ମହେଶ୍ୱର
ଦୟା କରି ଛାଡ଼ିଦେଇ ଯାନ୍ତେ ଖଣ୍ଡେ ଦୂର ।
ହାସ୍ୟ କରି ଦିବାକର ବୋଇଲେ ହେ ଶିବ
ଆସ ଆସ ତୁମ୍ଭ ମନୁ ଛାଡ଼ିଦିଅ ଗର୍ବ ।
ତାହା ଶୁଣି କ୍ରୋଧେ ଫେରି ଅଇଲେ ଶଙ୍କର
ମୁଖେ ମାଇଲେ ଦନ୍ତେ ବାଜିଲା ତାଙ୍କର ।
ଦାନ୍ତ ଝଡ଼ିଗଲା ସୂର୍ଯ୍ୟ ହୋଇଲେ ପାକୁଆ
ସିଂହର ଆଘାତେ ଯେହ୍ନେ ହୁଏ ଗଜଛୁଆ ।

ମୁଣ୍ଡ ଘୂରିଗଲା ପଡ଼ିଗଲେ ସେ ଭୂତଳେ
ବଜ୍ର ପ୍ରହାରରେ ଯେହ୍ନେ ପଡ଼ନ୍ତି ଶଇଳେ ।
ମୁଖରୁ ବହିଲା ରକ୍ତ ଚେତା ହେଲା ହତ
ତାହା ଦେଖି କ୍ରୋଧେ ଭଗ ନାମରେ ଆଦିତ୍ୟ ।
ବାରମ୍ବାର ଅନାଇଲେ ନୟନ ତରାଟି
ଶିବଙ୍କ ଉପରେ ହେଲା ତେଜୋରାଶି ବୃଷ୍ଟି ।
ରୋଷେ ତ୍ରିପୁରାରି ତାଙ୍କୁ ଚାପୋଡ଼େ ମାଇଲେ
ଆବର ଚକ୍ଷୁକୁ ତାଡ଼ି ତଳେ ପିଙ୍ଗି ଦେଲେ ।
ତା ଦେଖି ଆଦିତ୍ୟଗଣ ମହାଭୟ ପାଇ
ପଳାଇଲେ ଶିବ ଆଗେ ନ ରହିଲେ କେହି ।
ଇନ୍ଦ୍ର ଅଗ୍ନି ବାୟୁ ଆଦି ଯେତେ ଦେବଗଣ
କେହି ନ ରହିଲେ ସର୍ବେ କଲେ ପଳାୟନ ।
ପ୍ରହ୍ଲାଦ ପ୍ରଭୃତି ଦିତୀପୁତ୍ର ଗଣ ଭୟେ
କର ଯୋଡ଼ି ପଡ଼ିଗଲେ ଶଙ୍କରଙ୍କ ପାଏ ।
ଏଥୁଅନ୍ତେ ମହାକ୍ରୋଧେ ଦେବ ତ୍ରିଲୋଚନ
ବିଚାରିଲେ ଦେବତାଙ୍କୁ କରିବେ ଦହନ ।
ଏମନ୍ତ ବିଚାରି କଲେ ନୟନ ବିସ୍ତାର
କେହି ପଳାଇଲେ କେହି ଗଲେ ଯମଘର ।
କେହି କେହି ତାଙ୍କ ପାଦେ ଶରଣ ପଶିଲେ
ରୂପ ବଦଳାଇ ଋଷିଗଣ ପଳାଇଲେ ।
କେହି ନାଗରୂପ କେହି ବ୍ୟାଘ୍ର ରୂପ ଧରି
ପକ୍ଷୀରୂପ ଧରି କେହି କେହି ତପଚାରୀ ।
ପଳାଇଲେ ସ୍ରୁବ ସ୍ରୁଚ ଭୂମିରେ ପକାଇ
କୁଶାସନ ମୃଗଛାଲ ପଡ଼ିଅଛି ଯହିଁ ।
ଯଜ୍ଞକୁଣ୍ଡେ ଥିବା ଅଗ୍ନି ଡରେ ଲିଭିଗଲେ
ମୃଗ ରୂପ ଧରି ଶୂନ୍ୟମାର୍ଗେ ପଳାଇଲେ ।
କାଳରୂପୀ ମହେଶ୍ୱର ଅତି କ୍ରୋଧଭରେ
ଭୀଷଣ ପିନାକ ଧନୁ ଧଇଲେ ହସ୍ତରେ ।
ପାଶୁପତ ବାଣ ଯୋଚି ଅଗ୍ନିକି ଖୋଜିଲେ
ଖୋଜି ଖୋଜି ଅନଳକୁ ଯହୁଁ ନ ପାଇଲେ ।
ଆପଣା ଶରୀର ଦୁଇଭାଗ କରି ଦେଇ
ଏକ ଭାଗ ଯଜ୍ଞ କୁଣ୍ଡେ ରଖିଲେକ ନେଇ ।
ଆଉ ଏକଭାଗ ଯାଇ ଗଗନେ ରହିଲା
ଏଥୁଅନ୍ତେ ମୁନିବର ଶୁଣ ଯାହା ହେଲା ।
ଯଜ୍ଞରେ ରହିଲା ଯେଉଁ ଅଂଶ ତାହାଙ୍କର
ସେଦିନୁ ସେ ଅଂଶ ନାମ ହେଲା ଜଟାଧର ।

ଆବର ଯେବଣ ଅଂଶ ଗଗନେ ରହିଲା
ସେ ଅଂଶଟି କାଳରୂପୀ ନାମ ବୋଲାଇଲା ।
ଏହା ଶୁଣି ପଚାରିଲେ ସେ ନାରଦ ମୁନି
କୃପା କରି କହ ମୋତେ ଆହେ ମହାଜ୍ଞାନି ।
ଶିବଙ୍କର କାଳରୂପୀ ଅଂଶର ଲକ୍ଷଣ
ବିସ୍ତାର କରିଣ କହ ତାର ରୂପ ଗୁଣ ।
ବୋଇଲେ ପୁଲସ୍ତ୍ୟଋଷି ଶୁଣ ହେ ନାରଦ
କାଳ ଆଉ ଶିବଙ୍କର ନାହିଁ କିଛି ଭେଦ ।
ଯହିଁ ପାଇଁ କାଳମୂର୍ତ୍ତି ଧଇଲେ ଶଙ୍କର
ତାହା କହୁଅଛି ଶୁଣ ଆହେ ମୁନିବର ।
ଲୋକହିତ କାମନାରେ ଦେବ ତ୍ରିଲୋଚନ
ମହାକାଳ ମୂର୍ତ୍ତି ଧରି ବ୍ୟାପିଲେ ଗଗନ ।
ଅଶ୍ୱିନୀ ଭରଣି ଆଉ କୃତ୍ତିକାର ଅଂଶେ
ଘେନିଣ ମଙ୍ଗଳ ଗ୍ରହ ଯେଉଁ ସ୍ଥାନେ ବସେ ।
ସେହି ମେଷ ରାଷି ଜାଣ କାଳରୂପୀ ଶିର
ବୃଷରାଶି ଅଟଇ ଯେ ବଦନ ତାହାର ।
ରୋହିଣୀର ଚାରିପାଦ କୃତ୍ତିକାର ତିନି
ମୃଗଶିରା ନକ୍ଷତ୍ରର ଦୁଇପାଦ ଘେନି ।
ଶୁକ୍ରାଚାର୍ଯ୍ୟ ସେହି ବୃଷରାଶିରେ ରହନ୍ତି
ସେହି ବୃଷରାଶି ତାର ମୁଖ ଆହେ ଯତି ।
ଶେଷ ଦୁଇ ପାଦ ମୃଗରାଶି ନକ୍ଷତ୍ରର
ଆର୍ଦ୍ରା ନକ୍ଷତ୍ରର ଚାରିପାଦ ଯେ ଆବର ।
ପୁନର୍ବସୁ ନକ୍ଷତ୍ରର ଘେନି ତିନିପାଦ
ମିଥୁନ ରାଶିରେ ବାସ କରନ୍ତି ଯେ ବୁଧ ।
ସେ ମିଥୁନ ରାଶି ଅଟେ କାଳରୂପୀ ହାତ
ଆହେ ମୁନି ଏ ରୂପର ମହିମା ଅଦ୍ଭୁତ ।
ଶେଷ ଏକ ପାଦ ପୁନର୍ବସୁ ନକ୍ଷତ୍ରର
ପୁଷ୍ୟା ଅଶ୍ଳେଷାର ସବୁ ପାଦ ଯେ ଆବର ।
ଏମନ୍ତେ ଏ ନବ ପାଦ ନକ୍ଷତ୍ରରୁ ଘେନି
କର୍କଟ ରାଶିରେ ଚନ୍ଦ୍ର ବସଇ ହେ ମୁନି ।
ସେ କର୍କଟ ରାଶି ଗୋଟି ଜାଣ ହେ ନିଶ୍ଚୟ
କାଳରୂପୀ ଶିବଙ୍କର ଅଟେ ପାର୍ଶ୍ୱଦ୍ୱୟ ।
ମଘା ପୂର୍ବାଫାଲଗୁନୀ ସମସ୍ତ ଚରଣ
ଉତ୍ତର ଫାଲ୍‌ଗୁନୀ ଆଦ୍ୟ ଚରଣ ଯେ ଜାଣ ।
ସୂର୍ଯ୍ୟଗ୍ରହ ଏହି ନବ ଋଷି ପାଦ ଘେନି
ଯେଉଁ ସିଂହରାଶିରେଟି ବସଇ ହେ ମୁନି ।
ସେ ସିଂହରାଶି ସେ କାଳରୂପିର ହୃଦୟ
ଉତ୍ତରଫାଲ୍‌ଗୁନୀ ନକ୍ଷତ୍ରର ପାଦଦ୍ୱୟ ।
ହସ୍ତା ଚାରିପାଦ ଚିତ୍ରା ଆଦ୍ୟ ଦୁଇ ପାଦ
ଏହି ନବ ଋକ୍ଷ ପାଦ ସହିତରେ ବୁଧ ।
ପ୍ରତିଦିନ ବାସ କରେ ଯେ କନ୍ୟା ରାଶିରେ
କାଳରୂପୀ ଜଠର ସେ ଜାଣ ମୁନିବରେ ।
ଚିତ୍ରା ନକ୍ଷତ୍ରର ଶେଷ ଦୁଇ ପାଦ ଜାଣ
ସ୍ୱାତି ନକ୍ଷତ୍ରର ପୁଣି ସମସ୍ତ ଚରଣ ।
ବିଶାଖା ନକ୍ଷତ୍ର ତିନି ପାଦ ଯେ ଆବର
ଏମନ୍ତେ ଏ ନବ ପାଦ୍ ହେଲା ମୁନିବର ।
ଏହି ନବ ଋକ୍ଷ ପାଦ ସହ ଶୁକ୍ର ଯହିଁ
ରହେ ସେହି ତୁଳାରାଶି ଶିବଙ୍କର ଲାହି ।
ବିଶାଖାର ପାଦେ ଅନୁରାଧାର ସକଳ
ଜ୍ୟେଷ୍ଠାର ସମସ୍ତ ପାଦ ଘେନିଣ ମଙ୍ଗଳ ।
ରହେ ସେ ବୃଶ୍ଚିକ ରାଶି ଶିବଙ୍କର ମେଢ଼୍
ଆହେ ମୁନିବର ପୁଣି ମୂଳା ପୂର୍ବାଷାଢ଼ ।
ଉତ୍ତରାଷାଢ଼ାର ଏକ ପାଦଟି ଆବର
ଘେନି ବୃହସ୍ପତି ଯହିଁ କରିଅଛି ଘର ।
ସେହି ଧନୁରାଶି ତାଙ୍କ ଉରୁଦ୍ୱୟ ଜାଣ
ଉତ୍ତରାଷାଢ଼ାର ପୁଣି ତୃତୀୟ ଚରଣ ।
ଶ୍ରବଣାର ସବୁ ଧନିଷ୍ଠାର ଅଧେ ଘେନି
ମକର ରାଶିରେ ବାସ କରଇ ଯେ ଶନି ।
ସେ ମକରରାଶି ଜାନୁଦ୍ୱୟ ଶିବଙ୍କର
ଏଥୁ ଅନନ୍ତରେ ଶୁଣ ଆହେ ମୁନିବର ।
ଧନିଷ୍ଠାର ଶେଷ ଦୁଇ ପାଦ ଯେ ଆବର
ସମୁଦାୟ ପାଦ ଶତଭିକ୍ଷା ନକ୍ଷତ୍ରର ।
ପୂର୍ବଭାଦ୍ରପଦରୁ ସେ ତିନିପାଦ ଘେନି
ଯେଉଁ କୁମ୍ଭରାଶିରେଟି ବାସ କରେ ଶନି ।
ସେ ରାଶିଟି ଶିବଙ୍କର ଦୁଇ ଜଙ୍ଘ ଜାଣ
ପୁଣି ପୂର୍ବ ଭାଦ୍ରପଦ ଶେଷ ଯେ ଚରଣ ।
ଆବର ଉତ୍ତରଭାଦ୍ରପଦ ନକ୍ଷତ୍ରର
ରେବତୀର ସବୁ ପାଦ ଆହେ ମୁନିବର ।
ଏହି ନବ ଋକ୍ଷ ପାଦେ ଘେନି ବୃହସ୍ପତି
ଯେଉଁ ମୀନରାଶିଟିରେ କରଇ ବସତି ।
କାଳରୂପୀ ଶିବଙ୍କର ସେ ଦୁଇ ଚରଣ
ଏଥୁ ଅନନ୍ତରେ ଆହେ ମୁନିବର ଶୁଣ ।

କ୍ରୋଧଭରେ କାଳରୂପ ଧରି ସେ ଶଙ୍କର
ଯଜ୍ଞ ଭଗ୍ନକଲେ ମାରି ନାରାଚ ନିକର ।

**ନାରଦ ଉବାଚ**

ପୁନରପି ପଚାରିଲେ ସେ ନାରଦ ମୁନି
ଅନୁଗ୍ରହ କରି କହ ଆହେ ବ୍ରହ୍ମଜ୍ଞାନି ।
ଶିବଙ୍କର ରୂପ ଗୁଣ ମୋ ଆଗେ କହିଲ
ତା ସଙ୍ଗେ ଦ୍ୱାଦଶରାଶି କଥା କହିଗଲ ।
ସେହି ରାଶିମାନଙ୍କର ସ୍ୱରୂପ ଲକ୍ଷଣ
କହନ୍ତୁ ମୋ ଆଗେ ସବୁ ବିସ୍ତାର କରିଣ ।
କହିଲେ ପୁଲସ୍ତ୍ୟଋଷି ଶୁଣ ତପୋଧନ
କରୁଅଛି ରାଶିଙ୍କର ସ୍ୱରୂପ ବର୍ଣ୍ଣନ ।
ଯେ ରୂପେ ଯେ ଯେଉଁ ସ୍ଥାନେ କରଇ ବିହାର
ମନ ଦେଇ ଶୁଣ ପୁଣି ତାଙ୍କ ଘର ଦ୍ୱାର ।
ତରୁଲତା ଘାସେ ଶୋଭା ପାଉଛି ଯେ ମହୀ
ଧନ ଧାନ୍ୟ ରତ୍ନଙ୍କର ଖଣି ଅଛି ଯହିଁ ।
ସେହି ସ୍ଥାନେ ରାଶିମାନେ କରନ୍ତି ବିହାର
ମେଷ ତୁଲ୍ୟ ଜାଣ ମେଷ ରାଶିର ଆକାର ।
ନିରନ୍ତର ଛେଳି ମେଣ୍ଢା ପଲେ ରହିଥାଏ
ନଦୀ ସରୋବରତୀରେ ଚରିବୁଲି ଖାଏ ।
ବୃଷରାଶି ଅଟଇ ଯେ ବୃଷଭ ଆକାର
ବାସସ୍ଥାନ ଅଟେ ଜାଣ ଗୋ - ଗୋଷ୍ଠତାହାର ।
ଗୋରୁପଲେ ଥାଏ ବିଲବାଡ଼ି ପଡ଼ିଆରେ
ପ୍ରତିଦିନ ଚରି ବୁଲି ଖାଏ ଆନନ୍ଦରେ ।
ମିଥୁନ ଯେ ସ୍ତ୍ରୀ ପୁରୁଷ ଯୁଗଳ ମୂରତି
କୋମଳ ଆସନ ଶେଯେ ତାର ଅବସ୍ଥିତି ।
ହସ୍ତେ ବୀଣା ବାଦ୍ୟ ଧରିଥାଏ ନିରନ୍ତର
ନୃତ୍ୟ ଗୀତ ଶିଳ୍ପ ବିଦ୍ୟା ଜାଣଇ ଆବର ।
ଦିଓଟି ଶରୀର ପୁଣି ସେହି କ୍ରୀଡ଼ାରତ
ବନିତାମାନଙ୍କ ସଙ୍ଗେ ବିହରଇ ନିତ୍ୟ ।
ବାରଗୋଟି ରାଶି ମଧ୍ୟେ ଜାଣ ହେ ନାରଦ
ଏ ମିଥୁନ ରାଶି ଗୋଟି ଅଟେ ଶୁଭପ୍ରଦ ।
କର୍କଟ ରାଶିର ଜାଣ କଙ୍କଡ଼ା ଆକୃତି
ସର୍ବଦା ତାହାର ଜଳମଧ୍ୟେ ଅବସ୍ଥିତି ।
ପୋଖରୀ କିଆରୀ ବାମ୍ଫି ମଧ୍ୟେ ବିହରଇ
ସିଂହରାଶି କଥା ଶୁଣ ହେ ମୁନିଗୋସାଇଁ ।
ସିଂହର ଆକାର ସେହି ଗିରିମଧ୍ୟେ ରହେ
ଅରଣ୍ୟ ଦୁର୍ଗମ ଗୁହା ଗହ୍ୱର ସମୂହେ ।
ଚରଇ ବୁଲଇ ପୁଣି ବିହାର କରଇ
କେବେକେବେ ବ୍ୟାଧ ପଲ୍ଲୀ କନ୍ଦରେ ଖେଳଇ ।
କନ୍ୟାରାଶି ଗୋଟି ଜାଣ କନ୍ୟାର ଆକୃତି
ସୁକୋମଳ ସ୍ଥାନରେ ଯେ ତାହାର ବସତି ।
ପ୍ରଦୀପ ଆବର ବ୍ରୀହି ଧରିଥାଏ ହସ୍ତେ
ନିରନ୍ତର କ୍ରୀଡ଼ା କରେ ନାରୀଙ୍କ ସଙ୍ଗତେ ।
ହେ ନାରଦ ତୁଳାରାଶି ପୁରୁଷ ଆକାର
ତାର ହସ୍ତେ ତୁଳାଦଣ୍ଡ ଥାଏ ନିରନ୍ତର ।
ହାଟ ବଜାରରେ ସଦା ବିହାର କରଇ
ରାଜଦଣ୍ଡ ଆଉ ଗୃହ ସମୂହେ ରହଇ ।
ବୃଶ୍ଚିକ ରାଶିଟି ଜାଣ ବିଛାର ଆକାର
ଗୋମୟ ପାଷାଣ କୀଟେ ବସତି ତାହାର ।
ଧନୁରାଶି ଜଙ୍ଘ ଅଟେ ଅଶ୍ୱର ଆକୃତି
ହସ୍ତ ଶିର ନରାକୃତି ଆହେ ମହାଯତି ।
ସର୍ବଦା ସେ ଧରିଥାଇ ହସ୍ତେ ଶରାସନ
ଗଜ ଆଉ ରଥାଦିରେ କରେ ଅବସ୍ଥାନ ।
ଅଶ୍ୱ ବିଦ୍ୟା ଅସ୍ତ୍ର ବିଦ୍ୟା ଜାଣେ ଭଲକରି
ବଳ ଆଉ ବିକ୍ରମ ତା ଦେହେ ଥାଇ ପୂରି ।
ମକର ରାଶିର ମୁଖ ମୃଗର ଆକାର
ବୃଷ ତୁଲ୍ୟ ସ୍କନ୍ଧ ନେତ୍ର ହସ୍ତୀ ପରକାର ।
ସାଗର ମଧ୍ୟରେ ସେହି କରଇ ବସତି
ବିହାର କରଇ ନଦୀମାନଙ୍କରେ ନିତି ।
କୁମ୍ଭ ସେ ପୁରୁଷାକୃତି କୁମ୍ଭ ତା କାନ୍ଧରେ
ଜଳେ ତିନ୍ତିଥାଏ ତାର ଦେହ ନିରନ୍ତରେ ।
ପଶାଖେଳ ଯହିଁ ହୁଏ ତହିଁ ବିହରଇ
ସବୁବେଳେ ସେହି ଶୁଣ୍ଡି ଗୃହରେ ରହଇ ।
ମୀନରାଶି ଦୁଇଗୋଟି ମୀନର ଆକାର
ତୀର୍ଥ ସ୍ଥାନମାନଙ୍କରେ କରଇ ବିହାର ।
ଦେବତା ମନ୍ଦିର ଆଉ ବ୍ରାହ୍ମଣଙ୍କ ଗୃହେ
ପୁଣ୍ୟ କ୍ଷେତ୍ରମାନଙ୍କରେ ସବୁବେଳେ ରହେ ।
ଆହେ ମୁନି କହିଲଇଁ ରାଶିର ଲକ୍ଷଣ
ନ କହିବ କାହା ଆଗେ ଏ କଥା ଆପଣ ।
ଏହି ଅଛି ପୁରାତନ ରଖିବ ଗୋପନେ
ଆବର ଯେପରି ସଦାଶିବ କୋପମନେ ।

ଦକ୍ଷ ଯଜ୍ଞ ଭଗ୍ନ କଲେ କହିଲଇଁ ତାହା
ଶିବ ତୁଲ୍ୟ ଏ ଚରିତ୍ର ଅଟଇ ପାପହା ।
ଅତ୍ୟନ୍ତ ପବିତ୍ର ଏହି ବାମନ ପୁରାଣ
ଗୋପୀନାଥ କହେ ଜନେ ଭକତିରେ ଶୁଣ ।

=+=

## କାମଦାହ

କହିଲେ ପୁଲସ୍ତ୍ୟ ଋଷି ହେ ନାରଦ ଶୁଣ
ଦିବ୍ୟ ବପୁ ଧର୍ମାତ୍ମା ବହ୍ମଚ ବ୍ରାହ୍ମଣ ।
ଆପଣାର ଧର୍ମପନ୍ନୀ ଅହିଂସା ଗର୍ଭରେ
ଯେଉଁ ପୁତ୍ର ଜାତ କଲେ ମୁଁ ତୁମ୍ଭ ଆଗରେ ।
କହୁଛି ତାହାଙ୍କ ନାମ ବିସ୍ତାର କରିଣ
ହରି ଯେ ଆବର କୃଷ୍ଣ ନର ନାରାୟଣ ।
ତାଙ୍କ ମଧ୍ୟେ ହରି କୃଷ୍ଣ ଏ ଦୁଇ କୁମର
ଯୋଗ ସାଧନରେ ମନ ଦେଲେ ମୁନିବର ।
ନର ନାରାୟଣ ହେଲେ ତପସ୍ୟାରେ ରତ
ଲୋକମାନଙ୍କର ହିତ କାମନା ନିମିତ୍ତ ।
ଅତ୍ୟନ୍ତ ସୁନ୍ଦର ସେହି ଦୁହିଙ୍କର ମୂର୍ତ୍ତି
ଋଷିଶ୍ରେଷ୍ଠ ପୁଣି ଅତି ପ୍ରାଚୀନ ଅଟନ୍ତି ।
ହିମାଳୟେ ଯହିଁ ଅଛି ବଦରିକାଶ୍ରମ
ଗଙ୍ଗାନଦୀତୀରେ ଅତି ପବିତ୍ର ଆଶ୍ରମ ।
ପରମ ବ୍ରହ୍ମଙ୍କୁ ଧ୍ୟାନ କଲେ ସେହି ସ୍ଥାନେ
ଜଳ ଯେ ପବନ ଭକ୍ଷି ବସି ଦୃଢ଼ାସନେ ।
ଅଲୌକିକ ତପ କଲେ ଆହେ ତପୋଧନ
ଦେଖି ଚରାଚର ପ୍ରାଣୀ ହେଲେ କମ୍ପମାନ ।
ଆକାଶ ପାତାଳ ମହୀ ସମୁଦ୍ର କମ୍ପିଲା
ଇନ୍ଦ୍ରଙ୍କ ମନରେ ମହାଭୟ ଉପୁଜିଲା ।
ତାହାଙ୍କ ତପସ୍ୟା ଭଗ୍ନ କରିବା ନିମନ୍ତେ
ସ୍ୱର୍ଗପୁରେ ଅପସରାଗଣ ଥିଲେ ଯେତେ ।
ତାଙ୍କ ମଧ୍ୟେ ରମ୍ଭା ଜାଣ ପରମା ସୁନ୍ଦରୀ
ସର୍ବ ସୁଲକ୍ଷଣୀ ପୁଣି ଅତି ସୁକୁମାରୀ ।
ସେ ସୁନ୍ଦରୀ ନେତ୍ରକୋଣେ ଯାହାକୁ ଚାହିଁବ
ନିଶ୍ଚିତ ତାହାର ଚିତ୍ତ ବିହ୍ୱଳିତ ହେବ ।
କହିବ ସେ ହସିକରି କଥାପଦେ ଯେବେ
ମହାଯୋଗୀ ଯୋଗ ଭାଜି ନିଶ୍ଚୟ ଶୁଣିବେ ।
ଚାଲିଯିବେ ସେ ସୁନ୍ଦରୀ ଯାହାର ଆଗରେ
ନିଶ୍ଚେ ସେହି ବିମୋହିତ ହେବ କାମଶରେ ।

ସେ ରମ୍ଭାକୁ ଡାକି ଇନ୍ଦ୍ର କହିଲେ ଏମନ୍ତ
ସଙ୍ଗେ ଘେନି ଯାଅ ତୁହି କନ୍ଦର୍ପ ବସନ୍ତ ।
ନର ନାରାୟଣ ଋଷି ତପଭଗ୍ନ କରି
ପୁଣି ସ୍ୱର୍ଗଭୁବନକୁ ଆସିବୁ ସୁନ୍ଦରୀ ।
ହେଉ କହି ବେଶ ହୋଇ ରମ୍ଭା ଅପସରା
ବସନ୍ତ ମଦନ ଘେନି ଗଲା ଅତିତ୍ୱରା ।
ପ୍ରବେଶିଲା ସେ ସୁନ୍ଦରୀ ବଦରିକାଶ୍ରମେ
ଋଷିଙ୍କି ଦେଖିଲା ସେହି ପବିତ୍ର ଆଶ୍ରମେ ।
କନ୍ଦର୍ପର ଯେହୁ ମହା ଆୟୁଧ ବୋଲାଇ
ଯାର ନାମ ଚୂତାଙ୍କୁର ଦୁର୍ବାର ଅଟଇ ।
ସେ ଆୟୁଧ ବସନ୍ତର ସଙ୍ଗେ ମିଶିଗଲା
କୋକିଳ ଯେ ପୁଣି କୁହୁ କୁହୁ ରାବ ଦେଲା ।
ପଳାସ ଗଛରୁ ସବୁ ପତ୍ର ଝଡ଼ିବାରୁ
ଧରାତଳ ଦେଖାଗଲା ଅତ୍ୟନ୍ତ ସୁଚାରୁ ।
ଆହେ ମୁନିବର ଯହୁଁ ବସନ୍ତ କେଶରୀ
ତୁଷାର କରୀକି ଯାଇ ବଳାକ୍ରାରେ ଧରି ।
ପଳାଶ କୁସୁମ ନଖେ ଚିରି ପକାଇଲା
ତହୁଁ ତାର ବେଳୁବେଳ ସାହସ ବଢ଼ିଲା ।
ମନେ ବିଚାରିଲା ମହାବଳବନ୍ତ ମୁହିଁ
ତୁଷାର କରୀକି ନିଜ ତେଜେ ଜିଣିଲଇଁ ।
ଲୋଧ୍ରକଢ଼ କୁନ୍ଦକଢ଼ ବୃକ୍ଷେ ହେଲା ଜାତ
ମନରେ କି ଗର୍ବ ବହି ହସିଲା ବସନ୍ତ ।
ସେ ସମୟେ କର୍ଣ୍ଣିକାର କୁସୁମ ଫୁଟିଲା
ପୁଷ୍ପଗୁଚ୍ଛେ ବନସ୍ଥଳୀ ମଣ୍ଡଣି ହୋଇଲା ।
ବନର ସେ ଶୋଭାରାଶି କରି ଦରଶନ
ହୃଦୟେ ଉଦୟ ହେଲା ଏ ପ୍ରକାର ଜ୍ଞାନ ।
ରାଜାଗଣ ଗଜ ବାଜିବାହନ ଚଢ଼ିଣ
ନାନାବିଧ ଆଭରଣ ଅଙ୍ଗରେ ପିନ୍ଧିଣ ।
କିବା ଏ ଅପୂର୍ବ ଶୋଭାରାଶି ପ୍ରକାଶିଲେ
ତାର ପଛେ ପଛେ ନୀପ କୁସୁମ ଫୁଟିଲେ ।
ଋତୁରାଜ ବସନ୍ତର ଭୃତ୍ୟ କି ସେମାନେ
ଦେହର ଚାକର କିବା ତାର ସନ୍ନିଧାନେ ।
କି ଅବା ସେ ନୀପପୁଷ୍ପ ରାଜପୁତ୍ରଗଣ
ଏହିପରି ଶୋଭାକୁ ସେ କଲେକ ଧାରଣ ।
ଲୋହିତ ଅଶୋକ ଫୁଲ ବନରେ ଫୁଟିଲା
ତାକୁ ଦେଖି ଏହି ଭାବ ଚିତ୍ତେ ଉପୁଜିଲା ।

ଏମାନେ କି ବସନ୍ତର ସଇନ୍ୟ ଅଟନ୍ତି
ରକତରେ ଜର ଜର ହୋଇ ଆସୁଛନ୍ତି ।
ଉଡ଼ିଲେ ସେକାଳେ ତହିଁ ଭ୍ରମର ନିକର
ମିତ୍ର ଅଟନ୍ତି ସେ କିବା ବସନ୍ତ ନୃପର ।
ଥିଲେ ଯେ ବେତସଲତା ନଦୀ ପୁଳିନରେ
ଶୋଭା ପାଇଲେ ସେ ଚାରୁ ମଞ୍ଜରୀଜାଲରେ ।
ଜଣାଯାଏ ସେମାନେ କି ଅଙ୍ଗୁଳି ଦେଖାଇ
ଏହିପରି କହୁଛନ୍ତି ଆନନ୍ଦିତ ହୋଇ ।
ଯେତେ ବୃକ୍ଷ ଅଛନ୍ତି ଏ ଅରଣ୍ୟ ମଧ୍ୟରେ
ସମାନ ନୋହିବେ କେହି ଆମ୍ଭ ସଙ୍ଗତରେ ।
ବୋଇଲେ ପୁଲସ୍ତ୍ୟମୁନି ହେ ନାରଦଋଷି
ସେ ବନେ ବସନ୍ତଲକ୍ଷ୍ମୀ ମିଳିଲେକ ଆସି ।
ରଙ୍ଗ ଅଶୋକ କୁସୁମ ତାର ଦୁଇକର
କିଂଶୁକ କୁସୁମ ପାଦ ଜାଣ ସେ ଲକ୍ଷ୍ମୀର ।
ନୀଳ ଅଶୋକକୁସୁମ ତାର କେଶଜାଳ
ବିକସିତ କମଳ ତା ବଦନମଣ୍ଡଳ ।
ନୟନଯୁଗଳ ତାର ନୀଳଇନ୍ଦୀବର
ବିଲ୍ୱଫଳ ସ୍ତନଦ୍ୱୟ ଅଟଇ ତାହାର ।
ବିକସିତ କୁନ୍ଦଫୁଲ ତାର ଦନ୍ତପନ୍ତି
ବନ୍ଧୁଲୀ କୁସୁମ ତାର ଅଧର ହେ ଯତି ।
ସିନ୍ଧୁବାରଫୁଲ ନଖ ଅଟଇ ତାହାର
ଅଣ୍ଡିରା କୋକିଳ ଜାଣ ଅଟଇ ତା ସ୍ୱର ।
କଂକୋଳ ଅଟଇ ତାର ପିନ୍ଧିଲା ବସନ
ମୟୁର ଅଟଇ ଜାଣ ଅଙ୍ଗ ଆଭରଣ ।
ତା ପଦ ନୂପୁରଧ୍ୱନି ସାରସର ସ୍ୱର
ପ୍ରାଗ୍‌ବଂଶ ତାହାର ଜିହ୍ୱା ଆହେ ମୁନିବର ।
ମତ୍ତହଂସ ଜାଣ ଅଟେ ଗମନ ତାହାର
ବନ୍ଧୁଜୀବ ଫୁଲରାଜି ଲୋମ ତା ଦେହର ।
ଏ ସମୟେ ଜଗନ୍ନାଥ ଦେବନାରାୟଣ
କଲେ ସେହି ଆଶ୍ରମର ଶୋଭାକୁ ଦର୍ଶନ ।
ଚକ୍ଷୁ ଫେରାଇଣ ଚାରିଦିଗକୁ ଚାହିଁଲେ
ସେ ପୁଣ୍ୟସ୍ଥାନରେ କାମଦେବଙ୍କୁ ଦେଖିଲେ ।
ନାରଦ କହିଲେ ଆହେ ବ୍ରାହ୍ମଣ ଗୋସାଇଁ
ଯେଉଁ ଜଗନ୍ନାଥଙ୍କର ଜନ୍ମ ମୃତ୍ୟୁ ନାହିଁ ।
ବଦରିକାଶ୍ରମେ ସେହି ଦେବ ଜନାର୍ଦ୍ଦନ
ଯାହାକୁ ଦେଖିଲେ ସେହି ଅଟେ କେଉଁଜନ ।

କହିଲେ ପୁଲସ୍ତ୍ୟ ଋଷି ଆହେ ମୁନିବର
ତାର ନାମ କାମ ସେହି ହର୍ଷର କୁମର ।
ଏହାକୁ କନ୍ଦର୍ପ ବୋଲି ବୋଲନ୍ତି ତ କେହି
ଶିବ ନେତ୍ର ଅନଳରେ ଦଗ୍‌ଧ ହୋଇ ଏହି ।
ଅଙ୍ଗହୀନ ହୋଇବାରୁ ଏହାକୁ ଜଗତେ
ଅନଙ୍ଗ ଅନଙ୍ଗ ହୋଇ ଡାକିଲେ ସମସ୍ତେ ।
ନାରଦ କହିଲେ ଦେବ ଦେବ ପଞ୍ଚାନନ
କି ଉଦ୍ଦେଶ୍ୟେ କି କାରଣେ ଏହାକୁ ଦହନ ।
କରିଥିଲେ ତାହା ମୋତେ ଅନୁଗ୍ରହ କରି
ବିରକ୍ତ ନ ହୋଇ ମୁନି କୁହନ୍ତୁ ବିସ୍ତାରି ।
ପୁଲସ୍ତ୍ୟ ବୋଇଲେ ଶୁଣ ଆହେ ମହାଯତି
ଦକ୍ଷ ପ୍ରଜାପତିଙ୍କର ଦୁହିତା ଯେ ସତୀ ।
ଅପମାନ ପାଇ କ୍ରୋଧେ ପ୍ରାଣ ହରାଇଲେ
ସେହି କୋପେ ଶିବ ଦକ୍ଷଯଜ୍ଞକୁ ଭାଙ୍ଗିଲେ ।
ତହିଁପରେ ସେହି ଦେବ ଦେବ ତ୍ରିଲୋଚନ
କାହିଁ ନ ରହିଲେ କଲେ ଜଗତ ଭ୍ରମଣ ।
କନ୍ଦର୍ପ ତା ଦେଖି ପୁଷ୍ପ ଆୟୁଧ ଧଇଲା
ଉନ୍ମାଦ ନାମକ ଅସ୍ତ୍ର ତହିଁରେ ଯୋଚିଲା ।
ବିନ୍ଧି ଦିଅନ୍ତେ ସେ ଅସ୍ତ୍ର ଗଲା ଅତିଖରେ
ବାଜିଲା ବୃଷଭଧ୍ୱଜ ଶିବଙ୍କ ଛାତିରେ ।
ପତ୍ନୀହୀନ ହୋଇ ସେହି ଦେବ ବୁଲୁଥିଲେ
ସେ ଉନ୍ମାଦ ଶର ଘାତେ ଉନମତ୍ତ ହେଲେ ।
ଭ୍ରମିଲେ କାନନ ଗିରି ନାନା ସରୋବର
ଏହି ଅବସ୍ଥାରେ ସେହି ପ୍ରଭୁ ମହେଶ୍ୱର ।
ସତୀଠାକୁରାଣୀଙ୍କର ରୂପକୁ ଚିନ୍ତିଲେ
ବାଣ ବାଜିଥିବା ମତ୍ତହସ୍ତୀ ପ୍ରାୟ ହେଲେ ।
ଆହେ ମୁନି ତହୁଁ ପୁଣି କଲେ ସେ ଗମନ
କାଳିନ୍ଦୀ ନଦୀଜଳରେ ହେଲେ ନିମଗନ ।
ସେହି ଯମୁନାର ନୀର କଳା ହୋଇଗଲା
କଳା ଭ୍ରମର ପରାୟ ସେ ଦିନୁ ଦିଶିଲା ।
ପୃଥିବୀର କେଶ ପାଶ ଜାଣ ସେହି ନଈ
ସେହିଦିନୁ ତାରଜଳ ପବିତ୍ର ବୋଲାଇ ।
ସେ ନଦୀ ଜଳରୁ ପୁଣି ଉଠି ଚାଲିଗଲେ
ସରସ୍ୱତୀ ଆଦି ନାନାତୀର୍ଥେ ସ୍ନାନକଲେ ।
ପୃଥିବୀ ମଧ୍ୟରେ ଥିଲା ଯେତେ ସରୋବର
ତହିଁରେ ବୁଡ଼ିଲେ ପୁଣି ଦେବ ମହେଶ୍ୱର ।

ତଥାପି ତାହାଙ୍କ ମନ ଶାନ୍ତ ନ ହୋଇଲା
ଉନ୍ମାଦ ବାଣରେ ତାଙ୍କ ମୁଣ୍ଡ ବୁଲାଇଲା ।
ଗ୍ରାମ ଦେଶ ନଦନଦୀ ଅରଣ୍ୟେ ବୁଲିଲେ
ପର୍ବତ ଉପରେ ଗୁହା ମଧ୍ୟରେ ରହିଲେ ।
କୂପ ବାମ୍ପି ତଡ଼ାଗରେ ବୁଡ଼ି ବୁଡ଼ି ଯାନ୍ତି
ନଦୀତୀରେ ବୃକ୍ଷମୂଳେ ଶ୍ରମ ନିବାରନ୍ତି ।
ପୁଣି ତହିଁ ଉଠିଯାଇଁ କରନ୍ତି ଭ୍ରମଣ
ତେବେ ତାଙ୍କ ଚିତ୍ତ ଶାନ୍ତ ନ ହୋଇଲା ଜାଣ ।
କେତେବେଳେ ଉଚ୍ଚସ୍ୱରେ କରନ୍ତି ରୋଦନ
କେତେବେଳେ ପ୍ରେମ ହୋଇ କରନ୍ତି ଗାୟନ ।
କେତେବେଳେ ନାଚିଯାନ୍ତି ଡମ୍ବରୁ ବଜାଇ
କେତେବେଳେ ପୁଣି ଧ୍ୟାନ ଯୋଗେ ମଜ୍ଜିଯାଇ ।
ହସନ୍ତି ମାରନ୍ତି ତାଳି ନାଚନ୍ତି ବସନ୍ତି
ସତୀ ଠାକୁରାଣୀଙ୍କର ରୂପକୁ ଚିନ୍ତନ୍ତି ।
ଶୟନେ ସ୍ୱପନେ ଧ୍ୟାନେ ଦେଖନ୍ତି ତାହାଙ୍କୁ
ବୋଲନ୍ତି ଗୋ ପ୍ରିୟେ ଆସ ଆସ ମୋ ପାଶକୁ ।
ଜାଣିଲି କିଞ୍ଚିତେ ଦୟା ନାହିଁ ତୋର ଚିତ୍ତେ
ବିନାଦୋଷେ ମୋତେ ତ୍ୟାଗ କରୁ ଆନନ୍ଦିତେ ।
ତୋ ବିରହେ କାମାନଳେ ପୋଡ଼ିଯାଏ ଦେହ
ମୋଠାରେ କି ପ୍ରିୟେ କୋପ କରିଅଛ କହ ।
ମୋ ବିନତି ଘେନି ରୋଷ ଛାଡ଼ ଗୋ ସୁନ୍ଦରୀ
ନମସ୍କାର କରୁଅଛି ଚରଣେ ତୁମ୍ଭରି ।
ମୋ ପ୍ରତି ସନ୍ତୁଷ୍ଟ ହୁଅ ଆଗୋ ବରାଙ୍ଗନେ
ସର୍ବଦା ମୁଁ ତୁମ୍ଭରୂପ ଦେଖୁଛି ନୟନେ ।
ବୀଣା - ଜିଣା - ବାଣୀକି ଗୋ ଶୁଣୁଛି ତୁମ୍ଭର
ସ୍ପର୍ଶ କରୁଅଛି ତବ ମୃଦୁ କଳେବର ।
ନିରନ୍ତର ତବ ପାଦ କରୁଛି ବନ୍ଦନ
ତୁମ୍ଭ ସୁକୋମଳ ଅଙ୍ଗ କରେ ଆଲିଙ୍ଗନ ।
ତଥାପି କିମ୍ପାଇଁ ପ୍ରିୟେ ନ କହୁଛ କଥା
ତୁମ୍ଭ ବିନା ଏ ଜୀବନ ଜାଣ ଆଗୋ ବୃଥା ।
ଶୋକାର୍ତ୍ତ ଜନକୁ ପ୍ରିୟେ ନ ଚାହୁଁ କିପରି
କରୁଣା ସଞ୍ଚାର ହୃଦେ ନ ହୁଏ ତୁମ୍ଭରି ।
ଆଗୋ ବାଳେ ବିଶେଷରେ ମୁଁ ତୁମ୍ଭର ପତି
ଦେଖୁଅଛ ଶୋକ କରେ ବସି ଦିବାରାତି ।
ତୁମ୍ଭର ଚିତ୍ତରେ ଦୟା ନୋହୁଛି କେମନ୍ତେ
ଜାଣିଲି ନିର୍ଦ୍ଦୟା ଏବେ ହେଲୁଣି ଗୋ କାନ୍ତେ ।

ପୂର୍ବେ ତୁମ୍ଭେ କହିଥିଲ ଆଗୋ କୃଶୋଦରି
ତୁମ୍ଭ ବିନେ ନ ପାରଇ ମୁହିଁ ପ୍ରାଣ ଧରି ।
ଏବେ ସେ କଥାକୁ ମିଥ୍ୟା କଲ ସୁଲୋଚନେ
ଆସ ଆସ ତୋଷକର ମୋତେ ଆଲିଙ୍ଗନେ ।
କାମାନଳେ ସନ୍ତାପିତ ହେଉଛି ମୋ ଅଙ୍ଗ
ରୋଷେ ଫୁଲବାଣ ମୋତେ ବିନ୍ଧୁଛି ଅନଙ୍ଗ ।
ଏମନ୍ତେ ବିଳାପ କଲେ ବହୁତ ସ୍ୱପନେ
ନିଦ୍ରାଭଙ୍ଗେ ଜାଗରିତ ହୋଇ ସେ କାନନେ ।
ସେହିପରି ମୁକ୍ତକଣ୍ଠେ ଅତି ଉଚ୍ଚସ୍ୱରେ
ଦେବୀଙ୍କ ରୂପକୁ ଚିନ୍ତା କଲେ ବାରେ ବାରେ ।
କନ୍ଦର୍ପ ଦୂରରୁ ଦେଖେ ସେ ବୃଷକେତନ
ବିଳାପ ବଚନ କହି କରନ୍ତି ରୋଦନ ।
ଏହାଦେଖି ଶରାସନ ବେଗେ ପୁଣି ଧରି
ସନ୍ତାପନ ନାମେ ଶର ତହିଁ ଯୋଖି କରି ।
ବିନ୍ଧନ୍ତେ ସେ ଅତିବେଗେ ବାଜିଲା ଅଙ୍ଗରେ
ଅତ୍ୟନ୍ତ ସନ୍ତପ୍ତ ପୁଣି ହେଲେ ପୁନର୍ବାରେ ।
ଏ ସନ୍ତପ୍ତ ସଂସାରକୁ କରି ସନ୍ତାପିତ
ମୁଖୁ ବାରମ୍ବାର କରି ଫୁତ୍କାର ନିର୍ଗତ ।
କଲେ ଅତି ଉଚ୍ଚସ୍ୱରେ ବହୁତ ବିଳାପ
ତାହା ଦେଖି ପୁନରପି କାମ ଧରି ଚାପ ।
ବିଜୃମ୍ଭଣ ନାମେ ଅସ୍ତ୍ର ମାଇଲା ନିଠାଇ
ସେ ଆଘାତେ ବିଜୃମ୍ଭିତ ହେଲେ ଉମାସାଇଁ ।
କାମଶରେ ଅତିଶୟ ହୋଇଣ ଉନ୍ମତ୍ତ
ଇତସ୍ତତ ଭ୍ରମନ୍ତେ ସେ କାନନ ପର୍ବତ ।
ଯକ୍ଷପତି ପୁତ୍ର ନାମ ଅଟେ ପାଞ୍ଚାଳିକ
ତାହାକୁ ନୟନେ ଦେଖି ସେ ଉମାନାୟକ ।
ବୋଇଲେ ଭ୍ରାତୃବ୍ୟ ଅଟ ତୁମ୍ଭେ ଯେ ମୋହର
ତୁମ୍ଭର ବିକ୍ରମ କେତେ ସୀମା ନାହିଁ ତାର ।
ଆଜି ଯା କହିବି ତାହା କରିବ ଅବଶ୍ୟ
ଏହା ଶୁଣି କହିଲା ସେ କୁବେରର ଶିଷ୍ୟ ।
ତୁମ୍ଭେ ଆମ୍ଭମାନଙ୍କର ଅଟ ରକ୍ଷାକର୍ତ୍ତା
ଅନ୍ୟଥା କି କରିପାରେ ମୁଁ ତୁମ୍ଭର କଥା ।
ବିଳମ୍ବ ନ କରି ତାହା କହନ୍ତୁ ଆପଣ
କରିବି ନିଶ୍ଚୟ ଆଜି କରୁଅଛି ପଣ ।
ଦେବଙ୍କର ହୋଇଥିବ ସେ ଅସାଧ୍ୟ ଯେବେ
ମୁଁ ସାଧ କରିବି ତାହା ଦେଖୁଥିବ ତୁମ୍ଭେ ।

ହେ ଅତୁଳବୀର୍ଯ୍ୟ ଶମ୍ଭୋ ! ମୁଁ ତୁମ୍ଭର ଦାସ
ଆପଣଙ୍କ ପ୍ରତି ଭକ୍ତି ଥାଏ ମୋ ବିଶେଷ ।
ଏହା ଶୁଣି ବୋଇଲେକ ପ୍ରଭୁ ମହେଶ୍ୱର
ଶୁଣ ଶୁଣ ଆହେ ଯକ୍ଷରାଜଙ୍କ କୁମର ।
ସକଳ ଲୋକର ବରଦାୟିନୀ ଅମ୍ବିକା
ବିନଷ୍ଟ ହେବାରୁ ମୁହିଁ ଏ ବନରେ ଏକା ।
ଥିବାରୁ ମୋ ଦେହ ଯାଏ କାମବାଣେ ପୋଡ଼ି
ଉନ୍ମାଦକ ବିଜୃମ୍ଭଣ ବାଣ ପୁଣି ଫୋଡ଼ି ।
ଦେବାରୁ କନ୍ଦର୍ପ ମୋତେ ମୋ ଦେହ ଅସ୍ଥିର
କଦାପି ମୁଁ ଧୈର୍ଯ୍ୟଧରି ନ ପାରେ ହେ ବୀର ।
ଚିତ୍ତପ୍ରୀତିକର ସୁଖ ଲଭିପାରୁ ନାହିଁ
ଆରେ ପୁତ୍ର ରକ୍ଷାକରିପାରୁ ଏକା ତୁହି ।
ତୋହ ଭିନ୍ନ ଆଉ କେହି ନୋହିବେ ସମର୍ଥ
ବିଜୃମ୍ଭଣ ଉନ୍ମାଦନ ସନ୍ତାପନ ଅସ୍ତ୍ର ।
ଏ ତିନିଙ୍କି ଧାରଣ ତୁ କର ବାବୁ ବେଗେ
ପୁଲସ୍ତ୍ୟ ଯେ କହୁଛନ୍ତି ନାରଦଙ୍କ ଆଗେ ।
ଏହିପରି କହିଲେକ ସେ ବୃଷଭଧ୍ୱଜ
ଶୁଣି ସେହି ପାଞ୍ଚାଳିକ କୁବେର ଆତ୍ମଜ ।
ତତକ୍ଷଣେ ପ୍ରତିଗ୍ରହ କଲା ତିନିଶର
ପରମ ସନ୍ତୋଷ ଲଭି ପ୍ରଭୁ ଗଙ୍ଗାଧର ।
ବୋଇଲେରେ ବତ୍ସ ତୁହି ନିଦାରୁଣ ବାଣ
କହିଲା ମାତ୍ରକେ କଲୁ ମୋଠାରୁ ଗ୍ରହଣ ।
ଏକାରଣୁ ସୁପ୍ରସନ୍ନ ହେଲି ମୁଁ ତୋଠାରେ
ବର ଦେଉଅଛି ଘେନ ଆନନ୍ଦ ମନରେ ।
ଯେଉଁ ବରେ ତୋର ଦାସ ହୋଇବେ ସମସ୍ତେ
ସେହିବର ଦେଉଅଛି ଆଜ ମୁହିଁ ତୋତେ ।
ଚୈତ୍ରମାସେ ତିନି ରାତି ସଞ୍ଜ ସକାଳରେ
ଯେବେକେବେ ଜନ ଅତି ଭକ୍ତି ସହକାରେ ।
କରେ ତୋର ଦର୍ଶନ ବା ସ୍ପର୍ଶନ ଅର୍ଚ୍ଚନ
ବାଲ୍ୟ ବୃଦ୍ଧ ଯୁବା ଅବା ହେଉ ସେହିଜନ ।
କି ଅବା ରମଣୀଜାତି ହୋଇଥିଲେ ସେହି
ହୋଇବେ ଉନ୍ମାଦ ଧାରୀ ନିଶ୍ଚୟ ସେ ଦେହୀ ।
ତୋ ସମ୍ମୁଖେ ଗାନକରି ନିତ୍ୟ ଆରମ୍ଭିବ
ନାନାବିଧ ବାଦ୍ୟ ନାଦେ ଆମୋଦ କରିବ ।
ହାସ୍ୟ ବାକ୍ୟେ ରତ ଆଉ ଯୋଗେହେବରତ
ମୋହର ନାମରେ ତୁହି ହୋଇବୁ ପୂଜିତ ।

ପାଞ୍ଚାଳିକେଶ୍ୱର ବୋଲି ବୋଲିବେ ସମସ୍ତେ
ଅଧିକ କି ବର ଆଉ ଦେବି ମୁହିଁ ତୋତେ ।
ମୋ ପ୍ରସାଦେ ଦେବୁ ତୁହି ସମସ୍ତଙ୍କୁ ବର
ତୋରବରେ ପୂଜ୍ୟ ହେବେ ସୁରାସୁର ନର ।
କର ଇଛା ଅନୁସାରେ ଏ କ୍ଷଣେ ଗମନ
ଆଜ୍ଞାମାତ୍ରେ ସେହି ଯକ୍ଷରାଜର ନନ୍ଦନ ।
ପୃଥିବୀ ଭ୍ରମଣ କରି ହିମାଦ୍ରି ଦକ୍ଷିଣେ
ପରମ ପବିତ୍ର ଦେଶ ଦେଖି ସେହିସ୍ଥାନେ ।
ରହିଲା ସେ ଦେଶଗୋଟି କାଳଞ୍ଜୀ ଉତ୍ତର
ଅତି ପୁଣ୍ୟମୟ ସ୍ଥାନ ପୃଥିବୀ ଭିତର ।
ଦେବଦେବ ମହାଦେବ ଶିବଙ୍କ କୃପାରେ
ସର୍ବଜନପୂଜ୍ୟ ହେଲା ଯକ୍ଷ ସେହିଠାରେ ।
ଏଥୁ ଅନନ୍ତରେ ପ୍ରଭୁ ଦେବ ତ୍ରିଲୋଚନ
ବିନ୍ଧ୍ୟପର୍ବତକୁ କଲେ ସେଠାରୁ ଗମନ ।
ତାଙ୍କ ପଛେ ପଛେ ଗଲା କନ୍ଦର୍ପ ସେଠାକୁ
ପୁଣି ଇଚ୍ଛା କଲା ତହିଁ ବାଣ ବିନ୍ଧିବାକୁ ।
ତାହା ଜାଣିପାରି ପ୍ରଭୁ ଛାଡ଼ିଲେ ସେ ସ୍ଥାନ
ତାଙ୍କ ପଛେ ପଛେ କଲା ମଦନ ପ୍ରସ୍ଥାନ ।
ତାହା ଦରଶନ କରି ସେ ପ୍ରଭୁ ମହେଶ
କଲେ ଭୟଙ୍କର ଦାରୁବନରେ ପ୍ରବେଶ ।
ସ୍ୱସ୍ୱ ପତ୍ନୀ ଘେନି ତହିଁ ଅଛନ୍ତି ଋଷିଏ
ଶିବଙ୍କୁ ଦେଖି ସକଳେ ଉଠି ଭକ୍ତି ଭୟେ ।
ପ୍ରଣାମ କରିଣ କରଯୋଡ଼ି ଉଭା ହେଲେ
ଦେବଦେବ ବୃଷଧ୍ୱଜ ତାହାଙ୍କୁ କହିଲେ ।
ଆମ୍ଭଙ୍କୁ ଯେ ଭିକ୍ଷାଦିଅ ଆହେ ଋଷିଗଣ
ସକଳ ମହର୍ଷି ଶୁଣି ହୋଇଲେ ମଉନ ।
ଏଥୁଅନ୍ତେ ମହାଦେବ ପ୍ରତି ଆଶ୍ରମରେ
ବୁଲିଲେକ ଜର ଜର ହୋଇ କାମଶରେ ।
ଆଶ୍ରମରେ ଭୃଗୁ ପତ୍ନୀ ଅତ୍ରି ପତ୍ନୀ ଥିଲେ
ଶିବଙ୍କ ଏ ରୀତି ଦେଖି ଅତି କ୍ରୁଦ୍ଧ ହେଲେ ।
ଅନସୂୟା ଅରୁନ୍ଧତୀ ଏ ଦୁଇ ଯୁବତୀ
ଶିବପ୍ରତି ଭକ୍ତି ରଖି ସେବୁଥାନ୍ତି ପତି ।
ଶିବଙ୍କୁ ଦର୍ଶନ କରି ତାହାଙ୍କର ଚିତ୍ତ
ତେଣୁ ନ ହୋଇଲା କିଛିମାତ୍ର ବିଚଳିତ ।
ଆଉ ରମଣୀଙ୍କ ମନ ହୋଇଲା ଚଞ୍ଚଳ
ମହାଦେବ କାମେ ହୋଇ ଅତ୍ୟନ୍ତ ବିହ୍ୱଳ ।

ଯେଉଁ ଯେଉଁ ସ୍ଥାନକୁ ସେ କରନ୍ତି ଗମନ
ଋଷିପତ୍ନୀଏ ଆଶ୍ରମ କରି ଦେଇ ଶୂନ୍ୟ ।
ଉନମତ୍ତ ମାତଙ୍ଗକୁ ଦରଶନ କରି
କରିଣ ଏ ପଛେ ପଛେ ଧାମନ୍ତି ଯେପରି ।
ତେସନ ଶିବଙ୍କ ଅନୁଗାମିନୀ ହୋଇଲେ
ଭୃଗୁ ଅଙ୍ଗିରସ ଆଦି ଯେତେ ଋଷି ଥିଲେ ।
ଏ ବ୍ୟାପାର ଦେଖି କରି ହୋଇ କ୍ରୋଧନ୍ୱିତ
ବୋଇଲେ ତୋ ଲିଙ୍ଗ ହେଉ ଭୂମିରେ ପତିତ ।
ତତକ୍ଷଣେ ଶିବଲିଙ୍ଗ ଭୂମିରେ ପଡ଼ିଲା
ପୃଥିବୀ ବିଦୀର୍ଣ୍ଣ କରି ପାତାଳେ ଲାଗିଲା ।
ଏ ସମୟେ ଅନ୍ତର୍ହିତ ସେ ନୀଳଲୋହିତ
ଯେଉଁ ଲିଙ୍ଗ ହେଲା ଭୂମିତଳରେ ପତିତ ।
ଅଧୋଭାଗ କଲା ରସାତଳକୁ ସ୍ପରଶ
ଉର୍ଦ୍ଧ୍ୱଭାଗ ସ୍ପର୍ଶକଲା ସକଳ ଆକାଶ ।
ପର୍ବତ ସହିତ ପୃଥ୍ୱୀ ଟଳ ଟଳ ହେଲା
ସରିତ ପାଦପସହ ପାତାଳ କମ୍ପିଲା ।
ଚଉଦବ୍ରହ୍ମାଣ୍ଡ ଯହୁଁ ହେଲା କମ୍ପମାନ
ଲୋକପିତାମହ ଏହା କରି ଦରଶନ ।
କ୍ଷୀର ସମୁଦ୍ରରେ ଯାଇ ହୋଇଲେ ପ୍ରବେଶ
ଯେଉଁ ସ୍ଥାନରେ ଅଛନ୍ତି ପ୍ରଭୁ ହୃଷୀକେଶ ।
ଭକ୍ତିଭରେ କରି ତାଙ୍କ ଚରଣ ବନ୍ଦନ
ବୋଇଲେ ହେ ଦେବଦେବ ବିଭୁ ଜନାର୍ଦ୍ଦନ ।
କାହିଁପାଇଁ ସମୁଦାୟ ଭୁବନ କମ୍ପଇ
ଏମନ୍ତ ଶୁଣି ବୋଇଲେ ପ୍ରଭୁ ଲକ୍ଷ୍ମୀସାଇଁ ।
କରିଛନ୍ତି ଋଷି ଶମ୍ଭୁଲିଙ୍ଗ ନିପାତିତ
ତେଣୁ ସକଳ ବସୁଧା ହୁଏ ବିଚଳିତ ।
ପିତାମହ ଏ ଅତ୍ୟନ୍ତ ଆଶ୍ଚର୍ଯ୍ୟ ବ୍ୟାପାର
ଶ୍ରବଣ କରି ବୋଇଲେ ପୁଣି ବାରମ୍ବାର ।
ଆମ୍ଭେ ଚାଲ ସେ ସ୍ଥାନକୁ ଯିବା ହେ ଦେବେଶ
ଏହା ଶୁଣି ବାହାରିଲେ ପ୍ରଭୁ ହୃଷୀକେଶ ।
ପିତାମହ ଜନାର୍ଦ୍ଦନ ଦୁହେଁ ତହୁଁ ଗଲେ
ଲିଙ୍ଗ ପତିତ ସ୍ଥାନରେ ପ୍ରବିଷ୍ଟ ହୋଇଲେ ।
ଏଥୁ ଅନନ୍ତରେ ବିଭୁ ଶ୍ରୀମଧୁସୂଦନ
ଅନ୍ତ ରହିତ ଲିଙ୍ଗକୁ କରି ଦରଶନ ।
ଗରୁଡ଼ ପିଠିରେ ଚଢ଼ି ପାତାଳକୁ ଗଲେ
ପଦବିମାନରେ ବ୍ରହ୍ମା ଆରୋହଣ କଲେ ।
ସମୁଦାୟ ଉର୍ଦ୍ଧ୍ୱଭାଗ କରି ଆକ୍ରମଣ
ଲିଙ୍ଗର ଅନ୍ତ ନ ପାଇ ହୋଇଲେ ବିଷର୍ଣ୍ଣ ।
ବିସ୍ମୟ ଲଭି ସେଠାରୁ ଅଇଲେକ ଫେରି
ଏଣେ ବିଷ୍ଣୁ ଯାଇଥିଲେ ପାତାଳ ନଗରୀ ।
ଅନ୍ତ ନ ପାଇ ବିସ୍ମୟ ବଦନେ ଅଇଲେ
ଲିଙ୍ଗ ନିକଟରେ ପୁଣି ବ୍ରହ୍ମାଙ୍କୁ ଭେଟିଲେ ।
ଦୁଇଜଣ କଲେ ହର ଲିଙ୍ଗକୁ ଯେ ସ୍ତୁତି
କର ଯୋଡ଼ି ବୋଇଲେ ହେ ଦେବ ପଶୁପତି ।
ଆହେ ଶୂଳପାଣି ଆହେ ଜୀମୂତ ବାହନ
ବୃଷଭଧ୍ୱଜ ହେ ସର୍ବ ତ୍ର୍ୟମ୍ବକ ଈଶାନ ।
ବୃଷାକପି ସୁବର୍ଣ୍ଣାକ୍ଷ ଆହେ ମହେଶ୍ୱର
ଆହେ କାଳରୂପ ଦକ୍ଷଯଜ୍ଞ-କ୍ଷୟକର ।
ତୁମ୍ଭେ ଷଡ଼ୈଶ୍ୱର୍ଯ୍ୟପୂର୍ଣ୍ଣ ପରମପୁରୁଷ
ଜଗତର ଆଦି ଅନ୍ତ ମଧ୍ୟ ହେ ମହେଶ ।
ତୁମ୍ଭଙ୍କୁ ଯେ ନମସ୍କାର କରୁ ଆମ୍ଭେ ଦୁଇ
ଆମ୍ଭଠାରେ ସୁପ୍ରସନ୍ନ ହୁଅ ଉମାସାଇଁ ।
କହିଲେ ପୁଲସ୍ତ୍ୟ ମୁନି ସେହି ଦାରୁବନେ
ଏହିପରି ସ୍ତବ ଯହୁଁ କଲେ ଶ୍ରଦ୍ଧାମନେ ।
ନିଜ ସ୍ୱରୂପ ଧାରଣ କଲେ ପ୍ରଭୁ ଭବ
ବୋଇଲେ ହେ ତୁମ୍ଭେ ଦୁହେଁ ଅଟଦେବଦେବ ।
ତୁମ୍ଭେ କି ନିମନ୍ତେ ପଥେ ଆସି ସ୍ତବକର
କାମାନଳେ ପୋଡ଼ିଯାଏ ଶରୀର ମୋହର ।
ଅସୁସ୍ଥ ହେବାରୁ ମୋର ନାହିଁ ଆତ୍ମଜ୍ଞାନ
ବ୍ରହ୍ମା ବିଷ୍ଣୁ ବୋଇଲେକ ଆହେ ତ୍ରିଲୋଚନ ।
ଆପଣଙ୍କ ଯେଉଁ ଲିଙ୍ଗ ପଡ଼ିଛି ଭୂମିରେ
ଆପଣ ଗ୍ରହଣ କର ତାହା ପୁନର୍ବାରେ ।
ଏହି ହେତୁ କରୁଅଛୁଁ ଆପଣଙ୍କୁ ସ୍ତବ
ଏହା ଶୁଣି କହିଲେକ ତାଙ୍କୁ ମହାଦେବ ।
ସୁରୋତ୍ତମଯୁଗଳ ହେ ଶୁଣ ଆମ୍ଭ ବାଣୀ
ଯେବେ ଦେବଗଣ ଘେନି ଆସି ବଜ୍ରପାଣି ।
ମୋହର ଏହି ଲିଙ୍ଗକୁ ଅର୍ଚ୍ଚନା କରିବେ
ପ୍ରତିଗ୍ରହ କରିବି ମୁଁ ତାହାକୁ ଯେ ତେବେ ।
ନୋହିଲେ ଗ୍ରହଣ କେବେ ନ କରିବି ତାହା
ହେଉ ହେଉ ବୋଇଲେକ ପ୍ରଭୁ ଚଉବାହା ।
ଏଥୁ ଅନ୍ତେ ବ୍ରହ୍ମା ସେହି କନକର ପରି
ପିଙ୍ଗଳ ବର୍ଣ୍ଣ ଲିଙ୍ଗକୁ ସ୍ୱହସ୍ତରେ ଧରି ।

ଶିବ ପୂଜାର ବିଧାନ ଶାସ୍ତ୍ର ଭିଆଇଲେ
ନାନାବିଧ ଭକତିରେ ପୂର୍ଣ୍ଣ ତାକୁ କଲେ ।
ଚାତୁର୍ବର୍ଣ୍ଣ୍ୟଙ୍କର ତେଣେ ହେବ ଉପକାର
ସେ ଚାତୁର୍ବର୍ଣ୍ଣ୍ୟଙ୍କ ନାମ ଶୁଣ ହୋଇ ସ୍ଥିର ।
ପ୍ରଥମ ଶୈବ ଦ୍ୱିତୀୟ ଅଟେ ପାଶୁପତ
ତୃତୀୟ କାଳବଦନ କପାଳୀ ଚତୁର୍ଥ ।
ବଶିଷ୍ଠଙ୍କ ପ୍ରିୟପୁତ୍ର ନାମ ଅଟେ ଶକ୍ତି
ଶୈବ ସେହି ତାଙ୍କ ଶିଷ୍ୟ ଗୋପାୟନ ଯତି ।
ତପୋଧନ ଭରଦ୍ୱାଜ ମହା ପାଶୁପତ
ତାହାଙ୍କ ଶିଷ୍ୟ ସୋମକେଶ୍ୱର ନରନାଥ ।
ଆପସ୍ତମ୍ବ ଋଷି କାଳବଦନ ଅଟନ୍ତି
ତାଙ୍କ ଶିଷ୍ୟ ହେଲେ କ୍ରଥେଶ୍ୱର ନରପତି ।
କପାଳିକ ଧନଦ ଯେ ତାହାଙ୍କର ଶିଷ୍ୟ
ମହାତପୀ ମହାବୀର୍ଯ୍ୟ ଅର୍ଣ୍ଣୋଦର ଦାସ ।
ଜାତିରେ ଶୁଦ୍ର ଅଟଇ ସେହି ଅର୍ଣ୍ଣୋଦର
ଏହିରୂପେ ପୂଜାବିଧି କରି ବେଦବର ।
ଚାତୁର୍ବର୍ଣ୍ଣ୍ୟର ବିଧାନ କରିଣ ନିର୍ମାଣ
ଆପଣାର ଭୁବନକୁ କଲେ ସେ ପ୍ରସ୍ଥାନ ।
ବ୍ରହ୍ମା ତହୁଁ ନିଜପୁରେ ଗମନ କରନ୍ତେ
ଆପଣା ଲିଙ୍ଗକୁ ଶିବ ଧଇଲେ ସ୍ୱହସ୍ତେ ।
ସେହି ସୂକ୍ଷ୍ମାକୃତି ଲିଙ୍ଗ ସ୍ଥାପି ଚିତ୍ରବନେ
ଭ୍ରମିଲେକ ପୁନରପି କାନନେ କାନନେ ।
ଦୂରେ ଥାଇ କାମ ପୁଣି ଧରି ଧନୁଶର
ବିନ୍ଧିବାର ଦେଖି ଆଗେ ଦେବଦେବ ହର ।
କ୍ରୋଧ ଦୃଷ୍ଟିରେ ତାହାକୁ ଦେଲେକ ଅନାଇ
ସେ ନେତ୍ରାଗ୍ନି କାମଦେହେ ପଡ଼ିଲାକ ଯାଇଁ ।
ପଡ଼ିଲା ମାତ୍ରକେ ଦ୍ୟୁତିମନ୍ତ ସେ ମଦନ
ଜଳିଗଲା ତୃଣ ରାଶି ଜଳଇ ଯେସନ ।
ଆହେ ମୁନି ପାଦଦ୍ୱୟ ପୋଡ଼ିଯିବା ଦେଖି
କନ୍ଦର୍ପ ତା ଧନୁଶର ତଳେ ଦେଲା ରଖି ।
ପାଞ୍ଚପ୍ରକାର ତକ୍ଷଣେ ହୋଇଲା ସେ ଚାପ
ଧରିଥିଲା ସେ ଧନୁର ସ୍ଥାନକୁ କନ୍ଦର୍ପ ।
ସୁଗନ୍ଧଯୁକ୍ତ ଚମ୍ପକ ବୃକ୍ଷ ସେ ହୋଇଲା
ସୁନ୍ଦର ବଜ୍ର ଭୂଷିତ ନାଭିସ୍ଥାନ ଥିଲା ।
ବକୁଳ ବୃକ୍ଷ ରୂପକୁ ଧଇଲା ତକ୍ଷଣେ
ସେ ଧନୁର କଟିଭାଗ କଥା ଶୁଣ କର୍ଣ୍ଣେ ।
ଇନ୍ଦ୍ରନୀଳମଣିରେ ସେ ଶୋଭା ପାଉଥିଲା
ପାଟଳ ବୃକ୍ଷ ରୂପକୁ ତତ୍କ୍ଷଣେ ଧଇଲା ।
ସେ ବୃକ୍ଷ ଭୃଙ୍ଗରାଜିରେ ହେଲା ବିରାଜିତ
ଅଧୋମୁଷ୍ଟି ସ୍ଥାନ କଥା ଶୁଣ ଦେଇ ଚିତ୍ତ ।
ଚନ୍ଦ୍ରକାନ୍ତ ମଣିରେ ସେ ପାଉଥିଲା ଶୋଭା
ଶଶାଙ୍କକିରଣ ପ୍ରାୟ ଉଜ୍ଜ୍ୱଳ ତା ପ୍ରଭା ।
ପଞ୍ଚଗୁଳ୍ମ ଜାତିରୂପ ଧଇଲା ସେକ୍ଷଣି
ମୁଷ୍ଟି ଊର୍ଦ୍ଧ୍ୱଭାଗ କଟି ଅଧୋଭାଗ ପୁଣି ।
ବିଦ୍ରୁମରେ ହୋଇଥିଲା ସେ ଅତି ରଞ୍ଜିତ
ବିବିଧ ଲତା ରୂପକୁ ଧଇଲା ତ୍ୱରିତ ।
ଆହୁରି ତହିଁରୁ ଜାତ ହେଲା ଫୁଲଗଛ
ଶିବ ମସ୍ତକେ ଘେନିଲେ ତାର ପୁଷ୍ପଗୁଚ୍ଛ ।
ସେ ଅତ୍ୟନ୍ତ ମନୋହର ପରମ ସୁନ୍ଦର
ସୁଗନ୍ଧ ସମ୍ପନ୍ନ ସେହି ପୁଷ୍ପ ତରୁବର ।
କନ୍ଦର୍ପ ଭସ୍ମ ହୁଅନ୍ତେ ତାର ଯେତେ ବାଣ
ବିଭୁ ଶଙ୍କର ସେ ସବୁ କଲେ ସଂହରଣ ।
ଭାଙ୍ଗି ଖଣ୍ଡ ଖଣ୍ଡ କରି ବିଞ୍ଚିଦେଲେ ରୋଷେ
ପଡ଼ିଲା ସେ ପୃଥିବୀର ଅରଣ୍ୟ ପ୍ରଦେଶେ ।
ସହସ୍ର ସହସ୍ର ବୃକ୍ଷ ରୂପ ସେ ଧଇଲା
ଶିବଙ୍କ ପ୍ରସାଦେ ଅତି ସୁଗନ୍ଧ ହୋଇଲା ।
ଚୂତ ଆଦି ତରୁ ଶ୍ରେଷ୍ଠ ହେଲେ ଉତପନ୍ନ
ଏହିରୂପେ କନ୍ଦର୍ପକୁ କରିଣ ଦହନ ।
ଇନ୍ଦ୍ରିୟକୁ ସଂଯମନ କରି ତହୁଁ ହର
ଚାଲିଗଲେ ହିମାଳୟ ପର୍ବତ ଶିଖର ।
ପୁଣ୍ୟ କାମନାରେ ତହିଁ କଲେ ଘୋର ତପ
ସେଦିନୁ ଅନଙ୍ଗ ନାମ ବହିଲା କନ୍ଦର୍ପ ।
ଦେବଗଣ ମିଳି କଲେ ଶିବଙ୍କର ସ୍ତୁତି
ଜୟ ଜୟ ସଦାନନ୍ଦ ଜୟ ପଶୁପତି ।
କନ୍ଦର୍ପ ଦହନକାରୀ ଜୟ ବୃଷଧ୍ୱଜ
ଦେବଙ୍କ ଉପରେ ତୁହି ଅଟୁ ଦେବରାଜ ।
ତୋହର ଚରଣ ତଳେ ରହୁ ମୋର ମତି
ଦ୍ୱିଜ ଗୋପୀନାଥ ଏହା ମାଗେ ଦିବାରାତି ।

=+=

## ପ୍ରହ୍ଲାଦ ଯୁଦ୍ଧ

କହିଲେ ପୁଲସ୍ତ୍ୟ ଋଷି ଏଥୁ ଅନନ୍ତରେ
ନାରାୟଣ ଅନଙ୍ଗକୁ ଦେଖି ଏପ୍ରକାରେ ।

ହସି ହସି ବୋଇଲେ ହେ କାମ ଏଥେ ରହ
କାମ ଦେଖିଲା ଶିବଙ୍କ ଚିତ୍ତ ହେଲା ଥୟ ।
ବିସ୍ମୟ ହୋଇ ରହିଲା ଆହେ ମହାମୁନେ
ଚିନ୍ତା ଉପସ୍ଥିତ ହେଲା ବସନ୍ତର ମନେ ।
ଏଥୁଅନ୍ତେ ଅପ୍‌ସରାଙ୍କୁ କୁଶଳ ପଚାରି
ଆସ ଆସ କହିଲେକ ବସନ୍ତକୁ ହରି ।
ଏହି ସ୍ଥାନେ ଅବସ୍ଥାନ କର ବୋଲି କହି
କୁସୁମମଞ୍ଜରୀ ଧରି ପ୍ରଭୁ ଭାବଗ୍ରାହୀ ।
ହେମାଙ୍ଗୀ ଉରୁବାଳାକୁ କଲେକ ନିର୍ମାଣ
ସର୍ବାଙ୍ଗ ସୁନ୍ଦରୀ ସେହି ତରୁବାଳା ଜାଣ ।
କନ୍ଦର୍ପ ସେ ସୁନ୍ଦରୀର ରୂପ ଦେଖି କରି
ମନେ ବିଚାରିଲା ଏହି ଅପୂର୍ବ ସୁନ୍ଦରୀ ।
ମୋହର ଭାରିଯା ରତିଦେବୀ କି ହୋଇବ
କାହିଁକିନା ତାର ତୁଲ୍ୟ ଏହାର ସ୍ୱଭାବ ।
କହୁଅଛି ତାହା ପ୍ରାୟ ମଧୁର ବଚନ
ଲୋଚନ ଦ୍ୱୟ ତାହାର ପରି ସୁଶୋଭନ ।
ସୁରମ୍ୟ ଲଲାଟ ଆଉ ଭ୍ରୁକୁଟି ସୁନ୍ଦର
ସୁଚାରୁ ନାସିକାପୁଡ଼ା ସୁନ୍ଦର ଅଧର ।
ସୁଦୃଶ୍ୟ ଓଷ୍ଠଯୁଗଳ ସୁମଧୁର ଦୃଷ୍ଟି
ତାହାରି ସଦୃଶ ସରୁ ଅଟେ ଏହା କଟୀ ।
ଏହା ବେନି ପୟୋଧର ତାର ସମପୀନ
ଅବିକଳ ପୃଥୁଳ ଯେ ଅତ୍ୟନ୍ତ ଶୋଭନ ।
ଉଦର ଏ ଚାର୍ବଙ୍ଗୀର ତା ଉଦର ପରି
ବିରାଜୁଛି ବାଳୀ ରୋମରାଜିରେ କିପରି ।
ଚିକ୍କଣ ଅତ୍ୟନ୍ତ ସୂକ୍ଷ୍ମ ହୋଇଛି ଆବର
ତାତୁଲ୍ୟ ଜଘନ ରୋମାବଳି ଯେ ଏହାର
ସ୍ତନତଟ ପୁଳିନକୁ ଗଲା ପ୍ରାୟ ଦିଶେ
ଭୃଙ୍ଗମାଳା ଗଲାପ୍ରାୟ ପୁଷ୍ପରସ ଆଶେ ।
ତାହା ପ୍ରାୟ ଜଙ୍ଘା ସ୍ଥୂଳ ଅଟଇ ଏହାର
ତାତୁଲ୍ୟ ଶୋଭା ପ୍ରକାଶେ ନିତମ୍ବର ହାର ।
କ୍ଷୀରୋଦମନ୍ଥନ କାଳେ ଭୁଜଙ୍ଗ ଜଡ଼ିତ
ଯେଉଁପରି ଦିଶୁଥିଲା ମନ୍ଦର ପର୍ବତ ।
ତେସନ ସୁନ୍ଦର ଦିଶେ ନିତମ୍ବ ଏହାର
ଉରୁ ଦିଶେ ରତିଦେବୀ ଉଷ୍ଟ ପରକାର ।
ପଦ୍ମପରାଗ ସଦୃଶ ସେ ଯେମନ୍ତ ଦିଶେ
କଦଳୀ ସ୍ତମ୍ଭ ସଦୃଶ ଶୋଭାକୁ ବିକାଶେ ।
ତେମନ୍ତ ଶୋଭା ପାଉଛି ଏହା ଉରୁ ଦୁଇ
ତା ଜାନୁ ସଦୃଶ ଏହା ଜାନୁତ ଦିଶଇ ।
ତା ସମାନ ରୋମହୀନ ପରମ ସୁନ୍ଦର
ତା ଗୋଇଠି ତୁଲ୍ୟ ଗୂଢ଼ ଗୋଇଠି ଏହାର ।
ତା ପାଦ ବହିଛି ଯେହ୍ନେ ଅଳତା କାନ୍ତିକି
ଏହାର ପାଦ ବହିଛି ତାହାର ରୁଚିକି ।
ଅନିନ୍ଦିତ ଲୋଚନାକୁ ଦେଖନ୍ତେ ଅନଙ୍ଗ
କାମଶରେ ଜର୍ଜରିତ ହୋଇଲା ତା ଅଙ୍ଗ ।
ଅନ୍ୟର କଥା ଆଉ କି କହିବି ନାରଦ
ଉର୍ବଶୀ ଦେଖି ବସନ୍ତ ବିହ୍ୱଳିତ ହୃଦ ।
ଭାବିଲା କାମରାଜାର ଏହି ରାଜଧାନୀ
ଆସିଛି ସାକ୍ଷାତ ପାଇଁ ହୋଇଣ କାମିନୀ ।
କିବା ନିଶା ଅବସ୍ଥାନେ ଶିଶିରର କାନ୍ତି
ରବି କିରଣ ତାପକୁ କରି ମହାଭୀତି ।
ଗୋପନରେ ନେଇ ଅଛି ଏହାର ଶରଣ
ବସନ୍ତ ଏରୂପେ ହୋଇ ଚିନ୍ତା ପରାୟଣ ।
ମୁନିପ୍ରାୟ ଧ୍ୟାନମଗ୍ନ ହୋଇ ସେ ରହିଲା
ଅପସରାଗଣଙ୍କୁ ଯେ ଚାହିଁ ନ ପାରିଲା ।
ଆହେ ମହାମୁନେ ! ମହାମୁନି ନାରାୟଣ
କାମ ପ୍ରଭୃତିଙ୍କ ରୀତି କରି ଦରଶନ ।
ଈଷତ ହାସ୍ୟବଦନେ କହିଲେ ଏମନ୍ତ
ହେ କାମ ହେ ଅପସରାଗଣ ହେ ବସନ୍ତ ।
ତୁମ୍ଭେ ମୋର ଉରୁଜାତ ବାଳାକୁ ଯେ ନିଅ
ସ୍ୱର ଲୋକେ ଦେବରାଜ ଇନ୍ଦ୍ର ହସ୍ତେ ଦିଅ ।
ଏ କଥା ଶୁଣି ତାଙ୍କର କମ୍ପିଲା ଶରୀର ।
ଉର୍ବଶୀକି ଆଗ କରି ଗଲେ ସୁରପୁର ।
କହିଲେ ଏ ସବୁ କଥା ସହସ୍ର ନେତ୍ରକୁ
ରୂପ ଯୌବନଶାଳିନୀ ସେ ଉରୁବାଳାକୁ ।
ସମର୍ପି ତା ସଙ୍ଗେ ସଙ୍ଗେ କହିଲେକ ପୁଣି
ଧର୍ମ ପରାୟଣ ନରନାରାୟଣ ବାଣୀ ।
ଆହେ ମୁନି ଶୁଣ ଇନ୍ଦ୍ର ଆଦି ଯେ ଦେବତା
ଅତ୍ୟନ୍ତ ବିସ୍ମିତ ହୋଇ କଲେ ବହୁଚିନ୍ତା ।
ଏଥୁଅନ୍ତେ ନରନାରାୟଣଙ୍କ ଚରିତ
ସପତ ପାତାଳେ ମର୍ତ୍ତ୍ୟେ ଅଷ୍ଟଦ୍ୱୀପେ ଖ୍ୟାତ
ହେବାରୁ ହେ ମହାମୁନି ଏକ ସମୟରେ
ହିରଣ୍ୟକଶ୍ୟପୁ ଦୈତ୍ୟ ମରିଗଲା ପରେ ।

ପ୍ରହ୍ଲାଦ ନାମେ ଦାନବ ହୋଇଲାକ ରାଜା
ସେ ପ୍ରହ୍ଲାଦ କରେ ଦେବ ଦ୍ୱିଜ ପାଦପୂଜା ।
ଧର୍ମ ଅନୁସାରେ କରେ ରାଜ୍ୟକୁ ଶାସନ
ତାହାର ଅଧିକାରରେ ସମସ୍ତ ରାଜନ ।
ପୃଥିବୀରେ ଯଥାବିଧି ଯଜ୍ଞ ଆରମ୍ଭିଲେ
ଯେତେକ ବ୍ରାହ୍ମଣଗଣ ପୃଥିବୀରେ ଥିଲେ ।
ତପ ଧର୍ମ ତୀର୍ଥ ଯାତ୍ରା କଲେ ରୀତିମତ
ବୈଶ୍ୟ ଆଚରଣ କଲେ ନିଜ ନିଜ ବୃତ୍ତ ।
ଶୂଦ୍ରମାନେ ହେଲେ ଦ୍ୱିଜସେବା ପରାୟଣ
ସ୍ୱ ସ୍ୱ କାର୍ଯ୍ୟକଲେ ଏହି ରୂପେ ଚାରିବର୍ଣ୍ଣ ।
ଧର୍ମ କର୍ମ ଅନୁଷ୍ଠାନ କରନ୍ତି ସତତ
ସ୍ୱର୍ଗପୁରେ ଦେବଗଣ ହେଲେ ବୁଦ୍ଧିମନ୍ତ ।
ଏ ସମୟେ ମହାତପୀ ଭାର୍ଗବ ଚ୍ୟବନ
ନର୍ମଦା ନଦୀକୁ ଗଲେ କରିବାକୁ ସ୍ନାନ ।
ନକୁଳେଶ୍ୱର ତା ନାମ ଅଛି ଏକତୀର୍ଥ
ସେ ସ୍ଥାନେ ଅଛନ୍ତି ଦେବ ଦେବ ବିଶ୍ୱନାଥ ।
ସେହିବାଟ ଦେଇ ନଦୀ ଘାଟରେ ମିଳିଲେ
ନର୍ମଦା ନଦୀର ଜଳ ମଧରେ ବୁଡ଼ିଲେ ।
କେକରଲୋହିତ ନାମେ ନାଗେକ ଅଇଲା
ଜଳେ ଥାଇ ମୁନିଙ୍କର ଚରଣ ଧଇଲା ।
ମହାଭୟରେ ଆରତ ହୋଇ ମୁନିବର
ପଳାଇ ନ ଆସିପାରି ଜଳର ଭିତର ।
ହୃଦୟ ମଧରେ କଲେ ହରିଙ୍କି ସ୍ମରଣ
ସୁମରିବା ମାତ୍ରେ ନାଗ ହେଲା ବିଷହୀନ ।
ସେହି ମହାଭୟଙ୍କର ପନ୍ନଗ କବଳ
କରିଣ ଋଷିଙ୍କି ଘେନି ଗଲା ରସାତଳ ।
ତଦନ୍ତେ ସେ ବିଷହୀନ ନାଗଙ୍କ ଉତ୍ତମ
ଛାଡ଼ିଦ୍ୟନ୍ତେ ସେ ସ୍ଥାନରେ ସେ ଋଷିସତ୍ତମ ।
ଭ୍ରମଣ କରନ୍ତେ ତାଙ୍କ ନାଗକନ୍ୟା ଆସି
ମିଳି ଚାରିଦିଗେ ବେଢ଼ି ପୂଜାକଲେ ବସି ।
ଭ୍ରମି ଯାଉଁ ଯାଉଁ ମୁନିଶ୍ରେଷ୍ଠ ଦୈତ୍ୟମାନେ
ବିଶେଷରେ ପୂଜାକଲେ ଯେ ବିଧି ବିଧାନେ ।
ପ୍ରବେଶ ହୋଇଲେ ଯାଇଁ ଦାନବଙ୍କ ପୁରେ
ଦୈତ୍ୟେନ୍ଦ୍ର ପ୍ରହ୍ଲାଦତାଙ୍କୁ ଦେଖିଲେ ନେତ୍ରରେ
ଯଥାବିଧି ବିଧାନରେ ମୁନିଙ୍କି ପୂଜିଲେ
ପୂଜା ଅନ୍ତେ ଆସନରେ ଚ୍ୟବନ ବସିଲେ ।

ଦୈତ୍ୟରାଜ ପ୍ରହ୍ଲାଦର ପୁଚ୍ଛିଲେ କୁଶଳ
ପ୍ରହ୍ଲାଦ ମଧ ପୁଚ୍ଛିଲେ ମୁନିଙ୍କ ମଙ୍ଗଳ ।
ପ୍ରହ୍ଲାଦଙ୍କ ମୁଖ ଚାହିଁ ବୋଇଲେ ଚ୍ୟବନ
ନକୁଳେଶ୍ୱର ତୀର୍ଥରେ କରୁଥିଲୁ ସ୍ନାନ ।
ସେ ତୀର୍ଥରେ ସ୍ନାନକଲେ ହୁଏ ମହାଫଳ
ନର୍ମଦା ନଦୀର ମଧେ ସେ ପବିତ୍ର ଜଳ ।
ତହିଁ ସ୍ନାନ କରୁଁ ମୋତେ ସର୍ପ ବଳେ ଧରି
ଆଣିଲା ହେ ଦୈତ୍ୟପତି ଏ ପାତାଳପୁରୀ ।
ସେ କାରଣୁ ହେଲା ଆଜି ତୁମ୍ଭର ସାକ୍ଷାତ
ଚ୍ୟବନଙ୍କ କଥା ଶୁଣି ସେ ପ୍ରହ୍ଲାଦ ଦୈତ୍ୟ
ବୋଇଲେ ଭୋ ମହାମୁନି ପୃଥିବୀ ମଣ୍ଡଳେ
ଗଗନମଣ୍ଡଳେ ଅବା ସପତ ପାତାଳେ ।
କେତେ ତୀର୍ଥ ଅଛି ତାହା ଅନୁଗ୍ରହ କରି
ମୋହ ଆଗରେ କହନ୍ତୁ ଆହେ ତପଚାରୀ ।
ଚ୍ୟବନ ବୋଇଲେ ଆହେ ମହାବାହୁ ଶୁଣ
ଏ ତିନି ପୁରେ ବହୁତ ତୀର୍ଥ ଅଛି ଜାଣ ।
ତାହାର ମଧେ ପ୍ରଧାନ ତୀର୍ଥ ଅଛି ଯେତେ
ବର୍ଣ୍ଣନ କରୁଛି ତାହା ମୁଁ ତୁମ୍ଭ ଅଗ୍ରତେ ।
ପୃଥ୍ୱୀରେ ନୈମିଷ ଅନ୍ତରୀକ୍ଷରେ ପୁଷ୍କର
ରସାତଳେ ଚକ୍ରତୀର୍ଥ ଖ୍ୟାତ ତ୍ରିଲୋକର ।
ପୁଲସ୍ତ୍ୟ ଋଷି କହିଲେ ଆହେ ମହାମୁନି
ଭାର୍ଗବଙ୍କର ଏ ବାକ୍ୟ ପ୍ରହ୍ଲାଦ ଯେ ଶୁଣି ।
ନୈମିଷ ତୀର୍ଥକୁ ଯିବା ପାଇଁ ମନ କଲା
ଦାନବମାନଙ୍କୁ ଡାକି ଏମନ୍ତ ବୋଇଲା ।
ଚାଲ ନୈମିଷ ତୀର୍ଥରେ କରିବାକ ସ୍ନାନ
ସେ ସ୍ଥାନରେ ଅଚ୍ୟୁତଙ୍କୁ କରିବା ଦର୍ଶନ ।
କେମନ୍ତେ ପୁଣ୍ଡରୀକାକ୍ଷ ପୀତାମ୍ବରଧାରୀ
ଚକ୍ଷୁ ପବିତ୍ର କରିବା ତାଙ୍କୁ ଦେଖିକରି ।
ବୋଇଲେ ପୁଲସ୍ତ୍ୟ ମୁନି ପ୍ରହ୍ଲାଦ ଏମନ୍ତ
ବଦନ୍ତେ ଦୈତ୍ୟ ଦାନବ ହୋଇଣ ଉସତ ।
ସମାରୋହେ ରସାତଳୁ ବାହାର ହୋଇଲେ
ନୈମିଷ କାନନ ମଧେ ସକଳେ ମିଳିଲେ ।
ଆନନ୍ଦ ମନରେ ସ୍ନାନ କଲେ ମହାବଳ
ଅତି ପବିତ୍ର ନିର୍ମଳ ଅଟଇ ସେ ଜଳ ।
ସ୍ନାନସାରି ସେ ପ୍ରହ୍ଲାଦ ଦାନବ ଈଶ୍ୱର
ମୃଗୟା କଲା ସେ ବନେ ଧରି ଧନୁଶର ।

ପଳାଇଲେ ବଣଜନ୍ତୁ ଇତସ୍ତତଃ ହୋଇ
ପ୍ରହ୍ଲାଦ ଯେ ପଛେ ପଚେ ଗୋଡ଼ାଇ ଅଛଇ ।
କେତେଦୂରେ ସରସ୍ୱତୀ ନଦୀକି ଦେଖିଲା
ପବିତ୍ର ନିର୍ମଳ ଜଳ ତହିଁରେ ଯେ ଥିଲା ।
ତାହାକୁ ଦେଖି ଦେଖି ସେ ଗଲା ଖଣ୍ଡେଦୂର
ସେଠାରେ ଦେଖିଲା ଏକ ଶାଳ ତରୁବର ।
ବଡ଼ ବଡ଼ ଡାଳ ତହିଁ ଅଛଇ ବହୁତ
ବାଣ ସମୂହେ ସେ ବୃକ୍ଷ ହୋଇଛି ଆବୃତ ।
ବାଣେ ବାଣେ ପରସ୍ପରେ ଲାଗିବାର ଦେଖି
ଦୈତ୍ୟପତି ପ୍ରହଲାଦ ନ ହୋଇଣ ଦୁଃଖୀ ।
ଅତୁଳ କ୍ରୋଧରାଶିର ବଶୀଭୂତ ହେଲା
ନାଗୋପବୀତ ଶରକୁ ଅଦ୍ଭୁତ ମଣିଲା ।
ତଦନ୍ତେ ସେ କେତେ ଦୂରେ ଦେଖିଲାକ ପୁଣି
କୃଷ୍ଣାଜିନ ପିନ୍ଧିଛନ୍ତି ଦୁଇଗୋଟି ମୁନି ।
ଅତ୍ୟନ୍ତ ଉନ୍ନତ ତାଙ୍କ ଶିରେ ଜଟାଭାର
ମନ ତପସ୍ୟାରେ ରତ ହୋଇଛି ତାଙ୍କର ।
ତାହାଙ୍କର ଦୁଇପାଖେ ଅଛି ଧନୁ ଦୁଇ
ଶାର୍ଙ୍ଗ ଅଜଗବ ତାର ନାମ ଯେ ଅଟଇ ।
ସେହି ଦୁଇ ଶରାସନ ଅତି ସୁଲକ୍ଷଣ
ଅକ୍ଷୟ ତୂଣୀର ଦ୍ୱୟେ ହୋଇଛି ଭୂଷଣ ।
ତାହାଙ୍କୁ ଏପରି ଦେଖି ପ୍ରହ୍ଲାଦ ଭାବଇ
ଦାମ୍ଭିକ ଅଟନ୍ତି ନିଶ୍ଚେ ଏହି ମୁନିଦୁଇ ।
ଏମନ୍ତ ବିଚାର କରି ସେ ପ୍ରହ୍ଲାଦ ଦୈତ୍ୟ
ନର ନାରାୟଣଙ୍କୁ ଯେ ବୋଇଲା ଏମନ୍ତ ।
ତୁମ୍ଭେ ଦୁହେଁ କି ହେ ଧର୍ମ ବିନାଶନକାରୀ
ଦମ୍ଭରେ ଚିତ୍ତ ପ୍ରବୃତ୍ତ ହୋଇଛି ତୁମ୍ଭରି ।
ତପସ୍ୟା କରୁଛ ଶିରେ ଜଟାଭାର ବହି
ଏପରି ଆୟୁଧ ଦୁଇ ରଖିଛ କିମ୍ପାଇଁ ।
ଏହା ଶୁଣି କହିଲେକ ନର ନାରାୟଣ
ତୁମ୍ଭର କି ଚିନ୍ତା ଏଥେ ଆହେ ଦୈତ୍ୟରାଣ ।
ଯାହାର ସାମର୍ଥ୍ୟ ଥାଏ ସେ ଯାହା କରଇ
ତାହାର ସେ କାର୍ଯ୍ୟସିଦ୍ଧି ଅବଶ୍ୟ ହୁଅଇ ।
ଏହାଶୁଣି ବୋଇଲେକ ଧର୍ମାତ୍ମା ପ୍ରହ୍ଲାଦ
ଧର୍ମ ପ୍ରବର୍ତ୍ତକ ମୁହିଁ ଦୈତ୍ୟକୁଳ ଇନ୍ଦ୍ର ।
ଜୀଇଥାଉଁ ଥାଉଁ କିବା ସାମର୍ଥ୍ୟ ତୁମ୍ଭର
ନର ନାରାୟଣ କଲେ ତାର ପ୍ରତ୍ୟୁତ୍ତର ।

ଆମ୍ଭ ଦୁହିଁଙ୍କର ଅଛି ପ୍ରଚଣ୍ଡ ଶକତି
ଯୁଦ୍ଧେ ଜିଣି ନ ପାରିବ ଆମ୍ଭଙ୍କୁ କେ ବ୍ୟକ୍ତି ।
ପ୍ରତିଜ୍ଞା କଲାକ ଶୁଣି କ୍ରୋଧେ ଦୈତ୍ୟେଶ୍ୱର
ଏହାଙ୍କ ସଙ୍ଗତେ ଆଜି କରିବି ସମର ।
ଯେକୌଣସି ପ୍ରକାରେ ମୁଁ ଏହାଙ୍କୁ ଜିଣିବି
ଆଜି ଏ ମହୀରେ ଧର୍ମରକ୍ଷା କରିଯିବି ।
ଏପରି ପ୍ରତିଜ୍ଞା କରି ଦାନବ ରାଜନ
ଧନୁର ଟଙ୍କାର ଧ୍ୱନି କଲା ଘନ ଘନ ।
ଧନୁ ଟଙ୍କାରିଲା ଏହି ଅଭିପ୍ରାୟେ ସେହି
ଶବ୍ଦ ଶୁଣି ଦୈତ୍ୟବଳ ଆସିଲେକ ଧାଇଁ ।
ତାହା ଦେଖି ଅଜଗବ ଧନୁ ଧରି କର
ବିନ୍ଧିଲେ ଅନେକାନେକ ତୀକ୍ଷ୍ଣ ତୀକ୍ଷ୍ଣ ଶର ।
ବାଣେ କାଟି ପକାଇଲା ତାହା ଦୈତ୍ୟପତି
ଦେଖିକରି ନର ପୁଣି ହୋଇ କୋପମତି ।
ମହାଧନୁକୁ ଆମଞ୍ଚି ବିନ୍ଧିଲେକ ବାଣ
ବିନ୍ଧିଲାକ ପୁଣି ଦୁଇ ବାଣ ଦୈତ୍ୟରାଣ ।
ଏହିରୂପେ ଏକବାଣ ବିନ୍ଧିଲେକ ନର
ପ୍ରହ୍ଲାଦ ବିନ୍ଧଇ ତାଙ୍କୁ ଦୁଇଗୋଟି ଶର ।
ନର ଯେବେ ତିନି ବାଣ ମାରନ୍ତି ତାହାକୁ
ଚାରିଗୋଟି ବାଣ ବିନ୍ଧେ ପ୍ରହ୍ଲାଦ ନରଙ୍କୁ ।
ନର ଯେବେ ପାଞ୍ଚ ଶର କରନ୍ତି ପ୍ରହାର
ପ୍ରହ୍ଲାଦ ବିନ୍ଧଇ ଛଅଗୋଟି ତୀକ୍ଷ୍ଣ ଶର ।
ପୁନର୍ବାର ଋଷିଶ୍ରେଷ୍ଠ ନର ଛଅ ବାଣ
ବିନ୍ଧନ୍ତେ ସେ ନବ ବାଣ ବିନ୍ଧେ ଦୈତ୍ୟରାଣ ।
ପୁନରପି ବିନ୍ଧିଲେକ ନର ଷଟତ୍ରିଂଶ
ବିନ୍ଧିଲାକ ଦ୍ୱିସପ୍ତତି ବାଣ ଦୈତ୍ୟଈଶ ।
ଏକଶତ ବାଣ ପୁଣି ବିନ୍ଧିଲେକ ନର
ଦୈତ୍ୟପତି ବିନ୍ଧିଲାକ ତିନିଶତ ବାଣ ।
ଛଅଶ ବାଣ ବିନ୍ଧିଲେ ନର ତପୋଧନ
ଦଶଶତ ବାଣ ବିନ୍ଧେ ଦାନବ ରାଜନ ।
ଦୁହେଁ ମହାବଳବନ୍ତ ପୁଣି ରୋଷଭରେ
ଅସଂଖ୍ୟ ଶର ମୋଚନ କଲେ ପରସ୍ପରେ ।
ଏକାକେ ସେ ମହାଋଷି ନର ଶର ଜାଳ
ଆଚ୍ଛାଦିଲା ଅନ୍ତରୀକ୍ଷ ଭୂମି ରସାତଳ ।
ଦୈତ୍ୟପତି ଅଗ୍ନିମୁଖ ବାଣମାନ ବିନ୍ଧି
ଋଷିଙ୍କର ଶର ଜାଳ ପକାଇଲା ଛେଦି ।

ଦୁହେଁ ଅତି ବୀର୍ଯ୍ୟବନ୍ତ ଜାଣନ୍ତି ସମର
ସନ୍ଧାନ କରନ୍ତି ପୁଣି ଘୋରରୂପ ଶର ।
ପ୍ରଧାନ ପ୍ରଧାନ ଅସ୍ତ୍ର ପ୍ରୟୋଗ କରନ୍ତି ।
ଏଥିଅନ୍ତେ ମହାକ୍ରୋଧେ ଦୈତ୍ୟକୁଳ ପତି ।
ଭୟଙ୍କର ବ୍ରହ୍ମଅସ୍ତ୍ର ଧନୁରେ ଯୋଚିଲା
ମଧ୍ୟାହ୍ନ ଆଦିତ୍ୟ ପ୍ରାୟ ତେଜ ବିକଶିଲା ।
ନାରାୟଣ ଅସ୍ତ୍ର ନର କଲେକ ସନ୍ଧାନ
ଆକାଶମାର୍ଗରେ ଭେଟ ହେଲେ ଦୁଇବାଣ ।
ଅନ୍ୟୋଽନ୍ୟ ଆଘାତ ପାଇ ପଡ଼ିଲେ ଭୂମିରେ
ଅସ୍ତ୍ର ବ୍ୟର୍ଥ ହୁଅନ୍ତେ ଦୈତ୍ୟପତି କ୍ରୋଧଭରେ ।
ମୂର୍ଚ୍ଛିତ ହୋଇ ହସ୍ତରେ ଧରି ଗଦାବର
ରଥର ଉପରୁ ଡେଇଁ ପଡ଼ିଲା ସତ୍ୱର ।
ଗଦା ହସ୍ତେ ଆସିବାରଦେଖି ପ୍ରହ୍ଲାଦକୁ
ନାରାୟଣ ଋଷି ପଛ କରି ସେ ନରଙ୍କୁ ।
ଧାଇଁଲେକ ଯୁଝିବାକୁ ହେ ଋଷି ନାରଦ
ହସ୍ତେ ଗଦାବର ଧରି ଧାମଇଁ ପ୍ରହ୍ଲାଦ ।
ବାମପାଣି ତପୋନିଧି ଉଦାର ବିକ୍ରମ
ଲୋକପତି ଋଷି ସଙ୍ଗେ ହେଲା ସମାଗମ ।
ପୁରାଣ ପୁରୁଷ ସେହି ନର ନାରାୟଣ
ଦ୍ୱିଜ ଗୋପୀନାଥ ତାଙ୍କ ଚରଣେ ଶରଣ ।

=+=

## ପ୍ରହ୍ଲାଦ ବର ପ୍ରଦାନ

ଶାର୍ଙ୍ଗପାଣି ନାରାୟଣ ଋଷିଙ୍କ ଅଗ୍ରତେ
ଆସିବା ଦେଖି ଦାନବ ଈଶ୍ୱର ତ୍ୱରିତେ ।
ଗଦା ବୁଲାଇ ତାହାଙ୍କ ମସ୍ତକେ ପିଟିଲା
ହେ ନାରଦ ଶୁଣ ଏଥିଅନ୍ତେ ଯାହା ହେଲା ।
ଗଦାର ଆଘାତ ପାଇ ନାରାୟଣଙ୍କର
ଅଗ୍ନି ବୃଷ୍ଟି ତୁଲ୍ୟ ନେତ୍ରୁ ବହିଲାକ ନୀର ।
ଗିରିଶୃଙ୍ଗେ ବଜ୍ରତୁଲ୍ୟ ନାରାୟଣ ଶିରେ
ବାଜି ଖଣ୍ଡ ଖଣ୍ଡ ହୋଇ ପଡ଼ିଲା ଭୂମିରେ ।
ତା ଦେଖି ପ୍ରହ୍ଲାଦ ଶୁଣି ଆରୋହିଲା ରଥ
ଶରାସନରେ ଯେ ବାଣ ଯୋଚିଲା ତ୍ୱରିତ ।
ନାରାୟଣଙ୍କ ଉପରେ ପ୍ରହାରିଲା ରୋଷେ
ପବନହୁଁ ଅତିଖରେ ଶର ଧାଇଁଆସେ ।
ଛେଦି ପକାଇଲେ ପ୍ରତିଶରେ ନାରାୟଣ
ବାଣେ କଲେ ଦୈତ୍ୟପତି ଅଙ୍ଗକୁ ବିଦୀର୍ଣ୍ଣ ।
ମର୍ମଭେଦୀ ବାଣମାରି ଦାନବ ଈଶ୍ୱର
ନାରାୟଣଙ୍କୁ ସେ କଲା ରୁଧିରେ ଜର୍ଜର ।
ସେ ଦୁଇ ବୀରଙ୍କ ଯୁଦ୍ଧ ଦେଖିବା ମାନସେ
ଅମରବୃନ୍ଦ ମିଳିଲେ ଅମର ପ୍ରଦେଶେ ।
ଆନନ୍ଦେ ଦୁନ୍ଦୁଭି ବାଦ୍ୟ ରହି ବଜାଇଲେ
ସେ ଦୁଇ ବୀରଙ୍କ ଶିରେ ପୁଷ୍ପବୃଷ୍ଟି କଲେ ।
ଦୈତ୍ୟଗଣ ଶୂନ୍ୟେ ରହି ଦେଖିଲେକ ରଣ
ତାହାଙ୍କର ହର୍ଷ ଜାତ କରିବା କାରଣ ।
ଦୈତ୍ୟପତି ନାରାୟଣ ଦୁହେଁ ଧନୁ ଧରି
ଶର ବୃଷ୍ଟି କଲେ ମେଘ ବରଷିଲା ପରି ।
ଆକାଶ ଦିଗ ବିଦିଗ କଲେକ ଆଚ୍ଛନ୍ନ
ଆହେ ମୁନି ଏ ସମୟେ ଋଷି ନାରାୟଣ ।
ଧନୁ ଓଟାରି ମାର୍ଗଣଗଣ ଦେଲେ ବିନ୍ଧି
ଫୁଟିଗଲା ପ୍ରହ୍ଲାଦର ମର୍ମସ୍ଥାନ ସନ୍ଧ ।
ମହାକୋପେ ଦୈତ୍ୟପତି ଧନୁକୁ ଓଟାରି
ବାଣ ବରଷିଲା ନାରାୟଣଙ୍କ ଉପରି ।
ହୃଦୟ ବଦନ ବାହୁ କଲା ଛିନ୍ନଭିନ୍ନ
ତହିଁରେ ସେ ନାରାୟଣ ନୋହି ମତିଛନ୍ନ ।
ଅର୍ଦ୍ଧଚନ୍ଦ୍ର ବାଣ ମାରି କାଟିଲେ ତା ଚାପ
ନିମିଷକେ ଆନ ଧନୁ ଧରି ଦୈତ୍ୟଭୂପ ।
ଗୁଣ ଦେଇ ତୀକ୍ଷ୍ଣ ବାଣ କରନ୍ତେ ବର୍ଷଣ
ପ୍ରତି ଅସ୍ତ୍ରେ କାଟିଲେ ତା ଋଷି ନାରାୟଣ ।
କ୍ଷୁର ଅସ୍ତ୍ରେ କାଟିଲେକ ପ୍ରହ୍ଲାଦର ଧନୁ
ଏହି ରୂପେ ସେ ହରିଣ୍ୟକଶିପୁର ସୂନୁ ।
ଯେତେ ଧନୁ ଧରେ ତାହା କରନ୍ତି ଛେଦନ
ଏରୂପେ ଛିନ୍ନ ହୁଅନ୍ତେ ସର୍ବ ଶରାସନ ।
ପରିଘ ହସ୍ତେ ଧଇଲା ଦାନବ ଈଶ୍ୱର
ଲୁହାରେ ଗଢ଼ା ହେବାରୁ ଦୃଢ଼ ତା ଶରୀର ।
ବୁଲାନ୍ତେ ତାହାକୁ ଧରି ଚକ୍ରଗତି କରି
ନାରାୟଣ କାଟିଲେ ତା ତୀକ୍ଷ୍ଣ ଶର ମାରି ।
ପରିଘ ଛନ୍ନ ହୁଅନ୍ତେ ଦେଖି ଦୈତ୍ୟେଶ୍ୱର
ବୁଲାଇଲା ସେ ହସ୍ତେ ଗୋଟାଏ ମୁଦ୍‌ଗର ।
ସେ ଭୀଷଣ ମୁଦ୍‌ଗରକୁ ଦେଖି ନାରାୟଣ
ଦଶଖଣ୍ଡ କରିଦେଲେ ମାରି ଦଶବାଣ ।

ମୁଦ୍‌ଗର ବିଅର୍ଥ ହେବା ଦେଖି ଦୈତ୍ୟପତି
କ୍ରୋଧଭରେ ପାଶଅସ୍ତ୍ର ଧଇଲା ଝଟତି ।
ପ୍ରହାରନ୍ତେ ତାହାଦେଖି ଋଷି ନାରାୟଣ
କାଟିପକାଇଲେ ତାକୁ ମାରି ତୀକ୍ଷ୍ଣ ବାଣ ।
ପାଶ ଛିଡ଼ିଯିବା ଦେଖି ଦୈତ୍ୟକୁଳ ପତି
ପ୍ରହାରିଲା ଧରି ଗୋଟା ଭୀଷଣ ଶକତି ।
କ୍ଷୁରଅସ୍ତ୍ରେ କାଟିଲେ ତା ଋଷି ନାରାୟଣ
ଶକ୍ତି ବ୍ୟର୍ଥ ହେବା ଦେଖି ଦୈତ୍ୟକୁଳ ରାଣ ।
ମହାଧନୁ ଧରି କରେ ନାରାଚ ପ୍ରହାର
ଦିବସ ଯେ ଦେଖାଗଲା ରାତ୍ର ପରକାର ।
ହେ ନାରଦ ତାହା ଦେଖି ଋଷି ନାରାୟଣ
ନାରାଚରେ କଲେ ତାର ହୃଦ ବିଦାରଣ ।
ପଡ଼ିଗଡ଼ି ଦୈତ୍ୟପତି ରଥର ଉପରେ
ସାରଥି ତାହାର ରଥ ନେଲା ସ୍ଥାନାନ୍ତରେ ।
ଅଳ୍ପକ୍ଷଣ ମଧ୍ୟରେ ସେ ଚେତନା ପାଇଲା
ଶରାସନ ଧରି ପୁଣି ଯୁଦ୍ଧକୁ ଅଇଲା ।
ବୋଇଲେକ ନାରାୟଣ ଶୁଣ ଦୈତେଶ୍ୱର
ପ୍ରାତଃକାଳ ହୋଇଲାଣି ନିତ୍ୟକର୍ମ ସାର ।
ତଦନ୍ତେ କରିବ ଯୁଦ୍ଧ ଇଚ୍ଛା ଅନୁସାରେ
ନାରାୟଣ କହନ୍ତେ ଯେ ଏହି ପରକାରେ ।
ନୈମିଷାରଣ୍ୟକୁ ଗଲା ଦାନବ ରାଜନ
ଆପଣାର ନିତ୍ୟକ୍ରିୟା କରି ସମାପନ ।
ବିଚାରିଲା ସେ ଦାମ୍ଭିକ ଋଷିକି କେମନ୍ତେ
ଯୁଦ୍ଧେ ପରାସ୍ତ କରିବି ଏହା ଭାଳି ଚିତ୍ତେ ।
କଲେକ ସଂଗ୍ରାମ ପୁଣି ଋଷିଙ୍କ ସଙ୍ଗରେ
ପ୍ରତିଦିନ ଯୁଦ୍ଧ ହୁଏ ଏହି ପରକାରେ ।
ଦେବ ବର୍ଷ ଗଣନାରେ ସହସ୍ର ବରଷ
ଋଷି ସଙ୍ଗେ ଯୁଦ୍ଧ କଲା ସେ ଦାନବ ଈଶ ।
ହେ ନାରଦ ଜୟ କରି ନ ପାରିଲା ତାଙ୍କୁ
ତହୁଁ ଦୈତ୍ୟପତି ଗଲା ବିଷ୍ଣୁଙ୍କ ପାଖକୁ ।
କହିଲା ହେ ଦେବଦେବ ଈଶ ହୃଷିକେଶ
ସଂଗ୍ରାମ କଲଇଁ ମୁହିଁ ସହସ୍ର ବରଷ ।
ନରନାରାୟଣଙ୍କୁ ମୁଁ ନ ପାରିଲି ଜିଣି
ଏଥିର କାରଣ ମୋତେ କହ ଚକ୍ରପାଣି ।
କହିଲେକ ପୀତବାସ ଶୁଣ ହେ ପ୍ରହ୍ଲାଦ
ସୁରାସୁର ନର ମିଳି ତାଙ୍କ ସଙ୍ଗେ ଯୁଦ୍ଧ ।
କଲେ ମଧ୍ୟ ନ ପାରିବେ ତାଙ୍କୁ ଜୟ କରି
ଧର୍ମଙ୍କ ନନ୍ଦନ ସେହି ଦୁଇ ତପଶ୍ଚାରୀ ।
ମହାବଳ ମହାବାହୁ ମହାବୀର୍ଯ୍ୟବନ୍ତ
ତାଙ୍କ ସଙ୍ଗେ ଯୁଝିବାର ନୁହଇ ଉଚିତ ।
ପ୍ରହ୍ଲାଦ କହିଲେ ଦେବ ଯେବେ ଏହା ଧ୍ରୁବ
ତାଙ୍କୁ ଜିଣି ନ ପାରିବେ ଦେବ କି ଦାନବ ।
ମୋହର ପ୍ରତିଜ୍ଞା ମିଥ୍ୟା ହୋଇବ କିପରି
ମନେ ବିଚାରନ୍ତି ଆହେ ଶଙ୍ଖ ଚକ୍ରଧାରୀ ।
ପ୍ରତିଜ୍ଞା ବିଫଳ ହେଲେ ମୋ ସମାନ ଜନ
କେମନ୍ତେ କିରବି ଅବା ଜୀବନ ଧାରଣ ।
ଏହି କାରଣରୁ ଆହେ ପ୍ରଭୁ ଚକ୍ରପାଣି
ତୁମ୍ଭ ଆଗେ ଶରୀରକୁ ଶୋଷିବି ଏକ୍ଷଣି ।
ପୁଲସ୍ତ୍ୟ ଋଷି କହିଲେ ଶୁଣ ହେ ନାରଦ
ବିଷ୍ଣୁଙ୍କ ଆଗରେ କହି ଏମନ୍ତ ପ୍ରହ୍ଲାଦ ।
ସର୍ବାଙ୍ଗସ୍ନାନ କରିଣ ତହିଁ ଛିଡ଼ାହେଲେ
ସନାତନ ବ୍ରହ୍ମ ମନ୍ତ୍ର ହୃଦୟେ ଜପିଲେ ।
ତାହା ଦେଖି ପୀତାମ୍ବର ଧାରୀ ଜନାର୍ଦ୍ଦନ
ବୋଇଲେ ମୋ କଥା ଶୁଣ ଦାନବରାଜନ ।
ଭକ୍ତିରେ ତାହାଙ୍କୁ ଜୟ କର ତୁମ୍ଭେ ଯାଇ
ଯୁଦ୍ଧରେ କଦାପି ତୁମ୍ଭେ ନୋହିବ ବିଜୟୀ ।
ପ୍ରହ୍ଲାଦ କହିଲା ଆହେ ଦେବ ଦେବ ହରି
ତ୍ରିଭୁବନ ଲୋକେ ଯେବେ ତାଙ୍କୁ ଯିବେ ହାରି
ତଥାପି ମୁଁ ତୁମ୍ଭ ବଳେ କୃପାରେ ଅମର
ମୋତେ ଜିଣି ନ ପାରିବେ କଲେ ସେ ସମର ।
ତୁମ୍ଭ କୃପାରୁ ଜିଣିଛି ମୁହିଁ ତ୍ରିଭୁବନ
ମୋତେ ହାରି ଯାଇଅଛି ସହସ୍ର ଲୋଚନ ।
ଯେତେ ବଳବନ୍ତ ହେଉ କିନା ଧର୍ମସୁତ
ଅବଶ୍ୟ ତାହାଙ୍କୁ ଯୁଦ୍ଧେ କରିବି ପରାସ୍ତ ।
ପୀତବାସ କହିଲେକ ହେ ଦାନବ ବର
ମୁହିଁ ନର ନାରାୟଣ ରୂପେ ଅବତାର ।
ଲୋକ ରକ୍ଷା ଧର୍ମ ଶିକ୍ଷା ଦେବାପାଇଁ ତପ
କରୁଛି ତୁମ୍ଭେ ଜାଣିଥା ଏକଥା ସ୍ୱରୂପ ।
ଯେବେ ଜୟ କରିବାକୁ କରୁଛ ପ୍ରାର୍ଥନା
ତେବେ ଯାଇଁ କର ବେଗେ ତାଙ୍କ ଆରାଧନା
ଭକ୍ତିରେ ଅବଶ୍ୟ ଜୟ ହୋଇବ ତୁମ୍ଭର
ତାହାଙ୍କର ସେବା କର ହେ ଦାନବ ବର ।

ପୁଲସ୍ତ୍ୟ କହିଲେ ଶୁଣ ହେ ମୁନି ନାରଦ
ବିଷ୍ଣୁଙ୍କର ଏ ବଚନ ଶୁଣି ପ୍ରହଲାଦ ।
ଅତି ଆନନ୍ଦିତ ହୋଇ ଅନ୍ଧକକୁ ଡ଼ାକି
ବୋଇଲା ଦୈତ୍ୟ ଦାନବଗଣ ତୁମ୍ଭେ ରଖି
ରାଜ୍ୟକୁ ଶାସନ କର ଧର୍ମ ଅନୁସାରେ
ହରିଣ୍ୟର ନନ୍ଦନକୁ କହ ଏ ପ୍ରକାରେ ।
ତା ହସ୍ତରେ ରାଜ୍ୟଭାର ଦେଇ ଚଳିଗଲା ।
ବଦରିକା ଆଶ୍ରମରେ ଯାଇଁ ପ୍ରବେଶିଲା ।
ନରନାରାୟଣଙ୍କୁ ଯେ କରି ଦରଶନ
କୃତାଞ୍ଜଳିପୁଟେ କଲା ଚରଣ ବନ୍ଦନ ।
ଅବିନାଶୀ ନାରାୟଣ କହିଲେ ହେ ବୀର
ଆମ୍ଭଙ୍କୁ ନ ଜିଣି କିମ୍ପା ନମସ୍କାର କର ।
ପ୍ରହ୍ଲାଦ ବୋଇଲା ପ୍ରଭୋ ଆପଣ ବିଜୟୀ
ଆପଣଙ୍କଠାରୁ ବଡ଼ କିଏ ବା ଅଛଇ ।
ଆପଣ ଅନନ୍ତରୂପୀ ପ୍ରଭୁ ନାରାୟଣ
ଆପଣତ ପୀତବାସ ଦେବ ଜନାର୍ଦ୍ଦନ ।
ଆପଣ ପୁଣ୍ଡରୀକାକ୍ଷ ଶାର୍ଙ୍ଗ ଚାପଧର
ଆପଣ ତ ଅବିନାଶୀ ବିଷ୍ଣୁ ମହେଶ୍ୱର ।
ଆପଣ ତ ସନାତନ ପୁରୁଷ ଉତ୍ତମ
ଆପଣଙ୍କୁ ଯୋଗୀଗଣ କରନ୍ତି ଯେ ଧ୍ୟାନ ।
ଆପଣଙ୍କ ପାଦପୂଜା କରନ୍ତି ମନୀଷୀ
ସ୍ନାତକେ ଯେ ତବ ନାମ ଜପୁଥାନ୍ତି ବସି ।
ଆପଣଙ୍କ ଯାଜ୍ଞିକେ ଯେ କରନ୍ତି ଯାଜନ
ଆପଣ ଅଚ୍ୟୁତ ହରି ଶ୍ରୀମଧୁସୂଦନ ।
ଆପଣତ ହୃଷୀକେଶ ପ୍ରଭୁଚକ୍ରପାଣି ।
ଆପଣତ ଧରାଧର ଦେବ ଚୂଡ଼ାମଣି ।
ଆପଣତ ହୟ ଶିରା ମତ୍ସ୍ୟ କଚ୍ଛରୂପୀ
ଆପଣତ ହିରଣ୍ୟାକ୍ଷ ରିପୁ ସର୍ବବ୍ୟାପୀ ।
ଆପଣ ଶୂକର ରୂପଧାରୀ ଭଗବାନ
ଆପଣ ନୃସିଂହରୂପୀ ମୋ ହୃଦୟ ଧନ ।
ଆପଣ ବିନାଶକାରୀ ଅଟ ମୋ ପିତାର
ଆହେ ପ୍ରଭୁ ଆହେ ନାଥ ଆହେ ବିଶେଶ୍ୱର ।
ହେ ଖଗେନ୍ଦ୍ର କେତୁ ବ୍ରହ୍ମା ଅଟନ୍ତି ଆପଣ
ଆପଣତ ମହାଦେବ ପବନ ବରୁଣ ।
ଆପଣ ବାସବ ଅଗ୍ନି ଚନ୍ଦ୍ର ଦିବାକର
ଆପଣ ଜଙ୍ଗମ ଆଦ୍ୟ ଆପଣ ସ୍ଥାବର ।
ଆପଣ ପୃଥିବୀ ଜଳ ତେଜ ମରୁଦ୍ ବ୍ୟୋମ
ସହସ୍ର ସହସ୍ର ମୂର୍ତ୍ତି ଧରନ୍ତି ଆପଣ ।
କିଏ ଆପଣଙ୍କୁ ଜୟ କରିବ ସମରେ ।
ଭକତିରେ ଆପଣଙ୍କୁ ଯେହୁ ତୋଷିପାରେ ।
ସେ ଜିଣିପାରିବ ନିଶ୍ଚେ ତୁମ୍ଭଙ୍କୁ ହେ ନାଥ
ଆପଣତ ସର୍ବଗତ ବିନାଶ - ରହିତ
ନର ନାରାୟଣ ଋଷି ବୋଇଲେ ରାଜନ
ତବ ସ୍ତୁତି ବାକ୍ୟେ ଆମ୍ଭେ ହୋଇଲୁଁ ପ୍ରସନ୍ନ ।
ଭକ୍ତିରେ ଆମ୍ଭଙ୍କୁ ଜୟ କଲ ଆହେ ବୀର
ଆମ୍ଭେ ପରାଜିତ ହେଲୁଁ ତୁମ୍ଭେ ମାଗ ବର ।
ଯାହା ମାଗିବ ତା ଦେବୁଁ ଏ କଥା ନିଶ୍ଚୟ
ପ୍ରହ୍ଲାଦ କହିଲେ ଆହେ ପ୍ରଭୁ ଦେବରାୟ ।
ତୁମ୍ଭ ଦୁହିଁଙ୍କର ସଙ୍ଗେ କରି ମୁଁ ସମର
ସଞ୍ଚିତ ହୋଇଛି ଯେତେ ପାତକ ମୋହର
ଶାରୀରିକ ମାନସିକ ବାଚନିକ ପାପ
ସକଳ ବିନାଶ ହେଉ ଆହେ ବିଶ୍ୱରୂପ ।
ଏହି ବର ଦାନ କର ହେ କରୁଣାମୟ
ନାରାୟଣ କହିଲେକ ଆହେ ଦୈତ୍ୟରାୟ ।
ଯାହା କି ମାଗିଲ ତାହା ଅନ୍ୟଥା ନୋହିବ ।
ନିଶ୍ଚୟ ତୁମ୍ଭର ଦେହୁଁ ପାପ କ୍ଷୟ ଯିବ ।
ମାଗ ହେ ଦ୍ୱିତୀୟ ବର ଦେବୁଁ ଆମ୍ଭେ ତାହା
ଏହା ଶୁଣି ବୋଇଲାକ ଦୈତ୍ୟକୁଳ-ନାହା ।
ଯେଉଁ ଯେଉଁ ବୁଦ୍ଧି ମୋର ହୋଇବ ଉଦୟ
ସେ ବୁଦ୍ଧି କରିବ ଯେହ୍ନେ ତୁମ୍ଭଙ୍କୁ ଆଶ୍ରୟ ।
ଦେବତା ଅର୍ଚ୍ଚନେ ରତ ହେଉଥାଉଛ ନିତ୍ୟ
ତବ ଚିନ୍ତାପରାୟଣ ହେଉ ହେ ଅଚ୍ୟୁତ ।
ନାରାୟଣ ବୋଇଲେକ ନିଶ୍ଚୟ ତା ହେବ
ତୃତୀୟ ବର ପ୍ରାର୍ଥନା କର ହେ ଦାନବ ।
ବିଚାର ନ କରି ତାହା ଦେବଇଁ ମୁଁ ଆଗ ।
ପ୍ରହ୍ଲାଦ ବୋଇଲେ ପୁଣି ଆହେ ମହାଭାଗ ।
ତବ ପରସାଦେ ମୋର ସକଳ ସୁଲଭ
ଏହି ବର ଦିଅ ମୋତେ ଆହେ ପଦ୍ମନାଭ ।
ତବ ପଦ ଅରବିନ୍ଦେ ଅଚଳା ଭକତି
ରହିବ ଯେପରି ତାହା କରନ୍ତୁ ସଂପ୍ରତି ।
ନାରାୟଣ କହିଲେକ ହେବ ନିଶ୍ଚେ ତାହା
ଆବର ହୋଇବ ଯାହା ଶୁଣ ଦୈତ୍ୟ-ନାହା ।

ଆମ୍ଭ ପରସାଦେ ତୁମ୍ଭେ ଅକ୍ଷୟ ଅବ୍ୟୟ
ଅଜର ଅମର ନିତ୍ୟ ହେବ ମହାଶୟ ।
ସଂପ୍ରତି ହେ ଦୈତ୍ୟେଶ୍ୱର ଯାଇ ନିଜାଳୟେ
ଆମ୍ଭଠାରେ ଚିତ୍ତ ରଖି ଧର୍ମର ଉପାୟେ ।
ରାଜ୍ୟକୁ ଶାସନ କର ପ୍ରଜାଙ୍କୁ ଯେ ପାଳି
ଧର୍ମକର୍ମ ଅନୁଷ୍ଠାନ କର ମହାବଳି ।
ପୁଲସ୍ତ୍ୟ କହିଲେ ଲୋକନାଥ ନାରାୟଣ
ଏହିପରି କହିବାରୁ ଦୈତ୍ୟକୁଳ ରାଣ ।
ବୋଇଲା ସେ ଜଗଦ୍‌ଗୁରୁ ଛାଡ଼ିଛି ମୁଁ ରାଜ୍ୟ
କିରୂପେ ଗ୍ରହଣ ତାହା କରିବି ହେ ଆର୍ଯ୍ୟ ।
ଜଗନ୍ନାଥ ବୋଇଲେ ଯେ ଯାଇ ଆଶ୍ରମକୁ
ଧର୍ମ ଉପଦେଶ ଦିଅ ଦାନବମାନଙ୍କୁ ।
ଏ ବଚନ ଶୁଣି ଦୈତ୍ୟନାୟକ ପ୍ରଣମି
ସନ୍ତୁଷ୍ଟ ଚିତ୍ତରେ ହେଲା ନିଜାଳୟଗାମୀ ।
ଅନ୍ଧକ ପ୍ରଭୃତି ଥିଲେ ଯେ ଦାନବଗଣ
ତାହାଙ୍କୁ ବୋଇଲେ ରାଜ୍ୟ କରନ୍ତୁ ଗ୍ରହଣ ।
କିନ୍ତୁ ସେହି ଅସୁରେନ୍ଦ୍ର ରାଜ୍ୟ ପରିହରି
ସାଧମର୍ଗେ ଦାନବଙ୍କୁ ନିୟୋଜିତ କରି ।
ଅପ୍ରମେୟ କେଶବଙ୍କ ସ୍ମରଣ ଅର୍ଚ୍ଚନ
ନାମ ସଂକୀର୍ତ୍ତନ ଆଉ ଚରଣ ବନ୍ଦନ ।
ଇତ୍ୟାଦି ନବଧା ଭକ୍ତି କରି ଶୁଦ୍ଧ ଦେହେ
ଆନନ୍ଦେ ରହିଲା ଦ୍ୱିଜ ଗୋପୀନାଥ କହେ ।

=✢=

## ଦେବାସୁର ଯୁଦ୍ଧ

ପୁନରପି ପୁଲସ୍ତ୍ୟଙ୍କୁ କହିଲେ ନାରଦ
ସନାତନ ରାଜଧର୍ମ ଜାଣନ୍ତି ପ୍ରହ୍ଲାଦ ।
ସେ କେମନ୍ତେ ନେତ୍ରହୀନ ଅନ୍ଧକକୁ ରାଜ୍ୟ
ଦେଲେ ଏ ସନ୍ଦେହ ମୋର ନାଶ ତପୋବୀର୍ଯ୍ୟ
କହିଲେ ପୁଲସ୍ତ୍ୟ ଋଷି ହିରଣ୍ୟାକ୍ଷ ଦୈତ୍ୟ
ଜୀଇଥିବା ସମୟରେ ଥିଲା ତାର ନେତ୍ର ।
ସେ କାରଣୁ ଅନ୍ଧକକୁ ଦେଲେ ରାଜ୍ୟଭାର
ସେହି ରାଜ୍ୟ ଥିଲା ଯେଣୁ ପୂର୍ବେ ତାହାଙ୍କର ।
କହିଲେ ନାରଦ୍‌ମୁନି କହ ହେ ସୁବ୍ରତ
ରାଜପଦେ ଅଭିଷିକ୍ତ ହୋଇ ସେ ଦଇତ୍ୟ ।
କି କି କାର୍ଯ୍ୟ କଲା ତାହା କହନ୍ତୁ ବିସ୍ତାରି
ଆଚାର ଯେ ବ୍ୟବହାର ଥିଲା କେଉଁପରି ।

ପୁଲସ୍ତ୍ୟ କହିଲେ ସେହି ଦୈତ୍ୟେନ୍ଦ୍ର ଅନ୍ଧକ
ରାଜ୍ୟେ ଅଭିଷିକ୍ତ ହୋଇ ପୂଜିଲା ତ୍ର୍ୟମ୍ବକ
ଘୋରତପେ ଆରାଧନା କଲା ଶୂଳପାଣି
ବରପାଇ ହେଲା ସେହୁ ବୀରଙ୍କ ଅଗ୍ରଣୀ ।
ସୁର ସିଦ୍ଧ ଋଷି ନାଗଗଣ କରି ଜୟ
ଜଗତରେ ବୋଲାଇଲା ସେ ବୀର ଅଜେୟ ।
ଅବଧ୍ୟ ଅସାଦ୍ଧ ହେଲା ପ୍ରାଣିମାନଙ୍କର
ହୁତାଶନେ ଦଗ୍‌ଧ ନୋହେ ତାହାର ଶରୀର ।
ଜଳେ ବୁଡ଼ି ନ ମରେ ସେ ବର ପ୍ରସାଦରେ
ରୂପ ବର ଲାଭ କରିଥାଏ ନିଶ୍ଚିନ୍ତରେ
ଶୁକ୍ରଙ୍କୁ ସେ ପୁରୋହିତ କରି ପାଳେ ରାଜ୍ୟ
ବୀରମାନଙ୍କର ସେହି ହେଲା ପାଦପୂଜ୍ୟ ।
ଦେବତାମାନଙ୍କୁ ନିଜ ଆୟତ୍ତେ ରଖିଲା
ପୃଥିବୀର ରାଜାଙ୍କୁ ସେ ସମରେ ଜିଣିଲା ।
ଦିନେ ମେରୁ ଗିରିଶିଖେ ମିଳିଲା ଦାନବ ।
ତାହାର ଏ ଦୁଷ୍ଟପଣ ଦେଖିଣ ଦାନବ ।
ସଙ୍ଗରେ ତେତିଶକୋଟି ଦେବତାଙ୍କୁ ଘେନି
ଐରାବତ ଆରୋହିଲେ ଧରିଣ ଅଶନି ।
ଅମରାବତୀର ରକ୍ଷାବିଧାନକୁ କରି
ଯୁଦ୍ଧାର୍ଥେ ଗମନ କଲେ ସେ ମେରୁଶିଖରୀ ।
ଦିଗପାଳେ ନିଜ ନିଜ ବାହନ ଆରୋହି
ଆୟୁଧ ଧାରଣ କରି ଅଇଲେକ ବାହି ।
ଗଜବାଜୀ ରଥ ଘେନି ଦେବତା ନିକର
ଯୁଦ୍ଧ କରିବାକୁ ସ୍ୱର୍ଗୁଁ ହୋଇଲେ ବାହାର ।
ଦ୍ୱାଦଶ ଆଦିତ୍ୟ ଅଗ୍ରେ ପୃଷ୍ଠେ ତ୍ରିଲୋଚନ
ମଧ୍ୟଭାଗେ ଅଷ୍ଟବସୁ ବିଶ୍ୱଦେବଗଣ ।
ସାଧ୍ୟଗଣ ମରୁଦ୍‌ଗଣ ଅଶ୍ୱିନୀକୁମାର
ଯକ୍ଷଗଣ ଗ୍ରହଗଣ ନାଗ ବିଦ୍ୟାଧର ।
ଇତ୍ୟାଦି ଯେତେକ ଗଣ ନିଜ ନିଜ ଯାନେ
ଯୁଦ୍ଧ କରିବାକୁ ଗଲେ ମେରୁ ସନ୍ନିଧାନେ ।
ନାରଦ କହିଲେ ଆହେ ଧର୍ମଜ୍ଞ ପୁଲସ୍ତ୍ୟ
ରୁଦ୍ରାଦିଙ୍କ ନାମ କହ ବାହନ ସହିତ ।
ଗୋଟି ଗୋଟି କରି ମୋତେ କହିବ ହେ ମୁନି
ତବମୁଖୁଁ ଶୁଣିବାକୁ ଶ୍ରଦ୍ଧା ହୁଏ ପୁଣି ।
ପୁଲସ୍ତ୍ୟ କହିଲେ ଶୁଣ ଆହେ ତପୋଧନ
ମୋହର କଥାରେ ତୁମ୍ଭେ ହୁଅ ସାବଧାନ ।

କହୁଛି ବାହନ ଯେତେ ରୁଦ୍ରଗଣଙ୍କର
ପୁରନ୍ଦର ଅଟନ୍ତି ଯେ ଦେବଙ୍କ ଈଶ୍ୱର ।
ତାହାଙ୍କ ବାହନ ନାମ ଐରାବତ ଗଜ
ମହା ବୀର୍ଯ୍ୟବନ୍ତ ଅଟେ ସେହି ଗଜରାଜ ।
ପର୍ବତ ପରାୟ ଦେହ ତାହାରି ବୃହତ
ଦନୁ ହସ୍ତତଳ ହୋଇ ଅଛଇ ସେ ଜାତ ।
ଦେହଯାକ ଧଳା ତାର ଅଟେ ବଳିୟାର
ଧର୍ମରାଜଙ୍କ ବାହନ ଶୁଣି ମୁନିବର ।
ପୌଣ୍ଡ୍ରକ ତା ନାମ ସେହି ମହିଷ ଅଟଇ
ରୁଦ୍ରଙ୍କ ତେଜରୁ ଜାତ ସେ ହୋଇ ଅଛଇ ।
କାଳିଆ ତା ହେଦ ସେହି ମହା ଭୟଙ୍କର
ମନ ପ୍ରାୟ ଗତି ଅତି ଅଞ୍ଚଳ ତାହାର ।
ବରୁଣଙ୍କ ବାହନ ଯେ ଶୁଣ ତାର ନାମ
ଶିଶୁମାର ଗତି ଦିବ୍ୟ ବର୍ଣ୍ଣ ଅଟେ ଶ୍ୟାମ ।
ରୁଦ୍ର କର୍ଣ୍ଣମୂଳୁ ଜାତ ହୋଇଅଛି ସେହି
ଜଳଧି ତାହାର ନାମ ହେ ମୁନି ଗୋସାଇଁ ।
କୁବେରଙ୍କ ବାହନର ନାମ ଶୁଣ ଏବେ
ନରୋତ୍ତମ ବୋଲି ତାକୁ ବୋଲନ୍ତି ଯେଦେବେ
ଅମ୍ବିକାର ପାଦତଳୁଁ ହୋଇଛି ସେ ଜାତ ।
ତାହାର ଆକୃତି ବଡ଼ ଯେସନେ ପର୍ବତ ।
ଶଗଡ଼ର ଚକପରି ତାହାର ଲୋଚନ
ଭୟଙ୍କର ଦେଖାଯାଏ ଆହେ ତପୋଧନ ।
ବୃଷଭ ବାହନ ଏକାଦଶ ରୁଦ୍ରଙ୍କର
ସେ ସକଳ ଶ୍ୱେତବର୍ଣ୍ଣ ମହା ଭୟଙ୍କର ।
ଚନ୍ଦ୍ରମାର ରଥ ଅର୍ଦ୍ଧ ସହସ୍ର ଯୋଜନ
ହେ ମୁନିସତ୍ତମ ! ହଂସ ତାହାର ବାହନ ।
ଆଦିତ୍ୟଗଣ ବାହନ ଅଶ୍ୱ ଓଟ ରଥ
ବସୁଗଣଙ୍କ ବାହନ କୁଞ୍ଜର ଯେ ମତ୍ତ ।
ଯକ୍ଷଗଣଙ୍କର ନର ବାହନ ଅଟଇ
କିନ୍ନରଗଣମାନଙ୍କ ବାହନ ଯେ ଅହି ।
ଅଶ୍ୱିନୀକୁମାରଙ୍କର ବାହନ ତୁରଗ
ମରୁଦ୍‌ଗଣଙ୍କ ବାହନ ଅଟଇ ସାରଙ୍ଗ ।
କବିମାନଙ୍କ ବାହନ ଅଟଇ ଯେ ଶୁକ
ଗନ୍ଧର୍ବଙ୍କର ବାହନ ଅଟେ ପଦାତିକ ।
ଏହି ରୂପେ ନିଜ ନିଜ ବାହନ ଆରୋହି
ଅମର ନିକର ମହା ତେଜୋବନ୍ତ ହୋଇ ।
ବର୍ମ ପିନ୍ଧି ହର୍ଷଚିତ୍ତେ ଯୁଦ୍ଧକୁ ଅଇଲେ
ପୁଲସ୍ତ୍ୟ ମୁନିଙ୍କି ପୁଣି ନାରଦ କହିଲେ ।
ଦେବଗଣଙ୍କ ବାହନ କହିଲ ଆପଣ
କହନ୍ତୁ ଦୈତ୍ୟମାନଙ୍କ ବାହନ ଏକ୍ଷଣ ।
ପୁଲସ୍ତ୍ୟ କହିଲେ ଶୁଣ ହେ ଦ୍ୱିଜ ସତ୍ତମ
ଦାନବମାନଙ୍କ ମଧ୍ୟେ ଯେ ବୀର ଉତ୍ତମ ।
ତାହାଙ୍କର ବାହନ ଯେ କହୁଅଛି ଶୁଣ
ଅନ୍ଧକର ରଥ କଥା ଅଲୋକିତ ଜାଣ ।
କୃଷ୍ଣବର୍ଣ୍ଣ ଅଶ୍ୱଗଣ ବହନ୍ତି ତାହାକୁ
ଉପମା ଦେବାକୁ ଆଉ ନାହିଁ ସେ ରଥକୁ ।
ସେ ରଥର ଅର ସଂଖ୍ୟା ଅଟଇ ହଜାରେ
କ୍ଷଣକରେ ତିନିପୁର ସେହି ଭ୍ରମିପାରେ ।
ଏକବିଂଶ ହସ୍ତ ଅଟେ ତାର ପରିମାଣ
ପ୍ରହ୍ଲାଦର ଦିବ୍ୟ ରଥ ଚନ୍ଦ୍ରମାର ବର୍ଣ୍ଣ ।
ଆଠୋଟି ଉତ୍ତମ ଅଶ୍ୱ ବହନ କରନ୍ତି
ଶ୍ୱେତବର୍ଣ୍ଣ ସେ ପରମ ସୁନ୍ଦର ଅଟନ୍ତି ।
ବିରୋଚନ ଦାନବର ବାହନ କୁଞ୍ଜର
କୁଜମ୍ଭର ବାହନ ଯେ ଅଟେ ହୟବର ।
ଜମ୍ଭର ବାହନ ରଥ ଅଶ୍ୱ ସ୍ୱର୍ଣ୍ଣବର୍ଣ୍ଣ
ତୁରଗ ବାହନ ଅଟେ ଦୈତ୍ୟ ଶଙ୍କୁ କର୍ଣ୍ଣ ।
ହୟଗ୍ରୀବ ଦାନବର ମାତଙ୍ଗ ବାହନ
ଦୁନ୍ଦୁଭିର ବାହନ ଯେ ଅଟେ ଅହୋରଣ ।
ମୟର ବାହନ ରଥ ସେ ଅତି ବିଖ୍ୟାତ
ବିମାନ ବାହନ ଅଟେ ଶମ୍ବର ଦଇତ ।
ଅୟଃଶଙ୍କୁର ବାହନ ଅଟେ ମୃଗାଧିପ
ମହାବଳବନ୍ତ ଅଟେ ବଳି ଦୈତ୍ୟ-ଭୂପ ।
ବୃତ୍ରନାମା ଦୈତ୍ୟ ଅଟେ ଗଦା ହୟଧାରୀ
ସମର କରଇ ସେହୁ ପାଦ ଗତି କରି ।
ଏଥୁଅନ୍ତେ ଭୟଙ୍କର ହେଲା ମହାରଣ
ଧୂଳି ପଟଳରେ ଦିଗ ହୋଇଲା ଆଚ୍ଛନ୍ନ ।
କିଛି ଦୃଶ୍ୟ ନୋହିବାରୁ ଘୋର ଅନ୍ଧକାରେ
ପିତା ଯେ ପୁତ୍ରକୁ ଚିହ୍ନି ନ ପାରେ ସମରେ ।
ପୁତ୍ର ମଧ୍ୟ ପିତାକୁ ଯେ ଚିହ୍ନି ନ ପାରଇ
ସ୍ୱପକ୍ଷ କେ ପରପକ୍ଷ ଚିହ୍ନା ନ ପଡ଼ଇ ।
ଯେ ଯାହାକୁ ଧରେ ତାର ହରଇ ଜୀବନ
ଆପଣା ଆପଣା ମଧ୍ୟେ କରୁଛନ୍ତି ରଣ ।

ରଥର ଉପରେ ରଥ ଧାଏଁ ଅତି ବେଗେ
ଗଜବର ରହେ ଯାଇଁ ଗଜେନ୍ଦ୍ରର ଆଗେ ।
ପଦାତିଙ୍କ ସଙ୍ଗେ ଯୁଦ୍ଧ କଲେକ ପଦାତି
ହୟ ସଙ୍ଗେ ହୟବର ଯୁଦ୍ଧେ ଗଲା ମାତି ।
ଏହି ରୂପେ ପରସ୍ପରେ ଜୟ କାମନାରେ
ଯେ ଯାହାକୁ ମାରେ ପୁଣି ସେ ତାହାକୁ ମାରେ
ଆହେ ମୁନି ଏହିପରି ଦେବସୁର ରଣ
ହୋଇବାରୁ ମଲେ କେତେ ସୁରାସୁରଗଣ ।
ରୁଧିରର ଭୟଙ୍କର ନଦୀ ବହିଗଲା
ସେ ଯୁଦ୍ଧକ୍ଷେତ୍ରରେ ଥିବା ଧୂଳି ମରିଗଲା ।
ସେ ମହାନଦୀରେ ଜଳ ହୋଇଲା ଶୋଣିତ
ଭଉଁରୀ ହୋଇଲା ସେହି ଜଳରେ ଯେ ରଥ ।
ଯୋଦ୍ଧା ସବୁ ଭାସିଗଲେ ସେ ନଦୀ- ସ୍ରୋତରେ
ଗଜ କୁମ୍ଭେ ଭାସନ୍ତି ଯେ ମହାକର୍ମାକାରେ ।
ଶର ସବୁ ମତ୍ସ୍ୟ ରୂପେ ତହିଁରେ ଭାସନ୍ତି
ଏଣୁ କେହି ତାକୁ ପାରି ହୋଇ ନ ପାରନ୍ତି ।
ପ୍ରାସ ଅସ୍ତ୍ର ସେ ନଦୀରେ ଅଟନ୍ତି ମକର
ମହାଖଡ୍‌ଗ ଗ୍ରାହରୂପେ ଭାସେ ନିରନ୍ତର ।
ଅସ୍ତ୍ରମାନେ ହେଲେ ସେହି ନଦୀରେ ଶିଉଳୀ
ଫେନ ରାଶି ହେଲେ ତହିଁ ପତାକା ଆବଳୀ ।
ଗୃଧ୍ରକଙ୍କ ପକ୍ଷୀ ହେଲେ ମହାହଂସ ତହିଁ
ଶ୍ୟେନରୂପ ଚକ୍ରବାକେ ସେ ଶୋଭା ଦିଶଇ ।
ବାୟସେ କାଦମ୍ବ ପକ୍ଷୀ ତହିଁରେ ହୋଇଲେ
ଶୃଗାଳେ ଶ୍ୱାପଦରୂପେ ତହିଁ ବିରାଜିଲେ ।
ପିଶାଚ ଗଣରେ ହେଲା ସେ ନଦୀ ଆଛନ୍ନ
ପାରି ହୋଇ ନ ପାରିଲେ ଯେ ସାମାନ୍ୟ ଜନ ।
ରଥ ଭେଳା କରି ତହିଁ ଅମର ନିକର
ସେହି ଭୀଷଣ ନଦୀକୁ ହୋଇଗଲେ ପାର ।
ବୁଡ଼ିଗଲା ସେ ନଦୀରେ ତାହାଙ୍କ ଗୋଇଠି
ତଥାପି ସେ ପରସ୍ପର ହେଲେ ପିଟାପିଟି ।
ଜୟ ରୂପ ଧନ ସଞ୍ଚି ରଖିବା ନିମନ୍ତେ
ଯୋଦ୍ଧାମାନେ ସେ ନଦୀକୁ ତରିଲେ ତ୍ୱରିତେ ।
ଭୟାଳୁମାନଙ୍କ ମହାଭୟ ଜାତକାରୀ
ଘୋରଯୁଦ୍ଧ କଲେ ସୁରାସୁର ଅସ୍ତ୍ରଧରି ।
ରାକ୍ଷସଙ୍କ ସଙ୍ଗେ ଯୁଦ୍ଧ କଲେ ଯକ୍ଷଗଣ
ପିଶାଚେ ଆନନ୍ଦେ କଲେ ରୁଧିର ଭକ୍ଷଣ ।

ମାଂସାଶୀ ବାୟସଗଣ ରକ୍ତ ପାନ କରି
ମାଂସ ଭକ୍ଷଣ ନିମନ୍ତେ ହେଲେ ଧରାଧରି ।
ଭୀଷଣ ଗର୍ଜ୍ଜନେ ପୂର୍ଣ୍ଣ କଲେ ରଣସ୍ଥଳ
କାଆ କାଆ ରାବ ଦେଇ ଉଡ଼ନ୍ତି ସକଳ ।
ଶୃଗାଳେ ଫେତ୍କାର ଶବ୍ଦେ ପୂରାଇଲେ ମହୀ
ଯୋଦ୍ଧାମାନେ ପଡ଼ିଯାନ୍ତି ପୀଡ଼ା ପ୍ରାପ୍ତ ହୋଇ ।
କେହି କାନ୍ଦେ କେହି କରେ ଭୀଷଣ ଚିତ୍କାର
ଯୁଦ୍ଧଭୂମି ହୋଇବାରୁ ଶ୍ମଶାନ ପ୍ରକାର ।
ରଣସ୍ଥାନ ଶ୍ମଶାନ କେ ନ ଗଲା ବାରଣ
ନିକଟସ୍ଥ ହୋଇବାରୁ ତହିଁ ଶିବାଗଣ ।
ଦେବାସୁର ଯୁଦ୍ଧ ହେଲା ମହା ଭୟଙ୍କର
ଦ୍ୱନ୍ଦ୍ୱରୂପ ଶାସ୍ତ୍ରେ ବିଜ୍ଞ ଅଟନ୍ତି ଯେ ବୀର ।
ପ୍ରାଣକୁ ସେ ପଣ କରି ଖେଳିଲେକ ପଶା
ସେ ସମୟେ ହରିଣାକ୍ଷ୍ୟ ସୁତ ହୋଇ ଘୋଷା ।
ସହସ୍ର ଘୋଟକ ଯୁକ୍ତ ହୋଇଥିବା ରଥେ
ଆରୋହିଣ ଛିଡ଼ା ହେଲା ବାସବ ଅଗ୍ରତେ ।
ଐରାବତ ଗଜପୃଷ୍ଠେ ଥିଲେ ଦେବରାଜ
ପରସ୍ପରେ ଯୁଝିବାକୁ ହେଲେ ତହିଁ ସଜ ।
ମହିଷ ଆରୋହି ଯମ ବିଜେ କଲେ ତହିଁ
ପ୍ରହ୍ଲାଦ ଅଇଲା ବେଗେ ସ୍ୟନ୍ଦନ ଆରୋହି ।
ସେ ଦୁହେଁ ହୋଇଲେ ଯୁଦ୍ଧ କରିବାକୁ ସଜ
ପୁଲସ୍ତ୍ୟ କହିଲେ ଶୁଣ ହେ ବ୍ରହ୍ମ ଆତ୍ମଜ ।
ବିଲୋଚନ ଦୈତ୍ୟ ସଙ୍ଗେ ଯୁଝିଲେ ବରୁଣ
ଜୟ ଆଉ କୁବେରର ହେଲା ମହାରଣ ।
କୁଜମ୍ଭ ସଙ୍ଗତେ ବାୟୁ ଅଗ୍ନି ସଙ୍ଗେ ମୟ
ଦଶଗ୍ରୀବ ଆଦି ଯେତେ ଦାନବ ନିଚୟ ।
ଅଷ୍ଟବସୁ ଦିବାକର ନାଗଙ୍କ ସହିତ
ଦ୍ୱନ୍ଦ୍ୱଯୁଦ୍ଧ ଆରମ୍ଭିଲେ ଆହେ ତପୋବନ୍ତ ।
ଏମନ୍ତ ସମର ହେଲା ବେନି ବଳଙ୍କର
ତର୍ଜନ ଗର୍ଜନ କରି ମାରନ୍ତି ଯେ ଶର ।
କେ ବୋଲଇ ଭୟ ତେଜି ଆସ ବେଗହୋଇ
ନାରାଚରେ ଆଜି ଦେବା ପୃଥିବୀକି ଛାଇ ।
କେ ବୋଲଇ ମାରମାର ଉତ୍ପ୍ରୋଧ ନ କର
ଏମନ୍ତେ ସେ ଡାକି ଡାକି କରନ୍ତି ସମର ।
ତୀକ୍ଷ୍ଣବାଣ ମରାମରି ହୋଇ ପରସ୍ପରେ
ମହୀ ପୂର୍ଣ୍ଣ କଲେ ହାଡ଼ମାଂସ ରୁଧିରରେ ।

ମନ୍ଦାକିନୀ ପ୍ରାୟ ରକ୍ତନଦୀ ବହିଗଲା
ହେ ନାରଦ କ୍ରମେ କ୍ରମେ ସଂଗ୍ରାମ ବଢ଼ିଲା ।
ତ୍ରୈଲୋକ୍ୟଲାଭ ଆଶାରେ ସେ ସୁର ଅସୁରେ
ଘୋରଯୁଦ୍ଧ କରନ୍ତି ଯେ ମିଳି ପରସ୍ପରେ ।
ନାନା ବିଧ ବାଦ୍ୟନାଦେ କମ୍ପେ ତ୍ରିଭୁବନ
ସିଦ୍ଧ ମୁନିଗଣ ଯୁଦ୍ଧ କରନ୍ତି ଦର୍ଶନ ।
ସମ୍ମୁଖ ସଂଗ୍ରାମ କରି ମରନ୍ତି ଯେ ବୀରେ
ଅପସରା ତାଙ୍କୁ ଘେନି ଯାନ୍ତି ସ୍ୱର୍ଗ ପୁରେ ।
ଶୁଣ ଜନେ ମନଦେଇ ବାମନ ପୁରାଣ
ଦୀନ ଗୋପୀନାଥ ଭଜେ ଶ୍ରୀହରି ଚରଣ ।

=+=

## ଅନ୍ଧକ ବିଜୟ

ପୁଲସ୍ତ୍ୟ କହିଲେ ଏଥୁଅନ୍ତେ ହେ ନାରଦ
ସୁରାସୁରଗଣଙ୍କର ହେଲା ଘୋର ଯୁଦ୍ଧ ।
ସୁବିଶାଳ ଶରାସନ ଧରି ପୁରନ୍ଦର
ଅନ୍ଧକକୁ ଲକ୍ଷ୍ୟ କରି ବିନ୍ଧିଲେକ ଶର ।
ତା ଦେଖି ଅନ୍ଧକଦୈତ୍ୟ ମହାଧନୁ ଧରି
କର୍ଣ୍ଣ ପର୍ଯ୍ୟନ୍ତେ ଆଣି ଗୁଣକୁ ଓଟାରି ।
ବାସବକୁ ଲକ୍ଷ୍ୟ କରି ବିନ୍ଧିଲାକ ବାଣ
ଦୁହେଁ ମହାବଳୀ ପୁଣି ଯୁଦ୍ଧରେ ନିପୁଣ ।
ଦୁହିଙ୍କ ନାରାଚମୁନ ଅଟଇ ମୁନିଆ
ମୁନେ ମୁନ ଘଷି ହୋଇ ଉଠେ ତହୁଁ ନିଆଁ ।
କେଉଁ ନାରାଚକୁ କାଟି ପକାଏ ନାରାଚ
ଏହିପରି ଯୁଦ୍ଧ କଲେ ହୋଇ ଉଚ୍ଚବାଚ ।
କ୍ରୋଧଭରେ ଶତକ୍ରତୁ ହସ୍ତେ ବଜ୍ର ଧରି
ବୁଲାଇ ପିଟନ୍ତେ ଦୈତ୍ୟ ତାହା ଦେଖିକରି ।
ଭୟଙ୍କର ଅସ୍ତ୍ର ଦେଲା ସେ ବଜ୍ରକୁ ଛାଇ
ଶୁଖିଲା କାଠକୁ ଯେହ୍ନେ ଅନଳ ପୋଡ଼ଇ ।
ଇନ୍ଦ୍ର ବଜ୍ର ଅସ୍ତ୍ର ସବୁ ପୋଡ଼ି ସେହିପରି
ଜଳିଲା ଅନଳ ପ୍ରାୟ ଦୈତ୍ୟ ଦେଖିକରି ।
ଅତିବେଗେ ରଥୁଁ ଡେଇଁପଡ଼ିଲା ଭୂମିରେ
ଛିଡ଼ାହୋଇ ରହିଲା ସେ ରାହୁ ପରକାରେ ।
ରଥର ଉପରେ ବଜ୍ର ପଡ଼ିଲାକ ଆସି
ରଥସହ ସାରଥିକୁ କରି ଭସ୍ମରାଶି ।
ଅଶ୍ୱ ଗଜ ପୋଡ଼ିଦେଇ ବେଗେ ଧାଇଁଗଲା
ପ୍ରତାପୀ ଅନ୍ଧକ ଦୈତ୍ୟ ନେତ୍ରେ ତା ଦେଖିଲା ।

ବିଧାଏ ମାଇଲା ବଜ୍ର ଉପରେ ନିଠାଇ
ଭୂମିରେ ପଡ଼ିଲା ବଜ୍ର ସେ ଆଘାତ ପାଇ ।
ଗର୍ଜନ ଛାଡ଼ିଲା ପଡ଼ି ସେ ଭୂମି ଉପରେ
ଦେବରାଜ ଇନ୍ଦ୍ର ତାହା ଦେଖି ନୟନରେ ।
ତାହାକୁ ଆଣିବା ପାଇଁ କଲେକ ଯତନ
ଚଳାଇଲେ ଐରାବତ ଗଜକୁ ବହନ ।
ଅନ୍ଧକ ସମ୍ମୁଖେ ରହି ବିନ୍ଧିଲେ ସାୟକ
ତାହା ଦେଖି କ୍ରୋଧଭରେ ସେଦୈତ୍ୟନାୟକ ।
ଐରାବତ ଗଜକୁ ଯେ ଚାପୋଡ଼େ ମାଇଲା
ସେ ଦୃଢ଼ ଚାପୋଡ଼େ ଗଜକୁମ୍ଭରେ ବାଜିଲା ।
ପୁଣି କ୍ରୋଧେ ଗୋଇଠାଏ ମାଇଲା ନିଠାଇ
ସେ ଗୋଇଠା ଗଜକୁମ୍ଭେ ବାଜିଲାକ ଯାଇ ।
ରାଗେ ଭାଙ୍ଗି ପକାଇଲା ଇନ୍ଦ୍ର ଶରାସନ
ହସ୍ତୀ ତଳିପେଟେ ବିଧା ମାରି ଘନ ଘନ ।
ରୁଧିରରେ ସେ ଗଜକୁ ଜର୍ଜରିତ କଲା
ପୀଡା ପାଇ ଗଜରାଜ ଭୂମିରେ ପଡ଼ିଲା ।
ତା ପିଠି ଉପରୁ ଇନ୍ଦ୍ର ଡେଇଁ ପଡ଼ି ବେଗେ
ପଡ଼ିଥିବା ବଜ୍ରକୁ ଯେ ଧରି ଶୂନ୍ୟମାର୍ଗେ ।
ପଳାଇଲେ ପ୍ରାଣ ଭୟେ ଯୁଦ୍ଧ ଛାଡ଼ିକରି
ଲୁଚିଲେ ଅମରାବତୀ ପୁରେ ବଜ୍ରଧାରୀ ।
ସହସ୍ରାକ୍ଷ ପଳାଇବା ଦେଖି ଦୈତ୍ୟପତି
ଧାଇଁଲାକ ରାଗେ ଧରି କାଳାନଳ ମୂର୍ତ୍ତି ।
ଦେବତାଙ୍କ ମଧ୍ୟେ ପଶି କଲା ରଣଗୋଳ
ଭୟରେଦେବତାମାନେ ହୋଇଲେ ବିକଳ ।
ମହାବଳବନ୍ତ ସେହି ଅନ୍ଧକ ରାଜନ
ଯେସନେ ମନ୍ଦର କରେ ସାଗର ମନ୍ଥନ ।
ତେସନେ ଗୋଇଠା ମୁଷ୍ଟି ଚାପୋଡ଼ ପ୍ରହାରି
ମନ୍ଥନ କରିବା ଦେଖି କାଳଦଣ୍ଡଧାରୀ ।
ମହିଷ ପିଠିରେ ବସି ଦଣ୍ଡକୁ ବୁଲାଇ
ପ୍ରହ୍ଲାଦକୁ ବଧିବାକୁ ଗଲେ ବେଗେ ଧାଇଁ ।
ହରିଣ୍ୟକଶିପୁସୁତ ପ୍ରହ୍ଲାଦ ତା ଦେଖି
ବେଗେ ଧନୁ ଧରି ଗୁଣେ ବାଣ ଦେଲା ଯୋଖି ।
ବୃଷ୍ଟି କଲା ଧର୍ମରାଜା ଯମଙ୍କ ଉପରେ
ଶରାସନ ଆକର୍ଷଣ କରି ବାରେ ବାରେ ।
ଭାସ୍କରନନ୍ଦନ ଯମ ବୁଲାଇଣ ଦଣ୍ଡ
ପ୍ରହ୍ଲାଦର ଅସ୍ତ୍ରରାଜି କରି ଖଣ୍ଡ ଖଣ୍ଡ ।

ଫିଙ୍ଗିଦ୍ୟନ୍ତେ ଉଠିଲା ସେ ଗଗନମାର୍ଗରେ
ଜ୍ୱଳନ୍ତ ଅନଳ ତେଜରାଶିକି ସେ ଧରେ ।
ସ୍ୱଭାବେତ ସର୍ବଲୋକ ଭୟଙ୍କର ସେହି
ବାୟୁପଥେ ଧାଇଁଯାଏ ଘୋର ରୂପ ବହି ।
ଦେଖି ତା ରାକ୍ଷସଗଣ କଲେ ହାହାକାର
କେହି ବା ଭୟରେ କଲେ ଭୀଷଣ ଚିତ୍କାର ।
କେହି ବୋଲେ ହାୟହାୟ ହେଲା କି ବିପଦ
ଯମ କାଳଦଣ୍ଡେ ନିଶ୍ଚେ ମରିବ ପ୍ରହ୍ଲାଦ ।
ଏମନ୍ତେ ରାକ୍ଷସମାନେ ହୁଅନ୍ତେ ବ୍ୟାକୁଳ
ମହାବଳ ହିରଣ୍ୟାକ୍ଷ ଦୈତ୍ୟର ଦୁଲାଳ ।
ବୋଇଲା କାହିଁକି ତୁମ୍ଭେ କରୁଅଛ ଭୟ
ଏହିକ୍ଷଣି କରିବି ମୁଁ ସେ ଦଣ୍ଡକୁ କ୍ଷୟ ।
ଯେତେବେଳ ଯାଏ ପିଣ୍ଡେ ପ୍ରାଣ ଥିବ ମୋର
କି କରିପାରିବ ସୁରାଧମ ଯମ ଛାର ।
ଏହା କହି ସେ ଅନ୍ଧକ ଧାଇଁ ଯେ ଅଇଲା
ବାମହସ୍ତେ ଯମ କାଳଦଣ୍ଡକୁ ଧଇଲା ।
ବୁଲାଇଲା କୁମ୍ଭକାର ଚକ୍ର ପ୍ରାୟ ବେଗେ
ଭୀଷଣ ଗର୍ଜନ କଲା ଦୈତ୍ୟପତି ରାଗେ ।
ଶୁଭିଲା ସେ ବର୍ଷାକାଳ ଘଡ଼ଘଡ଼ି ପ୍ରାୟ
ସକଳେ ବୋଇଲେ ଧନ୍ୟ ଧନ୍ୟ ଦୈତ୍ୟରାୟ
ତୋ ସମାନ ବଳଶାଳୀ ନାହିଁ ଭୂମଣ୍ଡଳେ
ଅନ୍ତରୀକ୍ଷେ ରସାତଳେ କିଅବା ପାତାଳେ ।
ଏମନ୍ତେ ପ୍ରଶଂସା କଲେ ଦାନବେ ହେ ମୁନି
ଭାସ୍କର ନନ୍ଦନ ଯମଭୟ ମନେ ଘେନି ।
ପଳାଇଲେ ସେ ସ୍ଥାନରୁ ନିଜ ପ୍ରାଣ ଭୟେ
ଏଥୁଅନନ୍ତରେ ସେହି ଦୈତ୍ୟକୁଳରାୟେ ।
ମହାବଳ ପ୍ରହ୍ଲାଦକୁ ଘେନି ସଙ୍ଗତରେ
ମଛିଲେକ ଦେବସେନା ନିର୍ଭୟ ଚିତ୍ତରେ ।
ଶିଶୁମାର ଆରୋହିଣ ଧାଇଁଲେ ବରୁଣ
ଗଦାଘାତେ ବିଦାରିତ କରି ଦୈତ୍ୟଗଣ ।
ତାହା ଦେଖି ଧାଇଁଲାକ ବୀର ବିରୋଚନ
ତୋମରମୁଦ୍‌ଗର ଶକ୍ତି ବାଣକୁ ମୋଚନ ।
କରନ୍ତେ ତା ଦେଖି କ୍ରୋଧେ ମହାତ୍ମା ବରୁଣ
ଗଦାଘାତେ କରି ସର୍ବ ଅସ୍ତ୍ର ନିବାରଣ ।
ପାଶ ଅସ୍ତ୍ରେ କଲେ ତାର ଗଜକୁ ବନ୍ଧନ
ବୀର ବିରୋଚନ ତାହା କରି ଦରଶନ ।
ପାଶ ଶତଖଣ୍ଡ କରି ମିଳିଲା ଅଗ୍ରତେ
ବରୁଣର କଟୀ ଭାଗ ଧରି ଦୁଇ ହସ୍ତେ ।
ତଳେ ପକାଇଲା ହସ୍ତୀ ମାଇଲାକ ଦନ୍ତ
ବରୁଣର ଏ ଦୁର୍ଦ୍ଦଶା ଦେଖି ନିଶାକାନ୍ତ ।
ଗଜେନ୍ଦ୍ରକୁ ବିଦାରିଲେ ବାଣଗଣ ମାରି
ଚନ୍ଦ୍ରଙ୍କ ବାଣରେ ବ୍ୟଥା ପାଇ ମହାକାରୀ ।
ପାଦେ ବରୁଣକୁ କ୍ରୋଧେ ଦଳି ପକାଇଲା
ଘନ ଘନ ଭୟଙ୍କର ଗର୍ଜ୍ଜନ ଛାଡ଼ିଲା ।
ବରୁଣ ତା ପାଦ ଦୁଇ ଧରି ଅତି ଦୃଢ଼େ
ଆଣ୍ଠୁଭରା ଦେଇ ଉଠି ପୁଚ୍ଛ ଧରି ଗାଢ଼େ ।
ଗଜେନ୍ଦ୍ରକୁ ପାଶ ଅସ୍ତ୍ରେ କରିଣ ବନ୍ଧନ
ଗଜ ପେଟ ତଳେ ମୁଣ୍ଡ ଦେଇଣ ବହନ ।
ତାର ପାଦ ପୁଚ୍ଛ ଧରି ବୁଲାଇ ସତ୍ୱରେ
ଫିଙ୍ଗିଦ୍ୟନ୍ତେ ଚଳିଲା ସେ ତୃଣ ପରକାରେ ।
ଅନ୍ତରୀକ୍ଷ ମାର୍ଗେ ଗଲା ଦୈତ୍ୟକୁ ଘେନିଣ
ପଡ଼ିଲା ସେ ଭୂମିତଳେ ଗର୍ଜନ କରିଣ ।
ସୁକେଶି ପୁରକୁ ପୂର୍ବେ ଭାସ୍କର ଯେସନ
କରିଥିଲେ ଯନ୍ତ୍ରହର୍ମ୍ୟ ସହ ଏ ତେସନ ।
ଗଜସହ ଦନୁଜକୁ ଦେଲେ ଫୋପଡ଼ାଇ
ବିରୋଚନ ଦୈତ୍ୟ ତଳେ ପଡ଼ି ମୋହ ଯାଇ ।
ତାହା ଦେଖି ଜଳେଶ୍ୱର ଗଦା ଧରି ହାତେ
ଦୈତ୍ୟକୁ ବଧିବା ପାଇଁ ଧାଇଁଲେ ତ୍ୱରିତେ ।
ରାକ୍ଷସ ସକଳ ଦେଖି କଲେ ହାହାକାର
କେହି କେହି କଲେ ଭୟେ ଭୀଷଣ ଚିତ୍କାର ।
କେହି ଉଚ୍ଚେ ଡାକଦେଲେ ହେ ବୀର ପ୍ରହ୍ଲାଦ
ହେ ଜମ୍ଭ କୁଜମ୍ଭ ଆଦି ନିଶାଚର ବୃନ୍ଦ ।
ଧାଇଁ ଆସ ଅନ୍ଧକକୁ ଘେନି ସଙ୍ଗତରେ
ବିରୋଚନ ଦୈତ୍ୟ ନିଶ୍ଚେ ଗଲା ଯମପୁରେ ।
ଗଦାଧରି ମାରିବାକୁ ଯାଉଛି ବରୁଣ
ମୂର୍ଚ୍ଛାଯାଇଁ ପଡ଼ିଅଛି ବୀର ବିରୋଚନ ।
ହାୟ ହାୟ ଏ ବରୁଣ କେଡ଼େ ବଳବନ୍ତ
ଯଜ୍ଞେ ପଶୁ ବାନ୍ଧି ଯେହ୍ନେ କରନ୍ତି ନିହତ ।
ସେହିପରି ଗଜସହ ବାନ୍ଧି ବିରୋଚନ
ଅସୁର ସୈନ୍ୟଙ୍କୁ କରି ଗଦାରେ ଦଳନ ।
ଯାଉଅଛି ମରିବାକୁ ଅସହାୟ ଦେଖି
ଏହିପରି କହି ଦୈତ୍ୟେ ହେଲେ ମହାଦୁଃଖୀ ।

ଦାନବଙ୍କ ଏ କ୍ରନ୍ଦନ ଧ୍ୱନି ଶୁଣି କର୍ଣ୍ଣେ
ଧାଇଁଲେକ ପାଦଗାମୀ ହୋଇ ବୀରଗଣେ ।
ପତଙ୍ଗ ଧାମନ୍ତି ଯେହ୍ନେ ଦେଖି କରି ନିଆଁ
ସେହିପରି ବରୁଣଙ୍କ ଆଗେ ହେଲେ ଠିଆ ।
ତାହାଙ୍କ ଆସିବା ଦେଖି ଜଳ ଅଧିପତି
ଗଦାବର ବୁଲାଇଲେ କରି ପାଦଗତି ।
ପାଶେ ବାନ୍ଧି ପକାଇଲେ ଜମ୍ଭ ଅସୁରକୁ
ବଜ୍ରସମ ଚାପୋଡ଼େକ ମାଇଲେ ଉରକୁ ।
ବୃତ୍ରଶିରେ ଗଦାବର ପ୍ରହାରିଲେ ରୋଷେ
ତହୁଁ ବେଗେ ଧାଇଁଗଲେ କୁଜମ୍ଭର ପାଶେ ।
ବିଧାଏ ମାଇଲେ ତାକୁ ପଡ଼ିଲା ସେ ତଳେ
ନାଚିଲେ ଅମର ବୃନ୍ଦେ ଆନନ୍ଦ ବିହ୍ୱଳେ ।
ଦୈତ୍ୟ ଅସ୍ତ୍ର ତେଜି ଭୟ କଲେ ପଳାୟନ
ତାହାଙ୍କ ଦୁର୍ଦ୍ଦଶା ଦେଖି ଅନ୍ଧକ ରାଜନ ।
ଧାଇଁ ଆସି ଯୁଝିଲାକ ବରୁଣଙ୍କ ସଙ୍ଗେ
ବରୁଣ ତାହାକୁ ବାନ୍ଧି ପକାଇଲେ ବେଗେ ।
ରୋଷେ ପ୍ରହାରିଲେ ତାର ଅଙ୍ଗେ ଗଦାବର
ମହାବଳବନ୍ତ ସେହି ଦାନବ ଈଶ୍ୱର ।
ବରୁଣ ହସ୍ତରୁ ପାଶ ଗଦାକୁ ଛଡ଼ାଇ
ପକାଇ ଦିଅନ୍ତେ ତାହା ଦେଖି ଜଳସାଇଁ ।
ଭୟେ ପଳାୟନ କରି ପଶିଲେ ସାଗରେ
ଅନ୍ଧକ ମର୍ଦ୍ଦନ କଲା ଦେବଙ୍କୁ ସମରେ ।
ତାହା ଦେଖି ହୁତାଶନ ପବନଙ୍କୁ ଘେନି
କୋପେ ପୋଡ଼ି ପକାଇଲେ ଅସୁର ସଇନି ।
ବିଶ୍ୱକର୍ମା ମହାବାହୁ ଉଗ୍ରବୀର୍ଯ୍ୟ ମୟ
ଶମ୍ବର ଅସୁର ହେଲା ତାହାର ସହାୟ ।
ଦୁହେଁ ଉଭା ହେଲେ ଅଗ୍ନିବାୟୁ ସମ୍ମୁଖରେ
ତାଙ୍କୁ ଦେଖି ହୁତାଶନ ଶକ୍ତି ଧରି କରେ ।
ପ୍ରହାରନ୍ତେ ଦୁହିଁଙ୍କର କଣ୍ଠରେ ବାଜିଲା
ବର୍ମ ଛିଡ଼ିଗଲା ମୟ ଭୂମିରେ ପଡ଼ିଲା ।
ଶମ୍ବରକୁ ବଳେ ଧରି ନେଲେ ହୁତାଶନ
ଦଗ୍‌ଧ ହୋଇ କଲା ଉଚ୍ଚସ୍ୱରେ ସେ କ୍ରନ୍ଦନ ।
ଅନଳରେ ପୋଡ଼ି ଯାଇ ସେ ମୟ ଦାନବ
ଛଟପଟ ହୋଇ କାନ୍ଦି ଦେଲା ଘୋର ରାବ ।
ସିଂହଭୟେ ହାତୀ ଯେହ୍ନେ ଗମଇ କାନନେ
ଗର୍ଜିଲେ ସେ ଦୁଇବୀର ଆତଙ୍କେ ତେସନେ ।

ଦୈତ୍ୟପତି ଅନ୍ଧକ ତା କରିଣ ଶ୍ରବଣ
ଏପରି କ୍ରନ୍ଦନ ଶବ୍ଦ ହୁଏ କି କାରଣ ।
ମୟ ଶମ୍ବରକୁ ଜୟ କଲା କେଉଁ ବୀର
ସେନାଏ ବୋଇଲେ ଶୁଣ ଆହେ ଦୈତ୍ୟେଶ୍ୱର ।
ଅଗ୍ନି ସେ ଦୁହିଁଙ୍କୁ ପୋଡ଼ି ପକାଉ ଅଛନ୍ତି
ଆପଣ ରଖନ୍ତୁ ଯାଇଁ ତାହାଙ୍କୁ ଝଟତି ।
ତାଙ୍କୁ ନିବାରଣ କରି ନ ପାରନ୍ତି କେହି
ପବନ ସହାୟେ ସେହି ଘୋର ରୂପ ବହି ।
ଦଗ୍‌ଧ କରୁଛନ୍ତି କ୍ରୋଧେ ଦାନବ ସଇନ
ହେ ମହର୍ଷେ ଶୁଣି ହିରଣ୍ୟାକ୍ଷର ନନ୍ଦନ ।
ପରିଘ ହସ୍ତରେ ଧରି ଉଠ ଉଠ କହି
ହୁତାଶନ ନିକଟକୁ ବେଗେ ଗଲା ଧାଇଁ ।
ଅନ୍ଧକର ସେ ବଚନ ଶୁଣି ହୁତାଶନ
ରୋଷେ ସେହି ରାକ୍ଷସଙ୍କୁ ଧଇଲେ ବହନ ।
ମର୍ଦ୍ଦନ କଲେକ ଭୂମିତଳରେ ପକାଇ
ଅନ୍ଧକ ପରିଘ ଅସ୍ତ୍ର ବେଗରେ ବୁଲାଇ ।
ରୋଷେ ପ୍ରହାରିଲା ତାହା ଦେଖି ହୁତାଶନ
ଶମ୍ବର ମୟକୁ ଛାଡ଼ି ଧାଇଁଲେ ବହନ ।
ତାହାଙ୍କ ଆସିବା ଦେଖି ଅନ୍ଧକ ଦଇତ
ପରିଘ ପିଟିଲା ତାଙ୍କ ମୁଣ୍ଡରେ ତ୍ୱରିତ ।
ସେଠାରୁ ଅନଳ ଭୟେ କଲେ ପଳାୟନ
ହରିଣ୍ୟାକ୍ଷସୁତ ଧରି ଗବ୍ୟ ଶରାସନ ।
ମରୁତ ଭାସ୍କର ଚନ୍ଦ୍ର ସାଧ ବସୁ ଆଦି
ଯେ ଆସି ହୋଇଲେ ତାର ସଙ୍ଗରେ ବିବାଦୀ ।
ତାହାଙ୍କୁ ସେ ଶରଜାଳେ କଲା ବିଦାରିତ
ଭୟେ ପଳାୟନ କଲେ ସକଳ ଦୈବତ ।
ବିଜୟୀ ହୁଅନ୍ତେ ସେହି ଦାନବ ରାଜନ
ଆନନ୍ଦେ ଅସୁରେ କଲେ ଭୀଷଣ ଗର୍ଜନ ।
ରାକ୍ଷସଙ୍କ ଠାରୁ ପୂଜା ପାଇ ସେ ଅନ୍ଧକ
ଆପଣାର ଆୟତ୍ତରେ ରଖି ନରଲୋକ ।
ମିଳିଲା ପାତାଳପୁରେ ଅସ୍ମକ ନଗରେ
ସେ ପୁରେ ପ୍ରବେଶ ହେଲେ ସିଦ୍ଧ ବିଦ୍ୟାଧରେ ।
ଗନ୍ଧର୍ବ ଅପ୍‌ସରାଗଣ ସହିତରେ ଆସି
ରହିଲେ ପାତାଳପୁରେ ରାଜାଙ୍କୁ ସନ୍ତୋଷି ।
ଅମୃତ ସମାନ ଏହି ବାମନ ପୁରାଣ
ମନଦେଇ ଜନେ କର ପଠନ ଶ୍ରବଣ ।

ଅମର ଅଜର ହେବ ବିଷ୍ଣୁଙ୍କ କୃପାରେ
ଗୋପୀନାଥଙ୍କୁ ଯେ ଦୟାକର ପ୍ରଭୁ ବାରେ ।
= + =

## ପୁଷ୍କର ଦ୍ୱୀପ ବର୍ଣ୍ଣନ

ନାରଦ କହିଲେ ପୁଣି ଆହେ ମୁନିବର
ଆପଣ କହିଲେ ଦେବଦେବ ଯେ ଭାସ୍କର ।
ସୁକେଶୀର ନଗରୀକି ଅମର ସହିତ
ପୃଥିବୀରେ ପକାଇଲେ କହ ତା ବୃତ୍ତାନ୍ତ ।
ସୁକେଶୀ କେ ତାଙ୍କୁ କିଏ ଦେଇଥିଲା ବର
କାହିଁକି ବା ଆକାଶରୁ ସେ ପୁର ଭାସ୍କର ।
ପୃଥିବୀରେ ପକାଇଲେ କହ ତା ବିସ୍ତାରି
ପୁଲସ୍ତ୍ୟ ବୋଇଲେ ଶୁଣ ଆହେ ତପଚାରୀ ।
ଏହି ଅତି ପୁରାତନ କଥାକୁ ମୁଁ ପୂର୍ବେ
ଯେଉଁପରି ଶୁଣିଥିଲି କହୁଛି ତା ଏବେ ।
ସାବଧାନ ହୋଇ ତୁମ୍ଭେ କର ଯେ ଶ୍ରବଣ
ବିଦ୍ୟୁତ୍‌କେଶୀ ନାମେ ଥିଲା ଏକ ଦୈତ୍ୟରାଣ ।
ସୁକେଶୀ ତାହାର ଗୁଣବନ୍ତ ଯେ ତନୟ
ବୃଷଭ ବାହନ ଶିବ ପ୍ରଭୁ ଦୟାମୟ ।
ସୁପ୍ରସନ୍ନ ହୋଇ ତାଙ୍କୁ ଦେଲେ ଏହି ବର
କାହାରି ହସ୍ତରେ ବଧ ନୋହିବ ତୁମ୍ଭର ।
କେହି ଜିଣି ନ ପାରିବେ ତୁମ୍ଭଙ୍କୁ ସମରେ
ପୁଣି ଏକ ପୁର ତାକୁ ଦେଲେ ସନ୍ତୋଷରେ ।
ସେ ପୁର କରଇ ଶୂନ୍ୟମାର୍ଗରେ ଗମନ
ଯେସନେ ଆକାଶ ମାର୍ଗେ ଚଳଇ ବିମାନ ।
ଶିବଙ୍କ ପ୍ରସାଦେ ପାଇ ସୁକେଶୀ ସେ ପୁର
ନିରନ୍ତର ସଙ୍ଗତରେ ଘେନି ନିଶାଚର ।
ଧର୍ମପଥେ ରହି ସଦା ବିହାର କରଇ
ଏକ ଦିନକର କଥା ଶୁଣ ମନଦେଇ ।
ମଗଧବନକୁ ଯାଇଁ ଦେଖିଲା ସେଠାରେ
ଗୃହକରି ରହିଛନ୍ତି ତହିଁ ତପବରେ ।
ମହର୍ଷିଗଣଙ୍କୁ ଦେଖି ନମସ୍କାର କରି
ଆସନେ ବସି କହିଲା ଆହେ ତପଚାରୀ ।
ଗୋଟିଏ ସଂଶୟ ଜାତ ହୋଇଛି ମୋ ମନେ
ନିବେଦନ କରୁଛି ମୁଁ ତୁମ୍ଭ ସନ୍ନିଧାନେ ।
ଇହଲୋକେ ପରଲୋକେ କେଉଁ କଥା ଶ୍ରେୟ
ସାଧୁଙ୍କ ମଧ୍ୟରେ କେଉଁ ଜନ ପୂଜନୀୟ ।
ସୁଖରେ ବର୍ଦ୍ଧିତ ହୁଏ ଅବା କେଉଁ ଜନ
ଏ ସନ୍ଦେହ ନିବାରଣ କର ତପୋଧନ ।
ପୁଲସ୍ତ୍ୟ କହିଲେ ଶୁଣ ହେ ନାରଦ ମୁନି
ମୁନିମାନେ ସୁକେଶୀର ଏ ବଚନ ଶୁଣି ।
ବୋଇଲେ ହେ ବୀର ତୁମ୍ଭେ ରାକ୍ଷସ କେଶରୀ
ଇହଲୋକେ ପରଲୋକେ ଯାହା ଶ୍ରେୟକାରୀ ।
ତାହା କହୁଅଛି ତୁମ୍ଭେ ମନଦେଇ ଶୁଣ
ସେ ଦୁଇ ଲୋକର ଶ୍ରେୟ ଧର୍ମ ଏକା ଜାଣ ।
ଯେଉଁ ଲୋକ ସେ ଧର୍ମର ନିଅଇ ଆଶ୍ରୟ
ସେହି ସାଧୁ ସମାଜରେ ହୁଏ ପୂଜନୀୟ ।
ସେହି ଜନ ଜାଣ ସୁଖେ ବର୍ଦ୍ଧିତ ହୁଅଇ
ଏହାଶୁଣି ପୁନରପି ସୁକେଶୀ କହଇ ।
କି ପ୍ରକାର ଅଟଇ ସେ ଧର୍ମର ଲକ୍ଷଣ
କେଉଁ ସତ୍କର୍ମକୁ ଧର୍ମ କହନ୍ତି ଆପଣ ।
ଯାହା ଆଶ୍ରୟରେ ଦେବେ ଅଜର ଅମର
ବିସ୍ତାରି କହନ୍ତୁ ସେହି କର୍ମ ମୋ ଆଗର ।
ଋଷିଗଣ କହିଲେକ ଆହେ ମହାଭାଗ
ଦେବଙ୍କ ପରମ ଧର୍ମ ଅଟଇ ଯେ ଯାଗ ।
କେହି କେହି ବେଦ ତତ୍ତ୍ୱ ଜାଣିବା ବ୍ୟକତି
ବିଷ୍ଣୁଙ୍କ ପୂଜାକୁ ଧର୍ମ ବୋଲି ଯେ କହନ୍ତି ।
ଦୈତ୍ୟମାନଙ୍କର ଧର୍ମ ଶୁଣ ଆହେ ବୀର
ବାହୁବୀର୍ଯ୍ୟ ଯୁଦ୍ଧକାର୍ଯ୍ୟ ଆବର ମତ୍ସର ।
ନୀତିଜ୍ଞମାନଙ୍କ ଧର୍ମ ସେବା ହରିଭକ୍ତି
ସିଦ୍ଧଗଣଙ୍କର ଧର୍ମ ଶୁଣ ଦୈତ୍ୟପତି ।
ଯୋଗସିଦ୍ଧ ବେଦପାଠ ପରଂବ୍ରହ୍ମଜ୍ଞାନ
ବିଷ୍ଣୁଭକ୍ତି ଶିବଭକ୍ତି ଆଦି ଧର୍ମମାନ ।
ଗନ୍ଧର୍ବମାନଙ୍କ ଧର୍ମ ଉପାସନା ରତି
ନୃତ୍ୟ ଗୀତ ବାଦ୍ୟ ଶୁଣି ସରସ୍ୱତୀ ଭକ୍ତି ।
ବିଦ୍ୟାଧର ଗଣଙ୍କର ଧର୍ମ ଯେ ବିଜ୍ଞାନ
ତୁଳନା ବିହୀନ ବିଦ୍ୟା ବିଷୟର ଜ୍ଞାନ ।
ପୌରୁଷ ବୁଦ୍ଧି ଆବର ଭାବନି ଭକତି
କିଂପୁରୁଷଗଣ ଧର୍ମ ଶୁଣ ଦୈତ୍ୟପତି ।
ସୂର୍ଯ୍ୟ ଭକ୍ତି ସର୍ବ ଶିଳ୍ପ ଶାସ୍ତ୍ର କୁଶଳତା
ଆବର ଗନ୍ଧର୍ବ ଶାସ୍ତ୍ର ବିଦ୍ୟା ନିପୁଣତା ।

ପିତୃଗଣଙ୍କର ଧର୍ମ ଶୁଣ ଦେଇ ମନ
ବ୍ରହ୍ମଚର୍ଯ୍ୟ ଯୋଗାଭ୍ୟାସ ଅଭିମାନ ଶୂନ୍ୟ ।
କାମଚାରିତା ଯେ ଧର୍ମ ଅଛଇ ଆବର
ଋଷିଗଣଙ୍କର ଧର୍ମ ଅଛଇ ଆବର ।
ଜପ ତପ ଜ୍ଞାନ ସତ୍ୟ ବ୍ରହ୍ମଚର୍ଯ୍ୟ ଆଦି
ବ୍ରହ୍ମ ନିୟମାଦି ଧର୍ମ ବିଜ୍ଞାନ ସମାଧି ।
ମାନବଙ୍କ ଧର୍ମ ବେଦ ପଠନ ଯଜନ
ଅକାର୍ପଣ୍ୟ ଅନାୟାସ ବ୍ରହ୍ମଚର୍ଯ୍ୟ ଦାନ ।
ଅହିଂସା ଯେ ଦୟା କ୍ଷମା ଶଉଚ ଆବର
ଶିବ ସୂର୍ଯ୍ୟ ଦେବଠାରେ ଭକ୍ତି ନିରନ୍ତର ।
ମଙ୍ଗଳ ବିଧାନ ଆଉ ଇନ୍ଦ୍ରିୟ ଦମନ
ଗୁହ୍ୟକ ଗଣଙ୍କ ଧର୍ମ କର ହେ ଶ୍ରବଣ ।
ଧନେ ଆଧିପତ୍ୟ ଭୋଗ ଶିବ ଉପାସନା
ଅଇଶ୍ୱର୍ଯ୍ୟ ଅହଙ୍କାର ବେଦ ଆରାଧନା ।
ଏବେ ରାକ୍ଷସଙ୍କ ଧର୍ମ ଶୁଣ ଦୈତ୍ୟପତି
ପରଦାର ପରଧନ ହରଣେ ଆସକ୍ତି ।
ବେଦପାଠ ଶିବ ପ୍ରତି ଭକତି ଆବର
ପିଶାଚମାନଙ୍କ ଧର୍ମ ଶୁଣ ଦୈତ୍ୟଶ୍ୱର ।
ଅବିବେକ ଅଜ୍ଞାନ ଯେ ଶୌଚ ସତ୍ୟ ହୀନ
ସର୍ବଦା ବାଞ୍ଛନ୍ତି ସେହି ଆମିଷ ଭୋଜନ ।
ଆହେ ନିଶାଚର ଏହି ଦ୍ୱାଦଶ ଯୋନିରେ
ଧର୍ମ ହେ କହିଲି ମୁହିଁ ଦ୍ୱାଦଶ ପ୍ରକାର ।
ପରମ ପବିତ୍ର ଧର୍ମ ଅଟେ ଗତିଦାତା
ପିତାମହ ବ୍ରହ୍ମା ଏଥେ ବିଧାନ କରତା ।
ସୁକେଶୀ କହିଲା ଯେଉଁ ଦ୍ୱାଦଶ ପ୍ରକାର
ନିତ୍ୟ ସନାତନ ଧର୍ମ ଆଜି ମୋ ଆଗର ।
କହିଲ ଆପଣ ତାହା ମଧ୍ୟ ପୁନରପି
ମନୁଷ୍ୟମାନଙ୍କ ଧର୍ମ କହ ଆହେ ତପୀ ।
ଋଷିଗଣ କହିଲେକ ହେ କ୍ଷଣଦାଚର
ସପ୍ତଦ୍ୱୀପାମହୀ ପୃଷ୍ଠେ ଯାହାଙ୍କର ଘର ।
ସେହି ମନୁଷ୍ୟାଦିଙ୍କର ଧର୍ମ ଶୁଣ ଏବେ
ଯେଉଁପରି ନଦୀ ଜଳ ମଧ୍ୟେ ଥାନ୍ତି ନାବେ ।
ଜଳୋପରି ରହି ଅଛି ପୃଥିବୀ ତେସନ
ଆୟତନ ପଞ୍ଚାଶତ କୋଟି ହେ ଯୋଜନ ।
ଦେବ ଦେବ ବ୍ରହ୍ମା ସେହି ପୃଥ୍ୱୀର ଉପରେ
ଅତି ଉଚ୍ଚ ଗିରି ସ୍ଥାପି କର୍ଣ୍ଣିକା ଆକାରେ ।

ବହୁତର ଦ୍ୱୀପ ତହିଁ ନିର୍ମାଣି ଅଛନ୍ତି
ଦ୍ୱୀପଙ୍କ ମଧ୍ୟରେ ଯେ ଶ୍ରେଷ୍ଠ ଶୁଣ ଦୈତ୍ୟପତି ।
ତାର ନାମ ଜମ୍ବୁଦ୍ୱୀପ ସେ ପ୍ରତିଷ୍ଠାବନ୍ତ
ଏହାର ପ୍ରମାଣ ଲକ୍ଷ ଯୋଜନ ଆୟତ ।
ରହିଛି ଏହାକୁ ବେଢ଼ି ଲବଣ ସାଗର
ଦୁଇଲକ୍ଷ ଯୋଜନ ଯେ ପ୍ରମାଣ ଏହାର ।
ତାହାଠାରୁ ଋକ୍ଷଦ୍ୱୀପ ଅଟେ ଦୁଇଗୁଣ ।
କ୍ଷୀରସିନ୍ଧୁ ବାହାରେ ସେ ରହିଅଛି ଜାଣ ।
ଋକ୍ଷଦ୍ୱୀପ ବେଢ଼ି ଅଛି ଇକ୍ଷୁରସସିନ୍ଧୁ
ପରିମାଣ ଦୁଇଗୁଣ ଜଳ ଅତି ସ୍ୱାଦୁ ।
ଏହାହୁଁ ଶାଲ୍ମଳିଦ୍ୱୀପ ଅଟଇ ଦ୍ୱିଗୁଣ
ମହୋଦଧି ଦ୍ୱିଗୁଣ ଯେ ଏହାଠାରୁ ଜାଣ ।
ଶାଲ୍ମଳିଦ୍ୱୀପକୁ ବେଢ଼ି ରହିଅଛି ସେହି
ଏ ସାଗର ନାମ ସୁରାସାଗର ଅଟଇ ।
କୁଶଦ୍ୱୀପ ଏହାଠାରୁ ବଡ଼ ଦୁଇଗୁଣ
ତାହାଠାରୁ ଦୁଇଗୁଣ ଘୃତସିନ୍ଧୁ ଜାଣ ।
ସେ କୁଶଦ୍ୱୀପକୁ ବେଢ଼ି ରହିଅଛି ସେହି
କ୍ରୌଞ୍ଚଦ୍ୱୀପ ଦୁଇଗୁଣ ତାଠାରୁ ଅଟଇ ।
ତାହାଠାରୁ ଦୁଇଗୁଣ ବଡ଼ ଦଧି ସିନ୍ଧୁ
ବେଢ଼ିଛି କ୍ରୌଞ୍ଚଦ୍ୱୀପକୁ ଆହେ ଦୈତ୍ୟଇନ୍ଦୁ ।
ଶାକଦ୍ୱୀପ ତାହାଠାରୁ ବଡ଼ ଦୁଇଗୁଣ
ତାହାଠାରୁ ଦୁଇଗୁଣ ଦୁଗ୍ଧ ସିନ୍ଧୁ ଜାଣ ।
ଶାକଦ୍ୱୀପକୁ ଯେ ବେଢ଼ି ରହିଅଛି ପୁଣି
ସେ କ୍ଷୀର ସାଗରେ ରହିଛନ୍ତି ଚକ୍ରପାଣି ।
ଶୋଇଛନ୍ତି ନିଶ୍ଚିନ୍ତରେ ଅନନ୍ତ ପଲଙ୍କେ
କମଳା ବିରାଜୁଛନ୍ତି ଶ୍ରୀହରିଙ୍କ ଅଙ୍କେ ।
ତାଠାରୁ ପୁଷ୍କର ଦ୍ୱୀପ ବଡ଼ ଦୁଇଗୁଣ
ସ୍ୱାଦୁସିନ୍ଧୁ ତାହାଠାରୁ ଦୁଇଗୁଣ ଜାଣ ।
ପୁଷ୍କର ଦ୍ୱୀପକୁ ବେଢ଼ି ରହିଅଛି ସେହି
ଦ୍ୱୀପସିନ୍ଧୁ ପରିମାଣ କହୁଛି ମିଶାଇ ।
ଚାଳିଶକୋଟି ଯେ ନବଲକ୍ଷ ପାଞ୍ଚଗୁଣ
ହେ ରାକ୍ଷସ ଇନ୍ଦ୍ର ଏଥୁ ଅନନ୍ତରେ ଶୁଣ ।
ଜମ୍ବୁଦ୍ୱୀପଠାରୁ ଜାଣ କ୍ଷୀର ସିନ୍ଧୁ ଯାଏ
ଚାରିକୋଟି ଏକଲକ୍ଷ ଯୋଜନ ଯେ ହୋଏ ।
କୁଶଦ୍ୱୀପ ପରମାଣ ଅଟଇ ଏତିକି
ମହୋଦଧିଙ୍କର ଜାଣ ପ୍ରମାଣ ଏତିକି ।

ତାର ଚାରିଦିଗେ ଅନ୍ଧ କଟାହରେ ପୂର୍ଣ୍ଣ
ଲକ୍ଷ ଯୋଜନ ଅଟଇ ତାର ପରିମାଣ ।
ଏ ସପ୍ତଦ୍ୱୀପରେ ଭିନ୍ନ ଅଟଇ ଯେପରି
କ୍ରିୟା କଳାପାଦି ଭିନ୍ନ ଧର୍ମ ଯେଉଁପରି ।
ଯେଣୁ ତୁମ୍ଭେ ପଚାରୁଛ ଏହା ବାରମ୍ବାର
ସେ କଥା କହୁଛୁଁ ଶୁଣ ଆହେ ନିଶାଚର ।
ପ୍ଲକ୍ଷଠାରୁ ଶାକଦ୍ୱୀପ ଯାଏ ଯେତେ ଜନ
ଘର କରି ରହିଛନ୍ତି ନୁହନ୍ତି ନିଧନ ।
ଯୁଗାନ୍ତର ଭୋଗ କେଭେ ନ କରନ୍ତି ସେହି
ଦେବତାଙ୍କ ପ୍ରାୟେ ସୁଖ ଭୁଞ୍ଜୁଥାନ୍ତି ରହି ।
ଦେବତାଙ୍କ ଧର୍ମ ଯାହା ତାଙ୍କ ଧର୍ମ ତାହା ।
କଳ୍ପାନ୍ତେ ସେ ଲୟହୁନ୍ତି ଆହେ ଦୈତ୍ୟନାହା
ପୁଷ୍କର ଦ୍ୱୀପରେ ରହିଅଛନ୍ତି ଯୋଜନ
ପିଶାଚଙ୍କ ପ୍ରାୟ ସେହି ଘୋର ଦରଶନ ।
ପିଶାଚମାନଙ୍କ ଧର୍ମ କର୍ମ ଆଚରନ୍ତି
କର୍ମଅନ୍ତେ ସେମାନେ ତ ମରଣ ଲଭନ୍ତି ।
ଏହାଶୁଣି କହିଲାକ ସୁକେଶୀ ଦଇତ
ଆପଣ କିପାଇଁ ତାଙ୍କୁ ବୋଇଲେ ଏମନ୍ତ ।
ପୁଷ୍କର ବାସୀ କି ଧର୍ମ ଅର୍ଥ ନାଶକାରୀ
ଏହା ଶୁଣି ଋଷି ଗଣ ବୋଇଲେ ବିଚାରି ।
ସେ ପୁଷ୍କର ଦ୍ୱୀପ କଥା ଶୁଣ ନିଶାଚର
ଯହିଁ ପାଇଁ କହିଲୁଁ ସେ ଅତି ଭୟଙ୍କର ।
ରୌରବଙ୍କୁ ଆଦି କରି ଦାରୁଣ ନରକ
ଥିବାରୁ ସେ ଦ୍ୱୀପ ଗୋଟି ଅତି ଭୟାନକ ।
ସୁକେଶୀ କହିଲା ଆହେ ତପୋଧନ ବର୍ଗ
ଦାରୁଣ ନରକ କେତେ କହ ମୋହ ଆଗ ।
କେତେ ତାର ପରିମାଣ ପଥ କେତେଦୂର
ତାହାର ସ୍ୱରୂପ ପୁଣି ଅଟେ କି ପ୍ରକାର ।
ଋଷିଗଣ କହିଲେ ହେ ଦୈତ୍ୟରାଜ ଶୁଣ
ନରକ ଲକ୍ଷଣ ଆଉ ତାର ପରିମାଣ ।
ଦାରୁଣ ନରକ ଅଛି ଜାଣ ଏକୋଇଶ
ଶ୍ରେଷ୍ଠ ଯେ ରୌରବନର୍କ ହେ ରାକ୍ଷସ ଈଶ ।
ତାର ପରିମାଣ ଦୁଇ ସହସ୍ର ଯୋଜନ
ଅଙ୍ଗାରରେ ପୂର୍ଣ୍ଣସଦା ଜ୍ୱଳେ ହୁତାସନ ।
ତା ତଳେ ତପତ ତାମ୍ରମୟ ନାମେ ନର୍କ
ସର୍ବଦା ଅଛଇ ତହିଁ ଜ୍ୱଳନ୍ତା ପାବକ ।

ରୌରବ ନରକଠାରୁ ଅଟେ ଦୁଇଗୁଣ
ତୃତୀୟ ନରକ ନାମ ଦୈତ୍ୟପତି ଶୁଣ ।
ତା ନାମ ତାମିସ୍ର ସେହି ତାଠାରୁ ବିସ୍ତୃତ
କହୁଛୁଁ ଚତୁର୍ଥ ନାମ ଶୁଣ ଦେଇ ଚିତ୍ତ ।
ସେ ନରକ ନାମ ଅନ୍ଧତାମିସ୍ର ଅଟଇ
ତାମିସ୍ର ହୁଁ ବଡ଼ ଦୁଇ ଗୁଣ ଅଟେ ସେହି ।
ପଞ୍ଚମ ନରକ ନାମ ଅଟେ କାଳସୂତ୍ର
ଷଷ୍ଠ ନାମ ଅପ୍ରତିଷ୍ଠ ସପ୍ତ ଘଟିଯନ୍ତ୍ର ।
ଅଷ୍ଟମ ନରକ ନାମ ଅସିପତ୍ର ଜାଣ
ବାସ୍ତରି ଯୋଜନ ଅଟେ ଏହାର ପ୍ରମାଣ ।
ନବମକୁ ତପ୍ତକୁମ୍ଭ ନରକ ଯେ କହି
ଦଶମର ନାମ କୂଟଶଲ୍ମଳି ଅଟଇ ।
କରପତ୍ର ନର୍କ ଅଟେଁ ଏକାଦଶ ନାମ
ଦ୍ୱାଦଶ ନାମ ଶ୍ୱାନଭୋଜନ ସେ ଭୀମ ।
ସଂଦଂଶ ଯେ ତେର ଲୋହପିଣ୍ଡ ଯେ ଚଉଦ
କରମ୍ଭସିକତା ନାମେ ସେ ଅତି ଭୟଦ ।
ଷୋଡ଼ଶ ନର୍କର ନାମ କ୍ଷାର ନଦୀ ଜାଣ
କୃମି ଭୋଜନ ଯେ ସପ୍ତଦଶ ଦୈତ୍ୟରାଣ ।
ଅଷ୍ଟାଦଶ ବୈତରଣୀ ନଦୀକି କହନ୍ତି
ଶୋଣିତ ପୂଯ ଭୋଜନ ଯେ ଊନବିଂଶତି ।
କ୍ଷୁରାଗ୍ର ଧାରା ଯେ ବିଂଶ ନର୍କକୁ କହଇ
ନିଶିତଚକ୍ରକ ଏକବିଂଶ ଯେ ଅଟଇ ।
କେହି କେହି ସଂଶୋଷଣ ନରକ କହନ୍ତି
ଭଣେ ବିଷ୍ଣୁ ପାଦଚିନ୍ତେ ଗୋପୀନାଥ ମତି ।

=+=

## କର୍ମ ବିପାକ

ସୁକେଶୀ କହିଲା ଆହେ ବିପ୍ର ଶ୍ରେଷ୍ଠ ଗଣ
ଯାହା କହିଲେ ତା ମୁହିଁ କଲିହିଁ ଶ୍ରବଣ ।
ଯେଉଁ କର୍ମ କରି ଲୋକେ ନରକେ ପଡ଼ନ୍ତି
କିରୂପେ ଯେ ମର୍ତ୍ତ୍ୟପୁର ସେ ସ୍ଥାନେ ଗମନ୍ତି ।
ତାହା ଶୁଣିବାକୁ ଇଚ୍ଛା ହେଉଛି ମୋହର
ଋଷିଗଣ ବୋଇଲେ ହେ ଶୁଣ ନିଶାଚର ।
ଦେବ ବିପ୍ର ନିନ୍ଦାକାରୀ ଅଟନ୍ତି ଯେତେକ
ସେମାନେ ମରଣ ଅନ୍ତେ ଭୋଗନ୍ତି ନରକ ।
ଇତିହାସ ପୁରାଣ ଯେ ନ ପଢ଼େ ନ ଶୁଣେ
ଅହଙ୍କାରେ ତାହାକୁ ଯେ ମିଥ୍ୟା ବୋଲି ଭଣେ ।

ଗୁରୁଜନ ନିନ୍ଦା କରେ ଯାଗ ଯଜ୍ଞ ନାଶ
ଦାତାଙ୍କୁ ନିଷେଧ କରେ ଯେବଣ ପୁରୁଷ ।
ମରଣାନ୍ତେ ନରକକୁ କରନ୍ତି ଗମନ
ଭୁଞ୍ଜନ୍ତି ବହୁତ କ୍ଳେଶ ହେ ଦୈତ୍ୟ ରାଜନ ।
ଭାଇବନ୍ଧୁ ପତି ପ୍ରଭୁ ଭୃତ୍ୟ ପିତା ପୁତ୍ର
ଯାଜକ ଯେ ଅଧ୍ୟାପକ ଆବର ସୁମିତ୍ର ।
ଏହାଙ୍କୁ ସମାନ ମଣେ ପ୍ରଭେଦ ନ ରଖେ
ସେମାନେ ପଡ଼ନ୍ତି ଯାଇଁ ଏ ଘୋର ନରକେ ।
କନ୍ୟାଦାନ କରି ଯେଉଁ ଅଧର୍ମୀ ପୁରୁଷ
ପୁଣି ସେ କନ୍ୟାକୁ ଦାନ କରେ ଅସୁରେଶ ।
କରପତ୍ରେ ଯମଦୂତେ କରି ବେନିଖଣ୍ଡ
ନରକେ ପକାଇ ତାକୁ ଦିଅନ୍ତି ସେ ଦଣ୍ଡ ।
ପରର ସନ୍ତାପ ଜାତ କରନ୍ତି ଯେ ଜନ
ହରନ୍ତି ଉଶୀରବାଳ ବ୍ୟଜନ ଚନ୍ଦନ ।
କରମ୍ଭସିକତା ନାମ ନରକେ ପଡ଼ନ୍ତି
ଯମଦୂତେ ତାକୁ ବହୁ ଶାସ୍ତି ଯେ ଦିଅନ୍ତି ।
ଦେବ କାର୍ଯ୍ୟେ ପିତୃଶ୍ରାଦ୍ଧେ ହୋଇ ନିମନ୍ତ୍ରିତ
ଅନ୍ୟତ୍ର ଭୋଜନ କରେ ତାକୁ ଯମଦୂତ ।
ନରକେ ପକାନ୍ତି ତହିଁ ପକ୍ଷୀମାନେ ଆସି
ତୀକ୍ଷ୍ଣ ଥଣ୍ଟେ ବିଦାରନ୍ତି ତା ମାଂସକୁ ବସି ।
ସେ ସାଧୁଙ୍କ ମନେ କଷ୍ଟ ଦିଏ ମର୍ମ କହି
ପକ୍ଷୀଏ ଚଞ୍ଚୁରେ ଖୋଳି ପକାନ୍ତି ତା ଦେହୀ
ସାଧୁଠାରେ ଯେଉଁ ଜନ ଖଳ ଆଚରଇ
ବଜ୍ରକାଳ ତା ଜିହ୍ୱାକୁ ଥଣ୍ଟରେ ଖୋଳଇ ।
ପିତାମାତା ଗୁରୁଜନ ନ ମାନେ ଯେ ଜନ
ଅଧୋମୁଖେ ହୁଅଇ ସେ ନରକେ ପତନ ।
ଚର୍ମ ପୂଜ ବିଷ୍ଠା ମୂତ୍ର କରଇ ଆହାର
କେ ମୁଖେ କହିବ କଷ୍ଟ ଭୋଗ ସେ ତାହାର ।
ଦେବତା ଅତିଥି ଭୃତ୍ୟ ଅଭ୍ୟାଗତ ଜନ
ବାଳକ ଆବର ପିତା ମାତା ହୁତାଶନ ।
ଏମାନଙ୍କୁ ଉପବାସେ ରଖି ଯେ ଭୁଞ୍ଜଇ
ସେ ଦୁର୍ଗନ୍ଧ ରକ୍ତ ପୂଜ ଭକ୍ଷଣ କରଇ ।
ତଦନ୍ତେ ସେ ସୂଚିମୁଖ ଗିରି ରୂପ ଧରି
କ୍ଷୁଧାତୁରେ ରହେ କ୍ଳେଶ ଅନୁଭବ କରି ।
ଏକ ପଙ୍ଗତରେ ବସି ଭୁଞ୍ଜୁଥିବା ଜନେ
ବିଷମ ଭୋଜନ ଦ୍ୟନ୍ତି ତାକୁ ଦୂତମାନେ ।
ବିଡ଼୍ ଭୋଜନ ନ କରେ ନେଇଣ ପକାନ୍ତି
ବହୁକଷ୍ଟେ ରହି ତହିଁ ବିଷ୍ଠା ଭୁଞ୍ଜୁଥାନ୍ତି ।
ଭାଇକି ନ ଦେଇ ଭାଗ ଆପ ଭୋଗକରେ
ପଡ଼ଇ ସେ ଯାଇଁ ଶ୍ଳେଷ୍ମାଭୋଜନ ନର୍କରେ ।
ଭୋଜନ ସାରିଣ ହସ୍ତ ନ ଧୋଇ ସେ ଜନ
ଜାଣିଶୁଣି ଛୁଏଁ ଗୋରୁ ବିପ୍ର ହୁତାଶନ ।
ସୁଦାରୁଣ ତପ୍ତକୁଣ୍ଡେ ପଡ଼ଇ ଯେ ଯାଇଁ ।
ବହୁ ଦିନ ରହେ ତହିଁ ବହୁ କଷ୍ଟ ପାଇ ।
ଭୋଜନାନ୍ତେ ହସ୍ତକୁ ନ ଧୋଇ ଯେଉଁ ଜନ
ଚନ୍ଦ୍ର ସୂର୍ଯ୍ୟ ନକ୍ଷତ୍ରଙ୍କୁ କରଇ ଦର୍ଶନ ।
ଯମଗଣେ ତାହା ନେତ୍ରେ ଅନଳ ପୂରାଇ
ଦାରୁଣ ନରକ କୁଣ୍ଡେ ଦିଅନ୍ତି ପକାଇ ।
ମିତ୍ର ପତ୍ନୀ ଜ୍ୟେଷ୍ଠଭାଇ ମାତା ପିତା ସ୍ୱସା
ଗୁରୁ ବୃଦ୍ଧଙ୍କୁ ଗୋଇଠା ମାରେ ହୋଇଘୋଷା ।
ଜ୍ୱଳନ୍ତ ଲୁହା ପିଞ୍ଜରେ ବାନ୍ଧି ତା ଚରଣ
ପକାନ୍ତି ଘୋର ନରକକୁଣ୍ଡେ ଦୂତଗଣ ।
ଜାନୁ ପରିଯ୍ୟନ୍ତ ଦଗ୍ଧ ହେଉଥାଏ ସେହି
ଏଥୁଅନନ୍ତରେ ଶୁଣ ଆହେ ଦୈତ୍ୟସାଇଁ ।
ପାୟସ କୃଶର ମାଂସ ଭୁଞ୍ଜଇ ଯେ ବୃଥା
କହିଲେ ଯେ ନ ସରିବ ତାର ଦଣ୍ଡକଥା ।
ତା ମୁଖେ ବିଚିତ୍ରାକୃତି ତପ୍ତଲୁହା ବାଡ଼ି
ପୂରାଇ ନରକ କୁଣ୍ଡେ ଦିଅନ୍ତି ଯେ ଛାଡ଼ି ।
ଯେ ସର୍ବଦା ଗୁରୁଦେବ ବିପ୍ର ଦେବ ନିନ୍ଦେ
ଯେଉଁ ଜନ ବସି ତାହା ଶୁଣଇ ଆନନ୍ଦେ ।
ପାପକର୍ମ ନରାଧମ ଅଟଇଟି ସେହି
ଅଗ୍ନିମୟ କିଳା ଲୁହା ଯମଦୂତେ ନେଇ ।
ବାରମ୍ବାର ଦେଇ ତାର ଶ୍ରବଣ ବିବରେ
ପକାନ୍ତି ଦୁର୍ଗନ୍ଧ ଯୁକ୍ତ ଘୋର ନରକରେ ।
ଯେହୁ କୂପ ବାମ୍ପୀ ସଭା ମଠ ବିପ୍ର ଗୃହ
ତଡ଼ାଗ ପୋଖରୀ ଉପବନ ଦେବାଳୟ ।
ଭାଙ୍ଗି ନାରଖାର କରେ ସେ ପାପୀକୁ ଧରି
କରତରେ କରତନ୍ତି ତା ହେଦ ବିଦାରି ।
ଚର୍ମ ମାଂସ ଭିନ୍ନ ଭିନ୍ନ କରନ୍ତି ଯେ କ୍ରୋଧେ
ସେହି ମହା ପାପୀ ଅତି ଉଚ୍ଚସ୍ୱରେ କାନ୍ଦେ ।
ତାହାଙ୍କ ଚରଣ ଧରି କରଇ ବିଳାପ
ତାହାଠାରେ ଯମଦୂତେ କରି ମହାକୋପ ।

ପକାନ୍ତି ନରକ କୁଣ୍ଡେ ଭୁଞ୍ଜନ୍ତି ଯାତନା
କାକେ ଚଞ୍ଚୁ ମାରୁଥାନ୍ତି ହୋଇ କୋପମନା ।
ଗୋ ବିପ୍ର ଅନଳ ସୂର୍ଯ୍ୟ ମୁଖେ ଯେ ମୂତଇ
ବାୟସ ତାହାର ଗୁହ୍ୟ ଦ୍ୱାରକୁ ଖୋଳଇ ।
ମୂତ୍ରଦ୍ୱାରେ ଅସ୍ତ୍ର ମାରି ଯମର କିଙ୍କର
ପକାନ୍ତି ଦୁସ୍ତର ଘୋର ନରକ କୁଣ୍ଡର ।
ପୁତ୍ର ଭୃତ୍ୟ ଦାରାବନ୍ଧୁ ଦୁର୍ଭିକ୍ଷରେ ତେଜି
ଆପଣା ଉଦର ପୋଷେ ତାକୁ ଦୂତରାଜି ।
ମରଣାନ୍ତେ ବାନ୍ଧିନେଇ ଯମକୁ ଦିଅନ୍ତି
ତାର ପାପପୁଣ୍ୟ ବୁଝି ଧର୍ମ ନରପତି ।
କୁକୁରୀ ଯୋନିରେ ଜନ୍ମ ଦିଅନ୍ତି ତାହାକୁ
ଅଭକ୍ଷ୍ୟ ଭକ୍ଷଣ କରି କାଟଇ କାଳକୁ ।
ଅତିଥିକୁ ପରିତ୍ୟାଗ କରଇ ଯେ ଜନ
ଶରଣାଗତ ଜନକୁ କରଇ ବନ୍ଧନ ।
ଯମଗଣେ ତାକୁ କ୍ରୋଧେ ବହୁ ମାଡ଼ମାରି
ପକାନ୍ତି ନରକ କୁଣ୍ଡେ ଯନ୍ତ୍ରର ଉପରି ।
ଯାଗକର୍ମେ ବ୍ରାହ୍ମଣଙ୍କୁ ଯେ ଦିଅଇ କ୍ଳେଶ
ଶିଳରେ ତାହାକୁ ପେଷି କରନ୍ତି ଯେ ନାଶ ।
ଶୋଷକ ତାହାକୁ ପୁଣି ନିଅଇ ଯେ ଶୋଷି
ଏଥୁଅନନ୍ତରେ କଥା ଶୁଣ ହେ ସୁକେଶି ।
ନ୍ୟାସ ଅପହାରୀ ବନ୍ଧା ହୁଅଇ ଜଞ୍ଜିରେ
ତା ଶରୀର ଅତି କୃଶ ହୁଅଇ କ୍ଷୁଧାରେ ।
ତାଳୁ ଶୁଖିଯାଏ କଣ୍ଠ ଶୁଖିଯାଏ ତାର
ବୃଶ୍ଚିକେ କାମୁଡ଼ୁଥାନ୍ତି ତାର କଳେବର ।
ପୂର୍ବକାଳେ ସ୍ତିରୀସଙ୍ଗ କରେ ଯେ ପୁରୁଷ
ପରଦାର ଦରଶନେ ଯାର ଅଭିଳାଷ ।
କରାନ୍ତି ତାକୁ ଶିମୁଳୀ ବୃକ୍ଷ ଆଲିଙ୍ଗନ
ବହି ନିବାରୁଣ ସେହି ଯମ ଦୂତଗଣ ।
ସେ ଶିମୁଳୀ ବୃକ୍ଷକଥା ଶୁଣ ଦୈତ୍ୟପତି
ଲୁହାକଣ୍ଟା ସେ ବୃକ୍ଷରେ ମରା ହୋଇଥାନ୍ତି ।
ଅନଳରେ ଜଳୁଥାଏ ସେ କଣ୍ଟା ମୁନିଆ
ଉପରକୁ ସର୍ବଦା ସେ ହୋଇଥାନ୍ତି ଠିଆ ।
ପାପୀର ଦେହରେ ଫୋଡ଼ି ହୋଇଯାନ୍ତି ସେହି
ମଲି ମଲି ବୋଲୁଥାନ୍ତି ବିକଳେ ସେ ରହି ।
ଶିକ୍ଷକଙ୍କୁ ଅପମାନ ଦିଅନ୍ତି ଯେ ଶିଷ୍ୟେ
ଛଡ଼ାଇ ନିଅନ୍ତି ଗୁରୁଙ୍କର କାର୍ଯ୍ୟ ରୋଷେ ।

ତାର ମୁଣ୍ଡେ ଯମଦୂତେ ଲଦନ୍ତି ପଥର
ସେ ପଥର ବୋଝ ବହୁଥାନ୍ତି ନିରନ୍ତର ।
ଜଳ ମଧ୍ୟେ ମୂତ୍ର ବିଷ୍ଠା ଖଙ୍କାର ପକାଇ
ପୂଯ ବିଷ୍ଠା ଗନ୍ଧପୂର୍ଣ୍ଣ ନର୍କେ ପଡ଼େ ଯାଇ ।
ଶ୍ରାଦ୍ଧରେ ଯେ ଡାକେଯାଇଁ ନ କରେ ଭୋଜନ
ଅନ୍ୟୋଽନ୍ୟରେ ନିଜ ମାଂସ କରନ୍ତି ଭକ୍ଷଣ ।
ବେଦ ଅଗ୍ନି ଗୁରୁ ମାତା ପିତାକୁ ଯେ ଛାଡ଼େ
ଯମଦୂତ ବାନ୍ଧି ତାକୁ ପର୍ବତେ କଚାଡ଼େ ।
ଛାଡ଼ି ଦିଅଇ ସେ ପଡ଼େ ଆସି ଭୂମିତଳେ
ମଲି ୨ ବୋଲୁଥାଇ ସେ ଅତି ବିକଳେ ।
ପୁନର୍ଭୂ କନ୍ୟାର ପତି ହୁଅଇ ଯେ ଜନ
କନ୍ୟାକୁ ବିନଷ୍ଟ କରେ ଯେବଣ ଦୁର୍ଜନ ।
ପୁନର୍ଭୂ ପୁତ୍ରର ଶ୍ରାଦ୍ଧେ ଭୋଜନ ଯେ କରେ
କୃମି ପିପିଲିକା ଭକ୍ଷି ପଡ଼ଇ ନର୍କରେ ।
ଚଣ୍ଡାଳ ଅନ୍ତ୍ୟଜଠାରୁ ଦକ୍ଷିଣା ଯେ ନିଏ
କିବା ପୁରୋହିତ ହୋଇ ତାହାକୁ ପୂଜାଏ ।
ଜନ୍ମେ ଜନ୍ମେ ହୁଅଇ ସେ ଜନ ଘୋଡ଼ାପୋକ
ଭୋଗ କରୁଥାଇ ପଚା ଦୁର୍ଗନ୍ଧ ନରକ ।
ପଶୁଙ୍କର ପିଠିମାଂସ ଯେ ଭକ୍ଷଣ କରେ
ଅଥବା ବିକ୍ରୟ କରେ ନେଇ ତା ବଜାରେ ।
ସେ ଧନରେ ଆପଣାର କୁଟୁମ୍ବ ପୋଷଇ
ବୃକଭକ୍ଷ ନରକେ ସେ ପଡ଼ଇଟି ଯାଇ ।
ଯେ ସୁବର୍ଣ୍ଣ ଚୋରି କରେ ମାରଇ ବ୍ରାହ୍ମଣ
ଯଦି କେହି କରେ ଗୁରୁପତ୍ନୀକି ହରଣ ।
ଯେ ଲୋଭରେ ପଡ଼ି ଗୋରୁ ଭୂମିକି ହରଇ
ଗୋରୁହତ୍ୟା ଶିଶୁହତ୍ୟା ସ୍ତ୍ରୀ ହତ୍ୟା କରଇ ।
ଗୋରୁକୁ ବିକ୍ରୟ କରେ ଯେବଣ ବ୍ରାହ୍ମଣ
ସୋମ ବେଦ ବିକି କରେ କୁଟୁମ୍ବ ପୋଷଣ ।
କୂଟ କରେ ମିଛ କହେ ନ ହୁଏ ଶଉଚ
ମିଥ୍ୟା ସାକ୍ଷୀ ଦେଇ କରେ ଲୋକଙ୍କୁ ଯେ ତୁଚ୍ଛ
ନିତ୍ୟ ଆଉ ନୈମିତ୍ତିକ କର୍ମ ନ କରଇ
ଏମାନେ ରୌରବ ନର୍କେ ପଡ଼ନ୍ତିଟି ଯାଇ ।
ଦଶ ସହସ୍ର ବରଷ ନରକରେ ପଡ଼ି
ପୁନରପି ରଉରବ ନରକକୁ ଛାଡ଼ି ।
ତାମିସ୍ର ନରକେ ବାସ କରନ୍ତି ସେ ଯାଇଁ
ଦଶ ସହସ୍ର ବରଷ ପଡ଼ି ପୁଣି ତହିଁ ।

ମହା ଭୟଙ୍କର ଅନ୍ଧତାମିସ୍ର ନରକେ
ପଡ଼ିଥାନ୍ତି ସେହି ଦଶସସ୍ର ବର୍ଷଯାକେ ।
ପୁଣି ଯାଇଁ ଅସିପତ୍ର ବନେ ସେ ପଡ଼ନ୍ତି
ଦଶ ସହସ୍ର ବରଷ ଯାତନା ଭୋଗନ୍ତି ।
ତହୁଁ ଯାଇ ଘଟିଯନ୍ତ୍ରେ ରହନ୍ତି ସେ ପୁଣି
ତାହାଙ୍କ କଷଣ କେହୁ ଏକମୁଖେ ଭଣି ।
ତାଙ୍କ ଦୁଃଖ ଯେ ଦେଖିବ ହେ ରଜନୀଚର
ନିଶ୍ଚୟ ନୟନୁ ତାର ବହିବଟି ନୀର ।
ମନ ମଧ୍ୟେ କରିବ ଏ କିମ୍ପା କଲେ ପାପ
ବଡ଼ ନିଦାରୁଣ ଅଟେ ଯମର ପ୍ରତାପ ।
ଏତେମତେ ଦୟା ତାର ବସୁନାହିଁ ହୃଦେ
ତ୍ରାହି ପାଆନ୍ତୁ ଯେ ଏଥୁ ଧର୍ମ ହେଉ ଉଦେ ।
ଏମନ୍ତେ ଯାତନା ଭୋଗ କରି ହେ ସୁକେଶି
ତପ୍ତ କୁମ୍ଭ ନରକରେ ପଡ଼ନ୍ତି ସେ ଆସି ।
ତୁମ୍ଭ ଆଗେ କଲୁଁ ଘୋର ନରକ ବର୍ଣ୍ଣନ
ନିନ୍ଦିତ କୃତଘ୍ନ ଲୋକେ ହୁଅନ୍ତି ପତନ ।
ଦେବତାଙ୍କ ମଧ୍ୟେ ଯେହ୍ନେ ଜନାର୍ଦ୍ଦନ ଶ୍ରେଷ୍ଠ
ପର୍ବତଙ୍କ ମଧ୍ୟେ ଯେହ୍ନେ ହିମାଦ୍ରୀ ଗରିଷ୍ଠ ।
ଆୟୁଧଙ୍କ ମଧ୍ୟେ ଯେହ୍ନେ ଶ୍ରେଷ୍ଠ ସୁଦର୍ଶନ
ପକ୍ଷୀଗଣ ମଧ୍ୟେ ଶ୍ରେଷ୍ଠ ଗରୁଡ଼ ଯେସନ ।
ସର୍ପ ମଧ୍ୟେ ଅଗ୍ରଗଣ୍ୟ ଅନନ୍ତ ଯେପରି
ପଞ୍ଚଭୂତ ମଧ୍ୟେ ଯେହ୍ନେ ଶ୍ରେଷ୍ଠ ବସୁନ୍ଧରୀ ।
ଗଙ୍ଗା ଯେହ୍ନେ ନଦୀ ମଧ୍ୟେ ପ୍ରଧାନ ଅଟଇ
ପୁଷ୍ପ ମଧ୍ୟେ ପଦ୍ମକୁ ଯେ ଶ୍ରେଷ୍ଠ ବୋଲି କହି ।
ଦୈତ୍ୟ ମଧ୍ୟେ ଶ୍ରେଷ୍ଠ ଯେହ୍ନେ ହରଙ୍କ ଭକତ
କ୍ଷେତ୍ର ମଧ୍ୟେ ଶ୍ରେଷ୍ଠ କୁରୁଜାଙ୍ଗଲ ଯେ କ୍ଷେତ୍ର ।
ତୀର୍ଥ ମଧ୍ୟେ ପୃଥୁଦକ ଯେସନ ପ୍ରଧାନ
ପୁଣ୍ୟ ବନମଧ୍ୟେ ଯେହ୍ନେ ନନ୍ଦନକାନନ ।
ସରୋବର ମଧ୍ୟେ ଯେହ୍ନେ ମାନସରୋବର
ଭୁବନ ମଧ୍ୟରେ ଯେହ୍ନେ ବ୍ରହ୍ମାଙ୍କର ପୁର ।
ଧର୍ମ କ୍ରିୟାବିଧି ମଧ୍ୟେ ଯେଉଁପରି ସତ୍ୟ
ସ୍ନେହପାତ୍ର ମଧ୍ୟରେ ଶ୍ରେଷ୍ଠ ଯେସନେଟି ପୁତ୍ର ।
ଯଜ୍ଞ ମଧ୍ୟେ ଅଶ୍ୱମେଧ ଯେପରି ପ୍ରଧାନ
ତପୋଧନ ମଧ୍ୟେ ଶ୍ରେଷ୍ଠ ଅଗସ୍ତ୍ୟ ଯେସନ ।

ଆଗମ ମଧ୍ୟମ ଶ୍ରୁତି ପ୍ରଧାନ ଯେପରି
ନ ହେବେ ପୁରାଣେ ମତ୍ସ୍ୟ ପୁରାଣକୁ ସରି ।
ସଂହିତାରେ ସ୍ୱାୟମ୍ଭୁବ ସଂହିତା ପ୍ରଧାନ
ସ୍ମୃତି ମଧ୍ୟେ ମନୁ ଶ୍ରେଷ୍ଠ ଅଟଇ ଯେସନ ।
ତିଥି ମଧ୍ୟେ ଅମାବାସ୍ୟା ପ୍ରଧାନ ଯେପରି
ଦେବତାଙ୍କ ମଧ୍ୟେ ଶ୍ରେଷ୍ଠ ଯେହ୍ନେ ବଜ୍ରଧାରୀ ।
ତେଜସ୍ୱୀ ପଦାର୍ଥ ମଧ୍ୟେ ସୂର୍ଯ୍ୟ ଯେହ୍ନେ ଶ୍ରେଷ୍ଠ
ନକ୍ଷତ୍ରଙ୍କ ମଧ୍ୟେ ଚନ୍ଦ୍ର ଯେପରି ଗରିଷ୍ଠ ।
ହ୍ରଦଙ୍କ ମଧ୍ୟରେ ଶ୍ରେଷ୍ଠ ଜଳଧି ଯେପରି
ନୋହିବେ ରାକ୍ଷସ କେହି ଯେହ୍ନେ ତୁମ୍ଭ ସରି ।
ପାଶ ମଧ୍ୟେ ନାଗପାଶ ପ୍ରଧାନ ଯେସନ
ଜଳଚର ମଧ୍ୟେ ତିମି ଯେପରି ପ୍ରଧାନ ।
ଧାନ୍ୟ ମଧ୍ୟେ ଶାଳିଧାନ୍ୟ ଦ୍ୱିପଦେ ବ୍ରାହ୍ମଣ
ଚତୁଷ୍ପଦ ମଧ୍ୟେ ଗୋରୁ ସିଂହ ଶ୍ରେଷ୍ଠ ଜାଣ ।
ପୁଷ୍ପମଧ୍ୟେ ଜାତୀପୁଷ୍ପ ପ୍ରଧାନ ଯେପରି
କା- ନଗରୀ ମଧ୍ୟେ ଶ୍ରେଷ୍ଠ କାଞ୍ଚି ଯେ ନଗରୀ ।
ନାରୀ ମଧ୍ୟେ ରମ୍ଭା ଶ୍ରେଷ୍ଠ ଆଶ୍ରମେ ଗୃହସ୍ଥ
ପୁରମଧ୍ୟେ କୁଶସ୍ଥଳୀ ପ୍ରଧାନ ହେ ଦୈତ୍ୟ ।
ଦେଶମଧ୍ୟେ ମଧ୍ୟଦେଶ ଫଳ ମଧ୍ୟେ ଚୂତ
କଢ଼ ମଧ୍ୟରେ ପ୍ରଧାନ ଅଶୋକ ଯେମନ୍ତ ।
ଔଷଧି ମଧ୍ୟରେ ଯେହ୍ନେ ଶ୍ରେଷ୍ଠ ହରିତକୀ
ମୂଳଙ୍କ ମଧ୍ୟରେ ଶ୍ରେଷ୍ଠ କନ୍ଦକୁ ଯେ ଲେଖି ।
ବ୍ୟାଧି ମଧ୍ୟେ ଶ୍ରେଷ୍ଠ ଅଟେ ଯେସନେ ଅଜୀର୍ଣ୍ଣ
ଶ୍ୱେତ ମଧ୍ୟେ ଦୁଗ୍ଧ ଅଟେ ଯେପରି ପ୍ରଧାନ ।
ଆବରଣ ମଧ୍ୟେ ଶ୍ରେଷ୍ଠ ବସନ ଯେପରି
କଳାମଧ୍ୟେ ଶ୍ରେଷ୍ଠ ଯେନେ ଯେ ଗଣନାକାରୀ
ବିଜ୍ଞାନ ମଧ୍ୟରେ ଶ୍ରେଷ୍ଠ ଯଥା ଇନ୍ଦ୍ରଜାଲ
ଫଳଙ୍କ ମଧ୍ୟରେ ଯେହ୍ନେ ପ୍ରଧାନ ଯେ ତାଳ ।
ଶାକମଧ୍ୟେ କାକମାତା ଯେସନେ ପ୍ରଧାନ
ରସଙ୍କ ମଧ୍ୟରେ ଜାଣ ଲବଣ ଯେସନ ।
ପୋଖରୀ ମଧ୍ୟରେ ପମ୍ପା ପ୍ରଧାନ ଯେପରି
ଜ୍ଞାନୀଙ୍କ ମଧ୍ୟରେ ଶ୍ରେଷ୍ଠ ଯଥା ତ୍ରିପୁରାରି ।
ବନବାସୀ ମଧ୍ୟେ ଯେହ୍ନେ ଋକ୍ଷରାଜ ଶ୍ରେଷ୍ଠ
ମହୀରୁହ ମଧ୍ୟେ ଯେହ୍ନେ ବଟହିଁ ଗରିଷ୍ଠ ।

ସତୀ ମଧ୍ୟେ ଶ୍ରେଷ୍ଠ ଯେହ୍ନେ ହିମାଳୟ ସୁତା
ଗୋରୁଙ୍କ ମଧ୍ୟରେ ଯଥା କପିଳା ଗୋମାତା ।
ବୃଷ ମଧ୍ୟେ ଶ୍ରେଷ୍ଠ ଯେହ୍ନେ ନୀଳବର୍ଣ୍ଣ ବୃଷ
ଏଥୁ ଅନନ୍ତରେ ଶୁଣ ହେ ରାକ୍ଷସଈଶ ।
ଦୁର୍ଗମ ଆବର ରୌଦ୍ର ବସ୍ତୁ ଅଛି ଯେତେ
ତାଙ୍କ ମଧ୍ୟେ ବୈତରଣୀ ପ୍ରଧାନ ଯେମନ୍ତେ ।
ପାପ ଆଉ ପାପୀ ମଧ୍ୟେ କୃତଘ୍ନ ଯେସନ
ପ୍ରଧାନ ଅଟଇ ଆହେ ରାକ୍ଷସ ରାଜନ ।
ବ୍ରହ୍ମଘାତୀ ଗୋଘାତୀର ଅଛଇ ନିଷ୍କୃତି
କୃତଘ୍ନ ଯେ ଜନ ସେହୁ ଅତ୍ୟନ୍ତ ଦୁର୍ମତି ।
କୋଟି ବର୍ଷେ ମୁକତି ଯେ ନୁହଇ ତାହାର
ସେ କୃତଘ୍ନ ପାପର ଯେ ନାହିଁ ପ୍ରତିକାର ।
ଦୀନ ଗୋପୀନାଥ ବୋଲେ ବୋଲ ହରି ହରି
ସକଳ ପାପରୁ ହରି ପାରନ୍ତି ଯେ ତାରି ।

=+=

## ଭୁବନକୋଷ ବର୍ଣ୍ଣନ

କହିଲା ସୁକେଶୀ ପୁଣି ଆହେ ଋଷିଗଣ
ପୁଷ୍କର ଦ୍ୱୀପର ସବୁ କଲ ଯେ ବର୍ଣ୍ଣନ ।
ଜମ୍ବୁଦ୍ୱୀପ କଥା ଏବେ କହି ମନତୋଷ
ଋଷିଏ ବୋଇଲେ ଶୁଣ ହେ ରାକ୍ଷସଈଶ ।
ଏହି ଜମ୍ବୁଦ୍ୱୀପ ନବଭାଗ ଅଛି ହୋଇ
ଏହି ଦ୍ୱୀପ ଗୋଟି ଅତି ବିସ୍ତାର ଅଟଇ ।
ସ୍ୱର୍ଗ ଅପବର୍ଗ ଫଳ କରଇ ପ୍ରଦାନ
ଇଳାବୃତ ବର୍ଷ ଏହା ମଧ୍ୟ ଭାଗ ଜାଣ ।
ବିଚିତ୍ର ଭଦ୍ରାସ୍ୟ ବର୍ଷ ପୂର୍ବରେ ଅଛଇ
ଅଗ୍ନିକୋଣେ ହରିଣ୍ମାନ ବର୍ଷ ବିରାଜଇ ।
ଦକ୍ଷିଣ ଭାରତବର୍ଷ ପୁଣ୍ୟମୟ ଦେଶ
ନଇରତ କୋଣ ନାମ ଅଟେ ହରିବର୍ଷ ।
କେତୁମାଳ ବର୍ଷ ଏହା ପଶ୍ଚିମେ ବିରାଜେ
ବାୟବ୍ୟେ ଚମ୍ପକ ବର୍ଷ ପାଦପରେ ସାଜେ ।
କୁରୁବର୍ଷ ଏହି ଜମ୍ବୁଦ୍ୱୀପର ଉତ୍ତରେ
କଳ୍ପବୃକ୍ଷ ବିରାଜଇ ସେ ବର୍ଷ ମଧ୍ୟରେ ।
ଈଶାନରେ ରମଣୀୟ କିଂପୁରୁଷ ବର୍ଷ
ଏହି ନବଗୋଟି ବର୍ଷ ହେ ରାକ୍ଷସ ଈଶ ।
ପରମ ପବିତ୍ର ପୁଣି ଅତି ମନୋହର
ଏହି ବର୍ଷ ମାନଙ୍କର ମହିମା ଅପାର ।

ଭାରତବର୍ଷକୁ ଛାଡ଼ି ଆଉ ଆଠ ବର୍ଷେ
ଜରା ମୃତ୍ୟୁ ଭୟ ନାହିଁ କହିଲୁ ବିଶେଷେ ।
ବିନା ଯତ୍ନେ ନାନା ବିଧ ସିଦ୍ଧି ଲାଭ ହୁଏ ।
ଉତ୍ତମ ଅଧମ ଲୋକ ସଙ୍ଗହିଁ ନଥାଏ ।
ଆହେ ନିଶାଚର ତହିଁ ସକଳ ସମାନ
ଭାରତବର୍ଷର କଥା ଶୁଣ ଦେଇ ମନ ।
ନବଗୋଟି ଦ୍ୱୀପଅଛି ଏ ଭାରତବର୍ଷେ
ବାରାନିଧି ବେଢ଼ି ରହିଅଛି ଚଉପାଶେ ।
ସେ ଅତି ଅଗମ୍ୟ ସ୍ଥାନ ନାମ ତାର ଶୁଣ
ଇନ୍ଦ୍ରଦ୍ୱୀପ କଶେରୁଣ ଆଉ ତାମ୍ରପର୍ଣ୍ଣ ।
ଗଭସ୍ତମାନ ଯେ ଦ୍ୱୀପ କଟାହ ଆବର
ନାଗଦ୍ୱୀପ ଦାରୁଣ ଯେ ଅଯୁତ ସିଂହଳ ।
ଅଛଇ କୁମର ଦ୍ୱୀପ ଏହାର ଈଶାନେ
ପୂର୍ବରେ କିରାତ ପୁଣି ଯବନ ପଶ୍ଚିମେ ।
ଦକ୍ଷିଣେ ଅନ୍ଧକ ରାଜ୍ୟ ଉତ୍ତରେ ତୁରସ୍କ
ମଧ୍ୟେ ରହିଛନ୍ତି ନାନା ଜାତିର ଯେ ଲୋକ ।
ବିପ୍ର କ୍ଷତ୍ରିବୈଶ୍ୟ ଶୂଦ୍ର ଅଛନ୍ତି ଆବର
ଯଜ୍ଞ ଯୁଦ୍ଧ ବାଣିଜ୍ୟାଦି ହୁଅଇ ଆବର ।
ଏହାଙ୍କର ବ୍ୟବହାର ଅଟଇ ଉତ୍ତମ
ଏହା ମଧ୍ୟେ ଅଛି ପୁଣି ନାନା ଦେଶ ଗ୍ରାମ ।
ଏଥେ ଅଛି ପାପ ପୁଣ୍ୟ ସ୍ୱର୍ଗ ଅପବର୍ଗ ।
ବହୁତ ପର୍ବତ ଅଛି ଅନେକ ଯେ ଦୁର୍ଗ ।
ସେ ର୍ପବତ ମାନଙ୍କର ନାମ କହୁଁ ଶୁଣ
ମହେନ୍ଦ୍ର ମଳୟ ରୁକ୍ଷ ସହ୍ୟ ଶକ୍ତିମାନ ।
ବିନ୍ଧ୍ୟ ପାରିପତ୍ର ଏହି ଆଠ କୁଳାଚଳ
ଏହାଭିନ୍ନ ଶତସସ୍ର ଅଛଇ ଶଇଳ ।
ସେ ସବୁ ପର୍ବତ ଉଚ୍ଚ ବିସ୍ତୃତ ଅଟଇ
ସୁନ୍ଦର ବିପୁଳ ସାନୁ ତହିଁ ବିରାଜଇ ।
କୋଳାହଳ ବୈଭ୍ରାଜ ଯେ ମନ୍ଦର ଦୁର୍ଦ୍ଧର
ବାତଧୂମ ବୈଦ୍ୟୁତ ଯେ ମେନାକ ଭୂମିର ।
ତୁଙ୍ଗପ୍ରସ୍ଥ ନାଗଗିରି ଗିରି ଗୋବର୍ଦ୍ଧନ
ସରକ ଅର୍ବୁଦ ଚିତ୍ରକୂଟ ସାନୁମାନ ।
ରୈବତ ଯେ ପୁଷ୍ପଗିରି ଗିରି ଉଜ୍ଜୟନ୍ତ
ଋଷିମୁକ କୃତସ୍ମର ପର୍ବତ ଗୋମନ୍ତ ।
ଶ୍ରୀ ପର୍ବତ କୋକଣକ ଆଦି ଯେତେ ଗିରି
ଶତ ସହସ୍ର ଯେ ସଂଖ୍ୟା ଅଟଇ ତାଙ୍କରି ।

ଆର୍ଯ୍ୟ ମ୍ଳେଚ୍ଛ ଆଦିଦେଶ ଅଛଇ ବହୁତ
ଏ ଭାରତ ଅଧିବାସୀ ଜନଯେ ସତତ ।
ସରିଦବରା ଜଳପାନ କରନ୍ତି ସୁକେଶୀ
ସେ ନଦୀମାନଙ୍କ ନାମ କହୁଛୁଁ ବିଶେଷି ।
ପଞ୍ଚରୂପା ସରସ୍ୱତୀ ନୀଳା ଇରାବତୀ
କାଳିନ୍ଦୀ ଶତଦ୍ରୁକୁହୁ ଧାତୁକୀ ଗୋମତୀ ।
ଚନ୍ଦ୍ରିକା ବିତସ୍ତା ରସା ବାହୁଦା ଉଶୀରା
ପୁଷ୍ପବତୀ ହରିଣବତୀ ନିଃଶ୍ୱରା ମଧୁରା ।
ହାରରାବି ଧୂତପାପା ସରଜୁ କୌଶିକୀ
ବଧୂସରା ଲୋହିତ୍ୟ ଯେ ଆବର ଗଣ୍ଡକୀ ।
ହିମାଳୟ ପାଦଦେଇ ବହିଯାନ୍ତି ଏହି
ଆଉ ନଦୀଙ୍କର କଥା ଶୁଣ ମନ ଦେଇ ।
ବେଦସ୍ମୃତି ବେଦାକୀନୀ ବୃତ୍ରଘ୍ନୀ ସିନ୍ଧୁଶା
ଚର୍ମଣବ୍ୱତୀ ବେଣୁବତୀ ପାବନୀ ବିଦିଶା ।
ମହୀ ଶଦ୍‌ବା ଲୁପୀ ଚିତ୍ରା ଓଘବତୀ ଏହି
ପାରିପାତ୍ର ପର୍ବତରୁ ଯାଆନ୍ତି ତ ବହି ।
ମହାନଦୀ କ୍ରିୟା ଶୋଣ ନର୍ମଦା ସୁରସା
ମନ୍ଦାକିନୀ ଚିତ୍ରକୂଟା ଆବର ତମସା ।
କରତୋୟା ପିଶାଚିକା ତ୍ରିଦିବା ଚକ୍ରିଣୀ
ଦଶବର୍ଣ୍ଣା ଚିତ୍ରୋତ୍ପଳା ଯେ ପିପ୍ପଳ ଶ୍ରେଣୀ ।
ମନ୍ଦାକିନୀ ଶକ୍ତିମତୀ ଯେ ବଞ୍ଜୁଳବତୀ
ସହନ୍ତଜା ଆଦି ଅଛି ଯେତେ ସ୍ରୋତସ୍ୱତୀ ।
ବଳବାହିନୀ ଏ ରକ୍ଷ ପର୍ବତ ସମ୍ଭୁତ
ଏବେ ଆନ ନଦୀଙ୍କର ନାମଶୁଣ ଦୈତ୍ୟ ।
ନିର୍ବିନ୍ଧ୍ୟା ପୟୋଷ୍ଣୀ ଶିବାତପୀ ବୈତରଣୀ
ସିନୀବାହୁ କୁମୁଦ୍‌ବତୀ ତୋୟା ରେବା ବେଣୀ
ଦୁର୍ଗନ୍ଧା ସଲିଳା ମହାନାଗରୀ ଯେ ନଈ
ବିନ୍ଧ୍ୟ ପର୍ବତର ପାଦ ଦେଇ ଯାନ୍ତି ବହି ।
ପ୍ରଶସ୍ତ ଏ ନଦୀମାନେ ଜଳ ଯେ ନିର୍ମଳ
ଅନ୍ୟ ନଦୀଙ୍କର ନାମ ଶୁଣ ରାତ୍ରିଚର ।
ଭୀମରଥୀ କୃଷ୍ଣବେଣୀ ବାହ୍ୟା ଗୋଦାବରୀ
ସରିଦ୍‌ବତୀ ବାରିସେନା ନଳିନୀ କାବେରୀ ।
ବିଷମଦ୍ରୀ ସୁପ୍ରୟୋଗ ନଦୀ କଳସ୍ୱନା
ଆବରଦୁଗ୍ଧୋଦା ନଦୀ ନଦୀ ବାରିସେନା ।
ଏ ନଦୀ ଏ ସହ୍ୟ ଗିରି ପାଦରୁ ଯେ ଜାତ
ଅନ୍ୟ ନଦୀଙ୍କର ନାମ ଶୁଣ ଆହେ ଦୈତ୍ୟ ।

ଉତ୍ପଳବତୀ ହେ ନଦୀ ସୁଦାମା ବଞ୍ଜୁଳା
ତାମ୍ରପର୍ଣ୍ଣୀ ଶୂନୀ ଆଉ ନଦୀ କୃତମାଳା ।
ଶକ୍ତିମନ୍ତ ପର୍ବତରୁ ଏ ନଦୀ ଉତ୍ପନ୍ନ
କରନ୍ତି ଏ ପ୍ରାଣୀଙ୍କର ପାପ ପ୍ରଶମନ ।
ପରମ ପବିତ୍ର ସର୍ବେ ଜଗତର ମାତା
ହେ ରାକ୍ଷସ ଏ ସମସ୍ତେ ସାଗରବନିତା ।
ଏହା ଭିନ୍ନ କ୍ଷୁଦ୍ରନଦୀ ଅଛଇ ବହୁତ
ସେମାନଙ୍କ ମଧ୍ୟେ କେହି ସଦା ପ୍ରବାହିତ ।
କେହି କେହି ବର୍ଷା କାଳେ ବହନ୍ତି କେବଳ
ଦେଶାନ୍ତର ଲୋକେ ପାନ କରନ୍ତି ସେ ଜଳ ।
ଏ ଦେଶେ ଅଛନ୍ତି ଯେତେ ଜାତି ହେ ସୁକେଶୀ
ତାହା କହୁଅଛୁ ଶୁଣ ଆମ୍ଭେ ସର୍ବରଷି ।
କୁଶୂଦ୍ର କୁଣ୍ଡଳ ବୃକ ପଞ୍ଚାଳ କୌଶିକ
ବର୍ବର କୌରବ ଶକ କଳିଙ୍ଗ ମର୍ମକ ।
ଶାଠ୍ୟଧାନକ ବାହ୍ଲୀକ ବାଟ ଧାନ ବଙ୍ଗ
ଆବର କାଳ ତୋୟଦ ଅଭୀର ଯେ ଅଙ୍ଗ ।
ପଲ୍ଲବ ଖେଟକ ଶୂଦ୍ର ଗାନ୍ଧାର ଯବନ
ସୌବୀର ଭଦ୍ରଖ ସିନ୍ଧୁ ହେ ଦୈତ୍ୟରାଜନ ।
ଶାତଦ୍ରବ୍ୟ ପାରାବତ ଲିଲିଥ ମାଠର
ମୂଷକ କୈକେୟ ଜାତି ଯେ ଉଦକ ଧାର ।
କ୍ଷତ୍ରିୟ ବୈଶ୍ୟ ବିବିଧ ଶୂଦ୍ର ଯେ ଅଛନ୍ତି
କାମ୍ବୋଜ ଅଙ୍ଗ ଲୌକିକ ଦରଦ ଯେ ଜାତି ।
ଏମାନେ ଅଛନ୍ତି ମଧ୍ୟପ୍ରଦେଶରେ ଜାଣ
ବାହ୍ୟ ପ୍ରଦେଶର ଜାତି କଥା ଏବେ ଶୁଣ ।
ତୁଷାର ଆତ୍ରେୟ ବେଶ ଭରଦ୍ୱାଜ ଦର
ପ୍ରସ୍ଥଳ ଯେ ଦଶେରକ କରିଛନ୍ତି ଘର ।
ଉତ୍ତରେ ଯାହାଙ୍କ ଘର କହୁଁ ଅଛୁଁ ଶୁଣ
ଲମ୍ପଟ ତାରକା ରାମ ଚୂଡ଼ିକା ଢ଼ଙ୍ଗଣ ।
ଅଳସ ଯେ ଆଳିଭଦ୍ର କିରାତ ତାମସ
କୁଳୁତ କୁହିକ ତୂର୍ଣ୍ଣ ଗଣକ ସୁପାର୍ଶ୍ୱ ।
କର୍ମ ମାଗ ତୂର୍ଣ୍ଣପାଦ କୁକ୍‌କୁଟ ଆବର
ମାଣ୍ଡବ୍ୟ ଯେ ପାଶବୀୟ କରିଛନ୍ତି ଘର ।
ଅଙ୍ଗ ବଙ୍ଗ ମଦ୍‌ଗୁରବ ଏହି ତିନି ଜାତି
ଅନ୍ତଗିରି ବହିର୍ଗିରି ମଧ୍ୟେ ରହିଛନ୍ତି ।
ପୂର୍ବଦେଶ ବାସିଙ୍କର ନାମ କହୁଁ ଶୁଣ
ହ୍ଲୋତ୍ତର ପ୍ରାଗ୍‌ବିଜୟ ଭାର୍ଗବ ଯେ ଜାଣ ।

ଆଙ୍ଗେୟ ବାଙ୍ଗେୟ ମାଳ ପ୍ରବଙ୍ଗ ମର୍ଷକ
ବଳ ଦନ୍ତିକ ତାମ୍ରାଦି ସେ ତାମ୍ରଲିପ୍ତକ ।
ପ୍ରାଗ୍ ଜ୍ୟୋତିଷ ପୁଷ୍ପଧ୍ର ଯେ ବିଦେହ ମାଗଧ
ଦକ୍ଷିଣ ଦେଶଙ୍କ ନାମ ଶୁଣ ହେ କ୍ରବ୍ୟାଦ ।
ମୂଷିକାଦ ମୁଣ୍ଡ ଚୌନ କେରଳ ଜାନୁକ
କୁମାରମହାର୍ହ ଆଉ ମହାରାଷ୍ଟ୍ର ଶକ ।
ମାହିଷିକ କାଳଙ୍ଗ ଯେ ବୈସକ୍ୟ ଆଭୀର
ପୁଳିନ୍ଦ ବିନ୍ଧ୍ୟଶୈଳେୟ ଆରଣ୍ୟ ଶରର ।
ବେଦ ଭୋଦଣ୍ଡକ ଆଉ ପୌରିକ ଶାରିକ
ଭୋଗବର୍ଦ୍ଧନ ନୈମିକ ଆନ୍ଧ ଅନମକ ।
କୁନ୍ତଳ ଉଛିଦ ନଳକାରକ ଏମାନେ
ଦକ୍ଷିଣରେ ଘର କରିଥାନ୍ତି ସବୁ ଦିନେ ।
କହୁଛୁଁ ପଶ୍ଚିମ ଦେଶବାସୀଙ୍କର ନାମ
ମନ ଦେଇ ଶୁଣ ଆହେ ରାକ୍ଷସ ଉତ୍ତମ ।
ଶୂର୍ପାରକ ବାରିଧାନ ପୁଳୀୟ ତାପସ
ଆଲୀକଟ ଆସିନୀଳ ଦୁର୍ଗ ଯେ ତାମସ ।
କାରସ୍କର ସୁନର୍ମଦ ଆଉ ନାସିକାନ୍ତ
ଦାରୁକସ୍ଥ ସୁମାହେୟ ଭୈମି ସାରସ୍ୱତ ।
ବାହୀୟ ସୁରାଷ୍ଟ୍ର ଜାଣ ଆରମ୍ୟ ଅର୍ବୁଦ
ପଶ୍ଚିମରେ ଏହାଙ୍କର ଘର ହେ ମାଂସାଦ ।
ବିନ୍ଧ୍ୟ ପର୍ବତର ତଳେ ରହିଛନ୍ତି ଯେତେ
କହୁଅଛୁଁ ଶୁଣ ତାହା ତୁମ୍ଭର ଅଗ୍ରତେ ।
କାରୁଷ ଯେ ଐକଲବ୍ୟ ମେକଳ ଉକ୍ରଳ
ଉତ୍ତମର୍ଣ୍ଣ ଦଶାର୍ଣ୍ଣ ଯେ ତୋମଳ ଶୋକଳ ।
ତ୍ରୈପୁର ଖେଲ୍ଲିଶ ଗୋପ୍ତ ତୁରଗ ତୁମ୍ବର
ବହେଳ ନୈଷଧ କିକରଜ ତୁଣ୍ଡିକେର ।
ବୀତିହୋତ୍ର ଅବନ୍ତୀ ଏ ବିନ୍ଧ୍ୟ ଦେଶବାସୀ
ଏବେ ପାର୍ବତୀୟ ଦେଶ ଶୁଣ ହୋ ସୁକେଶୀ ।
ନିରାହାର ହଂସମାର୍ଗ କୁପଥ ଢ଼ଙ୍ଗଣ
ଉର୍ଣ୍ଣାପୃଷ୍ଟ ସୁହୁଲ୍ଲକ କୁଥ ପ୍ରାବରଣ ।
ତ୍ରିଗର୍ତ୍ତ କିରାତ ଶଶିଖାଦ୍ରିକ ତୋମର
ଏମାନେ ପର୍ବତବାସୀ ଆହେ ନିଶାଚର ।
ଯେଉଁ ଦେଶ ଯେଉଁ ଧର୍ମ କହୁଅଛୁଁ ଶୁଣ
ଦୀନ ଗୋପୀନାଥ ଭଜେ ଶ୍ରୀ ବିଷ୍ଣୁଚରଣ ।

= + =

## ସୁକେଶାନୁ ଶାସନ

କହିଲେ ଯେ ଋଷିଗଣ ହେ ରାକ୍ଷସବର
ଏଥୁ ଅନନ୍ତରେ ଶୁଣ ଧର୍ମ ସମାଚାର ।
ଅହିଂସା ଅସ୍ତେୟ ସତ୍ୟ କ୍ଷମା ଦାନ ଦମ
ଶଉଚ ତପସ୍ୟା ଆଉ ଅକାର୍ପଣ୍ୟ ଶମ ।
ସର୍ବ ବର୍ଣ୍ଣଙ୍କର ନାମ ଏହି ଦଶଗୋଟି
ଚାରୋଟି ଆଶ୍ରମ କରିଛନ୍ତି ପରମେଷ୍ଠୀ ।
ସୁକେଶୀ କହିଲା ଆହେ ତପୋଧନ ବର୍ଗ
ବ୍ରାହ୍ମଣର ଚାରିଗୋଟି ଆଶ୍ରମର ମାର୍ଗ ।
କହନ୍ତୁ ବିସ୍ତାର କରି ଶୁଣିବି ମୁଁ ତାହା
ଋଷିଗଣ କହିଲେ ହେ ଶୁଣ ଦୈତ୍ୟନାହା ।
ବ୍ରାହ୍ମଣ ବାଳକ ଉପନୟନ ଉତ୍ତାରେ
ରହିବ ଯେ ବ୍ରହ୍ମଚାରୀ ହୋଇ ଗୁରୁଘରେ ।
ବେଦପାଠ ଅଗ୍ନିପୂଜା ସ୍ନାନ ଆଦିକରି
ଭିକ୍ଷାପାଇଁ ଭ୍ରମିବ ସେ ଗୁରୁଙ୍କୁ ପଚାରି ।
ସେ ଭିକ୍ଷାକୁ ଗୁରୁଠାରେ କରିବ ଅର୍ପଣ
ଯାହା ଗୁରୁଦେବେ ତାହା କରିବ ଭକ୍ଷଣ ।
ଗୁରୁଙ୍କ କାର୍ଯ୍ୟରେ ସଦା ହେବ ଯତ୍ନବାନ
କରୁଥିବ ଗୁରୁଙ୍କର ପ୍ରୀତି ସମ୍ପାଦନ ।
ଗୁରୁ ଡାକିଲା ମାତ୍ରକେ ପଢ଼ିବ ସେ ଆସି
ଯାହା ସେ ପଢ଼ାଇଦେବେ ଘୋଷୁଥିବ ବସି
ଏକ ଦୁଇ ବେଦ ଅବା ଚାରିବେଦ ପଢ଼ି
ଗୁରୁଙ୍କୁ ଦକ୍ଷିଣା ଦେବ ଗୁରୁପାଦେ ପଡ଼ି ।
ତାହାଙ୍କୁ ମେଲାଣି ମାଗି ଆସିବ ଗୃହକୁ
ବିଭାହେବ ସୁଲକ୍ଷଣୀ କୁଳିନ କନ୍ୟାକୁ ।
ଗୃହସ୍ଥ ଆଶ୍ରମେ ରହି ଧର୍ମ ଆଚରିବ
ଅଥବା ସେ ବାନପ୍ରସ୍ଥ ଆଶ୍ରମେ ରହିବ ।
କିବା ବ୍ରହ୍ମଚାରୀ ହୋଇ ରହି ଗୁରୁଘରେ
ସେବା କରୁଥିବ ନିତ୍ୟ ଗୁରୁଙ୍କ ପୟରେ ।
ଗୁରୁ ଅଭାବରେ ଗୁରୁପୁତ୍ରଙ୍କୁ ସେବିବ
ପୁତ୍ରଅଭାବରେ ଶିଷ୍ୟ ଶୁଶ୍ରୁଷା କରିବ ।
ଅଭିମାନ ଅହଂକାର ମନୁ ତ୍ୟାଗ କରି
ହେ ରାକ୍ଷସ ବିପ୍ର ଯେବେ କରେ ଏହିପରି ।
ମୃତ୍ୟୁଙ୍କୁ ସେ ଜୟକରି ପାରିବ ନିଶ୍ଚୟ
ଗୃହସ୍ଥାଶ୍ରମର କଥା ଶୁଣ ଦୈତ୍ୟରାୟ ।

ବିଭାହୋଇ ଆପଣାର ଧର୍ମ କର୍ମେ ରହି
ସଦାଚାର ଧନ ସଞ୍ଚି ହୃଦେ ଭକ୍ତି ବହି ।
ପିତୃଗଣ ଦେବଗଣ ଅତିଥି ତୋଷିବ
ଗୃହୀ ବିପ୍ର ଏହିପରି ଧର୍ମ ଆଚରିବ ।
ସୁକେଶୀ ବୋଇଲା ଆହେ ତପସ୍ୱୀ ନିକର
କାହାକୁ କହନ୍ତି ମୋତେ କହ ସଦାଚାର ।
ତା ଲକ୍ଷଣ ଶୁଣିବାକୁ ଉତ୍ସୁକ ମୋ ମନ
ଏହା ଶୁଣି ବୋଇଲେକ ସର୍ବ ତପୋଧନ ।
ଆଚାର ପାଳନ ସଦା କରୁଥିବ ଗୃହୀ
ଅନାଚାରୀର ଯେ ଇହ ପରସୁଖ ନାହିଁ ।
ଯଜ୍ଞଦାନ ତପଆଦି ସକଳ ବିଫଳ
ଦୁରାଚାରୀ ପୁରୁଷରେ ନ ହୁଏ ମଙ୍ଗଳ ।
ଏଣୁ ସଦାଚାରେ ଯତ୍ନ ସର୍ବଦା କରିବ
ଆଚାର ଧର୍ମର ମୂଳ ହେ ଦାନବ ଧବ ।
ଯେବେ ସୁଖ ଲାଭେ ମନ ଥାଏଟି ତୁମ୍ଭର
ସଦାଚାର ଲକ୍ଷଣକୁ ମନ କରି ସ୍ଥିର ।
ଶୁଣ ଆମ୍ଭେ କହୁଅଛୁଁ ତୁମ୍ଭ ଅଗ୍ରତରେ
ଉତ୍ତମ ଆଚାରୁଁ ଜନ ଧର୍ମଲାଭ କରେ ।
ଧର୍ମ ବୃକ୍ଷର ଯେ ମୂଳ ଅଟଇ ଆଚାର
ଡାଳ ପତ୍ର ଅଟଇ ଯେ ଧନ ସେ ବୃକ୍ଷର ।
କାମ ଯେ ତାହାର ପୁଷ୍ପ ମୋକ୍ଷ ତାର ଫଳ
ଯେ ଆଶ୍ରା ନିଅଇ ସେହି ବୃକ୍ଷର ଯେ ମୂଳ ।
ସେ ପୁଣ୍ୟାତ୍ମା ସୁଖଭୋଗ କରଇ ନିଶ୍ଚୟ
ଆଚାର ପଦ୍ଧତି ଶୁଣ ଆହେ ଦୈତ୍ୟରାୟ ।
ବ୍ରାହ୍ମ ମୁହୂର୍ତ୍ତରୁ ଉଠି ସ୍ଥିର କରି ମନ
ପ୍ରଧାନ ଦେବତା ଋଷିଗଣ କରି ଧ୍ୟାନ ।
ଦେବଦେବ ତ୍ରିଲୋଚନ କରିଛନ୍ତି ଯାହା
ପ୍ରଭାତ ମଙ୍ଗଳ ସେହି ପଢ଼ିବ ଯେ ତାହା ।
ସୁକେଶୀ କହିଲା ସେହି ମହାତ୍ମା ଶଙ୍କର
ଯାହା କହିଛନ୍ତି ତାହା କହ ମୋ ଆଗର ।
ପ୍ରଭାତେ ଯା ପାଠ କରି ସଂସାରର ପ୍ରାଣୀ
ପାପରୁ ମୁକତି ଲାଭ କରନ୍ତି ଯେ ପୁଣି ।
ସେ କିପରି ବିସ୍ତାରି ତା କହ ଆଗ ମୋତେ
ଋଷିଗଣ ବୋଇଲେ ହେ ଶୁଣ ଏକ ଚିତ୍ତେ ।
ମହାଦେବ ସୁପ୍ରଭାତ ଯେ ଜନ ଶୁଣଇ
ଏକମନେ ଏକଧ୍ୟାନେ ପଢ଼ଇ ସ୍ମରଇ ।
ସକଳ ପାପରୁ ମୁକ୍ତ ହୁଅଇ ସେ ଜାଣ
କହୁଅଛୁ ହେ ରାକ୍ଷସ ଏବେ ତାହା ଶୁଣ ।
ବ୍ରହ୍ମା ମୁରତି ତ୍ରିପୁରଅନ୍ତକାରୀ ଭାନୁ
ଶଶୀ ଭୌମ ବୁଧ ଗୁରୁ ଶୁକ୍ର ଭାନୁସୂନୁ ।
ଏ ସମସ୍ତେ ସୁପ୍ରଭାତ କରନ୍ତୁ ମୋହର
ଭୃଗୁ ବଶିଷ୍ଠ ଯେ କ୍ରତୁ ଅଙ୍ଗିରା ଆବର ।
ପୁଲହ ପୁଲସ୍ତ୍ୟ ରୈଭ୍ୟ ଋଷି ଯେ ଗୌତମ
ମରୀଚ ଚ୍ୟବନ ବିଭୁ ଏ ଋଷି ସତ୍ତମ ।
ଆଜି ମୋର ସୁପ୍ରଭାତ କରନ୍ତୁ ଏମାନେ
ଏହା କହି ପୁନରପି କହିବ ଏସନେ ।
ସନତ କୁମାର ଋଷି ସନକ ସନନ୍ଦ
ସନାତମ ଅସୁରୀ ପିଙ୍ଗଳ ଋଷିବୃନ୍ଦ ।
ସପତ ଯେ ସ୍ୱର ଆଉ ସପ୍ତ ରସାତଳ
କରନ୍ତୁ ଯେ ସୁପ୍ରଭାତ ଆଜି ସକଳ ।
ଗନ୍ଧ ସହ ପୃଥିବୀ ଯେ ରସ ସହ ଜଳ
ସ୍ପର୍ଶ ସହ ବାୟୁ ତେଜ ହସିତ ଅନଳ ।
ଶବ୍ଦ ସହିତ ଆକାଶ ପୁଣି ମହତତ୍ତ୍ୱ
ଏମାନେ କରନ୍ତୁ ମୋର ଆଜି ସୁପ୍ରଭାତ ।
ସପତ ସାଗର ସପ୍ତ କୁଳ ପରବତ
ସପ୍ତଋଷି ସପ୍ତ ଦ୍ୱୀପ ଲୋକ ଯେ ସପତ ।
ଏମାନେ କରନ୍ତୁ ଆଜି ସୁପ୍ରଭାତ ମୋର
ଏହି ରୂପେ ପ୍ରଭାତରେ ଆହେ ନିଶାଚର ।
ଭକ୍ତିରେ ଏ ସୁପ୍ରଭାତ ପଢ଼ି ସୁମରିବ ।
ତାହାର ନିଶ୍ଚୟ ଜାଣ ମଙ୍ଗଳ ହୋଇବ ।
ଭଗବତ ପ୍ରସାଦରୁ ଦୁଃସ୍ୱପ୍ନ ବିନାଶ
ଉତ୍ତମ ପ୍ରଭାତ ହେବ ଆହେ ଅସୁରେଶ ।
ହେ ଅନଘ ଏଥୁଅନ୍ତେ ଶଯ୍ୟା ପରିହରି
ଯଥାକ୍ରମେ ଧର୍ମ ଆଉ ଅର୍ଥ ଚିନ୍ତା କରି ।
ମୁଖେ ହରି ହରି କହି କରିବ ଗମନ
କରିବ ଯେ ମଳ ମୂତ୍ର ତ୍ୟାଗର ବିଧାନ ।
ଦେବାଳୟେ ଗୋପଥେ ବା ବିପ୍ରର ମନ୍ଦିରେ
ଅନଳରେ ରାଜପଥେ କିଅବା ଗୋଷ୍ଠରେ ।
ଚତୁଷ୍ପଥେ ପୂର୍ବଦିଗେ ଅଥବା ପଶ୍ଚିମେ
ମଳତ୍ୟାଗ ନ କରିବ କଦାପି ବିଭ୍ରମେ ।
ଏଥୁଅନ୍ତେ ଶୌଚ ଅର୍ଥେ ମୃତିକା ଆଣିବ
ଗୁହ୍ୟଦେଶେ ତିନିଥର ଲେପନ କରିବ ।

ବାମ ହସ୍ତେ ଦଶଥର ଲଗାଇବ ମାଟି
ସାତଥର ଦୁଇ ହସ୍ତେ ପୁଣି ଘଷିବଟି ।
ପାଦ ଦ୍ୱୟେ ସାତଥର ଲିଙ୍ଗେ ଏକଥର
ଶୁଦ୍ଧ ମାଟି ଲଗାଇବ ଆହେ ନିଶାଚର ।
ଯେ ମୃତ୍ତିକା ଅଶୁଦ୍ଧ ତା କହୁଅଛୁଁ ଶୁଣ
ଜଳମଧ୍ୟ ମୃତ୍ତିକା ଯେ ଅଶୁଦ୍ଧଟି ଜାଣ ।
ମୂଷାଗାତ ମାଟି ଅନ୍ୟ ଆଣିଥିବା ମାଟି
ତାହାର ଯେ ଅବଶେଷ ଅଶୁଦ୍ଧ ଜାଣଟି ।
ହୁଙ୍କା ମାଟି ଶୌଚ ଅର୍ଥେ ବିଶୁଦ୍ଧ ଅଟଇ
କରିବ ତହିଁରେ ଅଙ୍ଗଶୁଦ୍ଧି ଦୈତ୍ୟସାଇଁ ।
ଉତ୍ତରକୁ ମୁଖ ଅବା ପୂର୍ବ ମୁଖ କରି
ପାଦ ଧୋଇବସିବ ଯେ ଭୂମିର ଉପରି ।
ଫେନ ଶୂନ୍ୟ ଜଳ ଆଣି ଆଦ୍ୟେ ଦୁଇଥର
ମୁଖ ପ୍ରକ୍ଷାଳନ କରି ଜଳେ ତିନିବାର ।
ଆଚମନ କରି ସ୍ନାନ ସନ୍ଧ୍ୟା ଆଦି ସାରି
କେଶ ଶୋଧନ କରିବ ଦରପଣ ଧରି ।
ଦେବଗଣ ପିତୃଗଣ ପୂଜା କରି ଜଳେ
କରିବ ଆହୁତି ଦାନ ଜ୍ୱଳନ୍ତ ଅନଳେ ।
ଜଳକୁମ୍ଭ ଧେନୁ ବୃଷ ଦୁର୍ବା ଦଧି ଘୃତ
ଗୋମୟ ମୃତ୍ତିକା ସ୍ୱର୍ଣ୍ଣ ସ୍ୱସ୍ତିକ ଅକ୍ଷତ ।
ଲଜା ମଧୁ ବିପ୍ରକନ୍ୟା ପୁଷ୍ପ ହୁତାଶନ
ସୂର୍ଯ୍ୟବିମ୍ବ ବୋଧିବୃକ୍ଷ ସୁଗନ୍ଧ ଚନ୍ଦନ ।
ଏହାଙ୍କୁ ଦର୍ଶନ କରି ସ୍ୱଧର୍ମ କରିବ
ଦେଶକୁଳ ଗୋତ୍ର ଧର୍ମ କେଭେ ନ ତେଜିବ ।
ନ କରିବ କେତେବେଳେ ଅସତ ପ୍ରଳାପ
ମିଥ୍ୟା ବାକ୍ୟ ନ କହିବ ନ କରିବ କୋପ ।
ନ କହିବ କାହାକୁ ଯେ ନିଷ୍ଠୁର ବଚନ
ଲୋକେ ନ ହୋଇବ କେଭେ ନିନ୍ଦାର ଭାଜନ ।
ସ୍ତିରୀସଙ୍ଗ ନ କରିବ ଦିବସ ସନ୍ଧ୍ୟାରେ
ପ୍ରୀତି ନ କରିବ ପରନାରୀ ସଙ୍ଗତରେ ।
ରଜୋବତୀ ହୋଇଥିଲେ ଆପଣା ଭାରିଯା
ତାର ସଙ୍ଗେ ନ କରିବ କେଭେ ଏକ ଶଯ୍ୟା ।
ଜଳର ମଧ୍ୟରେ ପଶି ନକରିବ ରତି
କାରଣ ନ ଥାଇ ବୃଥା ନ ବୁଲିବ କ୍ଷିତି ।
କାରଣ ନ ଥାଇ ବୃଥା ନ କରିବ ଦାନ
ନ କରିବ ବୃଥା ପଶୁବଧ କଦାଚନ ।
ବୃଥା ଦାର ପରିଗ୍ରହ ନ କରିବ କେବେ
ସୁକେଶୀ ବୋଇଲା କଲେ କିହୋଇବ ତେବେ ।
ଋଷିଗଣ ବୋଇଲେ ହେ ଶୁଣ ନିଶାଚର
ବୃଥା ଭ୍ରମଣରେ ହାନି ହୁଏ ନିରନ୍ତର ।
ବୃଥା ଦାନ କଲେ ହୁଏ ଧନର ଯେ କ୍ଷୟ
ବୃଥା ପଶୁବଧେ ହୁଏ ପ୍ରାପତ ନିଚୟ ।
ବୃଥା ଦାର ପରିଗ୍ରହେ ହୁଏପୁତ୍ର ହାନି
ଏଣୁ ଏହା ନ କରିବ କେବେ ସାଧୁ ପ୍ରାଣୀ ।
ନ କରିବ ପରଧନ ପର ସ୍ତ୍ରୀ ହରଣ
ପରଧନ ହରିଲେଟି ନରକେ ପତନ ।
ପରସ୍ତ୍ରୀ ହରିଲେ ମୃତ୍ୟୁ ହୋଇବ ନିଶ୍ଚୟ
ଏଣୁ ଏହା ନ କରିବ କେଭେ ଦୈତ୍ୟରାୟ ।
ଉଲଗ୍ନ ନାରୀକି ଦେଖି ବୁଜିଦେବ ଆଖି
କିଛି ନ କହିବ ଚୋରମାନଙ୍କୁ ଯେ ଦେଖି ।
ନ ଦେଖିବ ନ ଛୁଇଁବ ଉଦକ୍ୟା ରମଣୀ
ତାର ସଙ୍ଗେ ସମ୍ଭାଷଣ ନ କରିବ ପୁଣି ।
ସୋଦର୍ଯ୍ୟାର ବିଛଣାରେ କେଭେ ନ ବସିବ
ସେ ନାରୀ ସଙ୍ଗତେ କଥାବାର୍ତ୍ତା ନ ହୋଇବ ।
ନ ବସିବ ସ୍ୱଦୁହିତା ବିମାତା ଆସନେ
ଦିଗମ୍ବର ନ ହୋଇବ କେଭେ ପର୍ଯ୍ୟଟନେ ।
ସ୍ନାନକାଳେ ଜଳମଧ୍ୟେ ଉଲଗ୍ନ ନୋହିବ
ରାତ୍ରରେ ଉଲଗ୍ନ ହୋଇ କେଭେ ନ ଶୋଇବ ।
ଭଙ୍ଗା ଆସନକୁ ତ୍ୟାଗ କରିବ ତକ୍ଷଣ
ନ କରିବ କେଭେ ଭଙ୍ଗା ଶଯ୍ୟାରେ ଶୟନ ।
ଭଙ୍ଗାପାତ୍ରେ ନ ଖାଇବ ନ ପିଇବ ପାଣି
ନନ୍ଦା ତିଥିରେ ତଇଳ ବର୍ଜିବଟି ପୁଣି ।
ରିକ୍ତାତିଥିରେ ନୋହିବ କଦାପି କ୍ଷଉର
ଜୟା ତିଥିରେ କରିବ ମାଂସ ପରିହାର ।
ପୂର୍ଣ୍ଣିମାରେ ନ କରିବ ନାରୀ ସହବାସ
ସର୍ବକର୍ମେ ଭଦ୍ରାତିଥି ଶୁଭ ହେ ଦୈତ୍ୟେଶ ।
ତଇଳ ନ ଲଗାଇବ ରବିବାର ଦିନ
ମଙ୍ଗଳବାର କ୍ଷଉର କରିବ ବର୍ଜନ ।
ଶୁକ୍ରବାରେ ଶନିବାରେ ମାଂସ ନ ଖାଇବ
ବୁଧବାରେ ସ୍ତିରୀସଙ୍ଗ ବର୍ଜନ କରିବ ।
ଅବଶିଷ୍ଟ ବାରେ ସବୁ କାର୍ଯ୍ୟ ଶୁଭ ହୁଏ
ଏଥୁଅନନ୍ତରେ କଥା ଶୁଣ ଦୈତ୍ୟରାୟେ ।

ହସ୍ତା ଚିତ୍ରା ଶ୍ରବଣାରେ ତଇଳ ତେଜିବ
ଅଭିଜିତ ବିଶାଖାରେ କ୍ଷଉର ନୋହିବ ।
ମୂଳା ମୃଗ ଭାଦ୍ରପଦେ ନ ଭକ୍ଷିବ ମାଂସ
କୃତ୍ତିକା ଉତ୍ତରା ମଘା ରକ୍ଷେ ସହବାସ ।
ନ କରିବ କଦାପି ହେ କଉଣପ-ପତି
ଏଥୁ ଅନନ୍ତରେ ଶୁଣ ସ୍ଥିର କରି ମତି ।
ଉତ୍ତରକୁ ଶିର କରି କେବେ ନ ଶୋଇବ
ନିଦ୍ରାକାଳେ ପଶ୍ଚିମକୁ ଶିର ନ କରିବ ।
ଦକ୍ଷିଣ ପଶ୍ଚିମ ମୁଖେ ନ ଭୁଞ୍ଜିବ ବସି
ଶୁଣ ହେ ରଜନୀଚର ଈଶ୍ୱର ସୁକେଶି ।
ଦେବାଳୟ ଚୈତ୍ୟବୃକ୍ଷ ଚତୁଷ୍ପଥ ସ୍ଥାନ
ଆପଣାଠାରୁ ଯେ ବିଦ୍ୟାବନ୍ତ ଗୁରୁଜନ ।
ଏମାନଙ୍କୁ ପ୍ରଦକ୍ଷିଣ ନ କରି ନ ଯିବ
ଅନ୍ୟ ଘେନିଥିବା ମାଲ୍ୟ କେଭେ ନ ଘେନିବ
ବୁଦ୍ଧିମନ୍ତ କେବେ ଅନ୍ୟଭୁକ୍ତ ଅନ୍ନପାନ
ନ ଭୁଞ୍ଜିବ ନ ପିନ୍ଧିବ ଅନ୍ୟର ବସନ ।
ନିତ୍ୟ ସ୍ନାନ କରୁଥିବ ମସ୍ତକ ବୁଡ଼ାଇ
ମହାନିଶାରେ କଦାପି ନ ବୁଡ଼ିବ ଯାଇଁ ।
କେବଳ ଗ୍ରହଣ କାଳେ ଜ୍ଞାତି ବନ୍ଧୁ ନାଶେ
ଜନ୍ମ ଋକ୍ଷ ଚନ୍ଦ୍ରେ ଆଉ ସ୍ୱଜନ ବିନାଶେ ।
ମହାନିଶା ନ ବାରିବ ଜଳରେ ବୁଡ଼ିବ
ତଇଳ ଲଗାଇଥିବା ଜନେ ନ ଛୁଇଁବ ।
ସ୍ନାନ କରି ସାରି ଜଳେ ନ ଝାଡ଼ିବ କେଶ
ଦେହ ନ ଘଷିବ ହସ୍ତେ କିବା ପିନ୍ଧାବାସ ।
ରହିବ ସାଧୁଙ୍କ ସଙ୍ଗେ ହେ ରଜନୀଚର
ସୁରାଜକ ଦେଶ ମଧ୍ୟେ କରିବ ଯେ ଘର ।
ଘର କରି ରହିଥିବ ଯେବଣ ଦେଶରେ
ତହିଁ ବାସ କରିଥିବେ କ୍ରୋଧହୀନ ନରେ ।
ସେମାନେଟି ହୋଇଥିବେ ମତ୍ସର ବିହୀନ
ଆବର ସେ ହୋଇଥିବେ ନ୍ୟାୟବନ୍ତ ଜନ ।
କୃଷି ହେଉଥିବ ଶସ୍ୟ ଫଳୁଥିବ ତହିଁ
ଔଷଧ ବୃକ୍ଷ ଯେ ଥିବ ଧନୀ ଥିବେ ରହି ।
ଏମନ୍ତ ସ୍ଥାନରେ ଘର କରିବ ବିଚାରି
ପରାକ୍ରମ ହୀନ ଯେଉଁ ଦେଶ ଦଣ୍ଡଧାରୀ ।
ଦଣ୍ଡବିଧି ନ ଥିବଟି ଯେବଣ ବେଶରେ
ସେ ଦେଶକୁ ପରିହାର କରିବ ସତ୍ୱରେ ।

ଆହେ ନିଶାଚରନାଥ ଯେ ଦେଶେ ଆଦର
ଘର କରି ରହିଥିବେ ଅହଙ୍କାରୀ ନର ।
ଉଦ୍ଧତ ଆବର ଶତ୍ରୁ ରହିଥିବେ ଯହିଁ
ପଳାଇବ କ୍ଷଣକାଳ ସେ ଦେଶେ ନ ରହି ।
ଧାର୍ମିକ ଜନର ନିତ୍ୟ ପରିତ୍ୟାଜ୍ୟ ଯାହା
ଯାହା କି ଭକ୍ଷିବ ଏବେ କହୁଅଛୁଁ ତାହା ।
ଆହେ ମହାବାହୁ ତୁମ୍ଭେ ଶୁଣ ମନ ଦେଇ
ବହୁତ ଦିନର ଯେଉଁ ଖାଦ୍ୟ ଦ୍ରବ୍ୟ ହୋଇ ।
କିବା ବାସିଅନ୍ନ ଆଉ ଅତି ଶୁଷ୍କଅନ୍ନ
ଏହା ନ କରିବ କେବେ ଧାର୍ମିକ ଭୋଜନ ।
ବହୁତ ଦିନର ବିରି ଶୁଖିଲା ପୋକରା
ଏ ପଦାର୍ଥ ଧାର୍ମିକର ପରିତ୍ୟାଜ୍ୟ ତ୍ୱରା ।
ଅମ୍ଳ କ୍ଷୀର ମିଶା ଯାଉ ନ ଭକ୍ଷନ୍ତି ସେହି
ଭକ୍ଷଣ କରନ୍ତି ଯାହା ଶୁଣ ମନ ଦେଇ ।
ମନୁଋଷି କହିଛନ୍ତି ଶଶକ ଶଲ୍ଲକ
ଗୋଧାମତ୍ସ୍ୟ କଚ୍ଛପ ଯେ ଭକ୍ଷନ୍ତି ଧାର୍ମିକ ।
ଯେ ପଦାର୍ଥ ଯାହାଦ୍ୱାରା ଶୁଦ୍ଧ ହୁଏ ଶୁଣ
ମଣି ବସ୍ତ୍ର ପ୍ରବାଳ ଯେ ମୁକ୍ତାଫଳ ତୃଣ ।
ଯେବଣ ପଦାର୍ଥ କାଷ୍ଠ ପାଷାଣେ ନିର୍ମିତ
ମୂଳ ମୂଳକାଦି ଯେତେ ଔଷଧ ସମସ୍ତ ।
ଶୂର୍ପଧାନ୍ୟ ତୃଣଗୁଚ୍ଛ ବସନ ବଲ୍‌କଳ
ଜଳରେ ଶୁଦ୍ଧ ହୁଅନ୍ତି ଏ ଦ୍ରବ୍ୟ ସକଳ ।
ତୈଳଶୁକ୍ତ ଦ୍ରବ୍ୟ ଶୁଦ୍ଧ ହୁଏ ଉଷ୍ଣ କଲେ
କମ୍ବଳ ହୁଅଇ ଶୁଦ୍ଧ ତିଳକଲ୍‌କ ଜଳେ ।
ସୂତାଲୁଗା ଶୁଦ୍ଧ ହୁଏ ଜଳେ କଲେ ଧୌତ
ସଦା ଶୁଚି ଭିକ୍ଷା ଅନ୍ନ କାରୁଜନ ହସ୍ତ ।
ବାରାଙ୍ଗନା ମୁଖଆଉ ରଥଚକ୍ର ଧୂଳି
ଅଜ୍ଞାନରେ କରାଯାଏ ଯେ କାର୍ଯ୍ୟ ପ୍ରଣାଳୀ ।
ଦାସ ଜନମାନଙ୍କର ଯେ କର୍ମ ବିହିତ
ବାକ୍ୟ ପୂତ ଦ୍ରବ୍ୟ ଆଉ ଯେ ଚିର ଆନୀତ ।
ଅନେକ ଲୋକଙ୍କ ଅନ୍ତରିତ ଯେଉଁ ଦ୍ରବ୍ୟ
ଲଘୁ ପୁଣି ବାକ୍ୟ ବୃଦ୍ଧ ଜନଙ୍କର ଭାବ ।
ବାଳକ ମୁଖ ଆବର କମାରର ଶାଳ
ଦୁଧ ପିଆ ଶିଶୁ ଆଉ ସନ୍ତପ୍ତ ସଲିଳ ।
ନାରୀ ଆଉ ଦ୍ୱିଜେ କଥା କହିଲା ବେଳରେ
ଯେଉଁ ଜଳ ବିନ୍ଦୁ ସବୁ ମୁଖରୁ ବାହାରେ ।

ଏ ସମସ୍ତ ସ୍ୱାଭାବିକ ଶୁଦ୍ଧ ବୋଲି ଜାଣ
କହୁଅଛୁଁ ଏବେ ଭୂମି ଶୁଦ୍ଧି କଥା ଶୁଣ ।
ଖୋଳିଲେ ପୋଡ଼ିଲେ ଆଉ ଝାଡ଼ିଲେ ଲିପିଲେ
ଗୋରୁ ମଡ଼ାଇଲେ ମାଟି କାଢ଼ି ଘେନିଗଲେ ।
ଜଳ ସିଞ୍ଚିଲେ ପୂଜିଲେ ଝାଡ଼ିଦେଲେ ଘର
ପବିତ୍ର ହୁଅଇ ଭୂମି ଜାଣ ନିଶାଚର ।
ଯେବଣ ଅନ୍ନରୁ ପୁଣି ବାଳ ବାହାରିବ
ମୃତ୍ତିକା ପକାଇ ତାକୁ ପବିତ୍ର କରିବ ।
ପୋକ ପଡ଼ିଗଲେ ତାକୁ ଜଳେ ଦେବ ଧୋଇ
ଗୋରୁ ସୁଙ୍ଘିଥିଲେ ଭସ୍ମ ଦେବ ଯେ ପକାଇ ।
ମାଛି ବସିଥିଲେ ତହିଁ ପକାଇବ କ୍ଷାର
ସେ ଅନ୍ନ ପବିତ୍ର ହେବ ଆହେ ରାତ୍ରିଚର ।
ଅନ୍ନେ ଉଦୁମ୍ବର ପାତ୍ର କ୍ଷାର ଟିଣ ସୀଂସା
ଭସ୍ମ ଆଉ ଜଳେ ଶୁଦ୍ଧ ହୁଅଇ ଯେ କଂସା ।
ମୃତ୍ତିକା ଜଳରେ ନାଶ ହୁଅଇ ଦୁର୍ଗନ୍ଧ
ଅମେଧ ସଂଯୁକ୍ତ ଦ୍ରବ୍ୟ ହୁଅଇ ବିଶୁଦ୍ଧ ।
ଅନ୍ୟ ଅନ୍ୟ ଦ୍ରବ୍ୟ ଶୁଦ୍ଧି ହୁଅଇ ଏପରି
ଗୋଦାଣ୍ଡରେ ଥିବା ଘାସ ପଙ୍କ ଆଉ ବାରି ।
ବାଟ ଆଉ କର୍ଦ୍ଦମ ଯେ ଇଷ୍ଟକ ଆଳୟ
ପବନରେ ଶୁଦ୍ଧ ହୁଏ ଜାଣ ଦୈତ୍ୟରାୟ ।
ମାତାର ଗର୍ଭରୁ ଜାତ ହେବା ଶିଶୁ ଶୁଚି
ଭାରବୁହା ଗଧ ଶୁଚି ଶାସ୍ତ୍ରରେ ଲେଖିଛି ।
ଯେଉଁପକ୍ଷୀ ଫଳ ଝାଡ଼ିପାରେ ଶୁଚି ସେହି
ଶିକାରୀ କୁକୁରକୁ ଯେ ଶୁଚି ବୋଲି କହି ।
ଅନ୍ନ ହାଣ୍ଡିରେ ଯଦ୍ୟପି ଅମେଧ ପଡ଼ିବ
ତହିଁରୁ ଅର୍ଦ୍ଧେକ କାଢ଼ି ତ୍ୟାଗ କରିଦେବ ।
ଅବଶିଷ୍ଟ ଅନ୍ନକୁ ଯେ ଜଳେ ଦେବ ଧୋଇ
ସେ ଅନ୍ନକୁ ଶୁଚି ବୋଲି ଶାସ୍ତ୍ରେ ଅଛି କହି ।
ଏଥୁ ଅନନ୍ତରେ ଶୁଣ ହେ ଦୈତ୍ୟରାଜନ
ଦୂଷିତ ଅନ୍ନକୁ ଯେବେ କରିବ ଭୋଜନ ।
ତିନିରାତ୍ର ଉପବାସ କଲେ ଶୁଦ୍ଧ ହେବ
ଜାଣି ବା ନ ଜାଣି କଲେ ଏ ବିଧି ଜାଣିବ ।
ଛୁଇଁବ ଯେ ରଜୋବତୀ ନାରୀକି ନ ଜାଣି
ସ୍ନାନ କଲେ ଶୁଦ୍ଧ ହେବ ଆହେ ବୀରମଣି
ଉଲଗ୍ନା ଯେ ହୋଇଥିବ ସ୍ନାନ ସମୟରେ
ପ୍ରସୂତି ଯେ ହୋଇଥିବ ସୂତିକା ଗୃହରେ ।
ଅନ୍ତ୍ୟାବସାୟୀ ଆବର ମୃତହାରୀ ଜନ
ଏହାଙ୍କୁ ଛୁଇଁଲେ ସ୍ନାନେ ଶୁଦ୍ଧ ହେବ ଜାଣ ।
ଯେବେ କେହି ଓଦା ହାଡ଼ ଛୁଇଁ ପକାଇବ
ସବସ୍ତ୍ରରେ ସ୍ନାନ କଲେ ସେ ଶୁଦ୍ଧ ହୋଇବ
ଶୁଖିଲା ହାଡ଼କୁ ଛୁଇଁ ପକାଇଲେ କେହି
ଆଚମନ କରି ଗୋରୁ ଦେହ ଛୁଇଁ ସେହି ।
ସୂର୍ଯ୍ୟଙ୍କୁ ଦର୍ଶନ କଲେ ଶୁଦ୍ଧ ହେବ ଜାଣ
ରୁଧିରକୁ ନ କରିବ କଦାପି ଲଙ୍ଘନ ।
ହଳଦୀର ମଳୁଖଟି ନ ଡ଼େଇଁବ କେଭେ
ହେ ସୁକେଶି ଶୁଣ ଯାହା କହୁଅଛୁଁ ଏବେ ।
ବିଷ୍ଠା ମୂତ୍ର ଉଚ୍ଛିଷ୍ଟ ଯେ ପାଦଧୌତ ଜଳ
ଗୃହର ବାହାରେ ଫିଙ୍ଗିଦେବ ଏ ସକଳ ।
ପାଞ୍ଚଗୋଟି ପିଣ୍ଡକୁ ଯେ ଉଦ୍ଧୃତ ନ କରି
କଦାପି ନ ଦେବ ନିଜ ମସ୍ତକରେ ବାରି ।
ଦେବଖାତେ ସରୋବରେ ନଦୀରେ ବୁଡ଼ିବ
ବଗିଚାରେ ସଞ୍ଜବେଳେ କେଭେ ନ ବସିବ ।
ନ କରିବ ନିନ୍ଦିତଙ୍କ ସଙ୍ଗେ କଥାବାର୍ତ୍ତା
ବିରହିଣୀ ନାରୀ ସଙ୍ଗେ ସମ୍ଭାଷଣ ତଥା ।
ଯେ ଦେବତା ପିତୃଶାସ୍ତ୍ର ଯଜ୍ଞ ନିନ୍ଦା କରେ
କଥାବାର୍ତ୍ତା ନ କରିବ ତାହାଙ୍କ ସଙ୍ଗରେ ।
ଛୁଇଁଲେ ତାହାଙ୍କୁ ସୂର୍ଯ୍ୟ ଦର୍ଶନ କରିବ
ତେବେ ଯାଇ ପାତକରୁ ମୁକତି ଲଭିବ ।
ଯେ ସବୁ ଅଭୋଜ୍ୟ ତାହା ଶୁଣ ନିଶାଚର
ସୂତିକା ମାର୍ଜାର ଷଣ୍ଢ କୁକ୍କୁଟ ଇନ୍ଦୁର ।
ଅପବିଦ୍ଧ ଚାଣ୍ଡାଳାଦି ନୀଚ ଯେ ପତିତ
ଏମାନେ ଅଭୋଜ୍ୟ ଜାଣ ହେ ସୁକେଶିଦୈତ୍ୟ ।
ଏହାଶୁଣି ପଚାରିଲା ସୁକେଶି ଯେ ପୁଣି
ଆହେ ମୁନିଗଣ ମୋତେ କହିଲ ହେ ବାଣୀ ।
ତହିଁରେ ସଂଶୟ ଜାତ ହେଉଛି ମୋହର
ତାହାଙ୍କ ଲକ୍ଷଣ କହ କରିଣ ବିସ୍ତାର ।
ଏହା ଶୁଣି ଋଷିମାନେ ବୋଇଲେକ ପୁଣି
ମନ ଦେଇ ଶୁଣ ଆହେ ଦୈତ୍ୟ ଚୂଡ଼ାମଣି ।
ବ୍ରାହ୍ମଣ ବ୍ରାହ୍ମଣୀ ଦୁହେଁ ଲଭିଲେ ମରଣ
ଅଟଇ ତାହାର ନାମ ସୂତିକା ହେ ଜାଣ ।
ତାହାଙ୍କର ଅନ୍ନ ଜଳ ଅଭକ୍ଷ ଅଟଇ
ଷଣ୍ଢର ଲକ୍ଷଣ ଏବେ ଶୁଣ ମନଦେଇ ।

ହୋମ ନ କରଇ ଯଥାକାଳେ ଯେଉଁଜନ
ନ କରଇ ସ୍ନାନ ଦାନ ଅତିଥି ପୂଜନ ।
ଦେବ ପିତୃ ନ ପୂଜଇ ଯେହୁ ବିଧିମତେ
ତାହାକୁ ଯେ ଷଣ୍ଢ ବୋଲି ବୋଲନ୍ତି ପଣ୍ଡିତେ ।
ସେ ଜନର ଅନ୍ନକୁ ନ କରିବ ଭୋଜନ
ମାର୍ଜାର ଭକ୍ଷଣ ଶୁଣ ହେ ଦୈତ୍ୟରାଜନ ।
ମନ ମଧ୍ୟେ ଦମ୍ଭ ରଖି ଯେଉଁ ଦୁରାଚାର
ଜପ ତପ ସ୍ତବ ସ୍ତୋତ୍ର ପଢ଼େ ନିରନ୍ତର ।
ତାହାକୁ ମାର୍ଜାର ବୋଲି କହନ୍ତି ଜ୍ଞାନୀଏ
ଅଭକ୍ଷ୍ୟ ତାହାର ଅନ୍ନ ଜାଣ ଦୈତ୍ୟ ରାୟେ
ଆଖୁର ଲକ୍ଷଣ ଏବେ ଶୁଣ ଦେଇ ମନ
ବିଭବ ଥାଇ ଯେ ଜନ ନ କରେ ଭୋଜନ ।
ନ ଦେଇ କାହାକୁ ରଖିଥାଏ ସଞ୍ଚି କରି
ତାହାକୁ ଯେ ଆଖୁ ବୋଲି ଅଛନ୍ତି ଆଚାରୀ ।
ଯେ ଜନ କରିବ ତାର ଅନ୍ନକୁ ଭୋଜନ
ଅତି କଷ୍ଟେ ଶୁଚି ଲାଭ କରିବ ସେ ଜନ ।
ସଭାରେଯେ ପକ୍ଷ କରି କହେ ସେ କୁକ୍‌କୁଟ
ଦେବତାଏ ବୋଲନ୍ତି ତା ଅନ୍ନ ଅଟେ ନଷ୍ଟ ।
ଯେ ଭକ୍ଷଣ କରିବ ସେ ହୋଇବ ନିନ୍ଦିତ
ପତିତ ଲକ୍ଷଣ ଏବେ ଶୁଣ ଦେଇ ଚିତ୍ତ ।
ବିପଦରେ ନ ପଡ଼ି ଯେ ଆପଣା ଇଚ୍ଛାରେ
ନିଜ ଧର୍ମ ଛାଡ଼ି ପର ଧର୍ମ ଆଶ୍ରା କରେ ।
ତାହାକୁ ପଣ୍ଡିତମାନେ କହନ୍ତି ପତିତ
ତାହାର ଯେ ଅନ୍ନ ପାନ ଅତ୍ୟନ୍ତ ନିନ୍ଦିତ ।
ଅପବିଦ୍ଧ ଲକ୍ଷଣ ଯେ କହୁଅଛୁଁ ଶୁଣ
ଦେବତ୍ୟାଗୀ ପିତୃତ୍ୟାଗୀ ଗୁରୁତ୍ୟାଗୀ ପୁଣ ।
ଗୋହତ୍ୟା ଯେ ବ୍ରହ୍ମହତ୍ୟା ସ୍ତିରୀ ହତ୍ୟା କରେ
ତାକୁ ଅପବିଦ୍ଧ ବୋଲି ବୋଲନ୍ତି ଅମରେ ।
ନଗ୍ନର ଲକ୍ଷଣ ଶୁଣ ଆହେ ନିଶାଚର
ଯାର କୁଳେ ନାହିଁ ବେଦ ଶାସ୍ତ୍ର ଯେ ଆବର ।
ବ୍ରତ ଆଦି ଦେବପୂଜା ନାହିଁ ଯାର ବଂଶେ
ତାକୁ ନଗ୍ନ କହିଛନ୍ତି ସାଧୁସୁପୁରୁଷେ ।
ତାହାରି ଯେ ଅନ୍ନ ଅତି ନିନ୍ଦିତ ଅଟଇ
ଯେ ଭୋଜନ କରଇ ସେ ପାତକୀ ଅଟଇ ।
ଚାଣ୍ଡାଳ ଲକ୍ଷଣ ଏବେ ଶୁଣ ଦୈତ୍ୟପତି
ଯେଉଁମାନେ ଆଶା ଦେଇ ଦାନ ନ ଦିଅନ୍ତି ।
ନିଷେଧ କରନ୍ତି ପୁଣି ଦାତାକୁ ଆବର
ଅଧମ ଚାଣ୍ଡାଳ ସେହି ଜାଣ ରାତ୍ରିଚର ।
ଯେ ଶରଣ ପଶେ ଆସି ତାହାକୁ ନ ରଖେ
ତାହାକୁ ଚାଣ୍ଡାଳ ବୋଲି ଜାଣିବ ପ୍ରତ୍ୟକ୍ଷେ ।
ତାହାର ଅନ୍ନକୁ କେଭେ ସ୍ପର୍ଶ ନ କରିବ
ସୂତିକାଦି ଲକ୍ଷଣ ତ ଶୁଣିଲ ଦାନବ ।
ଆଉ କହୁଅଛୁଁ ଶୁଣ ଅଭକ୍ଷ୍ୟ ବିଧାନ
ସାଧୁ ବନ୍ଧୁ ବିପ୍ରଗଣେ ତ୍ୟକ୍ତ ଯେଉଁ ଜନ ।
ଆବର ଯେ ଜନ ଜାଣ କୁଣ୍ଡାଶୀ ଅଟଇ
ତାହାର ଅନ୍ନକୁ ଯେହୁ ଭୋଜନ କରଇ ।
ଚାନ୍ଦ୍ରାୟଣ ବ୍ରତ କଲେ ହୁଅଇ ସେ ଶୁଦ୍ଧ
ଏହିପରି ହୋଇଅଛି ଶାସ୍ତ୍ର ବିଧିବଦ୍ଧ ।
ନିତ୍ୟ ନଇମିତ୍ତିକ ଯେ କର୍ମ ନ କରଇ
ତାହାର ଗୃହରେ ଅନ୍ନ ଯେ ଜନ ଭୁଞ୍ଜଇ ।
ତିନିରାତ୍ର ଉପବାସ କରେ ଯେବେ ସେହି
ତେବେ ଅବା ହୋଇପାରେ ସେ ବିଶୁଦ୍ଧଦେହୀ ।
ସୂତିକା ମୃତ୍ତିକା ଏହି ଦୁଇ ଅଶୌଚରେ
ନିତ୍ୟ କର୍ମମାନଙ୍କର ହାନି ହୋଇପାରେ ।
କଦାପି ଯେ ନୈମିତ୍ତିକ କର୍ମ ନ ଛାଡ଼ିବ
ଏହି ରୂପେ ଜାଣ ଭୃଗୁମୁନିଙ୍କ ପ୍ରସ୍ତାବ ।
ପୁତ୍ର ଜନ୍ମ କଥା ବାଜୁଁ ପିତାର ଶ୍ରବଣେ
ସମସ୍ତେ କରିବ ସ୍ନାନ ଯାଇଁ ତତ୍‌କ୍ଷଣେ ।
ଜନ୍ମ ହୋଇ ମୃତ ହେଲେ ଜ୍ଞାତି ବନ୍ଧୁଗଣ
ସବସ୍ତ୍ରରେ ସ୍ନାନ କରି ମୁକ୍ତ ହେବେ ଜାଣ
ଅନ୍ୟ କେହି ମରିଗଲେ ଗୋତ୍ରଜ ତାହାର
ଶ୍ମଶାନରେ ଦଗ୍‌ଧ କରି ପ୍ରେତର ଶରୀର ।
ତାହାର ଉଦ୍ଦେଶେ ପୁଣି ଜଳାଞ୍ଜଳି ଦେଇ
ସ୍ନାନ କରି ରହିବେ ସେ ଅଶୁଚି ଯେ ହୋଇ ।
ପ୍ରଥମ ଚତୁର୍ଥ କିବା ସପତମ ଦିନେ
ଅସ୍ଥି ସଞ୍ଚୟନ କରି ବେଦର ବିଧାନେ ।
ପିଣ୍ଡୋଦକ ଦାନ ଆଦି ଯେତେ ପ୍ରେତକୃତ୍ୟ
କ୍ରିୟା କର୍ତ୍ତା କରିବ ସେ ସବୁ ବିଧିମତ ।
ଅସ୍ଥି ସଞ୍ଚୟନ କରି ସାରିଲା ଉତ୍ତାରେ
ତାହାଙ୍କୁ ସ୍ପରଶ ନ କରିବେ ଆନ ନରେ ।
ସପିଣ୍ଡ ସମାନୋଦକ ଅବା ଯେଉଁ ଜନ
କରିବେ ତାହାର ପ୍ରେତକ୍ରିୟା ସମାପନ ।

ଯେଉଁ ଲୋକ ସ୍ୱଇଚ୍ଛାରେ ବିଷ ଖାଇ ମରେ
କିବା ଗଳେ ଫାଶି ଦେଇ ଶସ୍ତ୍ର ଆଘାତରେ ।
ଅନଳରେ ପୋଡ଼ି ମରେ କିବା ମରେ ଜଳେ
ଏ ସକଳ ମୃତ୍ୟୁକୁ ସେ ଅପମୃତ୍ୟୁ ବୋଲେ ।
ଏହାଙ୍କୁ ଯେ ନ ପାଳିବ ସ୍ନାନେ ଶୁଦ୍ଧ ହେବ
ନିତାନ୍ତ ବାଳକ ଯେବେ ମରଣ ଲଭିବ ।
କି ଅବା ମରଣ ଦେଶାନ୍ତରୀ ଯେ ସନ୍ନ୍ୟାସୀ
ପୁଣି ସ୍ନାନ ମାତ୍ରେ ଶୁଦ୍ଧ ହେବ ସେ ସୁକେଶି ।
ଏହି ଯେ ଶଉଚ ଚାରିପ୍ରକାର ଅଟଇ
ଗର୍ଭସ୍ରାବେ ଏହିପରି ବିଧି ଯେ ଅଛଇ ।
ବିପ୍ରଙ୍କୁ ଅଶୌଚ ଜାଣ ଲାଗେ ଅହୋରାତ୍ର
କ୍ଷତ୍ରିୟଙ୍କୁ ତିନିରାତ୍ର ବୈଶ୍ୟଙ୍କୁ ଛ ରାତ୍ର ।
ଶୂଦ୍ରଙ୍କୁ ଦ୍ୱାଦଶ ଦିନ ଲାଗଇ ହେ ବୀର
ଏହିପରି କହିଛନ୍ତି ଜାଣ ଶାସ୍ତ୍ରକାର ।
ବିପ୍ରେ ଶୁଦ୍ଧ ହେବେ ଦଶ ଦିବସରେ ଜାଣ
ଦ୍ୱାଦଶ ଦିବସେ ଶୁଦ୍ଧ ହେବେ କ୍ଷତ୍ରିଗଣ ।
ବୈଶ୍ୟ ଜାତି ଶୁଦ୍ଧ ହେବେ ପନ୍ଦର ଦିନରେ
ଶୂଦ୍ରମାନେ ଶୁଦ୍ଧ ହେବେ ଗୋଟିଏ ମାସରେ ।
ତଦନ୍ତେ ସେ ସ୍ୱସ୍ୱକର୍ମ କରିବେଟି ପୁଣ
ନିତ୍ୟକର୍ମ ଶ୍ରାଦ୍ଧ ଆଦି ସପିଣ୍ଡ କରଣ ।
ପ୍ରେତ ଯାଇଁ ପିତୃଗଣ ମଧ୍ୟରେ ବସିଲେ
ପାଇବ ସେ ଦଶ ଆଦି ଶ୍ରାଦ୍ଧେ ପିଣ୍ଡ ଦେଲେ ।
ତାହାର ନିମନ୍ତେ କଲେ ବିପ୍ରେ ଭୂମିଦାନ
ସନ୍ତୋଷେ ଘେନନ୍ତି ତାହା ପିତୃଗଣେ ଜାଣ ।
ଜୀବନ୍ତେ ତାହାର ଯେଉଁ ଦ୍ରବ୍ୟେ ଥାଏ ଲୋଭ
ବିପ୍ରଙ୍କ ହସ୍ତରେ ଦେବ ସ୍ୱଚ୍ଛେ ସେହି ଦ୍ରବ୍ୟ ।
କହିଲୁଁ ଶଉଚ ବିଧି ଆହେ ଦୈତ୍ୟମଣି
ଶୁଣ ଯେଉଁ ଯେଉଁ କର୍ମ କରିବେଟି ପ୍ରାଣୀ ।
ପଣ୍ଡିତେ କରିବେ ତିନି ବେଦକୁ ପଠନ
ଧର୍ମ ପଥେ ରହି ଧନ କରିବ ଅର୍ଜନ ।
ଶକ୍ତି ଅନୁସାରେ ଯାଗ ଯଜ୍ଞ ଯେ କରିବ
ଯେଉଁ କର୍ମ କଲେ ଲୋକେ ନିନ୍ଦିତ ନୋହିବ ।
କରିବ ସେ କାର୍ଯ୍ୟମାନ ନିର୍ଭୟ ଚିତ୍ତରେ
ଏହି ରୂପେ ଧର୍ମ କର୍ମ କରି ଜାଣ ନରେ ।
ଇହ ପର ଲୋକେ ଧର୍ମ ଅର୍ଥ କାମ ପାଇ
ପରମ ଆନନ୍ଦେ ଦିନ ତାହାଙ୍କର ଯାଇ ।

ଗୃହସ୍ଥ ଆଶ୍ରମ କଥା କହିଲୁ ବୁଝାଇ
ବାନପ୍ରସ୍ଥ ଆଶ୍ରମ ଯେ ଶୁଣ ମନ ଦେଇ ।
ପୁତ୍ରକନ୍ୟା ମୁଖ ଦେଖି ଜ୍ଞାନବନ୍ତ ଜନ
ଆପଣାର ବୃଦ୍ଧାବସ୍ଥା କରି ଦରଶନ ।
ଆତ୍ମଶୁଦ୍ଧି ଅର୍ଥେ ବାନପ୍ରସ୍ଥ ଆଚରିବ
ଅରଣ୍ୟ ମଧ୍ୟରେ ରହି ତପସ୍ୟ କରିବ ।
ଭୂମିରେ ଶୋଇବ ବ୍ରହ୍ମଚାରୀ ବ୍ରତ ଧରି·
ଦେବ ଅତିଥି ପିତୃଗଣଙ୍କୁ ତୋଷ କରି ।
ଆଵର କରିବ ହୋମ ତ୍ରିକାଳରେ ସ୍ନାନ
ବକଳ ପିନ୍ଧିବ ଜଟା କରିବ ବନ୍ଧନ ।
ଇଙ୍ଗୁଦୀ ତଇଳ ଅଙ୍ଗେ ମର୍ଦ୍ଦନ କରିବ
ବାନପ୍ରସ୍ଥାଶ୍ରମ ଧର୍ମ କହିଲୁଁ ଦାନବ ।
ଭିକ୍ଷୁ ଆଶ୍ରମ ଯେ ଶୁଣ ଏବେ ମନ ଦେଇ
ସର୍ବସଙ୍ଗ ବର୍ଜିବ ଯେ ବ୍ରହ୍ମଚାରୀ ହୋଇ ।
ଅଭିମାନୀ ନ ହୋଇବ ଜିତେନ୍ଦ୍ରିୟ ହେବ
ଏକ ଗୃହେ ବହୁକାଳ ବାସ ନ କରିବ ।
ଆରମ୍ଭ ନ କରି ଭିକ୍ଷା କରିବ ପ୍ରତ୍ୟହ
ତ୍ୟାଗ କରିବ ଯେ ଲୋଭ କ୍ରୋଧ ଆଦି ମୋହ ।
ଆତ୍ମଜ୍ଞାନ ହେବା ପାଇଁ କରିବ ଯତନ
ଚତୁର୍ଥ ଆଶ୍ରମ ଧର୍ମ କଲୁଁ ଯେ ବର୍ଣ୍ଣନ ।
ଏବେ ଅନ୍ୟ ଧର୍ମ କଥା ଶୁଣ ନିଶାଚର
ବ୍ରହ୍ମଚାରୀ ଗୃହୀ ବାନପ୍ରସ୍ଥ ଯେ ଆବର ।
କ୍ଷତ୍ରିମାନଙ୍କର ଜାଣ ଏହି ତିନିଧର୍ମ
ବୈଶ୍ୟଙ୍କର ବୈଖାନସ ଗୃହସ୍ଥ ଆଶ୍ରମ ।
କେବଳ ଗୃହସ୍ଥାଶ୍ରମ ଶୂଦ୍ରମାନଙ୍କର
ସ୍ୱ ସ୍ୱ ଧର୍ମ ନ ଛାଡ଼ିବ କେଭେ ରାତ୍ରିଚର ।
ଯେ ସ୍ୱଧର୍ମ ତ୍ୟାଗ କରି ଅନ୍ୟ ଧର୍ମେ ରହେ
ଭାସ୍କର ଦେବ ତା ପ୍ରତି ଅତି ରୋଷ ବହେ ।
ସୂର୍ଯ୍ୟ କୋପ କଲେ ତାର ବଂଶ ହୁଏ ଧ୍ୱଂସ
ଦେହେ ତାର ରୋଗ ବୃଦ୍ଧି ହୁଏ ଅହର୍ନିଶ ।
କହିଲେ ପୁଲସ୍ତ୍ୟ ଋଷି ସୁକେଶୀ ଅସୁର
ମୁନିଙ୍କ ମୁଖରୁ ଶୁଣି ଏସନକ ଗୀର ।
ଚରଣେ ପ୍ରଣାମ କରି ଊର୍ଦ୍ଧ୍ୱକୁ ଉଠିଲା
ଆପଣାର ପୁରେ ଯାଇଁ ପ୍ରବେଶ ହୋଇଲା ।
ଯିବା ବେଳେ ସେହି ମନ ମଧ୍ୟରେ ତାହାର
ଧର୍ମକଥା ଆଲୋଚନା କରି ବାରମ୍ବାର ।

ଏ ବାମନ ପୁରାଣ ଯେ ଶୁଣଇ ପଢ଼ଇ
ଆପେ ତରି ଆପଣାର କୁଳ ଉଦ୍ଧାରଇ ।
ହରିନାମ ଜଗତରେ ଅଟେ ଏକାସାର
ଗୋପୀନାଥ ବୋଲେ ହରି ଭଜ ନିରନ୍ତର ।

=+=

## ଲୋଲାର୍କ ଜନନ

ପୁଲସ୍ତ୍ୟ କହିଲେ ଆହେ ଦେବର୍ଷି ନାରଦ
ଏଥୁ ଅନନ୍ତରେ ସେହି ସୁକେଶି କ୍ରବ୍ୟାଦ ।
ଆପଣାର ଅନୁତ୍ତମ ପୁରକୁ ସେ ଯାଇଁ
ରାକ୍ଷସମାନଙ୍କୁ ପାଶେ ଆଣିଲା ଡକାଇ ।
ବୁଝାଇ କହିଲା ଧର୍ମ କଥା ଧୀରେ ଧୀରେ
ଏକମନ ହୋଇ ଶୁଣ ହେ ରାକ୍ଷସ ବୀରେ ।
ଅହିଂସା ଅସ୍ତେୟ ସତ୍ୟ ଇନ୍ଦ୍ରିୟ ଦମନ
ଶୌଚ ଦୟା କ୍ଷମା ଆଉ ବ୍ରହ୍ମଚର୍ଯ୍ୟ ଦାନ ।
ଅନଭିମାନ ଯେ ପ୍ରିୟ ମଧୁର ଭାଷଣ
ସତ୍‌କାର୍ଯ୍ୟେ ଆସକ୍ତି ସଦାଚାର ନିବେଦନ ।
ଏହି ସବୁ ପରଲୋକ ଦାନ କରେ ଜାଣ
ଏହି ଉପଦେଶ ମୋତେ ଦେଲେ ମୁନିଗଣ ।
ଆଦ୍ୟ ପୁରାତନ ଧର୍ମ ଅଟେ ଜାଣ ଏହି
ତୁମ୍ଭମାନଙ୍କୁ ମୁଁ ଏହି ଧର୍ମ ଦେଲି କହି ।
ଏହି ଧର୍ମେ ତୁମ୍ଭେ ମନ ଦିଅ ନିରନ୍ତର
ପୁଲସ୍ତ୍ୟ କହିଲେ ଶୁଣି ସର୍ବ ନିଶାଚର ।
ତ୍ରୟୋଦଶ ଗୁଣେ ସେହି ଧର୍ମ ଆଚରିଲେ
ସେ ଧର୍ମ ପ୍ରଭାବେ ସେହି ତେଜୋବନ୍ତ ହେଲେ ।
ପୁତ୍ର ପୌତ୍ର ଆଦି କ୍ରମେ ସଦାଚାରେ ରହି
ସକଳ ପାତକ ନାଶି ହେଲେ ଶୁଦ୍ଧଦେହୀ ।
ରାକ୍ଷସମାନଙ୍କ ତେଜ ପ୍ରତାପ ପ୍ରଭାବେ
ଯାଇ ନ ପାରିଲେ ଚନ୍ଦ୍ରସୂର୍ଯ୍ୟ ତାରା ନଭେ ।
କ୍ରମେ ତ୍ରିଭୁବନ ଆଉ ନିଶାଚର ପୁରୀ
ଦିବସରେ ତେଜୋବନ୍ତ ହେଲା ସୂର୍ଯ୍ୟପରି ।
ରାତ୍ରିକାଳେ ହେଲା ଚନ୍ଦ୍ର ତୁଲ୍ୟ ଯେ ଉଜ୍ଜ୍ୱଳ
କ୍ରମେ ଜ୍ୟୋତିହୀନ ହେଲା ଆକାଶମଣ୍ଡଳ ।
ଚନ୍ଦ୍ରସୂର୍ଯ୍ୟ ଗ୍ରହତାରା ଦିଶିଲେ ମଳିନ
ନିତାନ୍ତ ଚିନ୍ତିତ ହେଲେ ତ୍ରିଭୁବନ ଜନ ।
ରାତ୍ରିରେ ଫୁଟିଲା ପଦ୍ମ ଦିବସରେ କଇଁ
ଉଲ୍ଲୁକ ରାବିଲେ ଦିବା ରାତ୍ର ବୃକ୍ଷେ ରହି ।
ଗମନାଗମନ କଲେ ସେହି ନିର୍ଭୟରେ
ପୂର୍ଣ୍ଣିମା ଯାମିନୀ ମନେ କରି ଦିବସରେ ।
ଜାଣିପାରି ବାୟସେ ଯେ ମାରିଲେ ତାହାଙ୍କୁ
କହନ୍ତି ପୁଲସ୍ତ୍ୟ ମୁନି ନାରଦ ମୁନିଙ୍କୁ ।
ସ୍ନାନ ଜପ ପରାୟଣ ଯେତେ ମୁନି ଗଣ
ଦିବସକୁ ରାତ୍ରି ଜ୍ଞାନ କରି ଅନୁକ୍ଷଣ ।
ବେକକ ପାଣିରେ ନଦୀ ମଧ୍ୟରେ ରହିଲେ
ପୃଥିବୀରେ ଚକ୍ରବାକ ପକ୍ଷୀ ଯେତେ ଥିଲେ ।
ରାତ୍ରିକୁ ଦିବସ ଜ୍ଞାନ କରି ହେଲେ ତୋଷ
ଉଚ୍ଚସ୍ୱରେ ରାବ ଦେଲେ ରହି ପ୍ରିୟାପାଶ ।
ପ୍ରିୟାକୁ ନ ପାଇ କେହି ରାବି ରାବି ମଲେ
ତାହା ଦେଖି ବିବସ୍ୱାନ କୃପାବାନ ହେଲେ ।
ବିସ୍ତାରିଲେ ଆପଣାର କିରଣ ନିକର
ଜଗତ ତାପିତ ହେଲା ତେଣୁ ନିରନ୍ତର ।
ଯହୁଁ ସୂର୍ଯ୍ୟଦେବ ଅସ୍ତ ନ ହୋଇ ରହିଲେ
ପରସ୍ପରେ ଲୋକମାନେ କୁହାକୁହି ହେଲେ ।
ନିଶ୍ଚେ କେଉଁ ଚକ୍ରବାକ ପକ୍ଷୀଗଲା ମରି
ତାହାରବିୟୋଗ ସହି ନ ପାରି ତ ନାରୀ ।
ତପ କରିବାରୁ ତୋଷ ହୋଇଣ ଭାସ୍କର
ଅସ୍ତନୋହି ଗଗନରେ ଉଦେ ନିରନ୍ତର ।
ପୁଲସ୍ତ୍ୟ କହିଲେ ପୁଣି ଆହେ ମହାମୁନି
ଯାଗ କରୁଥିବା ଜନେ ବିପ୍ରଗଣ ଘେନି ।
ରାତ୍ରିକାଳେ ଯାଗଶାଳେ ରହି ଯଜ୍ଞକଲେ
ଭକ୍ତମାନେ ଦିବାରାତ୍ରି ବାରି ନ ପାରିଲେ ।
ଶ୍ରଦ୍ଧା ଭକତିରେ କଲେ ବିଷ୍ଣୁଙ୍କର ପୂଜା
ବ୍ରହ୍ମା ଆଉ ଶିବଙ୍କର ଭକ୍ତି ଯେତେ ରାଜା ।
ସେମାନେ ତାହାଙ୍କୁ ଆରାଧନା କଲେ ବସି
କାମୀ ପୁରୁଷେ ଯେ ମନେ ମନେ ହୋଇଖୁସି
ସାଧୁ ସାଧୁ କହି କଲେ ଚନ୍ଦ୍ରକୁ ପ୍ରଶଂସା
ବୋଇଲେ ଯେହେତୁ ଚନ୍ଦ୍ର କିରଣରେ ନିଶା
କରୁଛି ଆନନ୍ଦଜାତ ଲୋକଙ୍କର ମନେ
ଏ ହେତୁ ପ୍ରଶଂସା କରୁ ତାଙ୍କୁ ଆମ୍ଭେମାନେ ।
କେହି ବୋଇଲେକ ଅକପଟେ ଅଛୁ ଆମ୍ଭେ
ପବିତ୍ର କୁସୁମେ ଚତୁର୍ମାସ୍ୟାର ଆରମ୍ଭେ ।
ଲକ୍ଷ୍ମୀନାରାୟଣ ପୂଜାକଲୁଁ ଚାରିମାସ
ତହିଁରେ ସେ ଆମ୍ଭଠାରେ ହୋଇଲେ ସନ୍ତୋଷ ।

ଯେଉଁ ଦ୍ୱିତୀୟାର ନାମ ଅଶୂନ୍ୟ ଶୟନା
ତହିଁରେ କରିଛୁ ପୁଣି ବିଷ୍ଣୁ ଆରାଧନା ।
ସେ ଦ୍ୱିତୀୟବ୍ରତ କରେ ମନୋବାଞ୍ଛା ପୂର୍ଣ୍ଣ
ସେ କାରଣୁ ଲକ୍ଷ୍ମୀଦେବୀ ପ୍ରଭୁନାରାୟଣ ।
ଶୟନ ପ୍ରଦାନ କଲେ ଆମ୍ଭଙ୍କୁ ସନ୍ତୋଷେ
ଏହା କହି ନିଦ୍ରାଗଲେ ସେମାନେ ହରଷେ ।
କେହି କେହି ବୋଇଲେକ ଦେବୀ ଯେରୋହିଣୀ
ଚନ୍ଦ୍ରଙ୍କର କ୍ଷୟଦଶା ଦେଖି ପୁଣ ପୁଣି ।
ରୁଦ୍ର ଆରାଧନା କରି ଘୋର ତପ କଲେ
ଅଷ୍ଟମୀ ତିଥିରେ ବେଦବିଧିରେ ପୂଜିଲେ ।
ସେ ଅଷ୍ଟମୀ ଅକ୍ଷୟ ଯେ ପରମ ପବିତ୍ର
ସେ ରୋହିଣୀ ଦେବୀଙ୍କର ବିଶୁଦ୍ଧ ଚରିତ୍ର ।
ତେଣୁ ଭବ ସୁପ୍ରସନ୍ନ ହୋଇ ଦେଲେ ବର
ଅକ୍ଷୟ ହୋଇ ରହିଲେ ଦେବ ନିଶାଚର ।
କେହି କେହି ବୋଇଲେକ ନିଶ୍ଚେ ହେବ ଏହା
ଅଖଣ୍ଡିତ ବ୍ରତ କରି ରୋହିଣୀର ନାହା ।
ଶ୍ରୀହରିଙ୍କି ପୂଜିବାରୁ ଭକତିରେ ସେହି
ଆକାଶରେ ଉଦେ ହେଲେ ଅଖଣ୍ଡିତ ହୋଇ ।
କେହି ବୋଲେ ନିଶ୍ଚେ ଚନ୍ଦ୍ର ବିଷ୍ଣୁ ପୂଜାକରି
ଆପଣା ଦେହକୁ ରକ୍ଷା କରେ ଏହିପରି ।
ଦୀପ୍ତିମନ୍ତ ହୋଇ କଲା ସୂର୍ଯ୍ୟଙ୍କୁ ଯେ ଜୟ
ଆମ୍ଭମାନଙ୍କର କରେ ଆନନ୍ଦ ଉଦୟ
ସୂର୍ଯ୍ୟପ୍ରାୟ କରୁଅଛି ତାପକୁ ପ୍ରଦାନ
ଚନ୍ଦ୍ରଠାରୁ ପରାଭବ ପାଇଣ ତପନ ।
ପୂର୍ବପ୍ରାୟ କିରଣକୁ ପ୍ରକାଶି ନ ପାରେ
ସୂର୍ଯ୍ୟ ଉଦେହେଲି ବୋଲି ବିଚାରି ମନରେ ।
ରଜନୀର ଅଭାବରେ ଆନନ୍ଦ ମନରେ
ପଦ୍ମଫୁଲେ ଫୁଟୁଛନ୍ତି ନଦୀ ସରୋବରେ ।
ଭୃଙ୍ଗମାନେ କରୁଛନ୍ତି ଗୁଣୁଗୁଣୁ ଧ୍ୱନି
କଇଁଫୁଲ ଫୁଟିବାରୁ ଜଣାଯାଏ ପୁଣି ।
ପ୍ରତାପ ବହିଣ ଚନ୍ଦ୍ର ହୋଇଛି ଉଦିତ
ନାରଦଙ୍କୁ କହୁଛନ୍ତି ମୁନି ଯେ ପୁଲସ୍ତ୍ୟ ।
ଏରୂପେ ହୁଅନ୍ତେ କଥାବାର୍ତ୍ତା ପରସ୍ପରେ
ସେ କଥା ପଶିଲା ଯାଇଁ ସୂର୍ଯ୍ୟଙ୍କ କର୍ଣ୍ଣରେ ।
ଭାଳିଲେ କିମ୍ପାଇ ଲୋକେ କହନ୍ତି ଏପରି
ଦିବାକର ଏହି ରୂପେ ମନେ ଚିନ୍ତାକରି ।

ଧ୍ୟାନଯୋଗେ ମଗ୍ନ ହେଲେ ଯୋଗାସନେ ବସି
ଜାଣିଲେ ଯେ ଜଗତକୁ ଆଚ୍ଛାଦିଛି ଶଶୀ ।
ନିଶାଚରଗଣଙ୍କର ଧର୍ମର ପ୍ରଭାବେ
ଚନ୍ଦ୍ରମା କିରଣଧାରୀ ହୋଇଅଛି ନଭେ ।
ପୁଣି ଯୋଗବଳେ ଜାଣିପାରିଲେ ଭାସ୍କର
ହୋଇଛନ୍ତି ସଦାଚାରେ ରତ ନିଶାଚର ।
ଶୁଚି ହୋଇ କରୁଛନ୍ତି ଦେବ ବିପ୍ରପୂଜା
ସେ କାରଣୁ ହୋଇଛନ୍ତି ଦୈତ୍ୟେ ମହାତେଜା ।
ଏହା ଜାଣିପାରି ଦେବଦେବ ଦିବାକର
ଛିଦ୍ର ଅନ୍ୱେଷଣ କଲେ ଦୈତ୍ୟମାନଙ୍କର ।
ଯେଉଁପରି ତାହାଙ୍କର ଧର୍ମ ହେବ ହତ
ତାହା କରିବାକୁ ସୂର୍ଯ୍ୟ ହୋଇଲେ ଉଦିତ ।
ସର୍ବ ଧର୍ମ ନାଶ ଆଉ ସ୍ୱଧର୍ମର କ୍ଷୟ
ଏହି ଛିଦ୍ର ପାଇଁ ହେଲେ ଆକାଶେ ଉଦୟ ।
ବାରମ୍ବାର ଅନାଇଲେ ସେ କୋପଦୃଷ୍ଟିରେ
ପୁର ସହ ଭସ୍ମ ହୋଇଗଲେ ନିଶାଚରେ ।
କ୍ଷୀଣ ପୁଣ୍ୟ ଗ୍ରହ ପ୍ରାୟ ସୁକେଶି ଦଇତ
ଆକାଶରୁ ଖସି ହେଲା ଭୂତଳେ ପତିତ ।
ପୁର ଭସ୍ମ ହେବା ଦେଖି ସୁକେଶି ରାକ୍ଷସ
ଉଚ୍ଚସ୍ୱରେ ଡାକିଲା ହେ ରଖ କୃତିବାସ ।
ଆହେ ଶିବ ଆହେ ଭବ ଆହେ ସର୍ବହର
ନମସ୍କାର କରୁଅଛି ମୋତେ ରକ୍ଷାକର ।
ତାହାର ରୋଦନ ଧ୍ୱନି ଶୁଣିଣ ଚାରଣେ
ହାହାକାର ଧ୍ୱନି କରି ଉଠିଲେ ତକ୍ଷଣେ ।
ବୋଇଲେ ଶିବଙ୍କ ଭକ୍ତ ହେଉଛି ବିନାଶ
ଚାରଣଗଣଙ୍କ ବାଣୀ ଶୁଣି କୃତିବାସ ।
ବିଚାରିଲେ ମୋର ଭକ୍ତ ସୁକେଶି ଅସୁର
ତାହାର ବିନାଶ ହୁଏ ଏ କି ଚମତ୍କାର ।
କିଏ ତାକୁ ଭୂମିତଳେ ପକାଇଲା ଆଣି
ତାହାର କି ମରଣକୁ ଭୀତି ନାହିଁ ପୁଣି ।
ଏତେ ଭାଳି ଯୋଗବଳେ ଜାଣିଲେ ଶଙ୍କର
ସୁକେଶିର ପୁର ଭସ୍ମ କରିଛି ଭାସ୍କର ।
ସୁକେଶି ପଡ଼ିଛି ତଳେ ପ୍ରଚଣ୍ଡ କିରଣେ
ଜାଣି କ୍ରୋଧ ଜାତ ହେଲା ଶଙ୍କରଙ୍କ ମନେ ।
କ୍ରୋଧଭରେ ଭାସ୍କରଙ୍କୁ ଅନାଇଲେ ହର
ସେ କୋପଦୃଷ୍ଟି ପଡ଼ିଲା ସୂର୍ଯ୍ୟଙ୍କ ଉପର ।

ଖସଇ ଯନ୍ତ୍ର ମଧ୍ୟରୁ ପାଷାଣ ଯେସନ
ତେହ୍ନେ ସୂର୍ଯ୍ୟମଣ୍ଡଳରୁ ଖସିଣ ତପନ ।
ବାୟୁପଥେ ପଡ଼ି ତହୁଁ ଖସିଲେକ ପୁଣି
ପଳାଶ ପୁଷ୍ପ କି ବୃକ୍ଷୁ ଖସିଲା ଧରଣୀ ।
ତେସନ ଉଜ୍ଜ୍ୱଳ କାନ୍ତି ଧରି ଖସି ଆସି
ଭୂମିରେ ପଡ଼ିଲେ ତାଙ୍କୁ ଦେଖିଲେକ ଋଷି ।
ଚାରିପାଖେ ବେଢ଼ିଛନ୍ତି କିନ୍ନର ଚାରଣ
ବିସ୍ତାରି ଅଛନ୍ତି ସୂର୍ଯ୍ୟ ପ୍ରଚଣ୍ଡ କିରଣ ।
ସେ ସମୟେ ଏହିପରି ଋଷିଙ୍କି ଦିଶିଲା
ଅଧେ ପାଚିଥିବା ତାଳ ଫଳ କି ଖସିଲା ।
ତାର ଚାରିପାଖେ ବେଢ଼ିଛନ୍ତି କି ବାନରେ
କହିଲେ ତପସ୍ୱୀଗଣ ତାଙ୍କୁ ଉଚ୍ଚସ୍ୱରେ ।
ମଙ୍ଗଳ କାମନା କର କେବେ ଦିବାକର
ହରିକ୍ଷେତ୍ରେ ପଡ଼ ଯାଇଁ ନ କରି ବିଚାର ।
ପଡ଼ିଲା ସମୟେ ସୂର୍ଯ୍ୟ ଶୁଣି ଏହି ବାଣୀ
ପଚାରିଲେ ସେ ଋଷିଙ୍କି ଚାହିଁ ଦିନମଣି ।
ପରମ ପବିତ୍ର ହରିକ୍ଷେତ୍ର କିଏ କହ
ଋଷିଏ ବୋଇଲେ ଶୁଣ ଅଦିତିର ପୁଅ ।
ବାରାଣସୀ ପୁରୀକି ଯେ ହରିକ୍ଷେତ୍ର କହି
ସେହି ସ୍ଥାନେ ହରିହର ଅଛନ୍ତି ଯେ ରହି ।
ଯୋଗଶାୟୀଠାରୁ ଜାଣ କେଶବ ପର୍ଯ୍ୟନ୍ତ
ପରମ ପିବତ୍ର ତାର ନାମ ହରିକ୍ଷେତ୍ର ।
ସେ କ୍ଷେତ୍ରେ ପଡ଼ିଲେ ହେବ ମହା ଫଳଲାଭ
ଋଷିଙ୍କ ମୁଖରୁ ଏହା ଶୁଣି ସୂର୍ଯ୍ୟଦେବ ।
ବରଣା ଆବର ଆସି ଏ ଦୁଇ ନଦୀର
ମଧ୍ୟରେ ପଡ଼ିଲେ ଯାଇଁ ସେ ହେବ ଭାସ୍କର ।
ଦେହ ପୋଡ଼ିଯିବାରୁ ସେ ଅସ୍ତବ୍ୟସ୍ତ ହୋଇ
ବରଣା ନଈରେ ବୁଡ଼ି ପୁଣି ତହିଁ ଯାଇଁ ।
ବୁଡ଼ିଗଲେ ଆସି ନଈପାଣିର ଭିତରେ
ତହୁଁ ଯାଇଁ ବୁଡ଼ିଲେକ ପୁଣି ବରଣାରେ ।
ତ୍ରିନେତ୍ରର ନେତ୍ରାନଳେ ପଡ଼ି ଦିନକର
ଏହି ରୂପେ ଭ୍ରମିଲେ ସେ ଚକ୍ରର ଆକାର ।
ବରଣାରେ ବୁଡ଼ି ପୁଣି ଅସିରେ ବୁଡ଼ନ୍ତି
ଏହିପରି ଭ୍ରମଣ ସେ କରେ ଦିବାରାତି ।
କହୁଛନ୍ତି ପୁଲସ୍ତ୍ୟ ଯେ ଶୁଣନ୍ତି ନାରଦ
ଏ ସମୟେ ଋଷ ଯକ୍ଷରକ୍ଷ ନାଗବୃନ୍ଦ ।
ବିଦ୍ୟାଧର ଅପସରା ପକ୍ଷୀ ଭୂତପ୍ରେତ
ଏ ସମସ୍ତେ ବ୍ରହ୍ମାପାଖେ ହେଲେ ଉପସ୍ଥିତ ।
ଏ ସମୟେ ସୁରପତି ଘେନି ସୁରଗଣ
ମହେଶ୍ୱର ସନ୍ନିଧିକି କଲେକ ଗମନ ।
ସୁନ୍ଦର ମନ୍ଦର ଗିରିଶିଖେ ସେ ଅଛନ୍ତି
ଶିବଙ୍କୁ ଦର୍ଶନ ତହିଁ କଲେ ସୁରପତି ।
ସ୍ତୁତି କରି କରାଇଲେ ହରଙ୍କୁ ପ୍ରସନ୍ନ
ଶିବଙ୍କୁ ସଙ୍ଗରେ ଘେନି ସହସ୍ର ଲୋଚନ ।
ବାରାଣସୀ କ୍ଷେତ୍ର ମଧେ ମିଳିଲେକ ଯାଇଁ
ଋଷିଗଣ ବ୍ରହ୍ମାଙ୍କୁ ଯେ ପ୍ରସନ୍ନ କରାଇ ।
ବାରାଣସୀ କ୍ଷେତ୍ରେ ଆସି ହେଲେ ଉପସ୍ଥିତ
ଏଥୁ ଅନନ୍ତରେ କଥା ଶୁଣ ତପୋବନ୍ତ ।
ସୂର୍ଯ୍ୟଙ୍କୁ ଯେ କରତଳେ ଧରି ଶୂଳପାଣି
ଲୋକ ନାମ ଦେଇ ରଥେ ବସାଇଲେ ଆଣି ।
ରଥ ଆରୋହଣ ଯହୁଁ କଲେ ଦିନକର
ସୁକେଶିର ନିକଟକୁ ଗଲେ ବେଦବର ।
ତାହାର ବାସବ ପୁର ସହିତ ତାହାକୁ
ଆକାଶେ ସ୍ଥାପନ କରି ଗଲେ ଯେ ଗୃହକୁ ।
ଦେବଦେବ କେଶବଙ୍କୁ କର ନମସ୍କାର
ନିଜ ଭବନରେ ଆସି ମିଳିଲେ ଶଙ୍କର ।
ଶୁଣଇ ଯେ ଜନ ଏହି ପବିତ୍ର ଆଖ୍ୟାନ
ମରଣାନ୍ତେ ବସିବ ସେ ବୈକୁଣ୍ଠ ଭୁବନ ।
ବାମନପୁରାଣେ ଏହା ହୋଇଛି ଉକତ
ସୁକେଶିରଠାରୁ ନାହିଁ ଶିବଙ୍କ ଭକତ ।
ହେ ଶିବ ଚରଣତଳେ ରଖ ମୋର ମତି
ଦୀନ ଗୋପୀନାଥକୁ ଯେ ଦିଅ ସଦଗତି ।

=+=

## ଅଶୂନ୍ୟ ଶୟନ ଦ୍ୱିତୀୟା ଓ କାଳାଷ୍ଟମୀ ବ୍ରତ କଥା

ପଚାରିଲେ ନାରଦ ଯେ ପୁଲସ୍ତିଙ୍କି ପୁଣି
କାମିଜରେ ପୂଜା କରି ଶିବ ଚକ୍ରପାଣି ।
ଯେଉଁ ଯେଉଁ ବ୍ରତ କଲେ ତା ବିଧି ବିଧାନ
ବିସ୍ତାରି ତା ମୋ ଆଗରେ କରନ୍ତୁ ବର୍ଣ୍ଣନ ।
ପୁଲସ୍ତ୍ୟ କହିଲେ ଶୁଣ ଆହେ କଳିପ୍ରିୟ
କହୁଛି ସେ ବ୍ରତ ବିଧି ମନ କରି ଥୟ ।

ଉତ୍ତର ଅୟନେ ଗଲ ପ୍ରାନ୍ତେ ଦିବାକର
ଶୟନ କରନ୍ତି ଦେବଦେବ ଚକ୍ରଧର ।
ତାହାଙ୍କ ଶୋଇବା ଦେଖି ଦେବତା ଗନ୍ଧର୍ବ
ଗୁହ୍ୟକ ଯେ ମାତଗଣ ଶୁଅନ୍ତି ଏ ସର୍ବ ।
ଏହାଶୁଣି କହିଲେ ଯେ କଳିପ୍ରିୟ ମୁନି
ହରିଶୟନର ବିଧି କହ ମହାଜ୍ଞାନୀ ।
ପୁଲସ୍ତ୍ୟ କହିଲେ ଶୁଣ ଆହେ ତପୋଧନ
ମିଥୁନ ରାଶିକି ଦୃଷ୍ଟି କରିଣ ତପନ ।
ଯିବାବେଳେ ହୁଏ ଯେଉଁ ଶୁକ୍ଳପକ୍ଷ ଜାଣ
ସେହି ଶୁକ୍ଳ ଏକାଦଶୀ ଦିନ କରି ସ୍ନାନ ।
ନିର୍ମାଣିବ ସର୍ପ ରୂପ ପଲଙ୍କ ଗୋଟିଏ
ହରିଙ୍କି ପୂଜିବ ତହିଁ ପବିତ୍ର ହୃଦୟେ ।
ବିଧି ବିଧାନରେ ଦ୍ୱିଜଗଣଙ୍କୁ ପୂଜିବ
ପବିତ୍ରାରୋପଣ ବିଧି ସେ ଦିନ କରିବ ।
ଜନାର୍ଦ୍ଦନ ଏକାଦଶୀ ଜାଣ ତାର ନାମ
ସେ ଦିନର ମହିମା କେ କରିବ ବଖାଣ ।
ସବୁ ଏକାଦଶୀଠାରୁ ଶ୍ରେଷ୍ଠ ଅଟେ ସେହି
ବ୍ରତକଲା ଲୋକଠାରେ ତୋଷ ଭାବଗ୍ରାହୀ ।
ଦ୍ୱାଦଶ ତିଥିରେ ଉଠି ହୋଇ ଶୁଚିମନ୍ତ
କରଯୋଡ଼ି ବିପ୍ରଙ୍କୁ ଯେ କହିବ ଏମନ୍ତ ।
ପୀତାମ୍ବର ପରିଧାନ କରି ଦେବହରି
ସୁସ୍ଥ ହୋଇ ନିଦ୍ରାଯିବେ ପଲଙ୍କ ଉପରି ।
ଅନୁଜ୍ଞା ଦିଅନ୍ତୁ ଶୁଦ୍ଧମନେ ବିପ୍ରଗଣ
ଏରୂପେ ତାଙ୍କ ଅନୁଜ୍ଞା କରିବେ ଗ୍ରହଣ ।
ତ୍ରୟୋଦଶୀ ତିଥିରେ ଯେ ନିତ୍ୟକର୍ମ ସାରି
ସୁଗନ୍ଧି କଦମ୍ବ ପୁଷ୍ପେ ଶଯ୍ୟା ଏକ କରି ।
ଯେମନ୍ତେ ସେ ଶଯ୍ୟା ହେବ ପରମ ସୁନ୍ଦର
କରିବ ତା ଅତି ଯତ୍ନେ ଆହେ ମୁନିବର ।
ସେ ତିଥିକି ବୋଲନ୍ତି ଯେ କାମ ତ୍ରୟୋଦଶୀ
କାମଦେବ ନିଦ୍ରାଯାନ୍ତି ସେ ଶଯ୍ୟାରେ ନିଶି ।
ଯକ୍ଷ ଚତୁର୍ଦ୍ଦଶୀ ହୁଏ ତାର ପରଦିନ
ସେଥିରେ ଯକ୍ଷଗଣ ଯେ କରନ୍ତି ଶୟନ ।
ସେ ଦିନ ସୁବର୍ଣ୍ଣ ପଦ୍ମେ ଶଯ୍ୟା ନିର୍ମାଣିବ
କୋମଳ ମୁଚୁଳା ଚାରି ପାଖରେ ଥୋଇବ ।
ସେ ସୁଖ ଶୀତଳ ଶଯ୍ୟା ଉପରେ ନିଶ୍ଚିନ୍ତେ
ଶୋଇବେ ଯେ ଯକ୍ଷଗଣ ସେ ଦିନ ନିଶିଥେ ।

ଶୟନ ପୂର୍ଣ୍ଣିମା ଆରଦିନ ଶିବଙ୍କର
ବ୍ୟାଘ୍ରଚର୍ମ ଶଯ୍ୟା ଅନ୍ୟଚର୍ମେ ଜଟାଭାର ।
କର୍କଟ ରାଶିରେ ସୂର୍ଯ୍ୟ ରହିଲେକ ଯାଇଁ
ଦେବଙ୍କ ଦକ୍ଷିଣାୟନ ରାତ୍ରି ଯେ ହୁଅଇ ।
ପ୍ରତିପଦା ତିଥିରେ ଯେ କୋମଳ ଆସନ
ନୀଳୋତ୍ପଳ ଶଯ୍ୟାରେ ଯେ କରନ୍ତି ଶୟନ ।
ଦ୍ୱିତୀୟା ତିଥିରେ ବିଶ୍ୱକର୍ମା ଯେ ଶୁଅଇ
ତୃତୀୟା ତିଥିରେ ଗିରିସୁତା ନିଦ୍ରାଯାଇ ।
ବିନାୟକ ଚତୁର୍ଥୀରେ କରନ୍ତି ଶୟନ
ପଞ୍ଚମ ତିଥିରେ ନିଦ୍ରା କରନ୍ତି ଶମନ ।
ଷଷ୍ଠୀ ତିଥିରେ ଯେ ସ୍କନ୍ଦ ଶୟନ କରନ୍ତି
ସପ୍ତମୀ ତିଥିରେ ସୂର୍ଯ୍ୟ ସୁଖେ ନିଦ୍ରାଯାନ୍ତି ।
ଅଷ୍ଟମୀରେ ନିଦ୍ରାଯାନ୍ତି ଦେବୀ କାତ୍ୟାୟନୀ
ନବମୀ ତିଥିରେ ନିଦ୍ରା ଯାନ୍ତି କମଳିନୀ ।
ପବନ ଆହାର କରି ଭୁଜଙ୍ଗ ଯେତେକ
ଦଶମୀରେ ନିଦ୍ରାଯାନ୍ତି ହେ ମୁନିତିଳକ ।
କୃଷ୍ଣପକ୍ଷ ତ୍ରୟୋଦଶୀ ତିଥିରେଟି ଜାଣ
ନିଶ୍ଚିନ୍ତରେ ନିଦ୍ରାଯାନ୍ତି ଯେତେ ସାଧ୍ୟଗଣ ।
ଦେବଙ୍କ ଶୟନ ତିଥି କହିଲି ବୁଝାଇ
ସେମାନେ ଶୟନ କଲେ ହେ ମୁନି ଗୋସାଇଁ ।
ବର୍ଷାକାଳ ଆସେ ମେଘେ ବରଷନ୍ତି ପାଣି
ଚଉବର୍ଗ ଆଚ୍ଛାଦନ୍ତି ଅନ୍ଧକାର ଜାଣି ।
ବଳାକା ସହିତ ମେଘ ଗିରି ଶିଖେ ରହେ
ବାୟସେ ବସା କରନ୍ତି ଜାଣ ସେ ସମୟେ ।
ସେ ଋତୁରେ ଗର୍ଭବତୀ ବୟସୀ ହୁଅଇ
ଅଳସରେ ବସାରେ ସେ ସୁଖେ ନିଦ୍ରାଯାଇ ।
ଯେ ତିଥିରେ ବିଶ୍ୱକର୍ମା କରନ୍ତି ଶୟନ
ତା ନାମ ଦ୍ୱିତୀୟା ତିଥି ଆହେ ତପୋଧନ ।
ସେହି ତିଥିଗୋଟି ଅତି ପବିତ୍ର ଅଟଇ
ପରମ ମଙ୍ଗଳ ମହାପୁଣ୍ୟକୁ ଦିଅଇ ।
ସେ ତିଥିରେ ପଲଙ୍କରେ ଲକ୍ଷ୍ମୀ ନାରାୟଣ
ଗନ୍ଧପୁଷ୍ପ ଆଦି ଦେଇ କରେ ଯେ ଅର୍ଚ୍ଚନ ।
ତାଙ୍କ ପ୍ରୀତି ଅର୍ଥେ ଦାନ କଲେ ଶଯ୍ୟାଫଳ
ଆବର ବିଷ୍ଣୁଙ୍କୁ ଦିଏ ଦିବ୍ୟ ପୁଷ୍ପମାଳ ।
ଆଗେ ଉଭା ହୋଇ ବୋଲେ ଆହେ ତ୍ରିବିକ୍ରମ
ଜଗତନିବାସ ଆହେ ପୁରୁଷ ଉତ୍ତମ ।

ହେ ଅନନ୍ତ ତୁମ୍ଭେ ଯେହ୍ନେ ଲକ୍ଷ୍ମୀଙ୍କି ନ ତେଜ
ତୁମ୍ଭ ପ୍ରସାଦରୁ ଶୂନ୍ୟ ନ ହେଉ ମୋ ଶେଯ ।
ଆହେ ଦେବ ସୁରେଶ୍ୱର ତୁମ୍ଭେ ଯେଉଁପରି
ସୁଖେ ନିଦ୍ରା ଯାଅ ଘେନି ସାଗରକୁମାରୀ ।
ସେହି ସତ୍ୟବଳେ ମୋର ଗୃହଧର୍ମ ରହୁ
ନଷ୍ଟ ନୋହୁ ଯେହ୍ନେ ଆହେ ବିଷ୍ଣୁ ମହାବାହୁ ।
ବାରମ୍ବାର ଏହିରୂପେ ତାହାଙ୍କୁ କହିବ
ସୁପ୍ରସନ୍ନ କରି ତାଙ୍କୁ ଭୋଜନକୁ ଯିବ ।
ତଇଳ ଲବଣକୁ ଯେ କରିବ ବର୍ଜନ
ଦିବସେ ନ ଖାଇ ରାତ୍ରେ କରିବ ଭୋଜନ ।
ଆରଦିନ ସାଧୁବିପ୍ରେ ଫଳ ଦାନକରି
ବୋଲିବ ମୋଠାରେ ପ୍ରୀତି ହୁଅନ୍ତୁ ଶ୍ରୀହରି ।
ବିଛାକୁ କି ଯାଗିଥାନ୍ତି ଯାବତ ତପନ
ଚାତୁର୍ମାସ୍ୟ ବ୍ରତବିଧି କରିବ ଏସନ ।
କହିଲୁଁ ଯେ ଦେବଙ୍କର ନିଦ୍ରା ମୁନିବର
କ୍ରମେ କ୍ରମେ ନିଦ୍ରାଭଙ୍ଗ ହୁଏ ତାହାଙ୍କର ।
ରବି ଯାଇଁ ତୁଳାରାଶି ମଧ୍ୟରେ ରହନ୍ତେ
ହରିଙ୍କର ନିଦ୍ରାଭଙ୍ଗ ହୁଅଇ ତଦନ୍ତେ ।
କାମଦେବ ନିଦ୍ରାତେଜି ସେକାଳେ ଉଠନ୍ତି
ଆହେ ମୁନିବର ସେହି ଦ୍ୱିତୀୟା ଯେ ତିଥି ।
ସେ ଦିନ ଯେ ଜନ ନିଜଶକ୍ତି ଅନୁସାରେ
ଶଯ୍ୟାସହ ଲକ୍ଷ୍ମୀଧର ମୂର୍ତ୍ତିଦାନ କରେ ।
ଇହଲୋକେ ରୋଗ ଶୋକ ଆଦି ତାର ନାହିଁ
ଏ ପ୍ରଥମ ବ୍ରତ ତୁମ୍ଭ ଆଗେ କହିଲଇଁ ।
ଭାଦ୍ର ମାସ କୃଷ୍ଣପକ୍ଷ ଅଷ୍ଟମୀ ଯେ ତିଥି
ସେ ଅତି ପବିତ୍ର ଦିନ ହେ ନାରଦଯତି ।
ମୃଗଶିରା ଋକ୍ଷ ଯୁକ୍ତ ହୋଇଲେ ସେଦିନ
କାଳାନଳ ବୋଲି ତାକୁ କହନ୍ତି ସୁଜନ ।
ଏ ତିଥିରେ ଦେବଦେବ ଶୂଳପାଣି ହର
ଶୋଇଥାନ୍ତି ସେ ସମସ୍ତ ଲିଙ୍ଗର ଭିତର ।
ଏ ସମୟେ ଶମ୍ଭୁ ଲିଙ୍ଗ ପୂଜେ ଯେଉଁ ଜନ
ତାହାର ଅକ୍ଷୟ ହୁଏ ସେ ପୂଜା ବିଧାନ ।
ଏ ଦିନେ ଗୋମୂତ୍ରେ ସ୍ନାନ କରନ୍ତି ଜ୍ଞାନୀଏ
ସ୍ନାନ କରି ତୋଳି ଆଣି ଦୁଦୁରା ଗୁଡ଼ିଏ ।
ଦେବଦେବ ଶଙ୍କରଙ୍କୁ ଶ୍ରଦ୍ଧାରେ ପୂଜନ୍ତି
କେ ସର ଧୂପ ନୈବେଦ୍ୟ ମଧୁ ଘୃତ ଦ୍ୟନ୍ତି ।
ବୋଲନ୍ତି ଦକ୍ଷିଣା ଦେଇ ଯୋଡ଼ି ବେନି ହସ୍ତ
ଆହେ ବିରୁପାକ୍ଷ ହୁଅ ମୋ ପୂଜାରେ ତୃପ୍ତ ।
ଏହା କହି ପୂଜା ଦ୍ରବ୍ୟ ବିପ୍ର ହସ୍ତେ ଦେଇ
ତା ସଙ୍ଗେ ହିରଣ୍ୟ ଦେଇ ଭକ୍ତିରେ କହଇ ।
ଆହେ ଦ୍ୱିଜବର ତୁମ୍ଭେ ତୋଷ ହୋଇ ଯାଅ
ସର୍ବଦା ମୋହର ଶୁଭ ବାଞ୍ଛା କରୁଥାଅ ।
ହେ ନାରଦ ଏହି ରୂପେ ଆଶ୍ୱିନ ମାସରେ
ଇନ୍ଦ୍ରିୟ ଦମନ କରି ରହି ଅନାହାରେ ।
ଗୋମୟ ଜଳରେ ସ୍ନାନ ନବମୀରେ କରି
ପଦ୍ମ ପୁଷ୍ପେ ପୂଜଇ ଯେ ତ୍ରିପୁର ଅଇରି ।
ସର୍ଜଧୂପ ନଇବେଦ୍ୟ ମଧୁ ଯେ ମୋଦକ
ଭକତିରେ ଅରପଣ କରଇ ଯେ ଲୋକ ।
ଅଷ୍ଟମୀରେ ଉପବାସ ନବମୀରେ ସ୍ନାନ
ବୋଲଇ ହେ ହିରଣ୍ୟାକ୍ଷ ହୁଅ ସୁପ୍ରସନ୍ନ ।
ସକଳ ଦକ୍ଷିଣା ଦେଇ ବିପ୍ରଙ୍କୁ ତୋଷଇ
କାର୍ତ୍ତିକ ମାସରେ ପୟସ୍ନାନ କରି ସେହି ।
କରବୀର ପୁଷ୍ପ ଦେଇ ପୂଜିବ ଶଙ୍କରେ
ଦେବଠାରୁ ଅଠା ଧୂପ ଦେଇ ଅଗ୍ରତରେ ।
ମଧୁ ପାୟସ ସହିତ ନଇବେଦ୍ୟ ଦେଇ
ବୋଲିବ ହେ ସ୍ଥାଣୁ ଅତି ସୁପ୍ରସନ୍ନ ହୋଇ ।
ଘେନନ୍ତୁ ମୋହର ପୂଜା ହେ ଦେବ ଶଙ୍କର
ଏହିରୂପେ କହିବ ଯେ ବଚନ ମଧୁର ।
ନୈବେଦ୍ୟ ସହିତେ ଦେବ ବିପ୍ରଙ୍କୁ ରଜତ
ମାର୍ଗଶିର ମାସ ପୂଜା ଶୁଣ ତପୋବନ୍ତ ।
ଅଷ୍ଟମୀରେ ଉପବାସ ନବମୀରେ ସ୍ନାନ
କରିଣ ଯେ କରେ ମହାଦେବଙ୍କୁ ଅର୍ଚ୍ଚନ ।
ସେ ଅଧିକ ଫଳ ପାଏ ମିଥ୍ୟା ନୁହେଁ ଏହା
କହୁଅଛି ମନ ଦେଇ ଶୁଣ ଏବେ ତାହା ।
ବେଲଅଠା ଧୂପ ଦେଇ ପୂଜିବ ଶଙ୍କରେ
ନଇବେଦ୍ୟ ଦେବ ମଧୁ ଓଦନ ଭକ୍ତିରେ ।
ଦକ୍ଷିଣା ସ୍ୱରୂପେ ରକ୍ତଶାଳୀ ଧାନ୍ୟ ଦେଇ
ବୋଲିବ ହେ ସ୍ଥାଣୁ ଭବ ଘେନ ତୃପ୍ତହୋଇ ।
ଏହାକହି ପୂଜା ଦ୍ରବ୍ୟ ଦେବ ବିପ୍ରକରେ
ପୁଷମାସ ପୂଜା ଶୁଣ ଏଥୁ ଅନନ୍ତରେ ।
ଘୃତ ସ୍ନାନ କରି ଆଣି ଟଗର କୁସୁମ
ତହିଁରେ ଯେ ଶିବ ପୂଜେ ସେ ଜନ ଉତ୍ତମ ।

ମଧୂକ ବୃକ୍ଷର ଅଠା ଧୂପ ଦେଇ ପୁଣି
ମଧୁ ସକ୍ତୁ ନଇବେଦ୍ୟ ଦେଇ ଏହା ଭଣି ।
ହେ ଜଗତଗୁରୁ ହୁଅ ମୋଠାରେ ପ୍ରସନ୍ନ
ଏ ମୁଦ୍ରା ଦକ୍ଷିଣା ରୂପେ କରୁଛି ପ୍ରଦାନ ।
ହେ ଦେବେଶ ତ୍ରିଲୋଚନ ନମସ୍ତେ ତୁମ୍ଭଙ୍କୁ
ଏହା କହି ବିପ୍ରେ ଦେବ ସେ ପୂଜା ଦ୍ରବ୍ୟଙ୍କୁ ।
ମାଘମାସେ କୁଶୋଦକେ ଯେହୁ କରି ସ୍ନାନ
କୁମୁଦ କୁସୁମେ କରେ ଶିବଙ୍କୁ ଅର୍ଚ୍ଚନ ।
କଦମ୍ବ ବୃକ୍ଷର ଅଠା ଧୂପ ଅଗ୍ରେ ଦେଇ
ତିଳୋଦାନ ନଇବେଦ୍ୟ ଅର୍ପଣ କରଇ ।
ସୁବର୍ଣ୍ଣ ଦକ୍ଷିଣା ଆଉ ଦିଏ ଦୁଧଭାତ
ପ୍ରାର୍ଥନା କରଇ ପୁଣି ଯୋଡ଼ି ଦୁଇହାତ ।
ବୋଲଇ ହେ ଉମାପତି ମହାଦେବ ହର
ସନ୍ତୋଷ ହୋଇଣ ପୂଜା ଘେନନ୍ତୁ ମୋହର ।
ଏହିରୂପେ ଛ'ମାସର ପୂଜାବିଧି କରି
ପାରଣାନ୍ତେ ତ୍ରିନେତ୍ରଙ୍କ ସ୍ନାନ କ୍ରିୟା ସାରି ।
ଗୋଚିନା ଅଗୁରୁ ଦେଇ ପୂଜିବ ଭକ୍ତିରେ
ବୋଲିବ ଦରିଦ୍ର ଏକ ମୁଁ ଏହି ସଂସାରେ ।
ମୋଠାରେ ପ୍ରସନ୍ନ ହୁଅ ପ୍ରଭୁ ତ୍ରିଲୋଚନ
ମୋହର ଯେ ରୋଗ ଶୋକ କର ବିମୋଚନ ।
ଏଥୁ ଅନନ୍ତରେ ଶୁଣ କଳି-ପ୍ରିୟ ମୁନି
ଫାଲ୍‌ଗୁନର ପୂଜାବିଧି କହୁଅଛି ପୁଣି ।
ଅଷ୍ଟମୀରେ ଉପବାସ କରିବ ଯେ ବ୍ରତୀ
ପରଦିନ ନିତ୍ୟକର୍ମ ସାରିଣ ଝଟତି ।
ପଞ୍ଚଗବ୍ୟେ ସ୍ନାନ କରି କୁନ୍ଦ କୁସୁମରେ
ଚନ୍ଦନର ଧୂପ ଦେଇ ପୂଜିବ ଶଙ୍କରେ ।
ସଘୃତ ନୈବେଦ୍ୟ ତାମ୍ରପାତ୍ରେ ଗୁଡ଼ୋଦନ
ଅର୍ପଣ କରିବ ବିପ୍ରେ କରିବ ତା ଦାନ ।
ବସ୍ତ୍ରଯୁଗ୍ମ ଦେଇ ରୁଦ୍ର ନାମକୁ ଉଚ୍ଚାରି
ସ୍ତୁତି ବାକ୍ୟେ ଶଙ୍କରଙ୍କୁ ସୁପ୍ରସନ୍ନ କରି ।
ଚୈତ୍ରମାସ ଉଦୁମ୍ବର ଜଳେ କରି ସ୍ନାନ
ମନ୍ଦାର କୁସୁମେ କରି ଶିବଙ୍କୁ ଅର୍ଚ୍ଚନ ।
ମାହିଗ ଗୁଗ୍‌ଗୁଳ ଦେବ ଘୃତଯୁକ୍ତ କରି
ସେ ଧୂପେ ସନ୍ତୋଷ କରି ଦେବ ତ୍ରିପୁରାରି ।
ମୋଦକ ସହିତ ଘୃତ କରିବ ଅର୍ପଣ
ଦକ୍ଷିଣା ରୂପରେ ଦେବ ମୃଗର ଅଜିନ ।
କହିବ ହେ ନାଗେଶ୍ୱର ତୁମ୍ଭଙ୍କୁ ନମସ୍ତେ
ପୂଜା ଦ୍ରବ୍ୟଯାକ ଦେବ ବ୍ରାହ୍ମଣର ହସ୍ତେ ।
ବୈଶାଖେ ସୁଗନ୍ଧପୁଷ୍ପ ଜଳେ କରି ସ୍ନାନ
ଚ୍ୟୁତ ମଞ୍ଜରୀରେ ପୂଜା କରି ତ୍ରିଲୋଚନ ।
ସର୍ଜ୍ଜଧୂପ ଘୃତ ଫଳ ନଇବେଦ୍ୟ ଦେବ
ଦକ୍ଷିଣା ରୂପରେ ଜଳକୁମ୍ଭ ସମର୍ପିବ ।
ଶିବ ନାମ ଜପି ପୂଜା ଦ୍ରବ୍ୟ ବିପ୍ରେ ଦେଇ
ଅନ୍ନ ବସ୍ତ୍ର ଦେଇ ତାଙ୍କୁ ସନ୍ତୋଷ କରାଇ ।
ଜ୍ୟେଷ୍ଠ ମାସେ ଅମଳକ ଜଳେ କରି ସ୍ନାନ
ଅର୍କ ପୁଷ୍ପେ ପୂଜାକରି ଦେବ ପଞ୍ଚାନନ ।
ଘୃତ ଦଧି ସକ୍ତୁଙ୍କୁ ଯେ ଏକାଠି ମିଶାଇ
ନଇବେଦ୍ୟ ଦେବ ଭକ୍ତିଭାବକୁ ଯେ ବହି ।
ଉପାନହ ଯୁଗଳ ଯେ ଛତ୍ର ଦାନ କରି
ବୋଲିବ ହେ ଭଗନେତ୍ରହନନ କାମାରି ।
ପୂଷାଦନ୍ତ ବିନାଶନ ହେ ଜଗତପତି
ସୁପ୍ରସନ୍ନ ହୁଅ ମୁହିଁ କରୁଛି ବିନତି ।
ଆଷାଢ଼େ କରିବ ନାରିକେଳ ଜଳେ ସ୍ନାନ
ଶ୍ୱେତ ଦୁଦୁରା ଫୁଲରେ କରିବି ଅର୍ଚ୍ଚନ ।
ଘୃତ ଧୂପ ସହିତରେ ନଇବେଦ୍ୟ ଦେବ
ଦକ୍ଷିଣା ସ୍ୱରୂପେ ଦେବ ଘୃତଯୁକ୍ତ ଯବ ।
ଉଚ୍ଚସ୍ୱରେ ବୋଲିବ ହେ ଦକ୍ଷଯଜ୍ଞ ନାଶି
ତୁମ୍ଭଙ୍କୁ ନମସ୍ତେ ଆହେ ଦେବ କାଶୀବାସୀ ।
ଶ୍ରାବଣରେ ଭୃଙ୍ଗରାଜ ଜଳେ କରି ସ୍ନାନ
ବିଲ୍ୱଦଳ ବିଲ୍ୱଫଳେ ପୂଜି ତ୍ରିଲୋଚନ ।
ଅଗୁରୁ ଧୂପ ଯେ ଦେଇ ସନ୍ତୋଷ ମନରେ
ନିବେଦିବ ଘୃତ ଦଧି ମୋଦକ ଭକ୍ତିରେ ।
ଦଧି ଅନ୍ନ ତିଳକାଉ ମାଷ ଧାନ୍ୟ ନେଇ
ପଦ୍ମପତ୍ରେ ଶ୍ରଦ୍ଧାଚିତ୍ତେ ଅଗ୍ରେ ଦେବ ଥୋଇ ।
ଦକ୍ଷିଣା ସ୍ୱରୂପେ ଦେବ କପିଳା ଧେନୁଏ
ଆବର ତା ସଙ୍ଗେ ଶ୍ୱେତ ବୃଷଭ ଗୋଟିଏ ।
ବିପ୍ରଙ୍କୁ କନକ ରକ୍ତବସ୍ତ୍ର ଦାନ କରି
ଜପିବ ଶମ୍ଭୁର ଗଦାଧର ନାମ ଧରି ।
ଏ ବିଧିରେ ପୂଜା ସାରି ପାରଣା କରିବ
ବୃଷଭଧ୍ୱଜଙ୍କୁ ଭକ୍ତିଭାବରେ ତୋଷିବ ।
ବାର ମାସର ଯେ ପୂଜା ସଦାଶିବଙ୍କର
କହିଲୁଁ ଯେ ତୁମ୍ଭ ଆଗେ ଆହେ ମୁନିବର ।

ସନ୍ତୋଷ ହୋଇଣ ବର ଦିଅନ୍ତି ମହେଶ
ଅକ୍ଷୟ ସ୍ୱର୍ଗରେ ଯାଇଁ କରଇ ସେ ବାସ ।
ହେ ନାରଦ ନିଜେ ରୁଦ୍ର ବ୍ରତର ବିଧାନ
ଏହିରୂପେ କରିଛନ୍ତି ପୂର୍ବେ ଯେ କୀର୍ତ୍ତନ ।
ବିଫଳ ନୁହଇ କେଭେ ଏ ବ୍ରତ ମୋହର
ଯେ କରିବ ମନୋବାଞ୍ଛା ସିଦ୍ଧ ହେବ ତାର ।
କାଳାଷ୍ଟମୀ ବ୍ରତବିଧି ବାମନ ପୁରାଣେ
ଯେ ପଢ଼ଇ ଯେ କରଇ ଯେହୁ ଅବା ଶୁଣେ ।
ଧନ ପୁତ୍ର ବଢ଼େ ତାର କୁବେର ସମାନ
ଦୀନ ଗୋପୀନାଥକୁ ଯେ ରଖ ପଞ୍ଚାନନ ।

=+=

## ମହିଷାସୁର ଜନ୍ମ

ପୁଲସ୍ତ୍ୟ କହିଲେ ମୁନି ଆଶ୍ୱିନ ମାସରେ
ବ୍ରହ୍ମାର ନାଭିରୁ ଜାତ ପଦ୍ମ ଯେ କାଳରେ ।
ସେକାଳେ ଉପୁଜିଥିଲା ଦେବଙ୍କ ଉଦ୍ୟାନ
କନ୍ଦର୍ପର କର ଅଗ୍ର କଦମ୍ବ ଉତ୍ପନ୍ନ ।
ସେହେତୁ କଦମ୍ବ ପୁଷ୍ପେ ତାର ବଡ଼ ପ୍ରୀତି
ଏଥୁ ଅନନ୍ତରେ ଶୁଣ ହେ ନାରଦ ଯତି ।
ମଣିଭଦ୍ର ଅଟଇ ଯେ ଯକ୍ଷଙ୍କ ଈଶ୍ୱର
ବଟବୃକ୍ଷ ଜାତହେଲା କରାଗ୍ରୁଁ ତାହାର ।
ତେଣୁ ବଟବୃକ୍ଷେ ତାର ବିଶେଷ ପୀରତି
ଦୁଦୁରା ଗଛ ଯେ ଶିବ ହୃଦୁ ଉତପତ୍ତି ।
ଦୁଦୁରା ଫୁଲରେ ତେଣୁ ଶିବଙ୍କର ସ୍ନେହ
ବ୍ରହ୍ମାଙ୍କର ମଝାରୁ ଯେ ଖଦିର ଉଦୟ ।
ବିଶ୍ୱକର୍ମା ଦେହରୁ ଯେ କଣ୍ଟକୀ ସମ୍ଭୁତ
ଗିରିସୁତା କରତଳୁ କୁନ୍ଦଲତା ଜାତ ।
ଗଜାନନ କୁମ୍ଭସ୍ଥଳୁଁ ସିନ୍ଧୁବାର ତରୁ
ପଳାଶ ଉତ୍ପନ୍ନ ଯମ ଦକ୍ଷିଣ ପାର୍ଶ୍ୱରୁ ।
ଦକ୍ଷିଣ ଉତ୍ତର ପାରୁଶରୁ ଯମଙ୍କର
ପୁନରପି ଜାତହେଲା କୃଷ୍ଣ ଉଦୁମ୍ବର ।
ଅବିନାଶୀ ଭୟଙ୍କର ସେ ବୃକ୍ଷ ଅଟଇ
ସ୍କନ୍ଦ ହସ୍ତୁ ବନ୍ଧୁଜୀବ ବୃକ୍ଷ ଜାତ ହୋଇ ।
ରବିର ହସ୍ତରୁ ଜାଣ ଅଶ୍ୱତ୍ଥ ଜନମି
କାତ୍ୟାୟନୀ ହସ୍ତରୁ ଯେ ଜାତ ହେଲା ଶମି ।
ଲକ୍ଷ୍ମୀଙ୍କ ହସ୍ତରୁ ହେଲା ବିଲ୍ୱବୃକ୍ଷ ଜାତ
ନାଗରାଜାଠାରୁ ଶରସ୍ତମ୍ଭ ଯେ ସମ୍ଭୂତ ।
ବାସୁକୀ ପୁଚ୍ଛରୁ ଆଉ ପୃଷ୍ଠରୁ ତାହାର
କୃଷ୍ଣ ଶୁକ୍ଳଦୁର୍ବା ଜାତହେଲା ମୁନିବର ।
ସାଧ୍ୟଗଣ ହୃଦୁଁ ଜାତ ହରିତ ଚନ୍ଦନ
ଏରୂପେ ସକଳ ଦ୍ରବ୍ୟ ହେଲା ଉତପନ୍ନ ।
ଯାହାଠାରୁ ଯେଉଁ ଦ୍ରବ୍ୟ ହେଲା ଉତ୍‌ପତ୍ତି
ସେହି ଦେବତାଙ୍କର ଯେ ସେ ଦ୍ରବ୍ୟରେ ପ୍ରୀତି ।
ସେହି କାଳେ ହେଲା ଶୁକ୍ଳ ଏକାଦଶୀ ଜାତ
ସେ ଦିନ ବିଷ୍ଣୁଙ୍କୁ ପୂଜେ ଯେହୁ ତପୋବନ୍ତ ।
ଅତିଶୟ ତେଜୋବନ୍ତ ହୁଅଇ ସେ ଜାଣ
ଅକ୍ଷୟ ଯଶକୁ ଲାଭ କରଇ ସେ ପୁଣ ।
ହେ ମୁନି ଶରଦ ଋତୁ ଆଗମନ କାଳେ
ସୁଗନ୍ଧ ଉତ୍ତମ ବର୍ଣ୍ଣ ରସଯୁକ୍ତ ଫଳେ ।
ପୂଜାକରି ପତ୍ର ପୁଷ୍ପ ଔଷଧି ଦିଅଇ
ଘୃତ ତିଳ ବ୍ରୀହି ଯବ ହିରଣ୍ୟେ ପୂଜଇ ।
କନକାଦି ମଣି ମୁକ୍ତା ପ୍ରବାଳ ବସନ
ଭକ୍ତିରେ ଦେଇଣ କରେ ବିଷ୍ଣୁଙ୍କ ଅର୍ଚ୍ଚନ ।
ସ୍ୱାଦୁ କଟୁ କଷା ପିତା ଲୁଣ ଅମ୍ଳରସେ
ପୂଜଇ ବିଷ୍ଣୁଙ୍କୁ ଯେହୁ ମନର ହରଷେ ।
ବିଷ୍ଣୁ ପ୍ରୀତିଅର୍ଥେ କରେ ଏ ସମସ୍ତ ଦାନ
ଖଣ୍ଡନ ନ ହୁଏ ତାର ସମ୍ୱତ୍ସର ଜାଣ ।
ହେ ନାଦର ଉପବାସେ ସେ ଦିନ ରହିବ
ପରଦିନ ବିଷ୍ଣୁଙ୍କୁ ଯେ ସ୍ନାନ କରାଇବ ।
ସୋରିଷ ତଇଳ ତାଙ୍କ ଅଙ୍ଗେ ଦେବ ବୋଲି
ଘୃତ ସ୍ନାନ କରାଇବ ପ୍ରଭୁ ବନମାଳୀ ।
ହୋମ ଦାନ କରିବ ଯେ ଶକ୍ତି ଅନୁସାରେ
ପାଦରୁ ଆରମ୍ଭ ପୂଜା କରିବ ଭକ୍ତିରେ ।
କୁସୁମରେ କେଶବଙ୍କୁ କରିବ ମଣ୍ଡିତ
ନାନାବିଧ ଧୂପ ଦେଇ କରିବ ଧୂପିତ ।
ହିରଣ୍ୟ ରତ୍ନରେ ଅଙ୍ଗ କରିବ ଭୂଷଣ
ବସନ ପିନ୍ଧାଇ ଦେଇ କରିବ ଅର୍ଚ୍ଚନ ।
ନିବେଦନ କରିବ ଯେ ହବିଷାନ୍ନ ଦେଇ
ହେ ନାରଦ ଜନାର୍ଦ୍ଦନ ପୂଜା ଜାଣ ଏହି ।
ପୂଜା ଅନ୍ତେ କହିବ ହେ ପ୍ରଭୁ ଜନାର୍ଦ୍ଦନ
ଜଗଦ୍‌ଗୁରୁ ପଦ୍ମନାଭ ମୋର ପୂଜା ଘେନ ।

ଆହେ ପଦ୍ମାଧବ ତୁମ୍ଭେ ଅଟ ମହାଦ୍ୟୁତି
ତୁମ୍ଭର ଚରଣ ତଳେ କରୁଛି ପ୍ରଣତି ।
ହେ କେଶବ ବିକଶିତ ପଲାଶ ଲୋଚନ
ତୁମ୍ଭର ସ୍ୱରୂପ ନୋହେ କଦାପି ଖଣ୍ଡନ ।
ମୋର ଧର୍ମ ଅଖଣ୍ଡନ ହେଉ ସତ୍ୟବଳେ
ଏହିରୂପେ ସମ୍ବତ୍ସର ପୂର୍ଣ୍ଣ ହୋଇଗଲେ ।
ଇନ୍ଦ୍ରିୟ ଦମନ କରି ହେବ ଉପବାସୀ
ପାରଣାର ବିଧି ଏବେ ଶୁଣ ମହାଋଷି ।
ଯେ ଦ୍ରବ୍ୟରେ ପୂଜିଥିବ ବିଷ୍ଣୁଙ୍କୁ ସନ୍ତୋଷେ
ପାରଣା କରିବ ସେହି ଦ୍ରବ୍ୟେ ବ୍ରତଶେଷେ ।
ଏ ବିଧିରେ ପୂଜାକଲେ ସମସ୍ତ ଦେବତା
ସନ୍ତୋଷ ହୁଅନ୍ତି ଏହି କଥା ନୋହେ ମିଥ୍ୟା ।
ଧର୍ମ ଅର୍ଥ କାମ ମୋକ୍ଷ ହୁଅଇ ଅକ୍ଷୟ
କହିଲୁଁ ତୁମ୍ଭଙ୍କୁ ବ୍ରତବିଧି କଳିପ୍ରିୟ ।
ପରମ ପବିତ୍ର ଯେହୁ ବୈଷ୍ଣବ ପଞ୍ଜର ।
ତାହା କହୁଅଛୁଁ ଶୁଣ ଆହେ ମୁନିବର ।
ନମସ୍ତେ ଦେବ ଦେବେଶ ସୁଦର୍ଶନ ଧାରୀ
ରକ୍ଷାକର ତୁମ୍ଭେ ପୂର୍ବ ଦିଗକୁ ମୋହରି ।
ହେ ବିଷ୍ଣୁ ମୁଁ ତୁମ୍ଭ ପାଦେ ପଶିଲି ଶରଣ
କୌମୋଦକୀ ଗଦାକୁ ଯେ କରନ୍ତୁ ଗ୍ରହଣ ।
ଆହେ ପ୍ରଭୁ ପଦ୍ମନାଭ ହେ ଅମିତଦ୍ୟୁତି
ଦକ୍ଷିଣ ଦିଗକୁ ମୋର ରଖ ହେ ସଂପ୍ରତି ।
ହେ ବିଷ୍ଣୁ ପୁରୁଷୋତ୍ତମ ଶରଣ ତୋହରି
ଗଦାର ସହିତ ହସ୍ତେ ପଦ୍ମକୁ ଯେ ଧରି ।
ପଶ୍ଚିମ ଦିଗକୁ ମୋର ରକ୍ଷାକର ଆସି
ହେ ବିଷ୍ଣୁ ପୁଣ୍ଡରୀକାକ୍ଷ ଶରଣ ଘେନସି ।
ଉତ୍ତରଦିଗକୁ ରଖ ସୁତୀକ୍ଷ୍ଣ ମୂଷଳେ
ଜଗନ୍ନାଥ ଶରଣ ମୁଁ ତବ ପାଦତଳେ ।
ନାରାୟଣ ଅସ୍ତ୍ର ଯୋଚି ଶାରଙ୍ଗ ଧନୁରେ
ଈଶାନ କୋଣକୁ ମୋର ରଖ ଆହେ ହରେ ।
ହେ ରକ୍ଷୋଘ୍ନ ତୁମ୍ଭଙ୍କୁ ମୁଁ କରେ ନମସ୍କାର
ଶରଣ ପଶୁଛି ମୁହିଁ ତୁମ୍ଭରି ପୟର ।
ପାଞ୍ଚଜନ୍ୟ ମହାଶଙ୍ଖେ ପଦ ଦେଇ ଯୋଖି
ଯଜ୍ଞ ସୁକର ହେ ବିଷ୍ଣୁ ତାହା ହସ୍ତେ ରଖି ।
ମୋର ଅଗ୍ନି କୋଣ ରକ୍ଷା କରନ୍ତୁ ତହିଁରେ
ହେ ନରକେଶର ଖଡ୍‌ଗ ଚର୍ମ ଧରି କରେ ।
ଶତସୂର୍ଯ୍ୟ ସମପ୍ରଭା କବଚ ଯେ ତୋର
ହେ ଦିବ୍ୟମୂରତି ତୁହି ତାହା ହସ୍ତେ ଧର ।
ନଇରତ କୋଣ ମୋର ରକ୍ଷା କର ତେଣେ
ହେ ଦେବ ଶରଣ ମୁହିଁ ତୋହର ଚରଣେ ।
କଣ୍ଠର ଭୂଷଣ ତୋର ଶ୍ରୀବତ୍ସକୁ ଧର
ତା ସଙ୍ଗତେ ବୈଜୟନ୍ତୀ ମାଳାକୁ ଆବର ।
ବାୟବ୍ୟ କୋଣକୁ ମୋର ରଖନ୍ତୁ ତହିଁରେ
ଆହେ ଅଶ୍ୱ ଶୀର୍ଷ ମୁହିଁ ନମସ୍କାର କରେ ।
ଗରୁଡ଼ ପୃଷ୍ଠରେ ବସି ଆହେ ଜନାର୍ଦ୍ଦନ
ମୋର ଅନ୍ତରୀକ୍ଷ ରକ୍ଷାକର ପ୍ରତିଦିନ ।
ନମସ୍ତେ ଅପରାଜିତ ଅଜିତ ଭୋ ଦେବ
ଶରଣ ମୁଁ ତୁମ୍ଭ ପାଦପଦ୍ମେ ହେ କେଶବ ।
ବିଶାଳ ଅକ୍ଷରେ ବସି ରଖ ରସାତଳ
ନମସ୍ତେ ହେ ଅକୂପାର ଶରଣ ବତ୍ସଳ ।
ନମସ୍ତେ ହେ ମହାମୀନ ଅଷ୍ଟବାହୁ ତୋର
ପଞ୍ଜର ଆକାର ତାକୁ କରିଣ ସତ୍ୱର ।
ରଖନ୍ତୁ ମୋ କରଶିର ପଦାତି ସମସ୍ତ
ନମସ୍ତେ ପୁରୁଷୋତ୍ତମ ଦେବ ଚକ୍ରହସ୍ତ ।
କାତ୍ୟାୟନୀ ଆଗେ ପୂର୍ବେ ଏ ବିଷ୍ଣୁ ପଞ୍ଜର
ରକ୍ଷାର ନିମିତ୍ତ କହିଥିଲେ ଗଙ୍ଗାଧର ।
ଏମନ୍ତ ପ୍ରସାଦେ ସେହି ଦେବୀ କାତ୍ୟାୟନୀ
ମହିଷ ଅସୁର ବଧ କଲେ ଆହେ ମୁନି ।
ରକ୍ତବୀଜ ନମର ଯେ ଅସୁର ନିକର
ଏମନ୍ତ ପ୍ରସାଦେ କଲେ ସେ ଦେବୀ ସଂହାର ।
ଏହା ଶୁଣି ବୋଇଲେକ ସେ ନାରଦ ମୁନି
ମହିଷ ଅସୁର କିଏ କିଏ କାତ୍ୟାୟନୀ ।
କିଏ ରକ୍ତବୀର୍ଯ୍ୟ ଆଦି ଅସୁର ନିକର
ନମର ଅସୁର କିଏ କହ ମୋ ଆଗର ।
ସେ ମହିଷାସୁର ଅଟେ କାହାର ଆତ୍ମଜ
କାହାର ବୀର୍ଯ୍ୟରୁ ଜାତ ସେହି ରକ୍ତବୀର୍ଯ୍ୟ ।
କାହାର କୁମର ଅଟେ ନମର ଅସୁର
ସମସ୍ତ ବିସ୍ତାର କରି କହ ମୁନିବର ।
ପୁଲସ୍ତ୍ୟ କହିଲେ ଶୁଣ ହେ ନାରଦ ଯତି
ଏ ପାପ ନାଶିନୀ କଥା କହୁଛି ସଂପ୍ରତି ।
ଯେ ଦୁର୍ଗା ସେ କାତ୍ୟାୟନୀ ସର୍ବଦା ବରଦା
ସେହି ଭଦ୍ରକାଳୀ ଚଣ୍ଡୀ ଶିବା ଯେ ଶାରଦା ।

ପୂର୍ବେ ବେନି ଦୈତ୍ୟଥିଲେ ରମ୍ଭ ଯେ କରମ୍ଭ
ମହାବଳବନ୍ତ ସେହି ଦୁଇ ଯେ ଦାନବ ।
ଦୁହିଁଙ୍କ ପ୍ରକୃତି ଘୋର ଦୁହେଁ ଭୟଙ୍କର
ଦୁହେଁ ପୁଣି ଅପୁତ୍ରିକ ଜାଣ ମୁନିବର ।
ସେଥିପାଇଁ ନିତ୍ୟ ଯାଇଁ ସେହି ଦୁଇଭାଇ
ପଞ୍ଚାନନ ଜଳେ ସ୍ନାନ କରି ଶୁଦ୍ଧହୋଇ ।
ବହୁତ ବରଷ ହେଲେ ତପସ୍ୟାରେ ରତ
ଜଣେ ଜଳମଧ୍ୟେ ଥାଇଁ ତପ କରେ ନିତ୍ୟ ।
ଆରଭାଇ ତପକରେ ପଞ୍ଚାଗ୍ନି ସ୍ଥାପିଣ
ମାଳବଟଯକ୍ଷଠାରେ ଦୁହିଁଙ୍କର ମନ ।
ଗ୍ରାହମୂର୍ତ୍ତି ଧରି ଦେବରାଜ ପୁରନ୍ଦର
ରହିଲେ ସେ ଆସି ପଞ୍ଚନଦର ଭିତର ।
କରମ୍ଭ ରାକ୍ଷସ ପାଦଦୁଇକି ଧଇଲେ
ଗଭୀର ଜଳକୁ ନେଇ ମାରି ପକାଇଲେ ।
ଭାଇର ମରଣ ଦେଖି ମହାବଳ ରମ୍ଭ
କ୍ରୋଧଭରେ କଲା ଘୋର ତପ ସେ ଆରମ୍ଭ ।
ଅତି ତୀକ୍ଷ୍ଣ ଖଡ଼ଗେକ ଧଇଲା ହସ୍ତରେ
ସେହି ଖଡ଼୍ଗ ସୂର୍ଯ୍ୟଙ୍କୁ ଯେ ନିନ୍ଦଇ ତେଜରେ ।
ଅଗ୍ନିରେ ଆହୁତି ଦେବାପାଇଁ ନିଜ ଶିର
ଖଡ଼ଗ ଲଗାନ୍ତେ ନେଇ ବେକର ଉପର ।
ଦେବ ଅଗ୍ନି ଦେବତା ଯେ ମୂର୍ତ୍ତିମନ୍ତ ହୋଇ
ବୋଇଲେ ଖଡ଼୍ଗେ ଶିର କାଟୁଛୁ କିପାଇଁ ।
ଆତ୍ମହତ୍ୟାଠାରୁ ପାପ ନାହିଁ ଜଗତରେ
ତାହା କିମ୍ପା କରିବାକୁ ବିଚାରୁ ମନରେ ।
ପ୍ରାଣୀହତ୍ୟାଠରୁ ଏହି ପାପ ଯେ ଦୁସ୍ତର
ହେ ବୀର ପ୍ରସନ୍ନ ହେଲି ମାଗି ଘେନ ବର ।
ଯାହା ତୁ ମାଗିବୁ ଦେବି ଏ ମୋହର ସତ୍ୟ
ନିଜଶିର ନ କାଟିଣ ବୋଇଲା ଦଇତ୍ୟ ।
ଯେବେ ବର ଦେବ ମୋତେ ଆହେ ହୁତାଶନ
ଯାହା ମୁଁ ମାଗିବି ତାହା ନୋହିବ ଯେ ଆନ ।
ତୁମ୍ଭଠାରୁ ତେଜୋବନ୍ତ ହେବ ମୋର ସୁତ
ବୀରଙ୍କ ମଧ୍ୟରେ ହେବ ମହାବଳବନ୍ତ ।
ଜିଣି ନ ପାରିବେ ତାକୁ ତିନିପୁରେ କେହି
ପୁରୁଷ ନାମକୁ ଯେତେ ଜୀବଥିବେ ବହି ।
ସୁରାସୁର ନାଗ ନର ଯକ୍ଷ ବିଦ୍ୟାଧର
ଭୂତ ପ୍ରେତ ଆଦି ଯେତେ ଜୀବ ନିଶାଚର ।
ବ୍ରହ୍ମା ବିଷ୍ଣୁ ରୁଦ୍ର ଆଦି ଯୁଦ୍ଧେ ଯିବେ ମରି
ପଶୁପକ୍ଷୀ ଆଦି କେହି ନ ପାରିବେ ମାରି ।
ଅଗ୍ନିରେ ନ ପୋଡ଼ିବ ସେ ଜଳେ ନ ବୁଡ଼ିବ
କାଳକୂଟ ବିଷଖାଇ ପ୍ରାଣ ନ ତେଜିବ ।
ବାୟୁପ୍ରାୟ କାମରୂପୀ ହୋଇବ ନନ୍ଦନ
ଯୁଦ୍ଧରେ ତାହାକୁ ହାରିଯିବ ସେ ଶମନ ।
ବିଷ୍ଣୁଚକ୍ର ବକ୍ର ହେବ ତା ଦେହରେ ବାଜି
ତାର ଅଙ୍ଗେ ଅସ୍ତ୍ର ଶସ୍ତ୍ର ପଡ଼ି ଯିବ ଭାଜି ।
ଏହି ବର ମୋତେ ଦିଅ ଆହେ ହୁତାଶନ
ହେଉ ହେଉ କହି ଅଗ୍ନି କହିଲେ ଏସନ ।
ଯେଉଁ ସ୍ତିରୀ ସଙ୍ଗେ ତୁହି କରିବୁ ପୀରତି
ସୁରାସୁର ନାଗ ନର ପଶୁପକ୍ଷୀ ଜାତି ।
ସଙ୍ଗମ କଲେ ଯେ ପୁତ୍ର ହୋଇବ ତୋହର
ଏହିରୂପେ କହି ଅଗ୍ନି ହୋଇଲେ ଅନ୍ତର ।
ମହାବୀର ରମ୍ଭ ତହୁଁ ଗଲା ଆନନ୍ଦରେ
ଯକ୍ଷମାନେ ଆସି ତାକୁ ଭେଟିଲେ ବାଟରେ ।
ତାହାଙ୍କ ସହିତ ଦୈତ୍ୟ ଗଲା ତହୁଁ ବେଗେ
ପ୍ରବେଶ ହୋଇଲା ମାଳବଟ ଯକ୍ଷ ଆଗେ ।
ଦେଖିଲା ସେ ପଦ୍ମନିଧି ବସିଅଛି ତହିଁ
ତାହାର ଯେ ମନଅଛି ଅନ୍ୟ ଆଡ଼େ ରହି ।
ଆବର ଦେଖିଲା ଅଶ୍ୱ ମହିଷ ଯେ ଗଜ
ଗୋରୁ ଅଜ ମେଷ ଦେଖି ସେ ଦାନବରାଜ ।
ତା ମଧ୍ୟରୁ ଯାହାକୁ ସେ ପ୍ରେମରେ ଅନାଇ
ସେ ତାହାକୁ ନ ଚାହିଁ ଯେ ଯାଏ ଆଡ଼ହୋଇ ।
ମଇଁଷି କେବଳ ତାକୁ ଅନାଇ ରହିଲା
କାମଶରେ ତାର ମନ ବିଭ୍ରମ ହୋଇଲା ।
ମହିଷିକି କାମାତୁର ଦେଖି ନିଶାଚର
ମନେ ବିଚାରିଲା ନାରୀହେଲା ଏ ମୋହର ।
ବିଧାତା ଯେ ଭିଆଇଛି କେ କରିବ ଆନ
ଏହାର ଗର୍ଭରେ ଜାତ କରିବି ନନ୍ଦନ ।
ଏହିରୂପେ ମନରେ ଯେ ଅସୁର ବିଚାରି
ମାଳବଟ ଯକ୍ଷପାଦେ ନମସ୍କାର କରି ।
ମଇଁଷିକି ଡ଼ାକିଲା ସେ ପାଖକୁ ଅଇଲା
ରମ୍ଭ ଯେ ତାହାକୁ ଘେନି ବନେ ବିହରିଲା ।
କିଛିଦିନେ ସେ ମହିଷୀ ହେଲା ଗର୍ଭବତୀ
ତାହାକୁ ସଙ୍ଗରେ ଘେନି ସେ ଦାନବପତି ।

ପାତାଳ ପୁରକୁ ଗଲା ଯହିଁ ତାର ଘର
ତାର ବନ୍ଧୁ ବାନ୍ଧବେ ଯେ କଲେ ମାର ମାର ।
ବୋଇଲେ ତୁ ରାଜା ହୋଇ କୁକର୍ମ ଯେକଲୁ
ମଇଁଷୀ ହରିଲୁ ମହାପାତକୀ ହୋଇଲୁ ।
କେମନ୍ତେ ଚାହିଁବୁ ଆମ୍ଭେ ତୋହର ବଦନ
ଭାରିଯାକୁ ସଙ୍ଗେ ଘେନି ରହ ଯାଇ ବନ ।
ଏମନ୍ତେ ଭର୍ତ୍ସନା କରି କହିଲେ ବହୁତ
ସହି ନ ପାରିଲା ସେହି ପ୍ରତାପୀ ଦଇତ ।
ଗୃହଛାଡ଼ି ମାଳବଙ୍କ ନିକଟେ ରହିଲା
ମହିଷୀ ସ୍ୱାମୀର ସଙ୍ଗେ ଗୋଡ଼ାଇ ଅଇଲା ।
ଦେଖି ଯକ୍ଷମାନେ ତାକୁ କଲେ ଗଉରବ
ନିଶ୍ଚିନ୍ତେ ରହିଲା ତହିଁ ସେ ରମ୍ଭ ଦାନବ ।
ମହିଷୀ ପ୍ରସବ କଲା ଦଶମାସ ଅନ୍ତେ
ପୁତ୍ରକୁ ଦେଖିଣ ରମ୍ଭ ଦୈତ୍ୟ ତୋଷଚିତ୍ତେ ।
ବେଦବିଧି ଅନୁସାରେ ବିପ୍ରେ ଦେଲା ଦାନ
ଏଥୁଅନନ୍ତରେ ଶୁଣ ଆହେ ତପୋଧନ ।
ଶୁଣି ଯକ୍ଷମାନେ ବେଗେ ଅଇଲେକ ଧାଇଁ
ଦେଖିଲେ ଦାନବପୁତ୍ର ତଳେ ଅଛି ଶୋଇ ।
ବର୍ଣ୍ଣ ତାର ଶୁଭ୍ର ସେହି ମହିଷ ଆକାର
ଭୟକଲେ ଯକ୍ଷଗଣ ଦେଖି ରୂପ ତାର ।
ତା ଗର୍ଜନଘାତେ ମେଘ ପଡ଼ିବ କି ଭାଙ୍ଗି
ଡରେ ପଳାଇଲେ ଗୋରୁ ମେଷ ଛାଗ ଛାଗୀ ।
ମେରୁ ଟଳି ପଡ଼ିବ କି ମହୀ ଯିବ ଲସି
ସିନ୍ଧୁ ଜଳେ ପଡ଼ିବ କି ସ୍ୱର୍ଗପୁର ଖସି ।
ସେ ପୁତ୍ରକୁ ପାଳଇ ସେ ମହିଷୀ ଯତନେ
ଶୁକ୍ଳପକ୍ଷ ଶିଶୁପ୍ରାୟ ବଢ଼େ ଦିନୁ ଦିନେ ।
ହେ ନାରଦ ଏହିରୂପେ କେତେଦିନ ଗଲା
ପୁନରପି ସେ ମହିଷୀ ଋତୁମତୀ ହେଲା ।
ବନେ ଚରୁଥିଲା ସେହି ରମ୍ଭର ଘରଣୀ
ଭେଟିଲା ତାହାକୁ ଏକ ମହିଷ ଯେ ପୁଣି ।
କାମାତୁରା ଦେଖି ତାକୁ ସେହି ଗୋଡ଼ାଇଲା
ଦାନବ ଘରଣୀ ତାକୁ ଦେଖି ପଳାଇଲା ।
ଆପଣାର ସ୍ୱାମୀ ପାଦେ ପଶିଲା ଶରଣ
ତାର ପତିବ୍ରତାଧର୍ମ ଦେଖି ଦୈତ୍ୟରାଣ ।
ଧାଇଁଲା ଖଡ଼୍ଗ ଧରି କୋପମନା ହୋଇ
ଦେଖି ସେ ମହିଷ କ୍ରୋଧେ ଅଇଲାକ ଧାଇଁ ।
ତୀକ୍ଷ୍ଣ ଶିଙ୍ଗ ମାରି ଦୈତ୍ୟ ବୁକୁ ବିଦାରିଲା
ଗର୍ଜନ କରିଣ ରମ୍ଭ ଭୂମିରେ ପଡ଼ିଲା ।
ସ୍ୱାମୀର ମରଣ ଦେଖି ସେ ମହିଷୀ ଡ଼ରେ
ଶରଣ ପଶିଲା ଯାଇଁ ଯକ୍ଷଙ୍କ ପୟରେ ।
ଯକ୍ଷଗଣ ମିଳି ସେହି ମହିଷୀ ନିବାରି
ରଖିଲେ ସେ ମହି କି ଅତି ଯତ୍ନ କରି ।
କାମାତୁର ହୋଇ ତହୁଁ ସେ ମହିଷୀ ଗଲା
ଦିବ୍ୟ ଏକ ସରୋବର ଜଳରେ ପଡ଼ିଲା ।
ଘାଣ୍ଟି ପକାଇଲା ସେହି ପୋଖରୀର ଜଳ
ତା ମଧ୍ୟରେ ଥିଲା ଏକ ଦୈତ୍ୟ ମହାବଳ ।
ତାର ନାମ ନମର ସେ ମଲା ସେଥି ସଙ୍ଗେ
ମର୍ଦ୍ଦି ହୋଇ ସେ ମହିଷ ଖୁରାଅଗ୍ରଭାଗେ ।
ରମ୍ଭନନ୍ଦନକୁ ଯକ୍ଷଗଣେ ରକ୍ଷା କଲେ
ମଇଁଷୀ ଅସୁର ବୋଲି ତାର ନାମ ଦେଲେ ।
ରମ୍ଭର ଶବକୁ କଲେ ଅନଳେ ଦହନ
ସେ ମଇଁଷି ଗୋଟି ତାହା କରି ଦରଶନ ।
ପତି ସଙ୍ଗେ ଅଗ୍ନି ମଧ୍ୟେ ପଡ଼ିଲେକ ଡ଼େଇଁ
ପ୍ରଚଣ୍ଡ ଅନଳ ଜଳେ ଦାଉ ଦାଉ ହୋଇ ।
ସେ ଅନଳ ମଧ୍ୟୁ ହେଲା ପୁରୁଷେକ ଜାତ
ଭୟଙ୍କର ରୂପ ଅଗ୍ନି ତୁଲ୍ୟ ତେଜୋବନ୍ତ ।
ହସ୍ତରେ ତାହାର ଖଡ଼୍ଗ ସୂର୍ଯ୍ୟ ତେଜନିନ୍ଦେ
ଭୟେ ପଳାଇଲେ ତାକୁ ଦେଖି ଯକ୍ଷ ବୃନ୍ଦେ ।
ତାହାର ଚାହାଁଣୀ ଦେଖି ଡରିବେ ଦେବତା
ମଇଁଷିମାନଙ୍କଠାରେ କଲା ସେ ଅହନ୍ତା ।
ଯେତେକ ମଇଁଷି ଥିଲେ ସେ ବନ ଭିତରେ
ସମସ୍ତଙ୍କୁ ମାରି ପେଷି ଦେଲା ଯମଘରେ ।
ଏକା ରମ୍ଭନନ୍ଦନକୁ ନମାଇଲା ସେହି
ମଇଁଷି ଶୂନ୍ୟ ସେ କଲା ସେହି ବନଭୂଇଁ ।
ତାର ନାମ ରକ୍ତବୀଜ ଆହେ ମୁନିବର
ଇନ୍ଦ୍ରରୁଦ୍ର ସୂର୍ଯ୍ୟ ଆଦି ଯେତେକ ଅମର ।
ସମସ୍ତଙ୍କୁ ଯୁଦ୍ଧରେ ସେ କରିଥିଲା ଜୟ
ଏଥୁଅନନ୍ତରେ ସେହି ରମ୍ଭର ତନୟ ।
କ୍ରମେ ତାର ତେଜ ବୀର୍ଯ୍ୟ ପ୍ରଭାବ ବଢ଼ିଲା
ଅଗ୍ନିଦେବତାର ବରେ କାମରୂପୀ ହେଲା ।
ଶମ୍ବର ତାରକ ଆଦି ଦାନବ ଯେ ଥିଲେ
ସେ ମହିଷାସୁର ସଙ୍ଗେ ଯୁଦ୍ଧ ଆରମ୍ଭିଲେ ।

ମହାବଳବନ୍ତ ସେହି ରମ୍ଭର ନନ୍ଦନ
ବଳେ ଧରି ଆଣି ତାଙ୍କୁ କଲାକ ବନ୍ଧନ ।
ଶରଣ ପଶିଲେ ଭୟେ ତା ପାଦରେ ସେହି
ତାହାଙ୍କୁ ସେ ଛାଡ଼ିଦେଇ ତାଙ୍କ ରାଜ୍ୟ ପାଇ
ସମସ୍ତ ଦାନବ ମିଳି କଲେ ତାକୁ ରାଜା
ପୃଥ୍ୱୀରେ ଦାନବ କଲେ ତାର ପାଦପୂଜା ।
ଦେବତାଙ୍କ ସହିତରେ ଦଶଦିଗପାଳେ
ମହିଷାସୁରକୁ ଜିଣି ନ ପାରିଲେ ବଳେ ।
ସ୍ଥାନ ଛାଡ଼ିପଳାଇଲେ ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ
ଦିନୁ ଦିନୁ ବଢ଼ିଲା ସେ ଦାନବର ତେଜ ।
ଦଶଦିଗକୁ ଯେ ଘୋଟି ଗଲା ଅନ୍ଧକାର
ଶୁଣିଲତ କହିଲା ଯା ଆହେ ମୁନିବର ।
ଜୟ ଜୟ ଜଗନ୍ନାଥ ଅନାଥର ନାଥ
ଜୟ ଜୟ ଜଗନ୍ନାଥ ଶଙ୍ଖଚକ୍ର ହସ୍ତ ।
ଜୟ ଜୟ ଜଗନ୍ନାଥ ଦୁଃଖୀ ଦୁଃଖ ହର
ଜୟ ଜୟ ଜଗନ୍ନାଥ କରୁଣାସାଗର ।
ଜୟ ଜୟ ଜଗନ୍ନାଥ ଭକ୍ତ ନିସ୍ତାରଣ
ଜୟ ଜୟ ଜଗନ୍ନାଥ ଶରଣ ରକ୍ଷଣ ।
ଜୟ ଜୟ ଜଗନ୍ନାଥ ମୁଁ ଅଧମ ଜନ
ବାମନପୁରାଣ ଅଟେ ସାଗର ସମାନ ।
ତୁମ୍ଭକୃପା ନାବାବିନୁ ତରି ନ ହୁଅଇ
ତେଣୁ ମୁହିଁ ତୁମ୍ଭପାଦେ ଶରଣ ପଶଇ ।
କର ଅନୁଗ୍ରହ ମୋତେ କମଳାରବର
ମୋର ନାମ ଗୋପୀନାଥ ମୁଁ ଦ୍ୱିଜକୁମର ।
ଚରଣ ତଳରେ ଦାସ କରି ରଖ ମୋତେ
ଏତିକି ପ୍ରାର୍ଥନା ମୁହିଁ କରୁଅଛି ନିତ୍ୟେ ।

= + =

## ଦେବୀ ମାହାତ୍ମ୍ୟ

ପୁଲସ୍ତ୍ୟ କହିଲେ ଶୁଣ ହେ ନାରଦମୁନି
ଅସୁରର ତିନିପୁର ହେଲା ରାଜଧାନୀ ।
ଦେବତାଏ ସ୍ୱର୍ଗପୁର ଛାଡ଼ି ପଳାଇଲେ
ବ୍ରହ୍ମାଙ୍କ ଛାମୁରେ ଯାଇ ପ୍ରବେଶ ହୋଇଲେ ।
ବାହନ ଆୟୁଧ ମାତ୍ର ଅଛଇ ତାଙ୍କର
ଆଉ ସବୁ ଦ୍ରବ୍ୟ ଭୋଗ କରଇ ଅସୁର ।
ବ୍ରହ୍ମାଙ୍କୁ ସଙ୍ଗରେ ଘେନି ତହୁଁ ଦେବଗଣ
ଗଲେ ବିଜେ କରିଛନ୍ତି ଯହିଁ ନାରାୟଣ ।
ଆଗେ ଚାଲୁଛନ୍ତି ବ୍ରହ୍ମା ପଛେ ଦେବତାଏ
ଦେଖିଲେକ ବସିଛନ୍ତି ପ୍ରଭୁ ଦେବରାଏ ।
ଶଙ୍ଖ ଚକ୍ର ଗଦା ପଦ୍ମ ଶୋହେ ଚାରିକରେ
ସଦାଶିବ ବସିଛନ୍ତି ତାଙ୍କ ପାରୁଶରେ ।
ହରିହର ଦେବତାଙ୍କୁ ଦେଖି କୁଶଧାରୀ
ପ୍ରଣାମ କରନ୍ତେ ହରି ତାଙ୍କ ହସ୍ତଧରି ।
ବସାଇଲେ ଆସନରେ କରି ଗଉରବ
ହରିଙ୍କର ପଦ୍ମପାଦେ ପଡ଼ିଲେ ବାସବ ।
ଚନ୍ଦ୍ର ସୂର୍ଯ୍ୟ ଗ୍ରହ ତାରା ସହିତ ଅମରେ
ପ୍ରଣମିଲେ ହରିହର ବ୍ରହ୍ମାଙ୍କ ପୟରେ ।
ଉଠି କରଯୋଡ଼ି ପୁଣି ଜଣାଇଲେ ତାଙ୍କୁ
ହେ ପ୍ରଭୁ କରୁଣାମୟ ରଖନ୍ତୁ ଆମ୍ଭଙ୍କୁ ।
ତୋହର ଚରଣତଳେ ପଶିଲୁ ଶରଣ
ତୁହି ଦେବଙ୍କର ଦେବ ପ୍ରଭୁ ନାରାୟଣ ।
ସର୍ବଦାହିଁ ଆମ୍ଭେମାନେ ତୋହର ଆଶ୍ରିତ
ତୋହର ଆଜ୍ଞାରେ ଆମ୍ଭେ ପାଳୁଛୁ ଜଗତ ।
ବୁଲୁଅଛୁଁ ଇତସ୍ତତ ହୋଇ ହେ ମୁରାରି
ଦାନବେ ଭୋଗ କଲେଣି ତୋର ସ୍ୱର୍ଗପୁରୀ ।
ଯେତେ କଷ୍ଟ ପାଇଲୁଣି କି କହିବୁ ଦୁଃଖ
ଘୋର ବିପଦରୁ ରକ୍ଷାକର ପଦ୍ମମୁଖ ।
ଦେବଙ୍କ ବ୍ୟାକୁଳ ଦେଖି ବୋଇଲେ ଶ୍ରୀହରି
କେମନ୍ତେ ଦାନବ ଭୋଗ କଲେ ସ୍ୱର୍ଗପୁରୀ ।
ବାସବ ବୋଇଲେ ପ୍ରଭୋ ରମ୍ଭର ନନ୍ଦନ
ତିନିଭୁବନରେ ସେହି ହୋଇଛି ରାଜନ ।
ତା ନାମ ମହିଷାସୁର ସେ ବଡ଼ ପ୍ରତାପୀ
ଅଗ୍ନିଦେବତାଙ୍କ ବରେ ହୋଇ କାମରୂପୀ ।
ଯାଗ ଯଜ୍ଞ ନାଶି ଦେଲା ସାଧୁଙ୍କୁ ଯେ ଦଣ୍ଡ
ସକଳ ଦନୁଜବଳ ହୋଇ ଏକ ଗୁଣ୍ଡ ।
ମହିଷାସୁର ରାଜାର ହୋଇ ଆଜ୍ଞାକାରୀ
ଜଗତଜନଙ୍କୁ ଦୁଃଖ ଦେଉଛନ୍ତି ହରି ।
ସୂର୍ଯ୍ୟଙ୍କର ଅଧିକାର ନେଲେଣି ଛଡ଼ାଇ
ଯମପୁରେ ଯମର ଯେ ଅଧିକାର ନାହିଁ ।
ମୋହର ପୁରକୁ ହରି ନେଲେଣି ସେ ବଳେ
ବରୁଣର ଅଧିକାର ନାହିଁ ସିନ୍ଧୁଜଳେ ।
କୁବେର ଦେବତା ଛାଡ଼ି ଦେଲାଣି ଅଳକା
ଅନଳ ଅନିଳ ଭୟେ ହେଲେଣି ତାଟକା ।

ଗ୍ରହଗଣ ତାରାଗଣ ତେଜହୀନ ହୋଇ
ସ୍ଥାନ ଛାଡ଼ି ପଳାଇଲେ ଦୈତ୍ୟ ଭୟ ପାଇ ।
ଛାଡ଼ିଲେଣି ବ୍ରହ୍ମପୁର ଭୟେ ପିତାମହ
ଆହେ ହରି ଏବେ ଆମ୍ଭେ କି କରିବୁ କହ ।
ଆକାଶକୁ ଛାଡ଼ି ଆମ୍ଭେ ରହିଲୁ ମହୀରେ
ଚୋରଙ୍କ ପରାୟ ଗିରିଗୁହା ଆଶ୍ରୟରେ ।
ତଥାପି ଆମ୍ଭଙ୍କୁ କଷ୍ଟ ଦିଅନ୍ତି ଦଇତେ
କି କରିବୁ କାହିଁ ଆମ୍ଭେ ରହିବୁ କେମନ୍ତେ ।
ତିନିପୁରେ ଆମ୍ଭଙ୍କୁ ଯେ ଠାବ ନାହିଁ ହରି
ରାକ୍ଷସେ ପାଇଲେ ନେବେ ଆମ୍ଭଙ୍କୁ ଯେ ଧରି ।
ଦେବଙ୍କ ବଚନ ଶୁଣି ଦେବ ଗଦାଧର
କୋପଭରେ ହୋଇଲେ ସେ ନିତାନ୍ତ ଅଧୀର ।
କାଳ ଅଗ୍ନିତୁଲ୍ୟ ସେହି ଦିଶିଲା ସେ କାଳେ
ତେଜପୁଞ୍ଜ ବିରାଜିଲା ବଦନମଣ୍ଡଳେ ।
ତାହାଙ୍କର ଏ ଭୀଷଣ କୋପ ଦେଖି ହର
କୋପେ ଭୟଙ୍କର ହେଲା ମୁଖ ତାହାଙ୍କର ।
ସେ ଦୁହିଁଙ୍କ କୋପ ଦେଖି କୋପିଲେ ବିଧାତା
ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ଆଦି ସକଳ ଦେବତା ।
କ୍ରୋଧ ହେତୁ ମୁଖବାଟେ ହେଲା ତେଜ ଜାତ
ଏକାଠି ହୋଇ ସେ ତେଜ ହୋଇଲା ମିଳିତ ।
ହରି ହର ବ୍ରହ୍ମାଙ୍କର ତେଜ ଭୟଙ୍କର ।
ତହିଁରେ ମିଳିଲା ଯହୁଁ ଋଷିମାନଙ୍କର ।
ଦେବତାମାନଙ୍କ ତେଜ ମିଳିଲାକ ପୁଣି
ଦେଖୁଁ ଦଖୁଁ ଜଳିଲା ସେ କାଳଅଗ୍ନି ଜାଣି ।
ସହସ୍ର ସହସ୍ର ସୂର୍ଯ୍ୟ ଉଦେହେଲା ପ୍ରାୟ
ଦିଶିଲା ହେ ମହାମୁନି ସେହି ତେଜୋମୟ ।
ତା ମଧ୍ୟରୁ ବାହାରିଲେ ଦେବୀ କାତ୍ୟାୟନୀ
ତରଳ ବିଶାଳ ପୁଣି ତାଙ୍କ ନେତ୍ର ତିନି ।
ଯୋଗବଳରୁ ବିଶୁଦ୍ଧ ତାହାଙ୍କ ଶରୀର
ତିନିପୁରେ ଉପମା ଯେ ନାହିଁ ତାହାଙ୍କର ।
ହର ତେଜୁଁ ଉପୁଜିଲା ତାହାଙ୍କ ବଦନ
ଅଗ୍ନିତେଜୁଁ ଜାତ ହେଲା ତାଙ୍କ ତ୍ରି ନୟନ ।
ଯମ ତେଜୁଁ ତାଙ୍କ କେଶ ହେଲା ଉତପତ୍ତି
ହରି ତେଜୁଁ ଅଷ୍ଟାଦଶ ଭୂଜ ଆହେ ଯତି ।
ସୋମ ତେଜୁଁ ସ୍ତନଯୁଗ ଇନ୍ଦ୍ର ତେଜୁଁ କଟୀ
ବରୁଣତେଜରୁ ହେଲା ଉରୁ ଦୁଇଗୋଟି ।
ଜଙ୍ଘ ଦୁଇ ନିତମ୍ବ ଯେ ହୋଇଲା ଆବର
ପାର୍ବତୀଦେବୀଙ୍କ ତେଜୁଁ ଆହେ ମୁନିବର ।
ପାଦ ଦୁଇ ବ୍ରହ୍ମାଙ୍କର ତେଜୁଁ ହେଲା ଜାତ
ପଦ୍ମକୋଷ ତୁଲ୍ୟ ସେହି ପାଦ ସୁଶୋଭିତ ।
ଦିବାକର ତେଜୁଁ ହେଲା ଅଙ୍ଗୁଳି ତାଙ୍କର
ହସ୍ତର ଅଙ୍ଗୁଳି ଇନ୍ଦ୍ର ତେଜରୁ ବାହାର ।
ପ୍ରଜାପତିଗଣ ତେଜୁଁ ଜାତ ଦନ୍ତପନ୍ତି
ଯକ୍ଷତେଜୁଁ ନାସିକା ଯେ ହେଲା ଉତପତ୍ତି ।
ମରୁତତେଜରୁ ହେଲା ଶ୍ରବଣ ଯୁଗଳ
ସାଧ୍ୟଗଣତେଜୁଁ ଜାତ ଭ୍ରୂଲତା କେବଳ ।
କାମଦେବ ଧନୁ ତୁଲ୍ୟ ସେହି ଭ୍ରୂରୁ ବେନି
ସୁନ୍ଦର ସୁକାନ୍ତି ଯୁକ୍ତ ଅଟଇ ହେ ମୁନି ।
ସମସ୍ତେ ମିଳିଣ ଦେଲେ କାତ୍ୟାୟନୀ ନାମ
ତାହାଙ୍କର ତେଜ ହେଲା ଲୋକେ ଅନୁପମ ।
ଯେତେବେଳେ ବିରାଜିଲା ତାଙ୍କର ସେ ମୂର୍ତ୍ତି
ତ୍ରିଶୂଳ ତାହାଙ୍କ ହସ୍ତେ ଦେଲେ ପଶୁପତି ।
ଚକ୍ରଧର ଚକ୍ର ଆଣି ଦେଲେ ତାଙ୍କ କରେ
ବରୁଣ ଯେ ଶଙ୍ଖ ଦେଲେ ତାହାଙ୍କ ହସ୍ତରେ ।
ଶକ୍ତି ଅସ୍ତ୍ର ଦେଲେ ନେଇ ଦେବ ହୁତାଶନ
ବାୟୁ ଧନୁନେଲେ ତୂଣ ଦେଲେ ବିବସ୍ୱାନ ।
ଅକ୍ଷୟ ଶର ଯୁଗଳ ଦେଲେ ସୂର୍ଯ୍ୟ ପୁଣି
ଘଣ୍ଟା ସହିତରେ ବଜ୍ର ଦେଲେ ବଜ୍ରପାଣି ।
ଯମଦଣ୍ଡ ଯମ ଦେଲେ ଗଦା ଯେ କୁବେର
କମଣ୍ଡଳୁ ଅକ୍ଷମାଳା ଦେଲେ ବେଦବର ।
ଉଗ୍ର ଅସି ଚର୍ମ ଦେଲେ କାଳ ଯେ ଦେବତା
ଚାମର ହାରକୁ ଦେଲେ ବୁଧ ଗ୍ରହପିତା ।
ସମୁଦ୍ର ଯେ ମାଳା ନେଇ କଣ୍ଠେ ଲମ୍ବାଇଲେ
ବାହାନ ନିମନ୍ତେ ସିଂହ ହିମାଳୟ ଦେଲେ ।
ବିଶ୍ୱକର୍ମା ଦେଲେ ଆଣି ମସ୍ତକରେ ମଣି
କୁଣ୍ଡଳ ଯେ ଅର୍ଦ୍ଧଚନ୍ଦ୍ର କୁଠାରକୁ ପୁଣି ।
ରଜତର ପାନପତ୍ର ଗନ୍ଧର୍ବ ଈଶ୍ୱର
ଦେବୀଙ୍କ କରେ ଦେଲେ ସେ ଅପୂର୍ବ ସୁନ୍ଦର ।
ସ୍ନେହଭରେ ନାଗହାର ଦେଲେ ନାଗରାଜ
ଅମ୍ଳାନ କୁସୁମ ମାଳା ଦେଲେ ଋତୁ ପୁଞ୍ଜ ।
ତ୍ରିନୟନା କାତ୍ୟାୟନୀ ଦେବୀଙ୍କର ଦେବୀ
ଏ ସକଳ ଦ୍ରବ୍ୟ ପାଇ ସେହି ଭଇରବୀ ।

ପରମ ସନ୍ତୋଷେ ଅଟ୍ଟ ଅଟ୍ଟହାସ୍ୟ କଲେ
ତାହା ଦେଖି ଦେବଗଣ ଆନନ୍ଦ ହୋଇଲେ ।
ବିଷ୍ଣୁ ରୁଦ୍ର ସୂର୍ଯ୍ୟଚନ୍ଦ୍ର ଅନିଳ ଅନଳ
ଏହାଙ୍କ ସହିତେ ଯେତେ ଅମର ମଣ୍ଡଳ ।
ଭକତିରେ କଲେ ସେହି ଦେବୀଙ୍କର ସ୍ତୁତି
ଜୟ ଜୟ ଭଗବତୀ ତୁମ୍ଭଙ୍କୁ ପ୍ରଣତି ।
ବିଶୁଦ୍ଧ ଶରୀର ଧରୁ ତୁହି ଯୋଗବଳେ
ହେଦେବୀତୁ ନିଦ୍ରାରୂପା ହେଉ କେତେବେଳେ ।
ତୃଷ୍ଣା ରୂପେ ଲଜ୍ଜାରୂପେ କ୍ଷୁଧାରୂପେ ଥାଉ
ପୃଥିବୀମଣ୍ଡଳ ବ୍ୟାପି ବିରାଜିତ ହେଉ ।
ତୁହି ମାତ କରୁ ସର୍ବ ଭୟ ଉତ୍ପାଦନ
ତୁହି କାନ୍ତିରୂପା ତୋତେ କରୁଛୁଁ ବନ୍ଦନ ।
ଶ୍ରଦ୍ଧା ରୂପା ସ୍ମୃତିରୂପା କ୍ଷମାରୂପା ତୁହି
ପୁଷ୍ଟିରୂପେ ଛାୟାରୂପେ ବ୍ୟାପିଅଛୁ ମହୀ ।
ଶକ୍ତିରୂପେ ଶ୍ରଦ୍ଧାରୂପେ ଲକ୍ଷ୍ମୀରୂପେ ଥାଉ
ମେଧାରୂପେ ମାୟାରୂପେ ଜଗତକୁ ମୋହୁ ।
ଭବିତବ୍ୟତା ସ୍ୱରୂପା ଅଟୁ ତୁଗୋ ମାତ
ତୋର ପାଦେ ନମସ୍କାର କରୁଁ ସୁରବ୍ରାତ ।
ଏହିରୂପେ ସ୍ତୁତି ଯହୁଁ କଲେ ଦେବଗଣ
କାତ୍ୟାୟନୀ କଲେ ସିଂହପୃଷ୍ଠେ ଆରୋହଣ ।
ଦେବଙ୍କୁ ମେଲାଣି କରି ତହୁଁ ଚଳିଗଲେ
ବିନ୍ଧ୍ୟ ପର୍ବତର ଶୃଙ୍ଗଉପରେ ବସିଲେ ।
ଅତିଉଚ୍ଚ ଅଟେ ସେହି ପର୍ବତ ଶିଖର
ବୃକ୍ଷଲତା ଥିବାରୁ ସେ ଦିଶଇ ସୁନ୍ଦର ।
ଅଗସ୍ତ୍ୟ ଋଷିଙ୍କ ଯୋଗୁଁ ସେହି ଗିରିଶିଖ
ଊର୍ଦ୍ଧ୍ୱମୁଖ ହେଉଥିଲା ହେଲା ଅଧୋମୁଖ ।
ନାରଦ ବୋଇଲେ ମୁନି ଅଗସ୍ତ୍ୟ କିମ୍ପାଇଁ
ଦେଲେ ବିନ୍ଧ୍ୟ ପର୍ବତର ଶୃଙ୍ଗକୁ ନୁଆଇ ।
କି ନିମନ୍ତେ କାହାପାଇଁ କଲେ ଏହି କୃତ୍ୟ
ମୋ ଆଗେ କହନ୍ତୁ ଏହି ନିର୍ମଳ ଚରିତ ।
ପୁଲସ୍ତ୍ୟ କହିଲେ ଶୁଣ ହେ ମୁନି ଗୋସାଇଁ
ପୂର୍ବକାଳେ ଏହି ବିନ୍ଧ୍ୟଗିରି ବଢ଼ିଯାଇ ।
ସୂର୍ଯ୍ୟ ଦେବତାଙ୍କ ଗତିପଥ ରୋଧ କଲା
ଭାସ୍କର ଦେବତା ଆଉ ଯାଇ ନ ପାରିଲା ।
ସେଥିପାଇଁ ଅନଳରେ ଦେଲାକ ଆହୁତି
ହୋମାନ୍ତେ ମିଳିଲା ଯହିଁ ଅଗସ୍ତ୍ୟ ଅଛନ୍ତି ।
ନିକଟକୁ ଯାଇଣ ଯେ ବୋଲନ୍ତି ଭାସ୍କର
ବହୁତ ଦୂରରୁ ଆସିଅଛି ମୁନିବର ।
ଆପଣ ଏ ସଂସାରକୁ ଉଦ୍ଧାର କରିବେ
ମୋହର ଯେ ମନୋବାଞ୍ଛା ପୂର୍ଣ୍ଣ କରିଦେବେ ।
ତାହା ହେଲେ ସ୍ୱର୍ଗରେ ମୁଁ କରିବି ଭ୍ରମଣ
ନୋହିଲେ ଜଗତଜନେ ଲଭିବେ ମରଣ ।
ଏ ରୂପେ ସୂର୍ଯ୍ୟଙ୍କ ମୁଖୁଁ ସୁଧାମୟ ବାଣୀ
ବୋଇଲେକ ମୁନିବର ଅଗସ୍ତ୍ୟ ଯେ ଶୁଣି ।
ତୋର ମନୋବାଞ୍ଛା ପୂର୍ଣ୍ଣ କରିବି ଅବଶ୍ୟ
ତାହା ତୁହି ବେଗେ କର ତୋ ଆଗେ ପ୍ରକାଶ ।
ଋଷିଙ୍କର ମୁଖୁଁ ଶୁଣି ଅମୃତ ବଚନ
ମସ୍ତକରେ ହସ୍ତଦେଇ କହିଲେ ତପନ ।
ମୋ ଗତି ନିରୋଧ କରେ ବିନ୍ଧ୍ୟ ଗିରିବର
ତାହାର ଶୃଙ୍ଗକୁ ଯେବେ ନିମ୍ନ କରିପାର ।
ତେବେ ମୁହିଁ ବିଚରଣ କରିବି ଆକାଶେ
ଏଣୁ ମୁଁ ଅଇଲି ଆହେ ମୁନି ତବ ପାଶେ ।
ଏହା ଶୁଣି ବୋଇଲେକ କୁମ୍ଭ ଋଷି ସୁତ
ବିନ୍ଧ୍ୟଗିରି ଶୃଙ୍ଗ ଖର୍ବ କରିବ ନିୟତ ।
ବିନ୍ଧ୍ୟଗିରି ହାରିଲାଣି ନିଶ୍ଚେ ତ୍ରାଣ ତୋତେ
ତୁହି ଯେଣୁ ରହିଲୁଣି ମୋ ପାଦ ଆଶ୍ରିତେ ।
ତେଣୁ ତୋର ଜୟ ହେବ ଏକଥା ନିଶ୍ଚୟ
ସୂର୍ଯ୍ୟଙ୍କୁ ଏରୂପେ କହି ସେ କୁମ୍ଭତନୟ ।
ବିନୟ ଭକତି ସ୍ତୁତି ସୂର୍ଯ୍ୟଙ୍କର ଘେନି
ଦଣ୍ଡକକାନନ ତ୍ୟାଗକରି ଗଲେ ମୁନି ।
ବିନ୍ଧ୍ୟପର୍ବତର ପାଶେ ହୋଇଲେ ପ୍ରବେଶ
ଦେଖି ମସ୍ତକକୁ ନମ୍ର କରି ଗିରି ଈଶ ।
ମୁନିଙ୍କ ଚରଣତଳେ କରିଲା ପ୍ରଣାମ
ଅଗସ୍ତି ବୋଇଲେ ଶୁଣ ହେ ଗିରିସତ୍ତମ ।
ଦକ୍ଷିଣକୁ ଯାଉଛି ମୁଁ ତୀର୍ଥସ୍ଥାନ ଅର୍ଥେ
ତୁ ପ୍ରଣମି ଥିବୁ ମୋର ଆସିବା ପର୍ଯ୍ୟନ୍ତେ ।
ମୁହିଁ ବୃଦ୍ଧ ତୋ ଶିଖରେ ଚଳି ନ ପାରଇ
ଏଣୁ ତୁହି ମସ୍ତକକୁ ସଦାଥିବୁ ଲଇଁ ।
ପରମ ପବିତ୍ର ମହାତୀର୍ଥ ସ୍ଥାନ ଭ୍ରମି
ଆସିବାଯାଏ ତୁ ଥିବୁ ହୋଇ ନୀଚଗାମୀ ।
ଅବଜ୍ଞା କରିବୁ ଯେବେ ମୋ କଥାକୁ ତୁହି
ଜାଣିଥା ବିନାଶ ତୋତେ କରିବଇଁ ମୁହିଁ ।

ଏହା କହି ବିନ୍ଧ୍ୟ ଶିଖୁ କଲେ ଆରୋହଣ
ଦକ୍ଷିଣ ଦିଗକୁ ଗଲେ ସେ କୁରୁନନ୍ଦନ ।
ଅନ୍ତରୀକ୍ଷ ମାର୍ଗେ ମୁନି ତହୁଁ ଚଳିଗଲେ
ଶୃଙ୍ଗ ନମ୍ରକରି ବିନ୍ଧ୍ୟପର୍ବତ ରହିଲେ ।
ମୁନିଙ୍କର ଆଗମନ ଅପେକ୍ଷା କରିଣ
ରହିଲାକ ଦକ୍ଷିଣକୁ କରି ଆକ୍ରମଣ ।
ଦକ୍ଷିଣେ ରହିଲେ ମୁନି ଆଶ୍ରମେକ ସ୍ଥାପି
ବିନ୍ଧ୍ୟ ଶିଖରକୁ ଡେଇଁ ନଇଲେ କଦାପି ।
ବିଦର୍ଭପୁତ୍ର କି ଘେନି ରହିଲେ ସେ ସ୍ଥାନେ
ସମୟକେ ରହନ୍ତି ସେ ଦଣ୍ଡକ କାନନେ ।
ଋତୁ ପରିବର୍ତ୍ତନରେ ଦକ୍ଷିଣେ ରହନ୍ତି
ଦଣ୍ଡକ ବନକୁ ପୁଣି ଗମନ କରନ୍ତି ।
ସେ ସ୍ଥାନରେ ତପ ଆଚରନ୍ତି ମୁନିବର
ଆକାଶେ ରହନ୍ତି ଯହିଁ କରିଛନ୍ତି ଘର ।
ଏ ସକଳ କଥା ଜାଣିପାରି ବିନ୍ଧ୍ୟ ଗିରି
ଡରେ ରହିଲାକ ତହିଁ ଶୃଙ୍ଗ ନମ୍ର କରି ।
ଆଉ ସେହି ନ ବଢ଼ିଲା ମୁନିଙ୍କ ଭୟରେ
ମୁନିବର ନ ଅଇଲେ ଆଉ ସେ ପଥରେ ।
କିଛିଦିନ ଅନ୍ତେ ଗିରି ଭାଳିଲା ଏମନ୍ତ
ଫେରି ନ ଆସିବେ ଆଉ ଏ ପଥେ ଅଗସ୍ତ୍ୟ ।
ଏମନ୍ତ ବିଚାରି ଅଗ୍ର ଶୃଙ୍ଗ ନମ୍ର କଲା
ନ ବଢ଼ି ମୁନିଙ୍କ ଭୟେ ସେସ୍ଥାନେ ରହିଲା ।
ହେ ନାରଦ ଏହିରୂପେ ସେ ଅଗସ୍ତ୍ୟ ମୁନି
ବିନ୍ଧ୍ୟ ପର୍ବତର ଶୃଙ୍ଗ ନମ୍ରକଲେ ପୁଣି ।
କାତ୍ୟାୟନୀ ଦୁର୍ଗାଦୈତ୍ୟଦଳନ ନିମନ୍ତେ
ରହିଲେକ ସେହି ଶୃଙ୍ଗେ ବିନ୍ଧ୍ୟ ପରବତେ ।
ମୁନିଗଣ କଲେ ଆସି ତାହାଙ୍କୁ ଯେ ସ୍ତୁତି
ଅପସରାଗଣ କଲେ ସେ ସ୍ଥାନେ ବସତି ।
ସୁରସିଦ୍ଧ ଭୂତଗଣ ନାଗ ବିଦ୍ୟାଧର
ଦେବୀଙ୍କର ପ୍ରୀତିଅର୍ଥେ କରେ ତହିଁ ଘର ।
ସେହି କାତ୍ୟାୟନୀ ଦୁର୍ଗା ଚରଣସରୋଜ
ଭଜନ କଲାକ ବସି ଗୋପୀନାଥ ଦ୍ୱିଜ ।

= + =

## ଚଣ୍ଡମୁଣ୍ଡଙ୍କର କାତ୍ୟାୟନୀଙ୍କ ଭେଟ ଓ ମୈଷାସୁରକୁ ଜଣାଇବା

ପୁଲସ୍ତ୍ୟ କହିଲେ ଶୁଣ ଏଥୁ ଅନନ୍ତରେ
କାତ୍ୟାୟନୀ ତପକଲେ ବିନ୍ଧ୍ୟ ପର୍ବତରେ ।
ଚଣ୍ଡ ମୁଣ୍ଡ ବେନି ଦୈତ୍ୟ ଦେଖିଲେ ତାହାଙ୍କୁ
ପର୍ବତ ଶିଖରୁ ଗଲେ ଆପଣା ଗୃହକୁ ।
ମହିଷାସୁରର ଚର ସେ ଦୁଇ ଅସୁର
ପ୍ରବେଶ ହୋଇଲେ ଯାଇଁ ମହିଷ ଛାମୁର ।
ବୋଇଲେ ଭୋ ବୀରବର ଅସୁର ରାଜନ
ବିନ୍ଧ୍ୟ ପର୍ବତକୁ ଆସ କରିବ ଦର୍ଶନ ।
ସେ ପର୍ବତେ ଯେଉଁ ବାଳା ଦେଖିଲି ନୟନେ
ଦେଖିନାହିଁ ଆଜିଯାଏ ମୁହିଁ ତ୍ରିଭୁବନେ ।
ସୁରପୁର ସୁନ୍ଦରୀଏ ନୋହିବେ ତା ସମ
ସେ କନ୍ୟାର ରୂପଗୁଣ ଅଟେ ଅନୁପମ ।
ଅଟଇ ସେ ଦେବୀଙ୍କର ତନୁ ଅତି କୃଶ
ମେଘ ସମୂହକୁ ନିନ୍ଦେ ତାର କେଶପାଶ ।
ବଦନର ଶୋଭାରେ ସେ ଚନ୍ଦ୍ରକୁ ଜିଣଇ
କଣ୍ଠସ୍ୱରେ ଶଙ୍ଖକୁ ସେ ପ୍ରାଭବ ଦିଅଇ ।
ତିନିଗୋଟି ନେତ୍ରେ ତିନିଅଗ୍ନିକି ସେ ଜିଣେ
ସ୍ତନଯୁଗଳର ଶୋଭା ଶୁଣ ହେ ଶ୍ରବଣେ ।
ସୁବର୍ତ୍ତୁଳ ପୁଣି ତାର ଅଗ୍ରଭାଗ ନାତ
ତାକୁ ଦେଖି ହସ୍ତୀକୁମ୍ଭ ହୁଏ ପରାଜିତ ।
ଶୋଭାରେ ସେ କରିବାକୁ ସମସ୍ତଙ୍କୁ ଜୟ
ତାହା ଜାଣିପାରି ମନମଧ୍ୟେ କାମରାୟ ।
ସେ ବେନି କୁଚକୁ ଅତିଦୃଢ଼ ଦୁର୍ଗ କଲା
ପୁଣିତାର ଅଷ୍ଟାଦଶ ଭୁଜକୁ ଦେଖିଲା ।
ପରିଘ ସଦୃଶ ସେହି ଅତ୍ୟନ୍ତ କଠିନ
ସବୁହସ୍ତେ ବିରାଜୁଛି ଅସ୍ତ୍ରଶସ୍ତ୍ରମାନ ।
ଅତ୍ୟନ୍ତ ପ୍ରତିଭା ପୁଣି ଥିବାରୁ ତହିଁରେ
ପରାକ୍ରମ ଜାଣି କାମ ଆପଣା ମନରେ ।
ସେ ଭୁଜମାନଙ୍କୁ ଯନ୍ତ୍ର ସ୍ୱରୂପ କରିଛି
ଆବର ତା କଟୀଶୋଭା ଶୁଣ କହୁଅଛି ।
ତ୍ରିବଳି ତରଙ୍ଗେ ସେହି ହୋଇଛି ଭୂଷିତ
ମନୋହର ରୋମରାଜି ତହିଁ ବିରାଜିତ ।
ସେହିହେତୁ ମଧ୍ୟଦେଶ ଅତି ଶୋଭାପାଏ
ଏହା ମୋତେ ଜଣାଯାଏ ଆହେ ଦୈତ୍ୟରାଏ ।

ଆରୋହିବାବେଳେ ତୁମ୍ଭେ ହୋଇବ କାତର
ତାହାକୁ ପାବଛୁ ଡରେ କରିଅଛି ମୋର ।
ତାର ସେହି ରୋମାବଳି ଆହେ ଦୈତ୍ୟସାଇଁ
କୁଚମୂଳେ ଲାଗିବାରୁ ଅତିଶୋଭା ପାଇ ।
ଦେଖିଲା ମାତ୍ରକେ ଜଣାଯାଏ ଏହିପରି
ତୁମ୍ଭେ ଆରୋହିଲା ବେଳେ କାମଦେବ ଡରି ।
କାତର ହେବାରୁ ସ୍ୱେଦଧାରା କି ବହଇ
ତାହାର ନାଭିର ଶୋଭା ଶୁଣ ମନଦେଇ ।
ଦକ୍ଷିଣାବର୍ତ୍ତକ ପୁଣି ଅତ୍ୟନ୍ତ ଗଭୀର
ତେଣୁ ଅତି ସୁନ୍ଦର ସେ ଆହେ ଦୈତ୍ୟେଶ୍ୱର ।
ଦେଖିଲା ମାତ୍ରକେ ଜଣାଯାଏ ସେ ଏମନ୍ତ
କିବା ନିଜେ କାମରାଜା ହୋଇ ତୋଷଚିତ୍ତ ।
ଲାବଣ୍ୟ ଗୃହର ମୁଦ୍ରା ପ୍ରଦାନ କରିଛି
ତାର ଜଘନର ଶୋଭା ଶୁଣ କହୁଅଛି ।
ସେହି ମୃଗନୟନୀର ବେନି ଯେ ଜଘନ
ମେଖଳା ଦର୍ପଣ ଯୋଗୁଁ ଅତ୍ୟନ୍ତ ଶୋଭନ ।
ଦେଖିଲାକ୍ଷଣି ଯେ ବୋଧ ହୁଅଇ ଏପରି
ମଦନ ରାଜାର କି ସେ ଗୋପନୀୟ ପୁରୀ ।
ସେ ପୁରକୁ ବେଢ଼ିବାରୁ ସୁଦୁର୍ଗ ପ୍ରାକାର
ତେଣୁ ଅତି ଗୁପ୍ତଭାବେ ରହିଛି ସେ ପୁର ।
ସେହି କୁମାରୀର ଉରୁଯୁଗଳ ସୁନ୍ଦର
ସୁବର୍ତ୍ତୁଳ ଲୋମଶୂନ୍ୟ ଆହେ ଦୈତ୍ୟେଶ୍ୱର ।
ଦେଖିଲାକ୍ଷଣି ଯେ ହୁଏ ମନରେ ଏମନ୍ତ
ମକରଧ୍ୱଜ କି କରି ଚିତ୍ତ ପ୍ରଫୁଲ୍ଲିତ ।
କରିଅଛି ତାହାକୁ ସେ ଦୁଇଗୋଟି ଦେଶ
ସେ ଦେଶରେ ଲୋକମାନେ କରିବେ ଯେ ବାସ ।
ତାର ଦୁଇଜଙ୍ଘ ଶୋଭା ଶୁଣ ଦୈତ୍ୟପତି
ସୁବର୍ତ୍ତୁଳ ଲୋମଶୂନ୍ୟ ସୁନ୍ଦର ଯେ ଅତି ।
କମଳ ଉଦର ସମ ତା ପଦଯୁଗଳ
ବିଧାତା ଗଢ଼ିଛି ଅତିଯତ୍ନେ ମହୀପାଳ ।
ସେ ବାଳାର ନଖରତ୍ନ ମାଳା ଦଣ୍ଡଧାରୀ
ଶୋହଇ ଗଗନଚାରୀ ତାରାମାଳା ପରି ।
ସର୍ବାଙ୍ଗସୁନ୍ଦର ସେହି ହେ ଦନୁଜନାଥ
ମହାଉଗ୍ର ଶସ୍ତ୍ରେ ଶୋଭାପାଏ ତାର ହସ୍ତ ।
ଉତ୍ତମରୂପରେ ମୁହିଁ ଦେଖିଛି ତା ରୂପ
କାହାର ସେ ଝିଅ ତାହା ନ ଜାଣେ ହେ ଭୂପ ।

ସେ ଅମୂଲ୍ୟ ନାରୀରତ୍ନ ସ୍ୱର୍ଗ ତ୍ୟାଗକରି
ହେ ଦୈତ୍ୟେନ୍ଦ୍ର ଭୂମିତଳେ ଅଛି ଅବତରି ।
ନିଜେ ବିନ୍ଧ୍ୟପର୍ବତକୁ ଯାଇଁ ଦେଖ ବାରେ
ତଦୁତ୍ତାରେ କାର୍ଯ୍ୟ କର ଇଚ୍ଛା ଅନୁସାରେ ।
ଚଣ୍ଡମୁଣ୍ଡ ମୁଖୁ ଶୁଣି ମହିଷ ଅସୁର
ଅତି କମନୀୟ ରୂପ ସେହି ଦେବୀଙ୍କର ।
ବୋଇଲା ଏ କଥାରେ କି ବିଚାର କରିବା
ସେ ଅମୂଲ୍ୟ ନାରୀ- ରତ୍ନ- ସାରକୁ ଆଣିବା ।
ଏମନ୍ତ ବିଚାରି ଦେଲା ତାଙ୍କଠାରେ ମନ
ପୁଲସ୍ତ୍ୟ କହିଲେ ଶୁଣ ଆହେ ତପୋଧନ ।
ବିଧାତା ଲେଖାକୁ ଆନ କରି କେ ପାରଇ
ମରଣ ତାହାକୁ ଦେଖ ନେଉଛି କଢ଼ାଇ ।
ତତକ୍ଷଣେ ସେ ପ୍ରତାପୀ ମହିଷ ଦଇତ
ସେନାପତିମାନଙ୍କୁ ଯେ ବୋଇଲେ ଏମନ୍ତ ।
ହେ ଚମୁଣ୍ଡ ଚଣ୍ଡମୁଣ୍ଡ ନମର କପିଳ
ଉଗ୍ରାୟୁଧ ବିଡ଼ାଳାକ୍ଷ ଚିକୁର ବାଷ୍କଳ ।
ମହାହନୁ ରକ୍ତବୀର୍ଯ୍ୟ ଆଦି ଯେତେ ବୀର
ସଜହୋଇ ଆସ ତୁମ୍ଭେ ବିଳମ୍ବ ନ କର ।
ଶୈରଣକର୍କଶ ଦନୁନନ୍ଦନ ସକଳ
ବଜାଇଲେ ଭେରୀ ତୁରୀ ମର୍ଦ୍ଦଳ କାହାଳ ।
ସ୍ୱର୍ଗ ତେଜି ଭୂମିତଳେ ରହିଲେକ ଆସି
ସୈନ୍ୟ ଗହଳରେ ସେହି ପୃଥିବୀ ନ ଦିଶି ।
ଏଥୁ ଅନନ୍ତରେ ସେହି ମହିଷ ଅସୁର
ପଠାଇଲେ ସେହି ସେନାପତିଙ୍କି ସତ୍ୱର ।
ତା ମଧ୍ୟରେ ଥିଲା ମୟ ଦାନବର ସୁତ
ଦୁନ୍ଦୁଭି ପରାୟ ତାର ସ୍ୱର ଯେ ବିକୃତ ।
ତୋ ନାମ ଦୁନ୍ଦୁଭି ଶତ୍ରୁ ବିମର୍ଦ୍ଦନ ସେହି
ଦେବୀଙ୍କର ନିକଟକୁ ଗଲା ବାର୍ତ୍ତା ବହି ।
ଅନ୍ତରୀକ୍ଷେ ଥାଇଁ ସେହୁ ବୋଇଲା ଏମନ୍ତ
ମୁହିଁଅଟେ ମହାସୁର ମହିଷର ଦୂତ ।
ହେ କୁମାରୀ ମହାଯୋଦ୍ଧା ସେ ରମ୍ଭନନ୍ଦନ
ଚଉଦ ଭୁବନେ ନାହିଁ ବୀର ତା ସମାନ ।
କାତ୍ୟାୟନୀ କହିଲେକ ସମ୍ବୋଧନ କରି
ଆହେ ଦୈତ୍ୟଇନ୍ଦ୍ର ତୁମ୍ଭେ ଭୟ ପରିହରି ।
ଆସ ଆସ ମୋ ପାଶକୁ କହ ସବୁ ତାହା
ରମ୍ଭସୁତ ତୋ ଆଗରେ କହିଅଛି ଯାହା ।

ଦୁନ୍ଦୁଭି ଦଇତ ଶୁଣି ଦୁର୍ଗାଙ୍କ ବଚନ
ଆକାଶକୁ ତ୍ୟାଗ କରି ଅଇଲା ବହନ ।
ଭୂମିତଳେ ସୁଖେ ବସି ଦିବ୍ୟ ଆସନରେ
ମହିଷର କଥା କହେ ଦେବୀଙ୍କ ଆଗରେ ।
ହେ ଦେବୀ ମହିଷାସୁର ଦେବଗର୍ବହାରି
ତୁମ୍ଭଙ୍କୁ କହିଛି ଯାହା ଶୁଣ କର୍ଣ୍ଣ ଡେରି ।
ଦେବତାଏ ମୋ ସଙ୍ଗତେ ଯୁଦ୍ଧେ ହାରିଯାଇ
ବୁଲୁଛନ୍ତି ପୃଥିବୀରେ ଇତସ୍ତତ ହୋଇ ।
ସ୍ୱର୍ଗ ମର୍ତ୍ତ୍ୟ ବାୟୁପଥ ପାତାଳ ସହିତ
ଯେତେ ମହୀପତି ସର୍ବେ ମୋର ବଶୀଭୂତ ।
ସଂପ୍ରତି ମୁଁ ରୁଦ୍ର ଇନ୍ଦ୍ର ସୂର୍ଯ୍ୟ ଦିଗପାଳ
ଆଗୋ ବାଳା ଜାଣ ସ୍ୱର୍ଗ ମର୍ତ୍ତ୍ୟ ଯେ ପାତାଳ ।
ଏ ତିନିଭୁବନେ ମୋତେ ଜିଣନ୍ତା କେ ନାହିଁ
ଆଗୋ ବିଶାଳାକ୍ଷି ଏକମାତ୍ର ବୀର ମୁହିଁ ।
ସମସ୍ତେ ମୋହର ପାଦତଳରେ ଶରଣ
ଜାଣନ୍ତି ସକଳ ଲୋକ ମୋର ବୀରପଣ ।
ବୀର୍ଯ୍ୟବଳେ ସମସ୍ତଙ୍କୁ ଆୟତ କରିଛି
ତୁ ଅମୂଲ୍ୟ ନାରୀରତ୍ନ ବୋଲି ମୁଁ ଶୁଣୁଛି ।
ତୁ କେବଳ ରହି ନାହୁଁ ମୋହର ଆୟତ୍ତେ
କିମ୍ପାଇ ରହିଛୁ ତୁହି ବିନ୍ଧ୍ୟ ପରବତେ ।
ଆପଣା ଇଚ୍ଛାରେ ଆସି ଭଜ ଗୋ ସୁନ୍ଦରୀ
ସର୍ବ ଜଗତରେ ଜାଣ ମୁହିଁ ଅଧିକାରୀ ।
ଏ କାରଣୁ ତୋର ମୁହିଁ ଉପଯୁକ୍ତ ପତି
ପୁଲସ୍ତ୍ୟ କହିଲେ ଶୁଣ ହେ ନାରଦ ଯତି ।
କହିଲା ଦୁନ୍ଦୁଭି ଯହୁଁ ଏମନ୍ତ ବଚନ
କାତ୍ୟାୟନୀ ଦୁର୍ଗା ତାକୁ ବୋଇଲେ ଏସନ ।
ଦାନବ ରାଜନ ଯାହା କହିଲା ସେ ସତ୍ୟ
ସମସ୍ତ ବିଶ୍ୱ ଈଶ୍ୱର ସେ ମହିଷ ଦୈତ୍ୟ ।
ସତ୍ୟ ଅଟେ ଦେବତାଙ୍କୁ ଜିଣିଛି ସମରେ
ଆହେ ଦେତ୍ୟପତି ଜାଣ ଆମ୍ଭର ବଂଶରେ ।
ଯେ ପ୍ରସିଦ୍ଧ ଧର୍ମ ଅଛି ତା ଯେବେ ମହିଷ
ରଖିପାରିବେ ମୁଁ ତାକୁ ଭଜିବି ଅବଶ୍ୟ ।
ସତ୍ୟ କହୁଅଛି ତାର ହୋଇବି ମୁଁ ନାରୀ
ମୟସୁତ ଦୁନ୍ଦୁଭି ଯେ ଏହା ଶୁଣିକରି ।
ବୋଇଲା ଆୟତ୍ତ ପଦ୍ମନୟନା ଗୋ କହ
ତାହା ରକ୍ଷା କରିପାରିବ ସେ ଦୈତ୍ୟରାୟ ।
ତୋ ବଂଶର-ପଣ ଅବା କେତେକ ମାତର
ତୁହି ଯେବେ ମାଗିବୁ ଗୋ ମହିଷର ଶିର ।
ଯାହା ତୋତେ ଦେଇ ପାରେ ସେ ଦାନବପତି
ତାହାକୁ ଅସାଧ ଅବା ଅଛଇ କି କ୍ଷତି ।
ତାହା ତୁ ମାଗିବୁ ତାହା ଦେବ ଆଣି ତୋତେ
ସମସ୍ତ ଜଗତ ଅଛି ତାହାର ଆୟତ୍ତେ ।
କହନ୍ତି ପୁଲସ୍ତ୍ୟମୁନି ନାରଦ ଶୁଣନ୍ତି
ଦୁନ୍ଦୁଭି କହିଲା ଯହୁଁ ଏମନ୍ତ ଭାରତୀ ।
ଦେବୀ କାତ୍ୟାୟନୀ ତାହା କରିଣ ଶ୍ରବଣ
କହିଲେ ତାହାକୁ ଉଚ୍ଚହାସ୍ୟ ଯେ କରିଣ ।
ଆହେ ଦୈତ୍ୟପତି ପୂର୍ବପୁରୁଷ ମୋହର
ପଣ କରିଛନ୍ତି ଜାଣ ଏମନ୍ତ ପ୍ରକାର ।
ଆମ୍ଭ ବଂଶେ ଜାତ ହେବେ ଯେତେ କନ୍ୟାଗଣ
ତାହାଙ୍କୁ ଜିଣିବ ଯେଉଁ ଜନ କରି ରଣ ।
ସେ ତାହାର ପତି ହେବ ପ୍ରମାଣ ଏ କଥା
ଏ ପଣ ଆମ୍ଭର କେବେ ନୋହିବ ଅନ୍ୟଥା ।
ପୁଲସ୍ତ୍ୟ କହିଲେ ଶୁଣ ବ୍ରହ୍ମାଙ୍କ କୁମର
ଦେବୀର ଏ କଥା କରି ଶ୍ରବଣେ ଗୋଚର ।
ଦୁନ୍ଦୁଭି ଦଇତ ଗଲା ମହିଷ ପାଶକୁ
କହିଲା ଏ ସବୁକଥା ବିସ୍ତାରି ତାହାକୁ ।
ଶୁଣି ସେ ମହିଷାସୁର ଘେନି ଦୈତ୍ୟବଳ
ଯୁଝିବା ମାନସେ ଚଳିଗଲା ବିନ୍ଧ୍ୟାଚଳ ।
ଚିକ୍ଷୁରକୁ କଲା ସେହି ଥାଟେ ସେନାପତି
ନମରକୁ ବୋଇଲା ସେ ମହିଷ ଭୂପତି ।
ତୁହି ଆଗେ ସୈନ୍ୟ ଘେନି କର ଯାଇଁ ରଣ
ନମର ଦାନବ ତାହା କରିଣ ଶ୍ରବଣ ।
ବଳବନ୍ତ ଚତୁରଙ୍ଗ ବଳ ସଙ୍ଗେ ଘେନି
ଧାଇଁଗଲା ଯହିଁଛନ୍ତି ଦେବୀ କାତ୍ୟାୟନୀ ।
ବ୍ରହ୍ମାଦି ଦେବତା ଆସି ଦେବୀଙ୍କୁ କହିଲେ
କବଚ ବନ୍ଧନ କର ଅସୁରେ ଅଇଲେ ।
କାତ୍ୟାୟନୀ ବୋଇଲେ ମୁଁ ସାଞ୍ଜୁ ନ ପିନ୍ଧିବି
ଯେ ଆସିବ ତାକୁ ଯମପୁରକୁ ପେଷିବି ।
ସାଞ୍ଜୁ ପିନ୍ଧିବାକୁ ଯହୁଁ ଦେବୀ କଲେ ମନା
ବ୍ରହ୍ମାଆଦି ଦେବଗଣେ ହୋଇ ଏକମନା ।
ଦେବୀଙ୍କର ଅଙ୍ଗ ରକ୍ଷା କରିବା ନିମନ୍ତେ
ବିଷ୍ଣୁ ପଞ୍ଜର ଯେ ସ୍ତୋତ୍ର ପଢ଼ିଲେ ସମସ୍ତେ ।

ସେ ସ୍ତବ ପ୍ରସାଦେ ଦେବୀ ଅଙ୍ଗ ରକ୍ଷା କରି
ଅବଧ ଦାନବଗଣ ପକାଇଲେ ମାରି ।
ସେ ବିଷ୍ଣୁପଞ୍ଜର ପର୍ବେ ଦେଇଥିଲେ ହର
କାତ୍ୟାୟନୀ ତାହାଯୋଗୁଁ ମାଇଲେ ଅସୁର ।
ମହିଷାସୁରକୁ ପାଦେ କଲେକ ନିହତ
ନାରଦଙ୍କ ଆଗରେ ଯେ କହିଲେ ପୁଲସ୍ତ୍ୟ ।
ଏମନ୍ତ ମହିମା ଏହି ବିଷ୍ଣୁ ପଞ୍ଜରର
ଯେତେ ରକ୍ଷା ଦ୍ରବ୍ୟ ଅଛି ଜଗତ ଭିତର ।
ଏ ବିଷ୍ଣୁ ପଞ୍ଜର ଶ୍ରେଷ୍ଠ ତାହାଙ୍କ ଉପରେ
ଶ୍ରୀହରି ବସନ୍ତି ଯାଇଁ ତାର ହୃଦୟରେ ।
କେହି ତାର ବଳହାନି କରି ନ ପାରଇ
ଗୋପୀନାଥ ସେହି ବିଷ୍ଣୁ ପଞ୍ଜର ଘୋଷଇ ।

=+=

## ମହିଷାସୁର ବଧ

କହିଲେ ନାରଦଋଷି ଦେବୀ କାତ୍ୟାୟନୀ
ମହିଷକୁ ବଧକଲେ କିରୂପେ ହେ ମୁନି ।
ଥିଲେ ତାର ବଳ ଯାନ ବାହନ ବହୁତ
ବିସ୍ତାର କରିଣ କହ ତାହା ମୋ ଅଗ୍ରତ ।
ମନରେ ସଂଶୟ ଜାତ ହେଉଛି ମୋହର
ପଦାଘାତେ କେଉଁପରି ମଲା ସେ ଅସୁର ।
ପୁଲସ୍ତ୍ୟ କହିଲେ ମୁନି ଶୁଣ ସାବଧାନେ
କହୁଅଛି ସେହିକଥା ତବ ସନ୍ନିଧାନେ ।
ସେହିକଥା ଗୋଟିଜାଣ ଅତି ପୁରାତନ
ଶୁଣିଲା ଲୋକର କରେ ପାପକୁ ନାଶନ ।
ପୁଣ୍ୟକୁ ଦିଅଇ ପୁଣି ଭୟ ନିବାରଇ
ସେ କଥା ବିସ୍ତାରି ତୁମ୍ଭ ଆଗରେ କହଇ ।
ଦେବ ଯୁଗ ଆଦ୍ୟର ଏ କଥା ଗୋଟି ଜାଣ
ସେହି ମହିଷ ଅସୁର ଦୈତ୍ୟଙ୍କର ରାଣ ।
କ୍ରୋଧଭରେ ରଥ ଗଜ ଅଶ୍ୱକୁ ସାଜିଲା
ଦେବୀଙ୍କର ନିକଟକୁ ଯୁଝିବାକୁ ଗଲା ।
ଏଥୁଅନ୍ତେ ଦେବୀ କରେ ଶରାସନ ଧରି
ଶର ବରଷିଲେ ମେଘ ବରଷିଲା ପରି ।
ଦୈତ୍ୟଗଣ ଧନୁଧରି ବୃଷ୍ଟିକଲେ ବାଣ
ଜଳଦ ପଟଳେ କିବା ସୌଦାମିନୀ ଗଣ ।
ସେହିପ୍ରକାରେ ଯେ ଶୋଭା ପାଇଲା ସେକାଳେ
ହେ ନାରଦ କାହାକୁ ବା ଦେବୀ ଶରଜାଳେ ।
କାହାକୁ ବା ଗଦା ଘାତେ ମୂଷଳ ଆଘାତେ
ସ୍ୱସ୍ଥାନରୁ ପଠାଇଲେ ସମନ ସାକ୍ଷାତେ ।
କାଳସମ ତାହାଙ୍କର ବାହନ କେଶରୀ
କେଶସଟା ସମୂହକୁ କମ୍ପମାନ କରି ।
ଏକାଳେ ମାଇଲା ଦୈତ୍ୟ ଦାନବ ଅନେକ
ଦେବୀଙ୍କର ବଜ୍ରାଘାତେ ପଡ଼ିଲେ କେତେକ ।
ଶକ୍ତିଅସ୍ତ୍ରେ ବିଦାରିତ ହେଲା କାହା ଛାତି
ପରଶୁ ଆଘାତେ ଛିଡ଼ିପଡ଼ିଲା କେ କ୍ଷିତି ।
ଲାଙ୍ଗଳ ମୂନରେ କାହା ଗ୍ରୀବା ଗଲାଫୁଟି
ଦଣ୍ଡରେ ଆଘାତେ କାହା ମୁଣ୍ଡ ଗଲା ଫାଟି ।
ଚକ୍ରେ କେହୁ ଛିଡ଼ିଗଲା କେହି ବା ଭ୍ରମିଲା
କେ ଭୂମିରେ ପଡ଼ିଲା କେ ଉନ୍ମତ୍ତ ହୋଇଲା ।
କେହି ଅବା ଯୁଦ୍ଧ ଛାଡ଼ି ପଳାଇଲେ ଭୟେ
ଦେବୀ ତାଙ୍କୁ ଇତସ୍ତତ କଲେ ବାଣଚୟେ ।
ଘୋରମୁଖ ଦୈତ୍ୟଗଣ ହୋଇ ଏହିପରି
କାତ୍ୟାୟନୀଙ୍କି ଯେ କାଳରାତ୍ରି ମନେ କରି ।
ଏଣେ ତେଣେ ପଳାଇଲେ ମହାଭୟ ପାଇ
କାତ୍ୟାୟନୀ ଅଛନ୍ତି ଯେ ସମ୍ମୁଖରେ ରହି ।
ଏହା ଦେଖି ମହାକ୍ରୋଧେ ନମର ଅସୁର
ମତ୍ତ କରୀବର ଚଢ଼ି ହୋଇଲା ବାହାର ।
ଶକ୍ତି ଅସ୍ତ୍ର ପ୍ରହାରିଲା ଦେବୀଙ୍କ ଉପରେ
ଶୂଳ ପ୍ରହାରିଲା ସିଂହ ଶିରେ କୋପଭରେ ।
ଆସନ୍ତେ ଦେଖିଲେ ତାହା ଦେବୀ କାତ୍ୟାୟନୀ
ହୁଙ୍କାର ଶବଦେ ଭସ୍ମ କଲେ ଅସ୍ତ୍ର ବେନି ।
ମତ୍ତକାରୀ କଲା ସିଂହ କଟି ଆମନ୍ତ୍ରଣ
ଡେଉଁଗଲା ସେ କେଶରୀ ଗର୍ଜନ କରିଣ ।
ଚାପୋଡ଼ା ପ୍ରହାରି କଲା ଦୈତ୍ୟକୁ ନିଧନ
କୁଞ୍ଜରକନ୍ଧରୁ ଢଳି ପଡ଼ିଲା ବହନ ।
ମତ୍ତହସ୍ତୀକି ଯେ ମାରି ସିଂହ ତହୁଁ ଗଲା
ଯୁଦ୍ଧ କଥା ଦେବୀଙ୍କର ଆଗରେ କହିଲା ।
କହନ୍ତି ପୁଲସ୍ତ୍ୟମୁନି ଶୁଣନ୍ତି ନାରଦ
ଦେବୀ କାତ୍ୟାୟନୀ ଯୁଦ୍ଧେ ବହି ମହାକ୍ରୋଧ ।
ବୁଲାଇଲେ ଦଇତକୁ ବାମହସ୍ତେ ଧରି
ପଟହପ୍ରକାର ତହିଁ ବାଦ୍ୟନାଦ କରି ।

ବାଜା ବଜାଇବା କାଳେ କଲେ ଅଟ୍ଟହାସ୍ୟ
ସେ ହାସ୍ୟରୁ ଭୂତଗଣ ହୋଇଲେ ପ୍ରକାଶ ।
କେହି ବ୍ୟାଘ୍ର ମୁଖ କେହି ବୃକର ଆକୃତି
କାହାର ସ୍ୱଭାବ ତହିଁ ଭୟଙ୍କର ଅତି ।
କେହି ଅଶ୍ୱମୁଖ କେହି ମହିଷବଦନ
କେ ବରାହମୁଖ କେହି ମୂଷିକବଦନ ।
ଗୋମୁଖ କେ ଛାଗମୁଖ କେ କୁକୁଟ ମୁଖ
ମେଷମୁଖ କାହାର ବା ନାନାବିଧ ମୁଖ ।
କାହାର ନୟନ ପାଦ ବିବିଧ ପ୍ରକାରେ
ନାନାବିଧ ଆୟୁଧ କେ ଧରିଅଛି କରେ ।
କେ ଗାଉଛି କେ ହସୁଛି କେ କ୍ରୀଡ଼ା କରୁଛି
କେ ସ୍ତୁତି ପଢୁଛି କେହି ବାଦ୍ୟ ବଜାଉଛି ।
ସେ ଭୂତଗଣଙ୍କ ସଙ୍ଗେ ମିଳି କାତ୍ୟାୟନୀ
ବୁଲି ବୁଲି ନାଶ କଲେ ଦାନବ ସଇନି ।
ତୃଣରାଶି ନାଶ କଲେ ଅଶନି ଯେସନ
ସେହିପରି ଦେବୀ କଲେ ଦାନବ ନିଧନ ।
ସେନାପତି ହତ ଦେଖି୍ ଚିକ୍ଷୁର ଅସୁର
ପ୍ରଧାନ ପ୍ରଧାନ ସେନା ଘେନି ସଙ୍ଗତର ।
ଭୂତଗଣ ସହିତରେ ଯୁଦ୍ଧ ଆରମ୍ଭିଲା
ସୁକଠିନ ଶରାସନ ଆକର୍ଷଣ କଲା ।
ମେଘ ଯେହ୍ନେ ପୃଥିବୀରେ ଜଳ ବରଷଇ
ଦେବୀଙ୍କ ଉପରେ ଶରବୃଷ୍ଟି କଲା ସେହି ।
ଦେବୀ ଦିବ୍ୟଶରେ କରି ସେ ଶରଛେଦନ
ଆଉ ଷୋଳଗୋଟି ଶର କଲେକ ଗ୍ରହଣ ।
ତା ମଧ୍ୟରୁ ଚାରିଶରେ ଚାରି ଅଶ୍ୱ ମାରି
ଏକ ଶରେ ବାନବର ସାରଥି୍ ସଂହାରି ।
ଆଉ ଏକ ଶରେ କଲେ ତା ଧ୍ୱଜ ଛେଦନ
କାଟିଲେକ ଏକଶରେ ଦୈତ୍ୟ ଶରାସନ ।
ଧନୁବିନେ ମହାବଳ ଚିକ୍ଷୁର ଅସୁର
ହସ୍ତେ ଖଡ଼୍‌ଗ ଚର୍ମ ଧରି ହୋଇଲା ବାହାର ।
ଦେବୀଙ୍କ ଆଗରେ ସେହି ଖଡ଼୍‌ଗକୁ ଧରି
ଝମକାନ୍ତେ କମ୍ପମାନ ହେଲା ବସୁନ୍ଧରୀ ।
ତାହା ଦେଖି ଦୁର୍ଗାଦେବୀ ଧରି ଚାରିଶର
ପ୍ରହାରି ଖଡ଼୍‌ଗ ତାର କାଟିଲେ ସତ୍ୱର ।
ଚିକ୍ଷୁର ଅସୁର ବେଗେ ଧଇଲାକ ଶୂଳ
ସାକ୍ଷାତେ ସେ ଧଇଲା କି ପ୍ରଚଣ୍ଡ ଅନଳ ।
ସେ ମହାଶୂଳକୁ ଧରି ପ୍ରହାରିଲା ରୋଷେ
ଶୃଗାଳ କି ଯାଉଅଛି ସିଂହବଧୂ ପାଶେ ।
ସେହିରୂପେ ଧାମନ୍ତେ ସେ ଦେବୀଙ୍କ ପାଶକୁ
ଛେଦି ପକାଇଲେ ଦେବୀ ସେ ମହାଶୂଳକୁ ।
ତାହାଦେଖି୍ ମହାକ୍ରୋଧେ ଚିକ୍ଷୁର ଅସୁର
ଦେବୀଙ୍କି ଧରିବ ବୋଲି ମନେ କରି ସ୍ଥିର ।
ଧାଇଁଗଲା ଦେବୀଙ୍କର ନିକଟକୁ ସେହି
ଅନଳକୁ ଦେଖି୍ ଯେହ୍ନେ ପତଙ୍ଗ ଧାମଇ ।
କ୍ରୋଧେ ମହାମାୟା ମାରି ପାଞ୍ଚଗୋଟି ଶର
ଛେଦି ପକାଇଲେ ତାର ପାଦ ଶିର କର ।
ପ୍ରାଣ ତେଜି ଚିକ୍ଷୁରାକ୍ଷ ଭୂମିରେ ପଡ଼ିଲା
ତା ଦେଖି୍ ଉଗ୍ରାସ୍ୟ କୋପେ ଗର୍ଜନ ଛାଡ଼ିଲା ।
ଦେବୀ ସଙ୍ଗେ ଯୁଝିବାକୁ ହେଲା ଅଗ୍ରସର
ମହାବଳବନ୍ତ ସେହି ଉଗ୍ରାସ୍ୟ ଅସୁର ।
ସେନାପତି ପଡ଼ିବାର ଦେଖି କ୍ରୋଧଭରେ
ତାହାକୁ ସହାୟ ହେଲେ ଆସି ପାଞ୍ଚବୀରେ ।
ତାହାଙ୍କର ନାମ ଶୁଣ ହେ ମୁନିପୁଙ୍ଗବ
ଉଗ୍ରଧନୁ ଦୁର୍ଦ୍ଧର ଯେ ଦୁର୍ମୁଖ ଦାନବ ।
ବିଡାଳାକ୍ଷ ବାଷ୍କଳ ଏ ପାଞ୍ଚ ସେନାପତି
ଏହାଙ୍କ ସଙ୍ଗରେ ଦୈତ୍ୟ ବହୁତ ଅଛନ୍ତି ।
ଅସ୍ତ୍ରଶସ୍ତ୍ର ଅଛଇ ଯେ ସମସ୍ତଙ୍କ ହସ୍ତେ
ମହାବଳବନ୍ତ ପୁଣି ଅଟନ୍ତି ସମସ୍ତେ ।
ଦେବୀଙ୍କର ନିକଟରେ ହୋଇଲେ ପ୍ରବେଶ
ଦିଶନ୍ତି ସେ ନିଶାଚରେ ପର୍ବତ ସଦୃଶ ।
ଅସୁରବଳଙ୍କୁ ଦେଖି୍ ଦେବୀ କାତ୍ୟାୟନୀ
ବୀଣା ଆଉ ଡମ୍ବରୁକୁ ହସ୍ତ ପଦ୍ମେ ଘେନି ।
ଆନନ୍ଦରେ ବଜାଇଲେ ଲୀଳାଗତି କରି
ଭୂତଗଣ ନୃତ୍ୟକଲେ ତାନମାନ ଧରି ।
ଯେଉଁରୂପେ ବଜାନ୍ତି ସେ ସେରୂପେ ନାଚନ୍ତି
କରତାଳି ମାରନ୍ତି କେ ହସନ୍ତି ଭାଷନ୍ତି ।
ଅସୁରେ ତାହାଙ୍କ ଆଗେ ମିଳିଗଲେ ଯାଇଁ
ତାହାଙ୍କ ଉପରେ ବାଣ ପ୍ରହାରିଲେ ନେଇ ।
ଅସୁରଙ୍କୁ ଦେଖି୍ ସେହି ପରମ ଈଶ୍ୱରୀ
ଆରୋହଣ କରି ମହାସିଂହର ଉପରି ।
ଅସୁରବଳଙ୍କୁ ଧରି ବାନ୍ଧି ପକାଇଲେ
ଡେଇଁଆସି ପୁଣି ଗିରି ଶିଖରେ ରହିଲେ ।

ବୀଣା ବଜାଇଣ ପୁଣି କଲେ ନୃତ୍ୟ ଗୀତ
ମହାବଳବନ୍ତ ସେହି ଦୁର୍ଦ୍ଧାନ୍ତ ଦଇତ ।
ଦେବୀଙ୍କର ବାହୁଦଣ୍ଡେ ହେଲେ କମ୍ପମାନ
କେହି କେହି ପାଶ ଅସ୍ତ୍ରେ ପଡ଼ିଲେ ବନ୍ଧନ ।
କେହି କେହି ବଳହୀନ ହୋଇଣ ରହିଲେ
କେହି ଶସ୍ତ୍ରହୀନ କେହି ବସ୍ତ୍ରହୀନ ହେଲେ ।
କେହି ପ୍ରାଣ ତ୍ୟାଗ କରି ପଡ଼ିଲେ ଭୂମିରେ
ତାହାଙ୍କର ଏ ଦୁର୍ଦ୍ଦଶା ଦେଖି ନୟନରେ ।
କ୍ରୋଧଭରେ ସେ ପ୍ରତାପୀ ମହିଷ ଅସୁର
ଧଇଲା ମହିଷ ରୂପ ମହାଭୟଙ୍କର ।
ଧାଇଁଲା ସେ ଖୁରୀ ଖାଇ ଦେବୀଙ୍କ ପାଶକୁ
ଖୁରଅଗ୍ରେ ବିଦାରିଲା ସେ ଭୂତଗଣଙ୍କୁ ।
କାହାକୁ ଲାଙ୍ଗୁଡ଼େ ବାନ୍ଧି ଫୋପଡ଼ାଇ ଦେଲା
କା ଦେହକୁ କାମୋଡ଼ିଣ ଛିନ୍ନ ଭିନ୍ନ କଲା ।
କାହାକୁ ବା ନିଜ ତେଜେ ପକାଇଲା ପୋଡ଼ି
କାହାକୁ ନିର୍ଜୀବ କଲା ଛାଡ଼ି ଘୋର ରଡ଼ି ।
କାହାକୁ ନିଃଶ୍ୱାସ ବାତେ ଦେଲାକ ଉଡ଼ାଇ
ଦୁର୍ଗାଙ୍କ ଅଙ୍ଗରୁ ଯେତେ ଦେବୀ ଜାତହୋଇ ।
ଅସୁରମାନଙ୍କ ସଙ୍ଗେ କରୁଥିଲେ ରଣ
ଯାହାଙ୍କ ହସ୍ତରେ ମଲେ କଉଣପଗଣ ।
ସେ ଦେବୀମାନଙ୍କୁ ଏହିରୂପେ ସେ ସଂହାରି
ଏକମାତ୍ର ରହିଲେ ସେ ପରମଈଶ୍ୱରୀ ।
ଦେବତାଏ ତାହା ଦେଖି ହେଲେ ଆଚମ୍ବିତ
ବେଳୁଁ ବେଳ ବଢ଼େ ଦୈତ୍ୟତେଜ ଅପ୍ରମିତ ।
ସିଂହକୁ ଧରିବା ପାଇଁ ଧାଏଁ ଉଦବେଗେ
ଶିଙ୍ଗରେ ଫୋଡ଼ି ପକାଏ ଯେ ପଡଇ ଆଗେ ।
ତାହା ଦେଖି ଅମ୍ବିକା ଯେ ମହାକୋପ କଲେ
ମହିଷ ଅସୁର ଶିରେ ବାଣ ବରଷିଲେ ।
ରୋଷଭର ହୋଇ ସେହି ପ୍ରତାପୀ ଦଇତ
ଶିଙ୍ଗ ଦୁହିଙ୍କି ପ୍ରହାରି ତାଡ଼ିଲା ପର୍ବତ ।
କୋପେ ପୃଥିବୀକି ପୁଣି ତାଡ଼ିଲା ପକାଇ
ସପତସାଗର ତାର ଭୟରେ କମ୍ପଇ ।
ମେଘ ଆକାଶରୁ ଛିଡ଼ି ପଡ଼ିଲେକ ତଳେ
କମ୍ପିଲେ ଆକାଶେ ଥାଇଁ ଦଶଦିଗପାଳେ ।
ତିନିପୁର କମ୍ପାଇ ସେ ପ୍ରତାପୀ ଅସୁର
ଦେବୀଙ୍କ ପାଖକୁ ଗଲା ହୋଇ ଖରତର ।
ଦେବୀ ସେ ଦୁଷ୍ଟକୁ ପାଶ ବସାଇ ବାନ୍ଧିଲେ
କର ଚରଣକୁ ତାର ଛନ୍ଦି ପକାଇଲେ ।
ମହିଷ ରୂପକୁ ଛାଡ଼ି ସେ ଦୁଷ୍ଟ ଅସୁର
ଧଇଲାକ ତତକ୍ଷଣେ ଭିନ୍ନ କଳେବର ।
ମତ୍ତଗଜରାଜରୂପେ ଧରିଣ ଧାଇଁଲା
ସିଂହ ଅଙ୍ଗେ ଭୟଙ୍କର ଦନ୍ତ ପ୍ରହାରିଲା ।
ବାଣେ କାଟି ପକାଇଲେ ଦେବୀ ତାର ଶିର
ମହିଷରୂପକୁ ପୁଣି ଧଇଲା ଅସୁର ।
କୋପେ ଶୂଳ ପ୍ରହାରିଲେ ଦେବୀ ତା ଉପରେ
ତିଳେମାତ୍ର ନ ଭେଦିଲା ଅସୁର ଅଙ୍ଗରେ ।
ଉପୁଡ଼ି ପଡ଼ିଲା ଶୂଳ ପୃଥିବୀରେ ଆସି
ପୁଲସ୍ତ୍ୟ କହନ୍ତି ଶୁଣ ହେ ନାରଦ ଋଷି ।
ତାହାଦେଖି ଦେବୀ ହସ୍ତେ ଧଇଲେ ଶକତି
ପ୍ରଳୟ କାଳର ଅଗ୍ନି ପ୍ରାୟ ତାର ଜ୍ୟୋତି ।
ଅସୁର ଦେହରେ ପଡ଼ି ବାଙ୍କି ଗଲା ମୂନ
ଧରାତଳେ ପଡ଼ିବାର କରି ଦରଶନ ।
ପ୍ରହାରିଲେ କାତ୍ୟାୟନୀ ଦେବୀ ବିଷ୍ଣୁଚକ୍ର
ଦାନବ ଅଙ୍ଗରେ ପଡ଼ି ହୋଇଲା ସେ ବକ୍ର ।
ଶୂଳ ଶକ୍ତି ଚକ୍ର ବ୍ୟର୍ଥ ହେବା ଦେଖି ଦେବୀ
ଧଇଲେ କୁବେର ଦତ୍ତ ଗଦା ମନେ ଭାବି ।
ବୁଲାଇ ପ୍ରହାର କଲେ ଦାନବର ଶିରେ
ଭାଙ୍ଗି ଖଣ୍ଡ ଖଣ୍ଡ ହୋଇ ପଡ଼ିଲା ମହୀରେ ।
କୋପେ ମହା ପ୍ରତାପୀ ସେ ମହିଷ ଅସୁର
ବାର ବାର ପ୍ରହାରିଲା ଶିଙ୍ଗ ଦନ୍ତ ଖୁର ।
ଛିଣ୍ଡାଇ ପକାଇ ଦେଲା ଦେବୀଙ୍କ ପାଖକୁ
କୋପେ ଦେବୀ ଧଇଲେକ ଯମର ଦଣ୍ଡକୁ ।
ମହିଷ ଉପରେ ତାହା କରନ୍ତେ ପ୍ରହାର
ଖଣ୍ଡ ଖଣ୍ଡ ହୋଇ ଭାଙ୍ଗି ପଡ଼ିଲା ଭୂମିର ।
ତାହା ଦେଖି କୋପେ ପୁଣି ଦେବୀକାତ୍ୟାୟନୀ
ହସ୍ତରେ ଧଇଲେ ସୁରରାଜର ଅଶନି ।
ବୁଲାଇ ପ୍ରହାର କଲେ ଦୈତ୍ୟକଳେବରେ
ଉପୁଡ଼ି ପଡ଼ିଲା ବଜ୍ର ଭୂମିର ଉପରେ ।
ତାହାଦେଖି ଦେବୀ ସିଂହ ପୃଷ୍ଠରୁ ଉତୁରି
ଚଢ଼ି ବସିଲେ ମହିଷ ପିଠିର ଉପରି ।
ପିଠିରେ ବସନ୍ତେ ଦେବୀ ସେ ଦୁଷ୍ଟ ଦାନବ
ପୁନଃ ପୁନଃ ଡେଇଁଲାକ ବହି ମନେ ଗର୍ବ ।

ତିନିପୁର ଭ୍ରମିଲା ସେ ଦୈତ୍ୟ ମହାବଳୀ
ଭୟେ କମ୍ପମାନ ହେଲେ ଦେବ ଅଂଶୁମାଳୀ ।
କମ୍ପିଲା ବ୍ରହ୍ମାଣ୍ଡ ସେହି ମହିଷର ତେଜେ
ସର୍ଗେ ରହି ନ ପାରିଲେ ଦେବେ ଦେବରାଜେ ।
ସେହି ଦାନବର ଦେହ ପବନ ଯେ ଲାଗି
ବଡ଼ ବଡ଼ ତରୁବରେ ପଡ଼ିଲେକ ଭାଙ୍ଗି ।
ଶଇଳମାନଙ୍କ ଶୃଙ୍ଗ ଝଡ଼ି ତଳେ ପଡ଼ି
ପୁଣି ସେ ପବନ ଘାତେ ଉର୍ଦ୍ଧ୍ୱେଗଲା ଉଡ଼ି ।
ସପତ ଦ୍ୱୀପ ସହିତ କମ୍ପିଲା ସାଗର
କୂଳ ଲଘି ଉପରକୁ ଉଠିଲାକ ନୀର ।
ଉଠିଲା ପର୍ବତ ସମ ବିଷମ ଲହରୀ
ଗର୍ଜିଲା ପ୍ରଳୟ ଘନ ଗରଜନ ପରି ।
ଆଶ୍ରା ଖୋଜିଲେ ରହିବା ପାଇଁ ଜଳଚରେ
ବସିଅଛନ୍ତି ଯେ ଦେବୀ ମହିଷ ଉପରେ ।
କାଳାନ୍ତକ ଯମ ପ୍ରାୟ ତେଜେ ବିରାଜନ୍ତି
ରଖ ରଖ ବୋଲି ଉଚ୍ଚେ ଦେବେ ଡାକ ଦ୍ୟନ୍ତି ।
ଦେଖ ଏବେ ନାଶ ଗଲା ଚଉଦ ଭୁବନ
ବେଗେ କର ସେ ପ୍ରତାପୀ ଦଇତ ନିଧନ ।
ଦେବଙ୍କ ଆତଙ୍କ ବାଣୀ ଶୁଣି କାତ୍ୟାୟନୀ
ମାଇଲେ ଅସୁର ତଳି ପଟେ ପାଦ ବେନି ।
ଛିନ୍ନ ଅଜିନକୁ ଯେହ୍ନେ କରନ୍ତି ମର୍ଦ୍ଦନ
ମୃଦୁପାଦେ ମର୍ଦ୍ଦିଲେ ସେ ଦୈତ୍ୟକୁ ତେସନ ।
ପର୍ବତ ସମାନ ସେହି ମହିଷ ଅସୁର
ପୃଥ୍ୱୀ ଅନ୍ତରୀକ୍ଷ ଭ୍ରମି ଭ୍ରମି ନିରନ୍ତର ।
ଦେବୀଙ୍କର ଚରଣର ଆଘାତକୁ ପାଇ
ପଡ଼ିଲା ସେ ମହାବଳୀ ବଳହୀନ ହୋଇ ।
ତାହା ଦେଖି ଦେବୀ ଶୂଳ ମାଇଲେ ତା କଣ୍ଠେ
ଫୁଟି ଯାଇ ନିକିଳିଲା ମହିଷର ପୃଷ୍ଠେ ।
ସେ ଶୂଳେ ବିଦୀର୍ଣ୍ଣ ଯହୁଁ ହୋଇଲାକ ସେହି
ପୁରୁଷେକ ବାହାରିଲା ସେହି ବାଟ ଦେଇ ।
ହସ୍ତରେ ଖଡ଼ଗ ତାର ମହାଭୟଙ୍କର
ଦିଶଇ ସେ କାଳାନ୍ତକ ଯମ ପରକାର ।
ବିକଟାଳ ମୁଖନେତ୍ର ରଙ୍ଗବର୍ଣ୍ଣ ଦିଶେ
ଚଉଦ ବ୍ରହ୍ମାଣ୍ଡ ତେଜେ ବିନାଶିବ କି ସେ ।
ମହାଭୟଙ୍କର ସେହି ପୁରୁଷକୁ ଦେଖି
ଭୟେ ପଳାଇଲେ ଦେବେ ଆକାଶ ଉପେକ୍ଷି ।
ଅସୁରର ତେଜ ବିକଶିଲା ତ୍ରିଭୁବନେ
ନିସ୍ତେଜା ହୋଇଲେ ଚନ୍ଦ୍ରସୂର୍ଯ୍ୟ ଗ୍ରହଗଣେ ।
ଭୟେ କମ୍ପମାନ ହେଲା ଚରାଚର ମହୀ
ଡାକଦେଲେ ଦେବଗଣେ ସ୍ୱର୍ଗପୁରେ ରହି ।
ମାଗୋ ଭଗବତୀ ରଖ ତ୍ରିଭୁବନ ପ୍ରାଣୀ
ଅସୁର ତେଜରେ ଜଳିଯିବେ ଏହିକ୍ଷଣି ।
ପ୍ରଳୟ କାଳ ଯେ ହେଲା ଅକାଳରେ ଆସି
କଳ କଳ ହୋଇ ଉଠେ ମହାଜଳରାଶି ।
ଦେବଙ୍କ ଆତଙ୍କ ବାଣୀ ଶୁଣି ଠାକୁରାଣୀ
ବାମକରେ ତା କେଶକୁ ଧଇଲେକ ଟାଣି ।
ଦକ୍ଷିଣ ହସ୍ତରେ ଦେବୀ ଖଡ଼ଗକୁ ଧରି
ବେକଠାରୁ କାଟିଲେକ ବେନିଖଣ୍ଡ କରି ।
ଫୋପାଡ଼ି ଦେଲେ ସେ ମୁଣ୍ଡ ପଡ଼ିଲା ଭୂମିରେ
ହାହାକାର ପଡ଼ିଗଲା ଦୈତ୍ୟଙ୍କ ମଧ୍ୟରେ ।
ଚଣ୍ଡମୁଣ୍ଡ ମୟତାର ଅସିଲୋମା ଆଦି
ଯେତେକ ଦାନବ ଗଣ ଥିଲେ ପ୍ରତିବାଦୀ ।
ଭୟରେ କାତର ହୋଇ ତହୁଁ ପଳାଇଲେ
ପାତାଳ ପୁରରେ ଲୁଚି ପ୍ରାଣ ରକ୍ଷା କଲେ ।
ଦେବୀଙ୍କର ଜୟ ହେବା ଦେଖି ଆହେ ଋଷି
କର ଯୋଡ଼ି ସ୍ତୁତିକଲେ ସ୍ୱର୍ଗପୁର ବାସୀ ।
ଜୟ ନାରାୟଣୀ ବିଶ୍ୱସ୍ଥିତି ବିଧାୟିନୀ
ବିକଟ ବଦନା ମାଗୋ ଦେବୀ କାତ୍ୟାୟନୀ ।
ଜଗତ ରଖିଲୁ ଦେଲୁ ଆମ୍ଭଙ୍କୁ ଅଭୟ
ଏମନ୍ତେ ଅନେକ ସ୍ତବ କଲେ ସୁରଚୟ ।
ପ୍ରସନ୍ନେ ବୋଇଲେ ଦେବୀ ଶୁଣ ଦେବଗଣ
ଯେବେ କି ଅସୁରେ ଦେବେ ତୁମ୍ଭଙ୍କୁ କଷଣ ।
ପୁନରପି ଏହିରୂପେ ମୁହିଁ ଅବତରି
ତୁମ୍ଭଙ୍କୁ ଅଭୟ ଦେବି ଅସୁର ସଂହାରି ।
ଏହା କହି ଦେବୀ ତହୁଁ ଚଳିଲେ ତ୍ୱରିତ
ମହେଶ୍ୱର ପାଦମୂଳେ ହେଲେ ଅନ୍ତର୍ହିତ ।
ସ୍ୱର୍ଗଭୁବନକୁ ତହୁଁ ଚଳିଲେ ଦେବତା
ଦୀନ ଗୋପୀନାଥକୁ ଗୋ ରଖ ଆଦମାତା ।

=+=

## ତପତୀ ପରିଣୟ

ନାରଦ କହିଲେ ଆହେ ବ୍ରହ୍ମର୍ଷି - ପୁଙ୍ଗବ
କେମନ୍ତେ ସେ ଦେବୀ ପୁଣି ହୋଇଲେ ଉଦ୍ଭବ ।
ମୋ ଆଗେ କହନ୍ତୁ ତାହା କରିଣ ବିସ୍ତାର
ଶୁଣିବାକୁ କୁତୁହଳ ଜାତ ହୁଏ ମୋର ।
ବୋଇଲେ ପୁଲସ୍ତ୍ୟ ଋଷି ଆହେ ତପଚାରୀ
ଯାହା ପଚାରିଲ ଶୁଣ କହିବା ବିସ୍ତାରି ।
ଶୁମ୍ଭାସୁର ବଧ ଆଉ ଲୋକହିତ ପାଇଁ
ପୁନରପି ଅବତାର ହେଲେ ମହାମାଈ ।
ଆହେ ତପୋଧନ ଦେବଦେବ ମହେଶ୍ୱର
ଯେଉଁ ହିମାଳୟସୁତା ଭାରିଯା ତାଙ୍କର ।
ସେହି ଉମାଦେବୀଙ୍କର କୋଶୁଁ ସେ ଜନମ
ତେଣୁ ତାହାଙ୍କର ହେଲା କୌଶିକୀ ଯେ ନାମ ।
ଆପଣା ଅଙ୍ଗରୁ ଜାତ କରି ଦେବୀଗଣ
ତାଙ୍କୁ ଘେନି କଲେ ବିନ୍ଧ୍ୟ ପର୍ବତେ ଗମନ ।
ମହାଭୟଙ୍କର ଦିବ୍ୟ ଆୟୁଧ ପ୍ରହାରି
ଶୁମ୍ଭ ନିଶୁମ୍ଭକୁ ରଣେ ପକାଇଲେ ମାରି ।
ନାରଦ କହିଲେ ଯାହା କହିଲେ ଆପଣ
କେମନ୍ତେ ସେ ଦକ୍ଷସୁତା ତ୍ୟାଗ କଲା ପ୍ରାଣ ।
ହିମାଳୟସୁତା ହେଲେ କେମନ୍ତେ ସେ ସତୀ
ସେ ପାର୍ବତୀ କୋଶୁଁ କେହ୍ନେ କୌଶିକୀଉତ୍ପତ୍ତି ।
କି ରୂପେ କଲେ ସେ ଶୁମ୍ଭ ନିଶୁମ୍ଭକୁ ହତ
ବିସ୍ତାରିଣ ମୋ ଅଗ୍ରତେ କହ ତପୋବନ୍ତ ।
ଶୁମ୍ଭ ନିଶୁମ୍ଭକୁ ଦୁଇବୀର ଶିରୋମଣି
କାହାସୁତ କେହ୍ନେ ହେଲେ ସେ ଦୈତ୍ୟଅଗ୍ରଣି ।
ଏ ସମସ୍ତ ଶୁଣିବାକୁ ଇଚ୍ଛା ହୁଏ ମୋର
ଅନୁଗ୍ରହ କରି କହ କରିଣ ବିସ୍ତାର ।
ଶୁଣିଲି ମୁଁ ଦେବୀଙ୍କର ଅପୂର୍ବ ଚରିତ
ଆଗେ କହ ପାର୍ବତୀଙ୍କ ଜନମ ବୃତ୍ତାନ୍ତ ।
ପୁଲସ୍ତ୍ୟ କହିଲେ ମୁନି ମୋ ଜନ୍ମ ସୁଫଳ
ପାର୍ବତୀଙ୍କ ଜନ୍ମକଥା ପରମ ମଙ୍ଗଳ ।
ତାହା ମୁଁ କହିବି ଯେଣୁ ତୁମ୍ଭର ଅଗ୍ରତେ
ଏଥିରୁ ଅଧିକ ପୁଣ୍ୟ ଅଛି କି ଜଗତେ ।
ମନ ଦେଇ ଶୁଣ ଆଗ ସ୍କନ୍ଧ ଉତପତ୍ତି
ଯେ କାଳରେ ଦେହ ତ୍ୟାଗ କଲେ ଦେବୀସତୀ ।
ରୁଦ୍ରବ୍ରହ୍ମ ଚାରିବ୍ରତ କଲେକ ନିରାଶେ
ତପ ଆଚରିଲେ ରହି ଘୋରବନ ଦେଶେ ।
ଦେବ ସେନାପତି ଥିଲେ ସେହି ଦେବ ହର
ଦଇତ୍ୟମାନଙ୍କୁ ବଳେ କରନ୍ତି ସଂହାର ।
ସେନାପତି ପଣକୁ ସେ ଛାଡ଼ିଲେକ ଯହୁଁ
ଦେବଗଣ ହୀନବୀର୍ଯ୍ୟ ହୋଇଲେ ଯେ ତହୁଁ ।
ନିଶୁମ୍ଭ ନାମେ ଯେ ଥିଲା ଦନୁଜ ରାଜନ
ଯୁଦ୍ଧରେ ଜିଣିଲା ସେହି ସହସ୍ର ଲୋଚନ ।
ଦେବତାଙ୍କୁ ଜୟକଲା ବିକ୍ରମ ପ୍ରକାଶି
ତାର ଭୟେ ଇତସ୍ତତ ହେଲେ ସ୍ୱର୍ଗବାସୀ ।
ଭୟେ ତହୁଁ କଲେ ଶ୍ୱେତଦ୍ୱୀପକୁ ଗମନ
ଯହୁଁ ବିଜେ କରିଛନ୍ତି ଦେବ ଭଗବାନ ।
ଶଙ୍ଖଚକ୍ର ଗଦାଧର ସେ ସୁର ଈଶ୍ୱର
ତାହାଙ୍କ ପାଦକୁ ଆଶ୍ରା କଲେକ ଅମର ।
ପୁରୁଷ ଉତ୍ତମ ହରି ଦେଖି ଦେବଗଣ
ହସି କହିଲେକ ମେଘ ଗମ୍ଭୀର ବଚନ ।
ଦୁରାତ୍ମା ଦନୁଜରାଜା ନିଶୁମ୍ଭ କି ରଣେ
ତୁମ୍ଭଙ୍କୁ ଜିଣିଲା ତୁମ୍ଭେମାନେ ସେ କାରଣେ ।
ମୋ ପାଖକୁ ଆସିଅଛ ଜଣାଇବା ପାଇଁ
ତହିଁର ଉପାୟ ଏବେ ଶୁଣ ମନଦେଇ ।
ଅଗ୍ନିଷ୍ୱାତ୍ତା ଆଦି ନାମେ ଏହି ପିତୃଗଣ
ଏହାଙ୍କର ମେନା ନାମେ କନ୍ୟାଅଛି ଜାଣ ।
ଅମାବାସ୍ୟା ତିଥିରେ ଯେ ଦେବଗଣ ଯାଇ
ତାଙ୍କୁ ଆରାଧନା କର ଶ୍ରଦ୍ଧାନ୍ୱିତ ହୋଇ ।
ତୁମ୍ଭ ପ୍ରାର୍ଥନାରେ ସତୀ ହୋଇବ ପ୍ରସନ୍ନ
ଦକ୍ଷଯଜ୍ଞେ ତେଜିଛନ୍ତି ରୋଷେ ସେ ଜୀବନ ।
ସେହି ରୂପବତୀ ସତୀ ଦେବୀ ଆସି ଦେବେ
ମହାସତୀ ମେନାଦେବୀ ଗର୍ଭରେ ରହିବେ ।
କରିବେ ଶଙ୍କରଅଂଶେ ପୁତ୍ରେକ ପ୍ରଦାନ
ସେନାପତି ପଦେ ତାଙ୍କୁ କରିବ ବରଣ ।
ଦେବ ସୈନ୍ୟଘେନି ସେହି ମାରିବେ ଅସୁର
ଏହି ଉପାୟରେ ହେବ ନିଶୁମ୍ଭ ସଂହାର ।
ବିଳମ୍ବ ନ କର ବେଗେ ଯାଅ ଏଥୁଁ ସୁରେ
କୁରିକ୍ଷେତ୍ର ନାମରେ ଯେ ଖ୍ୟାତ କ୍ଷେତ୍ରବରେ ।
ପରମ ପବିତ୍ର ସ୍ଥାନ ଦିଏ ମହାଫଳ
ସେ ସ୍ଥାନକୁ ଗଲେ ହେବ ତୁମ୍ଭର ମଙ୍ଗଳ ।

ସେ ତୀର୍ଥର ନାମ ଅଟେ ପୃଥଦକ ଜାଣ
ତହିଁ ଯାଇ ଉପାସନା କର ପିତୃଗଣ ।
ବାସୁଦେବ କଥା ଶୁଣି ଅମର ନିକର
କୃତାଞ୍ଜଳିପୁଟେ ତାଙ୍କୁ ବୋଇଲେ ଏ ଗୀର ।
କିରୂପ ଅଟଇ ସେହି କୁରୁକ୍ଷେତ୍ର ହରି
ପୁଣ୍ୟତୀର୍ଥ ପୃଥୁଦକ ପ୍ରତିଷ୍ଠା କିପରି ।
ତିଥିମଧ୍ୟେ ମହାପୁଣ୍ୟ ତିଥି ବା କେମନ୍ତେ
ଅମାବାସ୍ୟା ହୋଇଲା ହେ ସିନ୍ଧୁ ସୁତାପତେ ।
ଯହିଁରେ କି ପିତୃଗଣେ ପୟୋଦାନ କରି
ଆରାଧନା କରିବୁଁ ତା କହନ୍ତୁ ବିସ୍ତାରି ।
କଇଟଭ ନିସୂଦନ ମୁରାରି ଅଚ୍ୟୁତ
କହିଲେକ କୁରୁକ୍ଷେତ୍ର ଚରମ ବୃତ୍ତାନ୍ତ ।
ସତ୍ୟଯୁଗ ଆଦ୍ୟେ ଥିଲା ଏକଇ ରାଜନ
ସୋମବଂଶରେ ସେ ହୋଇଥିଲା ଉତପନ୍ନ ।
ମହାବଳଶାଳୀ ଋକ୍ଷ ନାମ ଅଟେ ତାର
ତା ବୀର୍ଯ୍ୟେ ଜନମ ହେଲା ସମ୍ବରଣ ବୀର ।
ବାଲ୍ୟକାଳେ ଋକ୍ଷରାଜ ରାଜ୍ୟ ଦେଲା ତାଙ୍କୁ
ଧର୍ମେ ରହି ସମ୍ବରଣ ଭଜିଲା ଆମ୍ଭଙ୍କୁ ।
ବରୁଣର ନନ୍ଦନ ଯେ ମହର୍ଷି ବଶିଷ୍ଠ
ପୁରୋହିତ ହେଲେ ତାର ସେହି ତପୋନିଷ୍ଠ ।
ସେ ବଶିଷ୍ଠ ଋଷିଙ୍କର ବୁଦ୍ଧି ଯେ ଉଦାର
ତାଙ୍କଠାରୁ ବେଦଶିକ୍ଷା କଲେ ନୃପବର ।
ଚାରିବେଦ ପଢ଼ାଇଲେ ସେ ମୁନି ତାହାଙ୍କୁ
ପ୍ରତିପଦା ତିଥିରେ ସେ ବଶିଷ୍ଠ ମୁନିଙ୍କୁ ।
ସମସ୍ତ ରାଜ୍ୟର ଭାର ଦେଇଗଲେ ବନେ
ଏକା ଦିବ୍ୟ ଅଶ୍ୱ ଚଢ଼ି ମୃଗୟା କାରଣେ ।
କାନନ ମଧ୍ୟରେ ମୃଗ ଖୋଜି ଖୋଜି ଗଲେ
ବଇଭ୍ରାଜ ଅରଣ୍ୟରେ ପ୍ରବେଶ ହୋଇଲେ ।
ଷଡ଼ଋତୁର ଯେ ପୁଷ୍ପ ଅଛି ସେହି ବନେ
ତାହାର ସୁଗନ୍ଧ ପାଇ ଆନନ୍ଦିତ ମନେ ।
କଉତୁକେ କଲେ ସେହି କାନନ ଭ୍ରମଣ
ପ୍ରଫୁଲ୍ଲିତ କୋକନଦ କଲେ ଦରଶନ ।
ଆବର ଦେଖିଲେ ବିକଶିତ ଇନ୍ଦୀବର
କମଳ କୁମୁଦ ପଦ୍ମ ବହୁତ କହ୍ଲାର ।
ଦେବକନ୍ୟା ଅପସରା କ୍ରୀଡ଼ା କରୁଛନ୍ତି
ତା ମଧ୍ୟରେ ଅଛି ଏକ କନ୍ୟା ରୂପବତୀ ।
ତାହାର ସୁନ୍ଦର ରୂପ ଦେଖିଣ ରାଜନ
ମଦନବିଶିଖ ପୀଡ଼ା ପାଇ ହେଲେ ଛନ୍ନ ।
ସେ ସୁନ୍ଦରୀ ନେତ୍ର ରାଜା ଉପରେ ପଡ଼ିଲା
କାମବାଣେ ପୀଡ଼ାପାଇ ମୋହିତ ହୋଇଲା ।
ଏ ରୂପେ ସେ ଦୁହେଁ କାମବାଣେ ପୀଡ଼ା ପାଇ
ଘୋଟକ ପିଠିରୁ ଉତୁରିଲେ ନରସାଇଁ ।
କ୍ଷଣକାଳ ଧରାତଳେ ରହି ନୃପବର
ମୂର୍ଚ୍ଛିତ ହୋଇ ପଡ଼ିଲେ ଭୂମିର ଉପର ।
ତାହା ଦେଖି କାମରୂପୀ ଗନ୍ଧର୍ବେ ଆସିଲେ
ସୁଶୀତଳ ଜଳ ନୃପ ଉପରେ ସିଞ୍ଚିଲେ ।
ଚେତନା ପାଇଲେ କ୍ଷଣକାଳେ ସେହି ରାଜା
କାମେମୁଗ୍ଧା ହୋଇ କନ୍ୟା ତ୍ୟାଗକଲା ଲଜ୍ଜା ।
ସେହି ରୂପବତୀ ନାମ ଅଟଇ ତପତୀ
ଅପସରାଗଣ ବଳେ ଧରି ଘେନିଯାନ୍ତି ।
ରଖିଲେ ତାହାକୁ ନେଇ ତାର ବାପଘରେ
ଶୀତଳ ସଲିଳ ଆଣି ସିଞ୍ଚିଲେ ଉପରେ ।
ମେରୁଶିଖେ କାମାଚାରୀ ଅମର ପରାୟ
ଅଶ୍ୱ ଚଢ଼ି ନିଜପୁରେ ଗଲେ ନରରାୟ ।
ତପତୀ ରୂପକୁ ଚିନ୍ତା କରି ନିରନ୍ତର
ତ୍ୟାଗକଲେ ରାତ୍ରି ନିଦ୍ରା ଦିବସ ଆହାର ।
ଧୀରଚେତା ତପୋନିଧି ସର୍ବଜ୍ଞ ବଶିଷ୍ଠେ
ତପତୀ ତାପିତ ଦେଖି ସେହି ବୀର ଶ୍ରେଷ୍ଠେ ।
ଯୋଗବଳେ ତହୁଁ ଉଠିଗଲେ ଗଗନରେ
ସୂର୍ଯ୍ୟାଲୋକେ ଭାସ୍କରଙ୍କୁ ଦେଖିଲେ ରଥରେ ।
ସୂର୍ଯ୍ୟଙ୍କ ମୁଖକୁ ଚାହିଁ କଲେ ନମସ୍କାର
ପ୍ରତି ନମସ୍କାର କଲେ ତାହାଙ୍କୁ ଭାସ୍କର ।
ସୂର୍ଯ୍ୟ ପ୍ରଜାପତି ପ୍ରାୟ ଦିଶିଲେ ସେ ବେନି
ବଶିଷ୍ଠଙ୍କୁ ପୂଜା କଲେ ସୂର୍ଯ୍ୟ ଅର୍ଘ୍ୟ ଘେନି ।
ପଚାରିଲେ କି ନିମନ୍ତେ ଆସିଲ ଆପଣ
ବୋଇଲେକ ସେ ବଶିଷ୍ଠ ମୁନି ତପୋଧନ ।
ଆହେ ଦେବଦେବ ପ୍ରଭୁ ମହାତେଜୋବନ୍ତ
ସମ୍ବରଣ ନାମେ ରାଜା ଚନ୍ଦ୍ରବଂଶେ ଜାତ ।
ସୁନ୍ଦର ଧାର୍ମିକ ଆଉ ଗୁଣବନ୍ତ ପଣେ
ତାହାର ସମାନ ରବିତଳେ ନାହିଁ ଜଣେ ।
ତୁମ୍ଭଙ୍କୁ ଅଜଣା ନାହିଁ ତାହାଙ୍କ ଚରିତ୍ର
ତାହାର ସ୍ୱଭାବ ଗୋଟି ପରମ ପବିତ୍ର ।

ତା ନିମନ୍ତେ ଆସିଅଛି ତୁମ୍ଭ ନିକଟକୁ
ତୁମ୍ଭର ଦୁହିତା ତପତୀକୁ ମାଗିବାକୁ ।
ସେ କନ୍ୟା ତାହାଙ୍କୁ ତୁମ୍ଭେ କରିବ ପ୍ରଦାନ
ବଶିଷ୍ଠଙ୍କ ମୁଖୁ ସୂର୍ଯ୍ୟ ଶୁଣି ଏ ବଚନ ।
ତତକ୍ଷଣେ ସ୍ୱଗୃହରୁ ଦୁହିତାକୁ ଆଣି
ବଶିଷ୍ଠଙ୍କୁ ସମର୍ପିଲେ ପ୍ରଭୁ ଦିନମଣି ।
କନ୍ୟାରତ୍ନ ଘେନି ମୁନି ମିଳିଲେ ଆଶ୍ରମେ
ତପତୀ ବୋଇଲେ କରଯୋଡ଼ ତପୋଧନେ ।
ଆହେ ମୁନି ମୁହିଁ ଦିନେ ଅପସରା ସଙ୍ଗେ
ଅରଣ୍ୟ ମଧ୍ୟରେ କ୍ରୀଡ଼ା କରୁଥିଲି ରଙ୍ଗେ ।
ଦେବପୁତ୍ର ତୁଲ୍ୟ ରାଜପୁତ୍ରକୁ ଦେଖିଲି
ଦିବା ରାତ୍ର ତାକୁ ଚିନ୍ତି ଦେହ କ୍ଷୀଣ କଲି ।
ତାହାର ଲକ୍ଷଣ ମୁନି କହୁଛି ହେ ଶୁଣ
ଚକ୍ର ଗଦା ଖଡ୍‌ଗ ଚିହ୍ନେ ଲାଞ୍ଛିତ ଚରଣ ।
ପରମ ସୁନ୍ଦର ମୁନି ସେହି ପାଦ ଦୁଇ
ଉରୁ ଜଙ୍ଘା କରୀବର ସଦୃଶ ଅଟଇ ।
କେଶରୀ ସମାନ କଟୀ ମଧ୍ୟଦେଶ କୃଶ
ତ୍ରିବଳି ତରଙ୍ଗେ ଅଳଂକୃତ ସେ ବିଶେଷ ।
ଗ୍ରୀବାଦେଶ ତାହାଙ୍କର ଶଙ୍ଖର ଆକୃତି
ଭୁଜ ଦୁଇ ଦୀର୍ଘ ପୀନ କଠିନ ଯେ ଅତି ।
ତାର କରତଳ ପଦ୍ମଦଳରେ ଅଙ୍କିତ
ଛତ୍ରାକାର ମସ୍ତକ ଯେ ଶୋଭନ ଅତ୍ୟନ୍ତ ।
କୁଟିଳ ସୁନୀଳବର୍ଣ୍ଣ ତା କେଶକଳାପ
ଭ୍ରୁଲତା ଯୁଗଳ ତାର କନ୍ଦର୍ପର ଚାପ ।
ନାସିକା ସୁଷମ ଶ୍ରୁତି ଯୁଗଳ ସୁନ୍ଦର
ଦନ୍ତପନ୍ତୀ ଅତି କ୍ଷୁଦ୍ର ସୁଷମ ଆବର ।
ହସ୍ତ ପଦ ଅଙ୍ଗୁଳିର ପବ ପାଏ ଶୋଭା
ଚଉଦିଗେ ବିକାଶଇ ତାର ତେଜପ୍ରଭା ।
ଔଦାର୍ଯ୍ୟ ଗାମ୍ଭୀର୍ଯ୍ୟ ଆଦି ଗୁଣେ ସେ ଭୂଷିତ
ଷଡୁନ୍ନତ ତ୍ରିଗଭୀର ତ୍ରି ପ୍ରଳମ୍ବ ଯୁକ୍ତ ।
ଚତୁଃକୃଷ୍ଣ ତ୍ରି ଆନତ ଦ୍ୱି ଶୁକ୍ଳ ଆବର
ସୁରଭ ଚତୁଷ୍କ ପଦ ପଦ୍ମରେ ସୁନ୍ଦର ।
ଆହେ ଦେବ ସେହି ରାଜକୁମାରକୁ ମୁହିଁ
ପରମ ସୁନ୍ଦର ଏହାଠାରୁ କେହି ନାହିଁ ।
ଏମନ୍ତ ବିଚାରି କଲି ପତିତ୍ୱେ ବରଣ
ଏଣୁ ସଦା ତାଙ୍କ ରୂପ କରଇ ସ୍ମରଣ ।

ପ୍ରାର୍ଥନା ଏତିକି ମୋର ଆହେ ମୁନିବର
ସେ ରାଜପୁତ୍ରର ହସ୍ତେ ମୋତେ ଦାନକର ।
କୋଟି କାମ ସମ ସେହି କୁମାର ମୋ ଧନ
ତାଙ୍କ ବିନା ଅନ୍ୟ ପାତ୍ରେ ନ କର ପ୍ରଦାନ ।
ସାଧୁଜନେ କହିଛନ୍ତି ପୂର୍ବରୁ ଏମନ୍ତ
ଯାହାର ପ୍ରତି ଯେ ଜନ ଥାଏ ଅନୁରକ୍ତ ।
ସମର୍ପିବ ସେ ପୁରୁଷ ହସ୍ତେ ସେହି ନାରୀ
ଆପଣ ତ ଜ୍ଞାନବନ୍ତ ମୁନି ତପଚାରୀ ।
ଆପଣଙ୍କୁ କି କହିବି ମୁହିଁ ତ ଅବଳା
ଅନ୍ୟଥା ହେଲେ ତ ବ୍ୟଭିଚାରିଣୀ ସେ ବାଳା ।
ସୂର୍ଯ୍ୟସୁତା ତପତୀର ଶୁଣି ଏ ବଚନ
କିଛିକ୍ଷଣଚିନ୍ତାକଲେ ବସି ତପୋଧନ ।
ନୃପତିର ମନକଥା ଜାଣେ ଭଲକରି
ଏ କନ୍ୟଠାରେ ତା ଚିତ୍ତ ଥାଏ ଯେଉଁପରି ।
ତହିଁରୁ ଅଧିକ ମନ ଏହାର ତା ଠାରେ
ଏହିପରି ଭାବି ମୁନି କିଛିକ୍ଷଣ ପରେ ।
ଅତି ଆନନ୍ଦିତ ହୋଇ କହିଲେ ଭୋ ପୁତ୍ରୀ
ତୁ ଯାହାକୁ ବାଞ୍ଛାକରୁ ସେହି ନରପତି ।
ତାର ନାମ ସମ୍ବରଣ ସେ ରାଜନନ୍ଦନ
ଯାହାର ସୁନ୍ଦର ରୂପ ହରିଛି ତୋ ମନ ।
ମୋର ଆଶ୍ରମକୁ ସେହି ଆସିବ ଏକ୍ଷଣି
କହୁଁ କହୁଁ ଉପଗତ ହେଲେ ନୃପମଣି ।
ବଶିଷ୍ଠଙ୍କ ପାଦତଳେ ପ୍ରଣମିଲେ ଆସି
ଆସନରେ ବସାଇଲେ ତାହାଙ୍କୁ ତପସ୍ୱୀ ।
ତପତୀ ଉପରେ ତାଙ୍କ ନୟନ ପଡ଼ିଲା
ନିରୀକ୍ଷଣ କରି ରାଜା ମନରେ ଭାଳିଲା ।
ଏହି ପଦ୍ମ ବିଶାଳାକ୍ଷୀ ଲଳନାକୁ ମୁହିଁ
ପୂର୍ବେ ଦେଖିଥିଲା ପରି ସ୍ମରଣ ହୁଅଇ ।
ଏମନ୍ତ ଭାବନା ମନେ କରି କିଛିକ୍ଷଣ
ବଶିଷ୍ଠଙ୍କୁ ପଚାରିଲେ ସେ ଋଷି ନନ୍ଦନ ।
ଏ ସୁନ୍ଦରୀ ବାଳା କିଏ ଆହେ ଦ୍ୱିଜବର
ବଶିଷ୍ଠ କହିଲେ ଶୁଣ ହେ ରାଜକୁମାର ।
ତପନ ଦୁହିତା ଏହା ନାମ ଯେ ତପତୀ
ତୁମ୍ଭପାଇଁ ଆଣିଅଛି ଏହି ରୂପବତୀ ।
ବହୁତ ଯତନେ ମୁହିଁ ସୂର୍ଯ୍ୟଙ୍କୁ ମନାଇ
ଏବେ ଏହାକୁ ଯେ ବିଭା କର ନରସ୍ୱାଇଁ ।

ଆସନରୁ ଉଠ ବେଗେ ବିଳମ୍ବ ନ କର
ସର୍ବାଙ୍ଗ ସୁନ୍ଦରୀ ତୁମ୍ଭେ ସର୍ବାଙ୍ଗ ସୁନ୍ଦର ।
ରାତିଦିନ ତୁମ୍ଭରୂପ ଝୁରୁଛି ଏ ବାଳା
ଏହାର ପାଣିଗ୍ରହଣ କର ରକ୍ଷବାଳା ।
ଆନନ୍ଦିତ ହୋଇ ରାଜା ମୁନିର ବଚନେ
ତପତୀକି ବିଭାହେଲେ ଯେ ବିଧି ବିଧାନେ ।
ତପତୀ ଶୁକ୍ର ସମ ପ୍ରଭାଶାଳୀ ପତି
ପାଇଣ ଆନନ୍ଦଜଳେ ଭାସିଲା ତା ମତି ।
ସେକାଳେ ଦିଶିଲେ ସେହି ଇନ୍ଦ୍ରଶଚୀ ପରି
ଗୋପୀନାଥ କହେଜନେ ବୋଲ ହରିହରି ।

=✢=

## ସରୋବର ମାହାତ୍ମ୍ୟ

କହଂଲେ ସେ ଦେବଦେବ ଜଗତର ପ୍ରତି
ଏଥୁ ଅନନ୍ତରେ ସମ୍ବରଣ ନରପତି ।
ତପତୀର ଗର୍ଭେ ଏକ ପୁତ୍ର କଲେ ଜାତ
ଘୃତ ପ୍ରାପ୍ତ ଅଗ୍ନି ପ୍ରାୟ ହେଲା ସେ ବର୍ଦ୍ଧିତ ।
ଜାତକର୍ମ ଆଦି ତାର ସକଳ ସଂସ୍କାର
ବେଦବିଧି ଅନୁସାରେ କଲେ ନୃପବର ।
କୁରୁ ନାମଦେଲେ ଋଷି ମୁନି ବିପ୍ରେ ବସି
ନବ ବରଷ ତାହାକୁ ହେଲା ଯହୁଁ ଆସି ।
ବଶିଷ୍ଠ ଋଷି ଯେ ମିତ୍ରାବରୁଣର ସୁତ
ତାଙ୍କ ହସ୍ତେ ସମର୍ପଣ କଲେ ନରନାଥ ।
ବେଦଶାସ୍ତ୍ର ଆଦି ପାଠ ପଢ଼ାଇଲେ ସେହି
ନୃପତି ଆନନ୍ଦ ହେଲେ ପୁତ୍ର ମୁଖ ଚାହିଁ ।
ଷୋଡ଼ଶ ବରଷେ ସବୁ ବିଦ୍ୟା ସେ ଶିଖିଲା
ବିଭାଦେବା ପାଇଁ ରାଜା ମନରେ ପାଞ୍ଚିଲା ।
ରୂପଗୁଣେ ସୁନ୍ଦର ସେ କୁମାରକୁ ଦେଖି
ସୁଦାମା ରାଜାର ଝିଅ କଳାକରମୁଖୀ ।
ନାମ ତାର ସୌଦାମିନୀ ସୁନ୍ଦରୀ ସେ ବାଳା
ତାହାକୁ ଯେ ବିଭାହେଲା ସମ୍ବରଣବଳା ।
ବେଦବିଧି ବିଧାନରେ କଲେ ବିଭାଘର
ପୁରନ୍ଦର ଶଚୀପ୍ରାୟ ଦିଶିଲେ ସୁନ୍ଦର ।
ରାଜ୍ୟଭାର ଦେଲେ ତାର ହସ୍ତେ ନରପତି
ପ୍ରଜାଙ୍କୁ ପାଳିଲେ କୁରୁ ହୋଇ ହୃଷ୍ଟମତି ।
କ୍ରମେ ସେହି ନରପାଳ ମହୀପାଳ ହେଲେ
ତହୁଁ ଅଜପାଳ ରାଜପାଳ ବୋଲାଇଲେ ।
ସେହି କୁରୁ କଲେ ପଶୁମାନଙ୍କୁ ପାଳନ
ବୁଦ୍ଧିବାନ ଗୁଣବାନ ହେଲେ ବଳବାନ ।
ସ୍ୱଧର୍ମରେ ରହି କଲେ ଅକ୍ଷୟ କୀରତି
କହୁଛନ୍ତି ଦେବତାଙ୍କ ଆଗେ ଲକ୍ଷ୍ମୀପତି ।
ମହା ବୁଦ୍ଧିମନ୍ତ ସେହି କୁରୁ ନରବର
ଭାଳିଲା ସଂସାରେ ପୁଣ୍ୟ କୀର୍ତ୍ତି ଏକା ସାର ।
ଏମନ୍ତ ବିଚାରି ଦେଶେ ଦେଶେ ସେ ବୁଲିଲା
ଯାଉଁ ଯାଉଁ ଉଦ୍ୱୟିତ ବନରେ ମିଳିଲା ।
ଦେଖି ତାର ମନେ ହେଲା ଆନନ୍ଦ ଉଦୟ
ପ୍ରବେଶିଲା ସେହି ବନମଧ୍ୟେ ନରରାୟ ।
ଦେଖିଲାକ ହରି ଜିହ୍ୱା ସରସ୍ୱତୀ ନଈ
ତାହାର ସଲିଳ ଅତି ପବିତ୍ର ଅଟଇ ।
ବ୍ରହ୍ମାର ନନ୍ଦିନୀ ସେହି ପାପ ବିମୋଚନୀ
ସେ ପ୍ଲକ୍ଷଜା ପୁଣି ସୁଦର୍ଶନର ଜନନୀ ।
ସେ ସ୍ଥାନରେ ଏକହ୍ରଦ କରିଣ ନିର୍ମାଣ
ପ୍ରୀତହେଲେ ସରସ୍ୱତୀ କୂଳେ କରି ସ୍ନାନ ।
ସେଠାବରୁ ପୁନରପି ଗଲେ ପଥ ଦାହି
ବ୍ରହ୍ମାର ଉତ୍ତରବେଦୀ ରହିଅଛି ଯହିଁ ।
ସେ ସ୍ଥାନର ନାମ ଅଟେ ସମସ୍ତ ପଞ୍ଚକ
ସବୁକ୍ଷେତ୍ରଠାରୁ ସେହି କ୍ଷେତ୍ର ଯେ ଅଧିକ ।
ଦୀର୍ଘତାର ପାଞ୍ଚ ଯୂଣ ପ୍ରତି ପାଞ୍ଚଯୂଣ
ଏହାଶୁଣି ଦେବଗଣ ପଚାରିଲେ ପୁଣ ।
ଆହେ ଦେବଦେବ ଆହେ ପୁରୁଷଉତ୍ତମ
କିମ୍ପାଇ ଉତ୍ତରବେଦୀ ହୋଇଲା ତା ନାମ ।
ଆର ବେଦୀ ବ୍ରହ୍ମାଙ୍କର ଥିଲେ କହ ତାହା
ବୋଇଲେକ ଏ ବଚନ ପୁଣି ଚକ୍ରବାହା ।
ବ୍ରହ୍ମାଙ୍କର ପାଞ୍ଚଗୋଟି ବେଦୀ ଯେ ଅଛଇ
ତାହା କହୁଅଛୁଁ ଏବେ ଶୁଣ ମନଦେଇ ।
ସେ ପାଞ୍ଚ ବେଦୀରେ ଯଜ୍ଞ କରିଥିଲେ ହର
ପୂର୍ବବେଦୀ ଅଟଇ ସେ ଗୟା ସୁରଶିର ।
ଅଟଇ ଦକ୍ଷିଣବେଦୀ ବିରଜା ମଣ୍ଡଳ
ସେହି କ୍ଷେତ୍ରବର ଦିଏ ବହୁବିଧ ଫଳ ।
ଯେ ପୁଷ୍କର ତୀର୍ଥତିନି କୁଣ୍ଡେ ଅଳଂକୃତ
ସେ ପଶ୍ଚିମବେଦୀ ନାମେ ହୋଇଛି ବିଖ୍ୟାତ ।

ତହିଁରେ ଯେ ମଧ୍ୟଦେବୀ ପ୍ରୟାଗ ଅଟଇ
ଉତ୍ତରବେଦୀ ସମନ୍ତ ପଞ୍ଚକକୁ କହି ।
ମନରେ ପାଞ୍ଚିଲେ ସେହି କୁରୁ ନରପତି
ଏ ସ୍ଥାନରୁ ମହାକ୍ଷେତ୍ର କରିବି ସମ୍ପ୍ରତି ।
ଏମନ୍ତ ବିଚାରି ବେଗେ ରଥ ତ୍ୟାଗ କରି
ସେହି ମହାବଳଶାଳୀ କୁରୁ ଦଣ୍ଡଧାରୀ ।
ସୁବର୍ଣ୍ଣରେ କରି ଏକ ଲାଙ୍ଗଳ ନିର୍ମାଣ
ଯମବୃକ୍ଷ ଶିବବୃକ୍ଷ ଆଣି ତତକ୍ଷଣ ।
ହଳଯୋଚି ବୁଲାଇ ସେ ଭୂମିକି ଚଷିଲେ
ଏ ସମୟେ ପୁରନ୍ଦର ସେ ସ୍ଥାନେ ମିଳିଲେ ।
ବୋଇଲେ ହେ କୁରୁରାଜ କି ବୀଜ ବୁଣିବ
ଏତେ ପରିଶ୍ରମ କିମ୍ପା କର ନରଦେବ ।
ଶୁଣି ସେହି ରାଜା ସୁରବରଙ୍କୁ କହିଲେ
ଆହେ ଦେବଦେବ ଏହି ଭୂମିକି ଚଷିଲେ ।
ତପଃ ସତ୍ୟ ଦୟା କ୍ଷମା ଶଉଚ ଆବର
ଦାନ ଯୋଗ ବ୍ରହ୍ମଚର୍ଯ୍ୟ ଲାଭ ହେବ ମୋର ।
ପୁରନ୍ଦର ବୋଇଲେକ ଆହେ ନରଦେବ
ଏମାନଙ୍କ ବୀଜ ତୁମେ କାହୁଁ ବା ପାଇବ ।
ବୀଜ ନ ବୁଣିଲେ ଫଳ ନ ଫଳଇ କେବେ
ଉପହାସ କରି ତହୁଁ ଇନ୍ଦ୍ର ଗଲେ ଜବେ ।
ଇନ୍ଦ୍ର ଗଲା ଉତ୍ତାରୁ ସେ କୁରୁ ନରପତି
ଲଙ୍ଗଳରେ ପ୍ରତିଦିନ ଭୂମିକି ଚଷନ୍ତି ।
ଦୀର୍ଘ ପ୍ରତି ସାତକ୍ରୋଶ ଭୂମି କଲେ ଚାଷ
କହୁଛନ୍ତି ଦେବତାଙ୍କ ଆଗେ ହୃଷୀକେଶ ।
ଆହେ ଦେବଗଣ ଆମ୍ଭେ ଗଲେ ସେ ଠାବକୁ
କାହିଁକି ଚଷୁଛ ବୋଲି ପୁଚ୍ଛିଲୁ ତୁମ୍ଭଙ୍କୁ ।
ସେ ବୋଇଲେ ଅଷ୍ଟାଙ୍ଗ ଯେ ଧର୍ମହେବ ଲାଭ
ମୁଁ ବୋଇଲି ବୀଜ ତୁମ୍ଭେ କାହୁଁ ବା ପାଇବ ।
ସେ କହିଲେ ବୀଜ ଅଛି ମୋହର ଦେହରେ
ମୁଁ ବୋଇଲି ବୀଜ କାହିଁ ଦିଅ ମୋର କରେ ।
ମୁହିଁ ବୁଣିଦେବି ତୁମ୍ଭେ ଭୂମି ଚାଷ କର
ଏହା ଶୁଣି ତତକ୍ଷଣେ ସେହି ନୃପବର ।
ଆପଣା ଦକ୍ଷିଣ ହସ୍ତ ଦେଲେକ ବଢ଼ାଇ
କାଟି ପକାଇଲି ଚକ୍ରେ ସେ ଭୁଜକୁ ମୁହିଁ ।
ବଢ଼ାଇଦେଲେ ସେ ନୃପ ବାମଭୁଜ ପୁଣି
ସୁଦର୍ଶନ ଚକ୍ରେ ତାହା ପକାଇଲି ହାଣି ।
ବଢ଼ାଇ ଦେଲେ ସେ ଉରୁ ଦ୍ୱୟକୁ ରାଜନ
ତାହା ମୁହିଁ ମହାଚକ୍ରେ କଲଇଁ ଛେଦନ ।
ତଦୁତ୍ତାରେ ଦେଲେ ସେହି ଶିରକୁ ବଢ଼ାଇ
ମୁଁ ବୋଇଲି ତାହକୁ ସେ ସୁପ୍ରସନ୍ନ ହୋଇ ।
ତୁମ୍ଭଙ୍କୁ ମୁଁ ବରଦେବି ମାଗ ହେ ରାଜନ
ଶୁଣି ସେ ବୋଇଲେ ଆହେ ପ୍ରଭୁ ଜନାର୍ଦ୍ଦନ ।
ଯେତେଦୂର ଯାଏ ଭୂମି ଚଷିଲି ହେ ସ୍ୱାମୀ
ଆପଣଙ୍କ ଧର୍ମକ୍ଷେତ୍ର ହେଉ ସେହି ଭୂମି ।
ଏଥି ଯେ ମରିବ ତାର ମହାପୁଣ୍ୟ ହେବ
ଆହେ ପ୍ରଭୁ ଦେବଦେବ ମାଧବ କେଶବ ।
ଏଥି ଉପବାସ ଦାନ ସ୍ନାନ ଜପ ହୋମ
ଯାଗଯଜ୍ଞ ଆଦି ଯେତେ ଅଛି ଶୁଭକର୍ମ ।
ଯେ କରିବ ସେ ଅକ୍ଷୟ ଫଳକୁ ପାଇବ
କ୍ଷେତ୍ରଙ୍କ ମଧ୍ୟରେ ଶ୍ରେଷ୍ଠକ୍ଷେତ୍ର ବୋଲାଇବ ।
ଆହେ ହୃଷୀକେଶ ଶଙ୍ଖଚକ୍ର ଗଦାଧର
ଅନୁଗ୍ରହ କଲ ଯେବେ ଦିଅ ଏହି ବର ।
ଆହେ ପ୍ରଭୁ ପୁଣ୍ଡରୀକନୟନ ଅଚ୍ୟୁତ
ଆପଣ ଯେ ଦେବଗଣ ଶିବଙ୍କ ସହିତ ।
ସର୍ବଦା ଏ ପୁଣ୍ୟ କ୍ଷେତ୍ରେ ରହିଥିବ ଆସି
ହେଉ ହେଉ କହିଲୁଁ ଯେ ଆମ୍ଭେ ପୁଣି ହସି ।
ଆହେ ରାଜା ଏହାଭିନ୍ନ ତୁମ୍ଭେ ଦେହାନ୍ତରେ
ଦିବ୍ୟଦେହ ପାଇ ଲୀନ ହେବ ମୋ ଶରୀରେ ।
ତୁମ୍ଭର ଏ କୀର୍ତ୍ତି ଚିରକାଳ ରହିଥିବ
ଏଥିରେ ସନ୍ଦେହ ନାହିଁ ଆହେ ନରଦେବ ।
ସହସ୍ର ସହସ୍ର ଯଜ୍ଞ କରିବ ଯେ ତୁମ୍ଭେ
ହବିର୍ଭାଗ ପାଇ ତୋଷ ହେବେ ସର୍ବଦେବେ ।
କହିଲେ ପୁଲସ୍ତ୍ୟ ମୁନି ନାରଦଙ୍କ ଆଗେ
କ୍ଷେତ୍ରରକ୍ଷା ପାଇଁ ବିଷ୍ଣୁ ଆଣି ଅତି ବେଗେ ।
ଚନ୍ଦ୍ର ନାମା ଯକ୍ଷକୁ ଯେ କଲେ କ୍ଷେତ୍ରପାଳ
ବୋଇଲେ ଏଠାରେ ଜଗିଥିବୁ ସଦାବେଳ ।
ଆବର ଯେ ସର୍ପରାଜ ବାସୁକି କି ଡାକି
କହିଲେ ଏ କ୍ଷେତ୍ରକୁ ଯେ ସଦାଥିବ ରଖି ।
ବିଦ୍ୟାଧର ଶଙ୍କୁକର୍ଣ୍ଣ ରାକ୍ଷସ ସୁକେଶ
ନରପତି ଅଜାବାନ ପାବକ ମହେଶ ।
ଏମାନଙ୍କୁ ଡାକି ପୁଣି କହିଲେ ଶ୍ରୀହରି
ଏ କ୍ଷେତ୍ରକୁ ରକ୍ଷାକର ଏଥେ ଥାଇଁକରି ।

ସେ କୁରୁଜାଙ୍ଗଳ କ୍ଷେତ୍ରେ ମିଳିଲେ ସେ ଆସି
ଭୃତ୍ୟ ଅନୁଚର ଘେନି ହେଲେ କ୍ଷେତ୍ରବାସୀ ।
ରହିଲେ ଅଷ୍ଟସହସ୍ର ତହିଁ ଧନୁର୍ଦ୍ଧର
ପାପି ଦୁର୍ଜନଙ୍କୁ ମାରି କଲେ ତହିଁ ଦୂର ।
ପୃଥୁଦକ କ୍ଷେତ୍ରଅଛି ସେ କ୍ଷେତ୍ର ମଧରେ
ପାପକୁ ବିନାଶେ ବହୁପୁଣ୍ୟ ଦାନକରେ ।
ପୁଣ୍ୟତୋୟାନଈ ପୂର୍ବ ମୁଖେ ଯାଏ ବହି
କ୍ଷିତି ଆପ ତେଜ ବାୟୁ ଆକାଶ ଯେ ଏହି ।
ପଞ୍ଚମହାଭୂତ ସୃଷ୍ଟି ହେବା ସମୟରେ
ପିତାମହ ସେ ନଦୀକି କଲେ ଯତନରେ ।
ଆଉ ସେ ଅନେକ ନଦୀ ତୀର୍ଥ ପ୍ରସ୍ରବଣ
କରିଥିଲେ ଜଳାଶୟ ପୋଖରୀ ନିର୍ମାଣ ।
ତା ମଧରେ ପୃଥୁଦକ ଅଟେ ଦେବମାର୍ଗ
ସେ ଜଳରେ ସ୍ନାନଦାନ କଲେ ପାଇ ସ୍ୱର୍ଗ ।
ସରସ୍ୱତୀ ଦୃଷଦ୍‌ବତୀ ଏହି ଦୁଇନଈ
ମଧସ୍ଥାନକୁ ଯେ କୁରୁଜାଙ୍ଗଳ କହଇ ।
ଅତିବୃଦ୍ଧ ମହାଋଷି ଲୋମହରଷଣ
ତହିଁ ଗୃହକରି ରହିଛନ୍ତି ଦେବଗଣ ।
ଦିନେ ଋଷିଗଣ ତାଙ୍କୁ ପଚାରିଲେ ଯାଇଁ
ବ୍ରହ୍ମ ସରତୀର୍ଥ କଥା କହନ୍ତୁ ବୁଝାଇ ।
କାହୁଁ ଜାତହେଲା ସେହି କି ମହିମା ତାର
କହନ୍ତୁ ଯେ ପରିମାଣ ଆଦି ମୁନିବର ।
ବାମନ କିପରି ଜାତ ହୋଇଲେ ତା କହ
ଫିଟିଯାଉ ଆମ୍ଭର ଯେ ମନର ସନ୍ଦେହ ।
ଲୋମହରଷଣ ଶୁଣି ବୋଇଲେ ଏସନ
ଲୋକପିତା ବେଦବର କମଳଆସନ ।
ଲକ୍ଷ୍ମୀ ବିଷ୍ଣୁ ମହେଶଙ୍କୁ ନମସ୍କାର କରି
କହିବଇଁ ବ୍ରହ୍ମଶର ମହିମା ବିସ୍ତାରି ।
ପୂର୍ବେ ବ୍ରହ୍ମା କହିଥିଲେ ମୋ ଆଗେ ଏମନ୍ତ
ରମ୍ଭକଠାରୁ ଆରମ୍ଭ ଔଜସ ପର୍ଯ୍ୟନ୍ତ ।
ଆବର ପାବନଠାରୁ ଚର୍ତୁମୁଖ ଯାଏ
ଲାଗିକରି ଏହି ସରୋବର ଗୋଟି ଥାଏ ।
ଦ୍ୱାପର ଆବର କଳିଯୁଗ ମଧେ ବ୍ୟାସ
ଯେଉଁପରି କରିଥିଲେ ମୋ ଆଗେ ପ୍ରକାଶ ।
ତାହା କହୁଅଛି ଏବେ ଶୁଣ ମୁନିବ୍ରାତ
ବିଶ୍ୱେଶ୍ୱରଠାରୁ ହସ୍ତିପୁର ପରିଯନ୍ତ ।
ଜଗଦ୍‌ଗବୀ କନ୍ୟାଠାରୁ ଓଘବତୀ ଯାଏ
ଏହି ସରୋବର ଗୋଟି ଲାଗି ରହିଥାଏ ।
ମୁଁ ଯେପରି ତା ପ୍ରମାଣ ଜାଣେ ତାହା ଶୁଣ
ଶୁଣିଲେ ବଢ଼ିବ ପୁଣ୍ୟ ଆହେ ଋଷିଗଣ ।
ଦେବଦେବ ମହାଦେବ ଯେ ବିଶ୍ୱ ଈଶ୍ୱର
ସେଠାରୁ ଆରମ୍ଭ ହୋଇ ସେହି ସରୋବର ।
ଜଗତଜନ - ପାବନୀ ସରସ୍ୱତୀ ଯାଏ
ଦୀର୍ଘପ୍ରତି ଅର୍ଦ୍ଧନ୍ୟୂଣ ପରିମାଣ ହୋଏ ।
ଦେବଗଣ ଋଷିଗଣ ସାଧୁସନ୍ଥ ଜନେ
ସ୍ୱର୍ଗ ଅପବର୍ଗ ବାଞ୍ଛା କରନ୍ତି ସେ ସ୍ଥାନେ ।
ବ୍ରହ୍ମା ସୃଷ୍ଟି ଅର୍ଥେ ଯୋଗ ସାଧିଥିଲେ ତହିଁ
ସ୍ଥିତିଅର୍ଥେ ବିଷ୍ଣୁ ସେହି ତୀର୍ଥେ ଥିଲେ ରହି ।
ସେହିତୀର୍ଥ ପ୍ରସାଦରୁ ସ୍ଥାଣୁ ହେଲେ ହର
ବ୍ରହ୍ମାଙ୍କର ଆଦ୍ୟବେଦୀ ଏହି ସରୋବର ।
ତଦନ୍ତେ ତା ନାମ ପୁଣି ରାମହ୍ରଦ ହେଲା
କୁରୁ ଚଷିବାରୁ କୁରୁକ୍ଷେତ୍ର ବୋଲାଇଲା ।
ତରନ୍ତୁକ ରନ୍ତୁକ ଏ ଦୁହିଁଙ୍କ ମଧରେ
ପଞ୍ଚକ ଯେ ରାମହ୍ରଦ ଅଛଇ ହେ ସୁରେ ।
ସମସ୍ତ ପଞ୍ଚକ କୁରୁକ୍ଷେତ୍ର ତାକୁ କହି
ବ୍ରହ୍ମାଙ୍କ ଉତ୍ତରବେଦୀ ଅଟଇଟି ସେହି ।
ସରୋବର ମହିଁମାତ ଶୁଣିଲ ଅମରେ
କୃତ୍ୟକୃତ୍ୟ ହୋଇ ସୁରେ ଗଲେ ନିଜପୁରେ ।
ସୁଧାରସମୟ ଏହି ବାମ ପୁରାଣ ।
ଦ୍ୱିଜ ଗୋପୀନାଥକୁ ହେ ରଖ ନାରାୟଣ ।

-0-

## ବଳୀର ରାଜ୍ୟ ଲାଭ

ପଚାରିଲେ ଋଷିଗଣ ଯେ ଲୋମହର୍ଷଣ
ବାମନର ମହିଁମା ଯେ କରିବୁଁ ଶ୍ରବଣ ।
କେମନ୍ତେ ବଳିକି ବାନ୍ଧି ଇନ୍ଦ୍ରେ ଦେଲେ ରାଜ୍ୟ
ଏ ସବୁ ବିସ୍ତାରି କରି କହ ଋଷିବର୍ଜ୍ୟ ।
ଏମନ୍ତ ବଚନ ଶୁଣି ଲୋମହରଷଣ
କହିଲେକ ମନଦେଇ ଶୁଣ ଋଷିଗଣ ।
ବାମନଙ୍କ ଉତପତ୍ତି ପ୍ରଭାବ ଆବର
କୁରୁକ୍ଷେତ୍ରେ ବାସକଲେ ସେହି କି ପ୍ରକାର ।
କେମନ୍ତେ ଦଇତ୍ୟବଂଶ ହେଲେ ଉତପନ
ଯେଉଁବଂଶେ ଜନ୍ମ ବିରୋଚନର ନନ୍ଦନ ।

ତାହା ଆଗ କହୁଅଛି ଶୁଣ ମନଦେଇ
ହିରଣ୍ୟକଶ୍ୟପୁ ଆଦିପୁରୁଷ ଅଟଇ ।
ତାରପୁତ୍ର ମହାତେଜ ପ୍ରହ୍ଲାଦ ଅସୁର
ବିରୋଚନ ଦୈତ୍ୟଅଟେ ତାହାର କୁମର ।
ତାହାର ତନୟ ନାମ ଅଟଇ ଯେ ବଳି
ହିରଣ୍ୟ କଶ୍ୟପୁ ଦୈତ୍ୟ ଅଟେ ମହାବଳୀ ।
ତାହା ଅନ୍ତେ ବଳି ହେଲା ରାଜରାଜେଶ୍ୱର
ଭୟେ ସ୍ୱର୍ଗତ୍ୟାଗ କଲେ ଦେବତାନିକର ।
ଚରାଚର ବିଶ୍ୱ ହେଲା ତାର ରାଜଧାନୀ
ସବୁଯାଗ ଯଜ୍ଞକଲା ସେ ବଇଲୋଚନି ।
ଭୁଜବଳେ କଲା ତିନିପୁର ଅଧିକାର
ତାର ଯାଗ ଯଜ୍ଞ ଦେଖି ସକଳ ଅସୁର ।
ଯାଗଯଜ୍ଞ କଲେ ମିଳି ସ୍ଥାନେ ସ୍ଥାନେ ରହି
ଯଜ୍ଞଫଳେ ଦୈତ୍ୟମୟ ହୋଇଲାକ ମହୀ ।
ଶମ୍ବର ଆବର ମୟ ଦାନବଙ୍କୁ ରଣେ
ଜିଣି ବଳି ଧର୍ମକର୍ମ କଲା ଅନୁକ୍ଷଣେ ।
ସେ କାରଣୁ ଦଶଦିଗ ଦିଶିଲା ଉଜ୍ଜ୍ୱଳ
ପ୍ରହ୍ଲାଦ ଶମ୍ବରମୟ ଘେନି ଦୈତ୍ୟବଳ ।
ସ୍ନେହଭରେ ଦିଗ ରକ୍ଷାକଲେ ଅସ୍ତ୍ରଧରି
ଗଗନମଣ୍ଡଳେ ହେଲେ ଦୈତ୍ୟେ ରକ୍ଷାକାରୀ ।
ଦାନବଙ୍କ ଯଜ୍ଞଶୋଭା ଦେଖିଲେ ତ୍ରିଦଶେ
ସଦାଚାରୀ କଲେ ଲୋକେ ପ୍ରକୃତିର ବଶେ ।
ଏକାବେଳେ ପାପରାଶି ଗଲା ଦୂର ହୋଇ
ଧର୍ମର ପ୍ରଭାବ ବେଳୁଁ ବେଳ ଯେ ବଢ଼ଇ ।
ଧର୍ମ ଚାରିପାଶେ ପୂର୍ଣ୍ଣ ଅଧର୍ମର ନାଶ
ପ୍ରଜାଙ୍କୁ ପାଳିଲେ ଧର୍ମେ ନହିଣ ନରେଶ ।
ସେ କାରଣୁ ତାହାଙ୍କର ସମ୍ପଦ ବଢ଼ିଲା
ଧର୍ମର ପ୍ରଭାବେ ଯହୁଁ ପାପ ଛାଡ଼ିଗଲା ।
ଆଶ୍ରମ ବାସୀଏ ସ୍ୱ ସ୍ୱଧର୍ମେ ହେଲେ ରତ
ସେ ସମୟେ ବାଳୀଦୈତ୍ୟ ବିରୋଚନ ସୁତ ।
ଦୈତ୍ୟରାଜ୍ୟେ ରାଜା ହୋଇ ପାଳିଲା ତାହାଙ୍କୁ
ଆନନ୍ଦ ଦନୁଜବଳ ଖଟିଲେ ବଳିକୁ ।
ପଦ୍ମାଳୟା ମହାଲକ୍ଷ୍ମୀ ପଦ୍ମଧରି ହସ୍ତେ
ସ୍ୱଇଚ୍ଛାରେ ମିଳି ବଳୀରାଜାର ଅଗ୍ରତେ ।
ବୋଇଲେ ହେ ଦୈତ୍ୟପତି ମହାବଳୀ ବଳୀ
ମୁହିଁ ବରଦାୟିନୀ ଯେ ସାଗର ଦୁଲାଳୀ ।
ଦେବରାଜ ଇନ୍ଦ୍ରକୁ ତୁ କଲୁ ପରାଜୟ
ଏଣୁ ମୁଁ ସନ୍ତୁଷ୍ଟ ହେଲି ଆହେ ଦୈତ୍ୟରାୟ ।
ହିରଣ୍ୟପଶ୍ୟପ ବଂଶେ ଜନମ ତୋହର
ତୋ ପ୍ରସାଦେ ଇନ୍ଦ୍ର ହେଲେ ଅସୁର ନିକର ।
ତୋ ପ୍ରପିତାମହ ନାମ ରଖିଲୁ ଯେ ତୁହି
ଯେ ଆୟତ୍ତ କରିଥିଲା ଚରାଚର ମହୀ ।
ତ୍ରୈଲୋକ୍ୟ ଈଶ୍ୱର ନାମ ବହିଥିଲା ପୁଣି
ତୁହି ସେହି ବଂଶେ ହେଲୁ ଦୈତ୍ୟଶିରୋମଣି ।
ବଳିକି ଏମନ୍ତ କହି ରହିଲେ ତା ଘରେ
ଲକ୍ଷ୍ମୀ ରହିବାର ଦେଖି ଲଜ୍ଜା ସ୍ୱଇଚ୍ଛାରେ ।
ବଳୀର ମନ୍ଦିରେ ଆତ୍ମାସୁଖେ କଲେ ବାସ
ଦେଖିଣ ଆନନ୍ଦ ହେଲା ବଳୀ ଦୈତ୍ୟଈଶ ।
ତାହା ଦେଖି କ୍ଷମା କୀର୍ତ୍ତିଦ୍ୟୁତି ପ୍ରଭାଧୃତି
ଶକ୍ତିଋଦ୍ଧି ମତି ଶ୍ରୁତି ବିଦ୍ୟା ଶାନ୍ତିସ୍ମୃତି ।
କ୍ରିୟାମୃଷ୍ଟି ଆଦିଦେବୀଗଣ କଲେ ବାସ
ବଳି ନୃପତିର ସାଧୁ ଗୁଣେ ହୋଇ ବଶ ।
ନୃତ୍ୟଗୀତେ ତୋଷକଲେ ସ୍ୱର୍ଗ ଅପସରା
ବଳୀରାଜ୍ୟ ହେଲା ଜାଣ ଚରାଚର ଧରା ।
ଋଷିଗଣ ତୋଷ ହେଲେ ଶୁଣି ଏହି ବାଣୀ
ଦୀନଗୋପୀନାଥକୁ ହେ ରଖ ଚକ୍ରପାଣି ।

= ✢ =

## ଦେବଗଣଙ୍କର ବ୍ରହ୍ମଲୋକ ଗମନ

ପଚାରିଲେ ଋଷିଗଣ ଆହେ ମୁନିବର
ଦେବଗଣ ହାରି ଯାଇଁ କଲେ କି ବିଚାର ।
ବାମନ ହୋଇଲେ ପୁଣି କି ରୂପେ ଶ୍ରୀହରି
ଏ ସମସ୍ତ କଥା କହ ଆମ୍ଭଙ୍କୁ ବିସ୍ତାରି ।
ଏହାଶୁଣି କହିଲେ ଯେ ଲୋମହରଷଣ
ପୁରନ୍ଦର ସଙ୍ଗତରେ ଘେନି ଦେବଗଣ ।
ମେରୁ ପରବତେ ଥିଲେ ଜନନୀ ଅଦିତି
ତାହାଙ୍କ ଚରଣତଳେ କରିଣ ପ୍ରଣତି ।
ବୋଇଲେଗୋ ମାତଆମ୍ଭ ରାଜ୍ୟ ନେଲାବଳୀ
ଧର୍ମ ବଳେ ହୋଇଲା ସେ ଦୈତ୍ୟ ମହାବଳୀ ।
ଉପାୟ ନ ଦିଶେ କିଛି ଆମ୍ଭଙ୍କୁ ଗୋ ମାତ
ଅଦିତି ବୋଇଲେ ଆରେ ପୁତ୍ର ପୁରୁହୂତ ।

ତୁମ୍ଭେ ଯେବେ ମିଳି ତାଙ୍କୁ ନ ପାରିଲ ମାରି
ଏକମାତ୍ର ବିଷ୍ଣୁ ତାଙ୍କୁ ପାରିବେ ସଂହାରି ।
ହରି ବିନା ଆନ କେହି ନ ପାରିବେ ତାଙ୍କୁ
ଏବେ ତୁମ୍ଭେ ଯାଇ କହ ତୁମ୍ଭର ପିତାଙ୍କୁ ।
ଶୁଣିଣ କଶ୍ୟପ ପାଶେ ଗଲେ ଦେବଗଣ
ଦେଖିଲେ ଅଛନ୍ତି ତହିଁ ମରୀଚ ନନ୍ଦନ ।
ଜ୍ୱଳନ୍ତ ଅନଳ ପ୍ରାୟ ତାଙ୍କ ବ୍ରହ୍ମତେଜ
ଦେବତାଙ୍କ ଗୁରୁ ସେହି ପତସ୍ୱୀଙ୍କ ରାଜ ।
ଦୂରୁ ଦେଖି ଯାନ୍ତି ଅଗ୍ନି ସୂର୍ଯ୍ୟ ପ୍ରାୟ ସେହି
ଦଣ୍ଡ କମଣ୍ଡଳୁ କୁଶ ପାଶେ ଅଛି ରହି ।
ବସିଛନ୍ତି କୃଷ୍ଣାଜିନଛାଲର ଉପରେ
ବଲ୍‌କଲ ଅଜିନ ଶୋଭାପାଏ କଳେବରେ ।
ବ୍ରହ୍ମାଙ୍କ ସମାନ ମୁନି ଅଟନ୍ତି କଶ୍ୟପ
କେ ବର୍ଣ୍ଣି ପାରିବ ତାହାଙ୍କର ଯେଉଁ ତପ ।
ତମୋଗୁଣ ତାହାଙ୍କ ଯେ ନ ପାରଇ ଛୁଇଁ
ପ୍ରଜାମାନଙ୍କର ପତି ସେ ମୁନି ଗୋସାଇଁ ।
ତାହାଙ୍କ ଚରଣ ତଳେ ପଡ଼ି ଦେବଗଣ
ଉଠି ପୁଣି ଶିରେ କର ଦୁଇକି ଯୋଡ଼ିଣ ।
ବୋଇଲେ ଭୋ ତାତ ବଳୀ ଆମ୍ଭ ରାଜ୍ୟନେଲା
ଧର୍ମବଳେ ଆମ୍ଭଙ୍କୁ ସେ ସମରେ ଜିଣିଲା ।
ତାହାର ଉପାୟ କହି ଦିଅନ୍ତୁ ହେ ତାତ
ଯେମନ୍ତେ ସେ ଦୈତ୍ୟପତି ହୋଇବ ନିହତ ।
କଶ୍ୟପ ବୋଇଲେ ଚାଲ ଆହେ ପୁତ୍ରଗଣ
ଏକ୍ଷଣି କରିବା ବ୍ରହ୍ମଲୋକକୁ ଗମନ ।
କହିବା ବ୍ରହ୍ମାଙ୍କ ଆଗେ କରିଣ ବିନୟ
ସେ ଆମ୍ଭଙ୍କୁ କହିଦେବେ ଏହାର ଉପାୟ ।
ଏହା ଶୁଣି ଦେବଗଣ ତହୁଁ ଗଲେ ଖରେ
ଡକା ଡକି ହେଲେ ଯିବା ପାଇଁ ପରସ୍ପରେ ।
କେ ବୋଇଲେ ଆସ ଆସ ବ୍ରହ୍ମଲୋକେ ଯିବା
ବ୍ରହ୍ମାଙ୍କ ଆଗରେ ଆମ୍ଭ ଦୁଃଖ ଜଣାଇବା ।
ଏହା ଶୁଣି ଯେ ଯାହାର ଯାନ ଆରୋହିଲେ
ମୁହୂର୍ତ୍ତକ ମଧ୍ୟେ ବ୍ରହ୍ମଲୋକରେ ମିଳିଲେ ।
କେଉଁଠାରେ ଅଛନ୍ତି ସେ କମଳ ଆସନ
ଜାଣିବା ନିମନ୍ତେ କଲେ ସଭାକୁ ଗମନ ।
ମଧୁର ଭ୍ରମର ଧ୍ୱନି ହେଉଛି ସେଠାରେ
ସାମଗାନ କରୁଛନ୍ତି ବସ ବିପ୍ରବରେ ।

ଶତ୍ରୁ ନାଶିନୀ ସେ ସଭା ଦେଖି ଦେବବୃନ୍ଦ
ହୃଦୟ ମଧ୍ୟରେ ଜାତ ହୋଇଲା ଆନନ୍ଦ ।
ଆବର ଯଜ୍ଞାଦି କର୍ମ ହେଉଅଛି ତହିଁ
ମନ୍ତ୍ର ପଢ଼ୁଛନ୍ତି ବିପ୍ରେ ଚାରିପାଖେ ରହି ।
ତାହାକୁ ଶ୍ରବଣ କଲେ ଅମର ନିକର
ଋଷି ମୁନି ଜ୍ଞାନୀ ତହିଁ ଅଛନ୍ତି ଅପାର ।
କେହି ଧ୍ୟାନେ ବସି ଅଛି କେହି କରେ ଜପ
କେହି ବେଦ ପଢ଼ୁଅଛି କେ କରଇ ତପ ।
ମଧ୍ୟେ ବିଜେ କରିଛନ୍ତି ପିତାମହ ବ୍ରହ୍ମା
ତାଙ୍କୁ ସ୍ତବ କରୁଛନ୍ତି କେଉଁ ମହାତମା ।
ମରୀଚି ପୁଲହ ଦକ୍ଷ ବଶିଷ୍ଠ ପ୍ରଚେତା
ଭୃଗୁ ଗଉତମ ଅତ୍ରି ନାରଦ ଯେ ଜ୍ଞାତା ।
ବିଦ୍ୟା ଅନ୍ତରୀକ୍ଷ ବାୟୁତେଜ ଜଳକ୍ଷିତି
ଶବ୍ଦ ସ୍ପର୍ଶ ରୂପ ରସ ଗନ୍ଧ ଯେ ପ୍ରକୃତି ।
ସମସ୍ତ ବିକାର ଅଙ୍ଗ ଉପାଙ୍ଗ ସହିତ
ଚାରିବେଦ ଲୋକପାଳ ବର୍ଗ ଏ ସମସ୍ତ ।
ତପ ଯଜ୍ଞ ସଂକଳପ ପ୍ରାଣ ଯେ ଆବର
ଧର୍ମ ଅର୍ଥ କାମ କ୍ରୋଧ ହର୍ଷ ଅହଙ୍କାର ।
ଗୁରୁ ଶୁକ୍ର ବୁଧ ରାହୁ ଶନି ସମ୍ବର୍ତ୍ତକ
ଅଷ୍ଟବସୁ ବିଶ୍ୱକର୍ମା ବାୟୁ ଚିକିତ୍ସକ ।
ଚନ୍ଦ୍ର ସୂର୍ଯ୍ୟ ଦିନ ରାତି ପକ୍ଷ ମାସ ଋତୁ
ତେତିଶ କୋଟିଦେବତା ଘେନି ଶତକ୍ରତୁ ।
ସମସ୍ତେ ବ୍ରହ୍ମାଙ୍କ ପାଦ ବନ୍ଦି ହେଲେ ଉଭା
ନିସ୍ତବଧ ହୋଇଗଲା ତେଡ଼େ ବଡ଼ ସଭା ।
ବ୍ରହ୍ମାଙ୍କ ଦର୍ଶନେ ସବୁ ପାପ ଗଲା କ୍ଷୟ
ଦୀନ ଗୋପୀନାଥକୁ ଯେ ରଖ ଦୟାମୟ ।

= + =

## ଦେବଗଣଙ୍କର ଶ୍ୱେତଦ୍ୱୀପକୁ ଗମନ

କମଳ ଆସନ ବ୍ରହ୍ମା କହିଲେ ହେ ଦେବେ
ଯହିଁ ପାଇଁ ଆସିଅଛ ଏ ସ୍ଥାନକୁ ତୁମ୍ଭେ ।
ଏ ଉପାୟ ଚିନ୍ତା ମୁହିଁ କରିବି ଏକ୍ଷଣି
ଯେଣେ ତୁମ୍ଭ ବାଞ୍ଛା ପୂର୍ଣ୍ଣ ହେବ ବଜ୍ରପାଣି ।
ଯେ ଅସୁରଗଣସହ ବଳିକି ଜିଣିବ
ସେହି ଆମ୍ଭମାନଙ୍କର ଅଟେ ଇଷ୍ଟଦେବ ।

ଅଧିକ କି କହିବି ସେ ତ୍ରିଲୋଚନ ପତି
ଦେବଗଣଙ୍କର ପ୍ରଭୁ ଅନନ୍ତ ମୂରତି ।
ବିଶ୍ୱରୂପୀ ସନାତନ ମୋହର ଅଗ୍ରଜ
ପରମାତ୍ମା ସ୍ୱରୂପ ସେ ଆଦିଦେବ ଅଜ ।
ତୁମ୍ଭେ କାହୁଁ ଜାଣିବ ସେ ପୁରୁଷ ଉତ୍ତମ
କୋଟି କୋଟି ବ୍ରହ୍ମାଣ୍ଡ ଯା ଲୋମମୂଳୁଁ ଜନ୍ମ ।
ତାହାଙ୍କୁ ଅଜଣା କିଛି ନାହିଁ ଏ ଜଗତେ
ତୁମ୍ଭେମାନେ ତାଙ୍କୁ ଜାଣିପାରିବ ଯେମନ୍ତେ ।
ତାହାର ଉପାୟ କହୁଅଛି ଶୁଣ ଏବେ
ଯୋଗଲୟେ ଘୋର ତପ ଆଚରିବ ଯେବେ ।
ତେବେ କ୍ଷୀରସିନ୍ଧୁ କୂଳ ଉତ୍ତର ଦିଗରେ
ଶୁଣିବି ଅପୂର୍ବବାଣୀ ଶ୍ରବଣ ଗୋଚରେ ।
ତ୍ରିଭୁବନ ବ୍ୟାପୀ ମେଘ ଗଭୀର ନିସ୍ୱନ
ସ୍ୱଷ୍ଟାକ୍ଷର ଯୁକ୍ତ ଅନୁରାଗ ଉତ୍ପାଦନ ।
ଅଭୟ ମଙ୍ଗଳମୟ ସତ୍ୟର ଆକାର
କଳୁଷ ନାଶନ ମନୋହର ଦିବ୍ୟସ୍ୱର ।
ଦେବଦେବ ଆଦିଦେବ ମୁଖୁ ବାହାରିବ
ତଦୁତ୍ତାରେ ଦେଖା ଦେବେ ପ୍ରଭୁ ବାସୁଦେବ ।
ସେହି ମହାତ୍ମାଙ୍କ ବାକ୍ୟ ଅମୋଘ ଅଟଇ
ଯୋଗବ୍ରତ ଉଦ୍ୟାପନ ଯେମନ୍ତେ ହୁଅଇ ।
ହେ କଶ୍ୟପ ଋଷି ତୁମ୍ଭେ କଲେ ସେହି ବ୍ରତ
ତୁମ୍ଭଠାରେ ସୁପ୍ରସନ୍ନ ହୋଇବେ ଅଚ୍ୟୁତ ।
ତେତେବେଳେ ତୁମ୍ଭେ ତାଙ୍କୁ ମାଗିବ ଏ ବର
ଆହେ ଦେବଦେବ ହୁଅ ମୋହ[illegible] କୁମର ।
ସେହି ଦେବଗଣଙ୍କର ନିବାରି[illegible] ଭୟ
ଏହାଭିନ୍ନ ଆଉକିଛି ନାହିଁ ଯେ ଉପାୟ ।
ଆହେ ଦେବଗଣ ହେଉ ତୁମ୍ଭର ମଙ୍ଗଳ
ଆନନ୍ଦ ହୋଇଲେ ଦେବ ସହ ଆଖଣ୍ଡଳ ।
ବ୍ରହ୍ମାଙ୍କ ଚରଣତଳେ ଦଣ୍ଡବତ କଲେ
ଅଦିତି କଶ୍ୟପ ଶୁଣି କୃତକୃତ୍ୟ ହେଲେ ।
ମନେ ବିଚାରିଲେ ପିତାମହଙ୍କର କଥା
ପାଷାଣର ରେଖା ପରି ନୁହଇ ଅନ୍ୟଥା ।
ବ୍ରତ ପ୍ରସାଦରୁ ହରି ହେବେ ଆମ୍ଭ ସୁତ
ରାକ୍ଷସ ବଂଶକୁ ଧ୍ୱଂସ କରିବେ ନିୟତ ।
ଏମନ୍ତ ବିଚାରି ଦେବଗଣ ସଙ୍ଗେ ଘେନି
ବ୍ରହ୍ମାଙ୍କୁ ପ୍ରଣାମ କରି ସେହି ମହାମୁନି ।
ମେଲାଣି ମାଗିଣ ତହୁଁ ଶ୍ୱେତଦ୍ୱୀପେ ଗଲେ
ସାଗର ପର୍ବତ ନଦ ନଦୀ ପାର ହେଲେ ।
ପୃଥିବୀର ଶେଷଭାଗ ଘୋର ଅନ୍ଧକାର
ତହିଁ ନାହିଁ ସୂର୍ଯ୍ୟଙ୍କର କିଛି ଅଧିକାର ।
ସୀମାନାହିଁ ଘୋର ଅନ୍ଧକାରରେ ଆଚ୍ଛନ୍ନ
ମହାଋଷି କଶ୍ୟପ ଯେ ଦେଖିଣ ସେ ସ୍ଥାନ ।
ଦେବଗଣ ଘେନି ତହିଁ ବ୍ରତ ଆଚରିଲେ
ସହସ୍ର ଲୋଚନ ବୀର ଆସନେ ବସିଲେ ।
ନାରାୟଣ ପାଦପଦ୍ମେ କଲେ ଯୋଗଲୟ
ଆବର ସେଠାରେ ଥିଲେ ଯେତେ ସ୍ମରଚୟ ।
ସମସ୍ତେ ଶ୍ରୀହରି ପାଦପଦ୍ମେ ଲୟରଖି
ଏକମୁଖେ ବୋଇଲେ ହେ ପ୍ରଭୁ ପଦ୍ମଆଖି ।
ଏ ଘୋର ସଙ୍କଟୁ କର ଆମ୍ଭଙ୍କୁ ଉଦ୍ଧାର
ଆମ୍ଭେମାନେ ସଦା ତବ ପାଦ ପରିଚାର ।
ଏମନ୍ତେ ପ୍ରଭୁଙ୍କ ପାଦେ ଦୃଢ଼େ ରଖି ମନ
ଲୋକହିତେ ଗୀତକଲୁ ଗୋପୀନାଥ ଦୀନ ।

=÷=

## କଶ୍ୟପୋକ୍ତ ନାରାୟଣ ସ୍ତବ

ଏଥୁଅନ୍ତେ ଋଷିଗଣ ଶୁଣ ମନଦେଇ
କଶ୍ୟପ ହରିଙ୍କି ସ୍ତବ କଲେ ପୁତ୍ର ପାଇଁ ।
ନମୋ ନମୋ ବାସୁଦେବ ପରମାତ୍ମାରୂପୀ
ଏକଶୃଙ୍ଗ ବୃକ୍ଷସିନ୍ଧୁ ତୁମ୍ଭେ ବୃଷାକପି ।
ତୁମ୍ଭେ ସୁରବୃକ୍ଷ ତୁମ୍ଭେ ଅନାଦି ସମ୍ଭବ
ରୁଦ୍ର ଯେ କପିଳ ତୁମ୍ଭେ ବିଷ୍ୱକ୍ ସେନଦେବ ।
ଧ୍ରୁବ ତୁମ୍ଭେ ଧର୍ମ ତୁମ୍ଭେ ସର୍ବ ଭୂତପତି
ବଇକୁଣ୍ଠ ବୃଷାବର୍ତ୍ତ ତୁମ୍ଭଙ୍କୁ ବୋଲନ୍ତି ।
ଅନାଦି ମଧ୍ୟ ନିଧନ ଆହେ ଧନଞ୍ଜୟ
ଶୁଚିଶ୍ରବ ପୃଷ୍ଣିତେଜ ତୁମ୍ଭେ ନିଜ ଜୟ ।
ତ୍ରିଧାମ ଅମୃତମୟ ତୁମ୍ଭେ ସନାତନ
ହେ ତୃଷିତ ମହାମତ୍ତ ତ୍ରିଲୋକ ପାବନ ।
ଲୋକନାଥ ପଦ୍ମନାଭ ବିରଞ୍ଚି ସ୍ୱରୂପ
ହେ ଅକ୍ଷର ହେ ଅକ୍ଷୟ ତୁମ୍ଭେ ବହୁରୂପ ।
ହେ ଖଡ୍‌ଗ ପରଶୁ ହେ ଶୁକ୍ର ହବ୍ୟଭୁଜ
ତୁମ୍ଭେ ମୁଞ୍ଜ କେଶ ତୁମ୍ଭେ କ୍ଷୀରଜାନାୟକ ।
ହେ ମହା ଦକ୍ଷିଣ ତୁମ୍ଭେ ସୂକ୍ଷ୍ମ ହୃଷୀକେଶ
ହେ ମହାନିଚୟ ବର ବିରଜ ହେ ହଂସ ।

ହେ ଲୋକ ପ୍ରତିଷ୍ଠା ତୁମ୍ଭେ ଅରୂପ ଅଗ୍ରଜ
ତୁମ୍ଭେ ଧର୍ମ ଧର୍ମନାଭ ତୁମ୍ଭେ ହବ୍ୟଭୁଜ ।
ହେ ଗଭସ୍ତିନାଥ ଆହେ ଶତକ୍ରତୁ ନାଥ
ତୁମ୍ଭେ ସୂର୍ଯ୍ୟତେଜ ତୁମ୍ଭେ ଅଟ ଚନ୍ଦ୍ର ପଥ ।
ତୁମ୍ଭର ସହସ୍ର ପାଦ ସହସ୍ର ଯେ ଶିର
ତୁମ୍ଭେ ପୁଣି ଅଜ ଅଧୋମୁଖ ଯେ ତୁମ୍ଭର ।
ହେ ମହାପୁରୁଷ ଆହେ ପୁରୁଷଉତ୍ତମ
ତୁମ୍ଭର ସହସ୍ର ବାହୁ ଅଟେ ଅନୁପମ ।
ତୁମ୍ଭର ସହସ୍ର ଆସ୍ୟ ସହସ୍ର ମୂରତି
ସହସ୍ର ସମ୍ଭବ ବିଶ୍ୱ ତୁମ୍ଭଙ୍କୁ ବୋଲନ୍ତି ।
ଆହେ ପୁଷ୍ପହାସ ତୁମ୍ଭେ ଚରଣ ବୌଷଟ
ବଷଟ୍ କାର ରୂପେ ତୁମ୍ଭେ ହୋଇଛ ପ୍ରକଟ ।
ଯଜ୍ଞେ ତୁମ୍ଭେ ଶତଧାର ସହସ୍ର ଆଧାର
ପ୍ରଧାନ ପ୍ରାଶିତା ତୁମ୍ଭେ ଯଜ୍ଞରେ ଆବର ।
ଭୂବନ୍ଦ୍ୟ ଭୂନାଥ ଭୃଗୁପୁତ୍ର ହେ ବଭ୍ରୁବ
ତୁମ୍ଭେ ବେଦ ବୈଦ୍ୟ ତୁମ୍ଭେ ଅନ୍ତରୀକ୍ଷ ଭୁବ ।
ତୁମ୍ଭେ ବ୍ରହ୍ମାଶୟ ତୁମ୍ଭେ ବ୍ରାହ୍ମଣଙ୍କ ପ୍ରିୟ
ତୁମ୍ଭେ ସ୍ୱର୍ଗ ମାତ ରିଶ୍ୱା ତୁମ୍ଭେ ଧର୍ମଚୟ ।
ତୁମ୍ଭେ ହୋତା ତୁମ୍ଭେ ପୋତା ତୁମ୍ଭେ ହନ୍ତାମନ୍ତା
ତୁମ୍ଭେ ହୋମ ହେତୁ ତୁମ୍ଭେ ନେତଯେନିୟନ୍ତା ।
ତେଜସ୍ୱୀଗଣଙ୍କ ମଧ୍ୟେ ତୁମ୍ଭେ ଅଗ୍ରଗଣ୍ୟ
ତୁମ୍ଭଙ୍କୁ ପୂଜନ୍ତି ନିତି ସମୁହେ ବ୍ରହ୍ମଣ୍ୟ ।
ସ୍ୱଭାଣ୍ଡ ସୁମେଧ ତୁମ୍ଭେ ସମିଧ ଆବର
ଗତି-ମତି-ଦାତା ତୁମ୍ଭେ ମୋକ୍ଷ ଯୋଗେଶ୍ୱର ।
ତୁମ୍ଭେ ସୃଷ୍ଟି ତୁମ୍ଭେ ଧାତା ତୁମ୍ଭେ ଯେ ପରମ
ଦୀକ୍ଷିତ ଦକ୍ଷିଣା ତୁମ୍ଭେ ବିଶ୍ୱ ଯଜ୍ଞ ସୋମ ।
ହିରଣ୍ୟ ଗର୍ଭ ହେ ନାରାୟଣ ହେ ସ୍ଥବିର
ତ୍ରିନୟନ ଆଦିବର୍ଣ୍ଣ ଚକ୍ର ଗଦାଧର ।
ଆଦିତ୍ୟତେଜା ହେ ମହାପୁରୁଷ ପ୍ରଧାନ
ଭୂବିକ୍ରମ ତ୍ରିବିକ୍ରମ ନିତ୍ୟ ସନାତନ ।
ଆଦିଦେବ ମହାଦେବ ପ୍ରଭାକର ଶମ୍ଭୁ
ବିଶ୍ୱଭୂତ ମହାଭୂତ ଭୂତାଦି ସ୍ୱୟମ୍ଭୁ ।
ବିଶ୍ୱଗୋପ୍ତା ବିଶ୍ୱ ତୁମ୍ଭେ ପବିତ୍ର ଅମୃତ
ବିଶ୍ୱଭବ ଊର୍ଦ୍ଧ୍ୱକର୍ମା ଅଶ୍ୱମେଧ ଶତ ।
ବରପ୍ରାର୍ଥୀ ମାନଙ୍କର ବରଦ ଆଣ
ପୂର୍ବ ବଂଶଧର ଦିଙ୍ପତି ନାରାୟଣ ।
ତୁମ୍ଭେ ଚାରି ଚାରି ଦୁଇ ପାଞ୍ଚ ହେ ଆହୁତି
ତୁମ୍ଭେ ଶ୍ରୋତା ତୁମ୍ଭଙ୍କୁ ମୁଁ କରୁଛି ପ୍ରଣତି ।
ଏ କଶ୍ୟପ ଋଷି ସ୍ତବ ପଢ଼ି ଶୁଣ ନରେ
ଭବ ପାରାବାର ତରିଯାଅ ଅକ୍ଳେଶରେ ।
ଦୀନ ଗୋପୀନାଥଙ୍କୁ ହେ ରଖ ନାରାୟଣ
ଦିବାନିଶି ତବ ପାଦ ପଙ୍କଜେ ଶରଣ ।

=+=

## ଅଦିତିକୃତ ନାରାୟଣ ସ୍ତବ

ଏଥୁ ଅନନ୍ତରେ ପୁଣି ଲୋମହରଷଣ
କହିଲେ ଯେ ମନଦେଇ ଶୁଣ ଋଷିଗଣ ।
ଏମନ୍ତେ କଶ୍ୟପ ଋଷି କରନ୍ତେ ଯେ ସ୍ତୁତି
ସୁପ୍ରସନ୍ନ ହୋଇ ପ୍ରଭୁ ଜନନୀର ପତି ।
କହିଲେ ହେ ସୁରଗଣ ଦେବଇଁ ମୁଁ ବର
ଇଚ୍ଛା ଅନୁସାରେ ତୁମ୍ଭେ ପ୍ରାର୍ଥନା ଯେ କର ।
କଶ୍ୟପ କହିଲେ ଯେବେ ହୋଇଲ ପ୍ରସନ୍ନ
ଅଦିତି ଗର୍ଭରୁ ଦେବ ହୁଅ ଉତପନ୍ନ ।
ଶତକ୍ରତୁ ଇନ୍ଦ୍ରର ଯେ ସାନଭାଇ ହୋଇ
ତାହାଙ୍କୁ ବିପଦୁ ରକ୍ଷାକର ଲକ୍ଷ୍ମୀସାଇଁ ।
ଏ ସମୟେ ଦେବମାତା ଅଦିତି ଏପରି
କହିଲେ ମୋ ପୁତ୍ର ହୁଅ ଆହେ ଦଇତ୍ୟାରି ।
ଦେବଗଣ ଏ ସମୟେ କହିଲେ ଏମନ୍ତ
ଆମ୍ଭମାନଙ୍କର ତ୍ରାତା ହୁଅ ଲକ୍ଷ୍ମୀକାନ୍ତ ।
ରାକ୍ଷସ ଭୟରୁ ରକ୍ଷାକର ସ୍ୱର୍ଗ ଦେଇ
ଆମ୍ଭଙ୍କୁ ପୋଷଣ କର ଇନ୍ଦ୍ରଭ୍ରାତା ହୋଇ ।
ଲୋମହରଷଣ କହିଲେ ଯେ ଏଥୁଅନ୍ତେ
ଶ୍ରୀହରି କହିଲେ ଶୁଣି ସୁପ୍ରସନ୍ନ ଚିତ୍ତେ ।
ଯେ ତୁମ୍ଭର ଶତ୍ରୁ ତାଙ୍କୁ ମାରିବି ନିଶ୍ଚୟ
ତୁମ୍ଭଙ୍କୁ ଯେ ଯଜ୍ଞଭାଗ ଦେବି ସୁରଚୟ ।
ଅସୁରମାନଙ୍କ ହବ୍ୟ ଭାଗ ଯେ ଦେବଇଁ
ପିତୃଙ୍କୁ ଯେ ହବ୍ୟ ଦେଇ ତୋଷ କରିବଇଁ ।
ଆହେ ଦେବଗଣ ତୁମ୍ଭେ ଯାଅ ଯେଝାସ୍ଥାନେ
ଏମନ୍ତ କହନ୍ତେ ବିଷ୍ଣୁ ଉଠି ଦେବଗଣେ ।
କଶ୍ୟପ ଅଦିତି ସହ କଲେ ନମସ୍କାର
ତହୁଁ ଯେଝାସ୍ଥାନେ ଗଲେ ଅମରନିକର ।
କଶ୍ୟପ ଯେ ଆଶ୍ରମକୁ ଗଲେ ତହୁଁ ପୁଣି
ଅଦିତିଙ୍କି କହିଲେ ହେ ଯାଅ ଏହିକ୍ଷଣି ।

କୁରୁକ୍ଷେତ୍ରେ ରହି ତୁମ୍ଭେ କର ଘୋରତପ
ଯେମନ୍ତେ ପ୍ରସନ୍ନ ହେବେ ପ୍ରଭୁ ବିଶ୍ୱରୂପ ।
ଋଷିବାକ୍ୟେ ଅଦିତି ଯେ କୁରୁକ୍ଷେତ୍ରେ ଗଲେ
ଅୟୁତ ବରଷ ତହିଁ ଘୋର ତପ କଲେ ।
ସର୍ବକାମପ୍ରଦ ସେହି ବନର ଯେ ନାମ
ନାନା ବୃକ୍ଷ ଥିବାରୁ ସେ ଅତି ମନୋରମ ।
ମୂଳ କମଳକୁ ଷାପି ପବନକୁ ଭକ୍ଷି
ମଉନେ ରହିଲେ ହରି ଧ୍ୟାନେ ଚନ୍ଦ୍ରମୁଖୀ ।
ତଦନ୍ତେ ଅଦିତି କଲେ ଶ୍ରୀହରିଙ୍କ ସ୍ତୁତି
ପୁତ୍ରଙ୍କ ଦୁଃଖରେ ଦୁଃଖ ପାଇ ମହାସତୀ ।
ନମସ୍ତେ ନମସ୍ତେ ପ୍ରଭୁ ଆରତନାଶନ
ନମସ୍ତେ ପୁଷ୍କରମାଳି ଦେବ ଜନାର୍ଦ୍ଦନ ।
ନମସ୍ତେ ନମସ୍ତେ ଦେବ ପରମକଲ୍ୟାଣ
ନମସ୍ତେ କଲ୍ୟାଣମୟ ଲକ୍ଷ୍ମୀନାରାୟଣ ।
ନମସ୍ତେ ହେ ଆଦି ବେଧା ପଙ୍କଜଲୋଚନ
ନମସ୍ତେ ପଙ୍କଜନାଭ ପତିତପାବନ ।
ନମଃ ପଙ୍କଜସମ୍ଭୂତ ସମ୍ଭବ ହେ ହରି
ନମସ୍ତେ ନମସ୍ତେ ଆତ୍ମଯୋନି ଦଇତ୍ୟାରି ।
ନମୋ ନମୋ କାନ୍ତଶୂନ୍ୟ ଶ୍ରୀକାନ୍ତ ହେ ଦନ୍ତ
ନମୋ ନମଃ ଚକ୍ରଧର ପଦ୍ମ ଅସି ହସ୍ତ ।
ନମସ୍ତେ କନକବାସ ଆତ୍ମଜ୍ଞାନ ଯଜ୍ଞ
ନମସ୍ତେ ନମସ୍ତେ ପ୍ରଭୁ ଯୋଗୀଜନ ବିଜ୍ଞ ।
ନମସ୍ତେ ହେ ମହାଯୋଗି, ନିର୍ଗୁଣ ବିଶେଷ
ନମସ୍ତେ ନମସ୍ତେ ବ୍ରହ୍ମରୂପୀ ହୃଷୀକେଶ ।
ନମସ୍ତେ ଜଗତ ପ୍ରତିଷ୍ଠିତ ନରହରି
ନମୋ ନମୋ ଜଗତର ଅଦୃଶ୍ୟ ମୁରାରି ।
ନମସ୍ତେ ହେ ମୂଳ ସୂକ୍ଷ୍ମରୂପୀ ଧନୁର୍ଦ୍ଧର
ନିଖିଳ ଜଗତ ତୁମ୍ଭେ ଦରଶନ କର ।
ଜଗତେ ତୁମ୍ଭଙ୍କୁ ଦେଖି ନପାରନ୍ତି କେହି
ଏଣୁ ମୁଁ ପ୍ରଣାମ କରେ ଆହେ ଭାବଗ୍ରାହୀ ।
ଜ୍ଞାନୀମାନେ ହୃଦମଧ୍ୟେ ଦେଖନ୍ତି ଯାହାକୁ
ବାରମ୍ବାର ନମସ୍କାର କରଇ ତାହାଙ୍କୁ ।
ଯେ ଜ୍ୟୋତି ବାହାରେ ଥାନ୍ତି ଅଦୃଶ୍ୟରୂପରେ
ଯେ ଦୃଶ୍ୟ ହୁଅନ୍ତି ପୁଣି ଜ୍ୟୋତିର ବାହାରେ ।
ଯାହାଠାରୁ ଉତ୍ପତ୍ତି ଏ ନିଖିଳ ଜଗତ
ଜଗତପାଳନକାରୀ ଯେ ପ୍ରଭୁ ଅନନ୍ତ ।

ତାହାଙ୍କୁ ମୁଁ ବାରମ୍ବାର କରେ ନମସ୍କାର
ସ୍ଥିତିଉର୍ତ୍ତା ଅଟନ୍ତି ଯେ ପରମ ଈଶ୍ୱର ।
ଯେ କି ଆଦି ପ୍ରଜାପତି ଜଗତର ପତି
ବିଧାତା ଯେ କୃଷ୍ଣ ସୁରଗଣ - ଅଧିପତି ।
ଯେ ପ୍ରଭୁ ପ୍ରବୃତ୍ତ ପୁଣି କର୍ମରୁ ନିବୃତ୍ତ
ତାହାଙ୍କ ଚରଣତଳେ ରହୁ ମୋର ଚିତ୍ତ ।
ନଥାନ୍ତି କର୍ମରେ ଲିପ୍ତ ଯେ ପ୍ରଭୁ ଆବର
ତାହାଙ୍କୁ ମୁଁ ବାରମ୍ବାର କରେ ନମସ୍କାର ।
ସ୍ୱର୍ଗ ଅପବର୍ଗ ଫଳ ଦାନ ଯେ କରନ୍ତି
ସେହି ପ୍ରଭୁ ଗଦାଧର ପାଦେ ମୋ ପ୍ରଣତି ।
ଯାହାଙ୍କୁ ସ୍ମରଣ କଲେ ପାପ ଯାଏ ନାଶ
ବିଶୁଦ୍ଧ ସ୍ୱରୂପ ସେହି ପ୍ରଭୁ ପୀତବାସ ।
ତାହାଙ୍କ ଚରଣ ତଳେ ରହୁ ମୋର ମନ
ପରସ୍ୱରୂପୀ ଯେ ହରି ମେଧା ଭଗବାନ ।
ଯାହାଙ୍କର ଜନ୍ମ ନାହିଁ କ୍ଷୟ ନାହିଁ ପୁଣି
ତାଙ୍କୁ ଶତ ପ୍ରଣାମ ମୁଁ କରୁଅଛି ଗଣି ।
ଯେ ଯଜ୍ଞ ପୁରୁଷ ପୁଣି ଯଜ୍ଞର ଈଶ୍ୱର
ଯଜ୍ଞର ଆଶ୍ରୟ ଯେହୁ ଯଜ୍ଞର ଆଧାର ।
ଯଜ୍ଞରେ ଆବର ପୂଜା କରନ୍ତି ଯାହାଙ୍କୁ
ବାରମ୍ବାର ନମସ୍କାର କରଇ ତାହାଙ୍କୁ ।
ଯେ ବିଷ୍ଣୁ ଜଗତଜନ ପ୍ରଭୁ ମହେଶ୍ୱର
ତାହାଙ୍କ ଚରଣେ କୋଟି କୋଟି ନମସ୍କାର ।
ବେଦବିଦ ବେଦ ଗାନ କରନ୍ତି ଯାପାଇଁ
ଜ୍ଞାନୀମାନଙ୍କର ଗତି ଯେ କମଳାସାଇଁ ।
ବେଦ ବେଦ୍ୟ ଜୟ ଶୀଳ ଅଟନ୍ତି ଆବର
ସେ ବିଷ୍ଣୁ ଚରଣେ କୋଟି କୋଟି ନମସ୍କାର ।
ଜଗତର ସୃଷ୍ଟି ସ୍ଥିତି ଲୟକାରୀ ଯେହି
ସକଳ ସଂସାର ବ୍ୟାପି ଅଛନ୍ତି ଯେ ରହି ।
କୋଟି କୋଟି ପ୍ରଣାମ ସେ ବିଷ୍ଣୁଙ୍କ ଚରଣେ
ଯାହାଙ୍କୁ ଭାବନ୍ତି ସିଦ୍ଧ ଯୋଗୀ ଋଷିଗଣେ ।
ମାୟାଧର ଯେ ଉପେନ୍ଦ୍ର ତାହାଙ୍କୁ ପ୍ରଣତି
ବିଶ୍ୱରୂପୀ ବିଶ୍ୱପତି ଯେହୁ ପ୍ରଜାପତି ।
ଅଖିଳ ସଂସାରଧାରୀ ଯେ ବିଶ୍ୱ ଈଶ୍ୱର
ସେ ବିଷ୍ଣୁଙ୍କ ପାଦପଦ୍ମେ ମୋର ନମସ୍କାର ।
ସୂର୍ଯ୍ୟ ରୂପେ ଯେଉଁ ବେଦ ହୋଇଣ ପ୍ରକାଶ
ଅସୁରମୟ - ଅନ୍ଧାର କରନ୍ତି ବିନାଶ ।

ଚନ୍ଦ୍ର ସୂର୍ଯ୍ୟ ଏହି ଦୁହେଁ ଲୋଚନ ଯାହାର
ସେହି ଉପେନ୍ଦ୍ରଙ୍କୁ ମୋର କୋଟି ନମସ୍କାର ।
ସମସ୍ତ ଲୋକର ଶୁଭ ଅଶୁଭ ଦେଖଇ
ଯେ ଈଶ୍ୱର ସଦା ସତ୍ୟ ଧର୍ମକୁ ରଖଇ ।
ଚରାଚର ନିୟନ୍ତା ଯେ ଅଜର ଅମର
ସେ ବିଷ୍ଣୁଙ୍କୁ ମୋର କୋଟି କୋଟି ନମସ୍କାର ।
ମୋର ମନୋରଥ ପୂର୍ଣ୍ଣ କର ଜନାର୍ଦ୍ଦନ
ତବ ପାଦପଦ୍ମେ ରହୁ ଗୋପୀନାଥ ଜନ୍ମ ।

=+=

## ବାମନ ଜନ୍ମ

କହିଲେକ ମହାମୁନି ଲୋମହରଷଣ
ଅଦିତି ଏରୂପେ ସ୍ତବ କରୁଁ ନାରାୟଣ ।
ପ୍ରାଣୀର ଅଦୃଶ୍ୟ ସେହି ବାସୁଦେବ ହରି
ପ୍ରସନ୍ନ ହୋଇ ଅଦିତି ଆଗେ ବିଜେକରି ।
ବୋଇଲେ ତୁମ୍ଭର ପୂର୍ଣ୍ଣ ହେବ ମନୋରଥ
ଏଥିରେ ସଂଶୟ ନାହିଁ ଆହେ ଦେବମାତ ।
ଯେଉଁବର ଦେଉଅଛି ଶୁଣ ଗୋ ଅଦିତି
ଯେ ଜନ ଏ ବନେ ରହି କରଇ ମୋ ସ୍ତୁତି ।
ତାହାର କାମନା ପୂର୍ଣ୍ଣ ହୁଅଇ ନିଶ୍ଚୟ
ମୁଁ ତାଙ୍କୁ ଦର୍ଶନ ଦେଇ କରଇ ନିର୍ଭୟ ।
ଯେ ଜନ ଏ ପୁଣ୍ୟବନେ ଘର କରି ରହେ
ତାର କଥା କି କହିବି ତୋ ଆଗରେ ମାୟେ ।
ଦୂରେ ଥାଇଁ ଯେ ଜନ ଏ ବନ ସୁମରଇ
ସେ ଜନ ପରମପଦ ନିଶ୍ଚୟ ଲଭଇ ।
ଆବର ଯେ ଜନ ଆସି ଶ୍ରଦ୍ଧାରେ ଏ ବନେ
ବ୍ରାହ୍ମଣମାନଙ୍କୁ ତୋଷ କରଇ ଭୋଜନେ ।
ପାଞ୍ଚ ତିନି ଦୁଇ ଏକ ଅଥବା ବହୁତ
ସେ ପରମଗତି ଲଭେ ଏକଥା ନିୟତ ।
ଅଦିତି କହିଲି ଦେବ ଭକତବତ୍ସଳ
ମୋଠାରେ ପ୍ରସନ୍ନ ଯେବେ ହେଲ ଆଦିମୂଳ
ମୋର ପୁତ୍ର ଇନ୍ଦ୍ରହେଉ ତ୍ରିଭୁବନ ପତି
ଅସୁରେ ଯେ ତାର ରାଜ୍ୟେ ହୋଇଣ ନୃପତି ।
ଯାର ଯଜ୍ଞଭାଗ ନେଇ ଅଛନ୍ତି ଛଡ଼ାଇ
ମୋର ପୁତ୍ର ଦେବରାଜ ତା ଯେମନ୍ତେ ପାଇ ।
ଏହି ଦୁଃଖ ଦୁଃଖିତ ମୁଁ ହୋଇଛି କେଶବ
ମୋ ମର୍ମ ବେଦନା ଦୂରକର ଦେବଦେବ ।
ଶ୍ରୀହରି କହିଲେ ଦେବି ! ହେଲୁ ମୁଁ ପ୍ରସନ୍ନ
କଶ୍ୟପ ବୀର୍ଯ୍ୟେ ତୋ ଗର୍ଭେ ହେବ ଉତପନ୍ନ ।
ସମସ୍ତ ଅସୁର କୁଳ କରିବ ନିର୍ମୂଳ
ଏମନ୍ତ କହିଲେ ଯହୁଁ ଦେବ ଆଦିମୂଳ ।
ଏମନ୍ତ କହିଲେ ପ୍ରଭୁ ହେ ବିଶ୍ୱଭାବନ
ଦେବ ଦେବ କେଶବ ହେ ପତିତପାବନ ।
ତୁମ୍ଭଙ୍କୁ ମୋହର କୋଟି କୋଟି ନମସ୍କାର
ତୋତେ ଗର୍ଭେ ବହିବାକୁ ସମର୍ଥ କି ମୋର ।
ଚରାଚର ବିଶ୍ୱ ତୋର ଗର୍ଭରୁ ସମ୍ଭବ
ସୃଷ୍ଟି ସ୍ଥିତି ଲୟ କାରୀ ତୁହି ଦେବଦେବ ।
ମୁଁ ସାମାନ୍ୟ ନାରୀ ତୋତେ କେମନ୍ତେ ବହିବି
ଶ୍ରୀହରି ବୋଇଲେ ଶୁଣ କଶ୍ୟପ ବାନ୍ଧବୀ ।
ମୋ ସହିତ ତୁମ୍ଭଙ୍କୁ ମୁଁ କରିବି ଧାରଣ
ତୋତେ ମୋତେ କିଛି ପୀଡ଼ା ନ ହେବ ଗୋ ଜାଣ ।
ତୁହି ସୁଖେ ଥାଅ ଏଥୁ ଯାଉଅଛି ମୁହିଁ
ଏହା କହି ଅନ୍ତର୍ଦ୍ଧାନ ହେଲେ ଭାବଗ୍ରାହୀ ।
କହନ୍ତି ଯେ ମହାମୁନି ଲୋମହରଷଣ
ରହିଲେ ଅଦିତି ଗର୍ଭେ ପ୍ରଭୁ ନାରାୟଣ ।
ଉଦରେ ଉଦୟ ଯହୁଁ ହେଲେ ଜଗନ୍ନାଥ
ମହୀ ଟଳଟଳ ହେଲା କମ୍ପିଲା ପର୍ବତ ।
ଲଙ୍ଘିଲା ସାଗର ଜଳ କୂଳକୁ ସେ କାଳେ
ଜଳଜନ୍ତୁ ସଞ୍ଚାଳିତ ହେଲେ ମହାଜଳେ ।
ଅଦିତିଙ୍କ ପାଦ ପଡ଼େ ଯେଉଁ ଯେଉଁ ସ୍ଥଳେ
ସେହି ସେହି ସ୍ଥାନାପଶି ଯାଏ ରସାତଳେ ।
ଦଇତମାନଙ୍କ ତେଜ ହୋଇଗଲା ହାନି
ଗୋପୀନାଥ ଭଜି ହରି ପାଦପଦ୍ମ ବେନି ।
ସାଗର ସମାନ ଏହି ବାମନ ପୁରାଣ
ଲୋକ ହିତେ ଗୀତ କଲା ଜନେ ପଢ଼ି ଶୁଣ ।
ହରି ହରି ବୋଲ ଭାଇ ଭବୁଁ ଯିବ ତରି
ଭବ-ସାଗରକୁ ଏକା ହରି ନାମ ତରି ।

=+=

## ପ୍ରହଲାଦ ଭକ୍ତି

କହିଲେକ ମହାମୁନି ଲୋମହରଷଣ
ତେଜୋହୀନ ହୋଇବାରୁ ନିଶାଚରଗଣ ।

ପିତାମହ ପ୍ରହ୍ଲାଦଙ୍କୁ ପଚାରିଲେ ବଳୀ
ମୋର ତେଜେ ହୋଇଥିଲେ ଦୈତ୍ୟେ ମହାବଳୀ
ଅଗ୍ନିଦଗ୍ଧ ପ୍ରାୟ କିମ୍ବା ହୋଇଲେ ନିସ୍ତେଜ
ବ୍ରହ୍ମଶାପେ ଗ୍ରସ୍ତ ଯେହ୍ନେ ହୁଅନ୍ତି ମନୁଜ ।
ସେହିପରି କାହିଁପାଇଁ ହେଲେ ତେଜୋହୀନ
କି ଦୁଷ୍କର୍ମ କଲେ ଅବା ନିଶାଚରଗଣ ।
କୃତ୍ୟା ଅବିଷ୍କାର ଅବା କଲେ ଦେବତାଏ
ତେଣୁ ଏହି ଦେଖାଯାନ୍ତି ତେଜୋହୀନ ପ୍ରାୟେ ।
ଶୁଣ ହେ ବିପ୍ରେ କହନ୍ତି ଲୋମହରଷଣ
ପ୍ରହ୍ଲାଦ ନାତିର କଥା କରିଣ ଶ୍ରବଣ ।
ମନେ ମନେ ଭାଳି ଭାଳି କହେ ଧୀରେ ଧୀରେ
କାହିଁ ପାଇଁ ଭୂମିକମ୍ପ ହୁଏ ବାରେ ବାରେ ।
କମ୍ପେ ନଦ ନଦୀ ଆଦି ସାଗର ସହିତ
ଗ୍ରହେ ନ ଚଳନ୍ତି ସୂର୍ଯ୍ୟ ହୋଇଲେ ଉଦିତ ।
କି କାରଣେ ଦେବଗଣେ ଆନନ୍ଦ ହୁଅନ୍ତି
ମହାବାହୁ ବଳୀ ଆହେ ନିଶାଚର ପତି ।
ଏ ସାମାନ୍ୟ କଥା ନୁହେ ବିବେଚନା କରି
କାର୍ଯ୍ୟକର ଯେଣେ ଭଲହେବ ଦଣ୍ଡଧାରୀ ।
ଲୋମହରଷଣ ଋଷି କହିଲେ ଏମନ୍ତ
ଅସୁରସତ୍ତମ ସେହି ପ୍ରହ୍ଲାଦ ଭକତ ।
ବଳୀକି ଏମନ୍ତ କହି କଲେ ବିଷ୍ଣୁ ଧ୍ୟାନ
ଧ୍ୟାନବଳେ ଦେଖିଲେ ସେ ଭକତ ପ୍ରଧାନ ।
ଅଛନ୍ତି ବାମନରୂପେ ଅଦିତି ଉଦରେ
ସେ ବାମନ ମୂର୍ତ୍ତିଙ୍କର ଦେହ ଅଭ୍ୟନ୍ତରେ ।
ଅଛନ୍ତି ଯେ ବସୁଗଣ ପୁଣି ରୁଦ୍ରଗଣ
ଅଶ୍ୱିନୀକୁମାର ଦୁଇ ବିଶ୍ୱଦେବଗଣ ।
ମରୁଦ୍‌ଗଣ ସାଧ୍ୟଗଣ ଗନ୍ଧର୍ବ ନିକର
ସକଳ ଉରଗ ଆଉ ଯେତେ ନିଶାଚର ।
ପୁତ୍ର ବିରୋଚନ ନାତି ବଳୀ ଦୈତ୍ୟପତି
ନରକ କୁଜମ୍ଭ ଜମ୍ଭ ଅସୁର ପ୍ରଭୃତି ।
ବାଣାସୁର ଆଦି ଯେତେ ଅସୁର ନିକର
ବାୟୁ ଅନ୍ତରୀକ୍ଷ ମନ ଅଗ୍ନି ଆତ୍ମାନୀର ।
ସକଳ ପର୍ବତ ଦ୍ରୁମ ସରୋବର ଯେତେ
ସପ୍ତଦ୍ୱୀପ ସପ୍ତସିନ୍ଧୁ ପୃଥିବୀ ସହିତେ ।
ମନୁଷ୍ୟ ଯେ ପଶୁପକ୍ଷୀ ଯେତେ ସରିସୃପ
ବ୍ରହ୍ମା ମହେଶ୍ୱର ଗ୍ରହନକ୍ଷତ୍ର ସ୍ୱରୂପ ।

ତାରାଗଣ ଋଷିଗଣ ଯେତେ ପ୍ରଜାପତି
ଦରଶନ କରି ସେହି ଦୈତ୍ୟ ମହାମତି ।
ଅତ୍ୟନ୍ତ ବିସ୍ମିତ ହୋଇ ଧ୍ୟାନତ୍ୟାଗ କରି
ବୋଇଲେରେ ବତ୍ସ ଶୁଣ କହୁଛି ବିସ୍ତାରି ।
ଦେବଙ୍କ ଉପରେ ଦେବ ଯେହୁ ଆଦିମୂଳ
କମଳା ସେବନ୍ତି ଯାର ଚରଣ କମଳ ।
ଯେ ଜଗତପ୍ରଭୁ ଯାର ଆଦିଅନ୍ତ ନାହିଁ
ବରଣ୍ୟେ ବରଦ ଅଜ ଯେହୁ ଭାବଗ୍ରାହୀ ।
ଯେ ସକଳ ଶୋକତାପ କରନ୍ତି ହରଣ
ସର୍ବଶ୍ରେଷ୍ଠ ପରାତ୍ପର ବିଭୁ ନାରାୟଣ ।
ପ୍ରମାଣ ସ୍ୱରୂପ ସର୍ବଜନଙ୍କର ଗତି
ସପ୍ତଲୋକ ଗୁରୁଙ୍କର ଗୁରୁ ଯେ ଅଟନ୍ତି ।
ଜଗନ୍ନାଥ ଜନାର୍ଦ୍ଦନ ଜଗତପାଳନ
ରହିଛନ୍ତି ଅଦିତିର ଗର୍ଭରେ ନନ୍ଦନ ।
ପ୍ରଭୁମାନଙ୍କର ପ୍ରଭୁ ପରାତ୍ପର ସେହି
ଯାହାଙ୍କର ଆଦି ମଧ୍ୟ ଅନ୍ତ କିଛି ନାହିଁ ।
ସେହି ପ୍ରଭୁ ଷଡ଼ବିଧ ଅଇଶ୍ୱର୍ଯ୍ୟ ପୂର୍ଣ୍ଣ
ଅଦ୍ୱିତୀୟ ସ୍ୱରୂପ ସେ ପରମାତ୍ମା ଜାଣ ।
ତ୍ରିଭୁବନ ରକ୍ଷାପାଇଁ ହେଲେ ଅବତାର
ଯାହାରୂପ ଅଗୋଚର ବ୍ରହ୍ମା ଶିବଙ୍କର ।
ଯାରୂପକୁ ଇନ୍ଦ୍ରସୂର୍ଯ୍ୟ ଜାଣି ନ ପାରନ୍ତି
ମରୀଚି ପ୍ରଭୃତି ମହାଜ୍ଞାନୀ ନ ଜାଣନ୍ତି ।
ସେହି ବାସୁଦେବ ହେଲେ ଅଂଶ ଅବତାରି
ଆହେ ଦନୁଜେନ୍ଦ୍ର ଦୈତ୍ୟରାଜ ଅଧିକାରୀ ।
ଅକ୍ଷର କହନ୍ତି ଯାକୁ ବେଦ ବିଦ୍ୱଜନେ
ପ୍ରଣାମ କରୁଛି ବାବୁ ତାହାଙ୍କ ଚରଣେ ।
ନିଷ୍ପାପୀ ଯା ଦେହେ ଲୀନ ହୁଅନ୍ତି ଅନ୍ତିମେ
ଯାର ଦରଶନେ ଜନ ପୁଣି ନ ଜନମେ ।
ସାଗରୁ ଲହରୀମାନ ଉଠଇ ଯେସନେ
ତେସନ ଉତ୍ପତ୍ତି ଯାହାଗର୍ଭୁ ଜୀବଗଣେ ।
ପ୍ରଳୟ କାଳରେ ଜୀବ ଯହିଁ ହୁଏ ଲୀନ
ଯେ ଅଚିନ୍ତ୍ୟରୂପ ବାସୁଦେବ ଭଗବାନ ।
ଶ୍ରୋତ ତ୍ୱକ ଚକ୍ଷୁ ଜିହ୍ୱା ନାସାରନ୍ଧ୍ରେ ପୁଣ
ଶବ୍ଦସ୍ପର୍ଶ ରୂପ ରସ ଗନ୍ଧକୁ ଗ୍ରହଣ ।
କରନ୍ତି ଯେ ପ୍ରଭୁ ତାଙ୍କପାଦେ ନମସ୍କାର
ନୁହନ୍ତି ଯେ ପୁଣି ଚକ୍ଷୁତ୍ୱଚର ଗୋଚର ।

ଜଗତ ଈଶ୍ୱର ଯାର ଆଦି ମଧ ନାହିଁ
ସ୍ପର୍ଶକରି ନ ପାରଇ ପାପ ଯାହାଙ୍କୁହିଁ ।
ଯାହାଙ୍କ ବିଗ୍ରହ ନିତ୍ୟ ଲୀଳାମୟ ଅଟେ
ଚୈତନ୍ୟ ସ୍ୱରୂପେ ଯେହୁ ଜଗତେ ପ୍ରକଟେ ।
ଯେ ନିଗ୍ରହ ଅନୁଗ୍ରହକାରୀ ନାରାୟଣ
ତିରସ୍କାର ପୁରସ୍କାରେ ଅଟନ୍ତି ନିପୁଣ ।
ଲୋକରକ୍ଷଣ ଯେ ଭବଭୟ ନିବାରଣ
ସେ ହରି ଚରଣ ତଳେ ପଶୁଛି ଶରଣ ।
ଦନ୍ତାଗ୍ରେ ଯେ କରିଥିଲେ ଧରଣୀ ଉଦ୍ଧାର
କୋଟି କୋଟି ବିଶ୍ୱଅଛି ଗର୍ଭରେ ଯାହାର ।
ସର୍ବଜନ ପୂଜନୀୟ ସଂହାରକରତା
ସର୍ବବ୍ୟାପୀ ଯେହୁ ପ୍ରାଣିଗଣଙ୍କ ନିୟନ୍ତା ।
ସେ ହରିର ପାଦତଳେ ମୋର ନମସ୍କାର
ଅଦିତିଗର୍ଭେ ଯେ ପ୍ରଭୁ ହେଲେ ଅବତାର ।
ଅସୁରଗଣଙ୍କ ତେଜ ଯେ କଲେ ହରଣ
ନିରନ୍ତର ସେ ପ୍ରଭୁର ଚରଣେ ଶରଣ ।
ଏ ସଂସାର - ତରୁର ଯେ କୁଠାର ଅନନ୍ତ
ସେ ଅଚ୍ୟୁତ ପାଦପଦ୍ମେ ରହୁ ମୋର ଚିତ୍ତ ।
ଏମନ୍ତେ ପ୍ରହ୍ଲାଦ କରି ବିଷ୍ଣୁଙ୍କୁ ପ୍ରଣତି
ବୋଇଲେ ହେ ଅସୁରେନ୍ଦ୍ର ଦୈତ୍ୟ ଭୂମିପତି ।
ଅଦିତି ଜଠରେ ବିଷ୍ଣୁ ହେଲେ ଅବତାର
ତେଣୁ ବଳ ବପୁ କ୍ଷୀଣ ହୋଇଲା ତୁମ୍ଭର ।
ଏ ବଚନ ଶୁଣି ବଳୀ କହିଲା ଭୋ ତାତ
ଆମ୍ଭର ବିପଦ ହେଲା ଯାହାଠାରୁ ଜାତ ।
ସେ ହରି କେ କହ ତାହା ଆମ୍ଭଙ୍କୁ ବୁଝାଇ
ତାଠାରୁ କି ବଳବନ୍ତ ଆଉ କେହିନାହିଁ ।
ଶତ ଶତ ବଳବନ୍ତ ଅଛନ୍ତି ମୋ ପାଶେ
ଏକେ ଏକେ ମହାବଳ ବିକ୍ରମ ସାହସେ ।
ପୃଥିବୀର ଭାରା କରି ପାରନ୍ତି ଗ୍ରହଣ
ଜଣେ ଜଣେ କୃଷ୍ଣଠାରୁ ବଳଶାଳୀ ଜାଣ ।
ବିପ୍ରଚିତ୍ତି ଶିବ ଶମ୍ଭୁ ଜମ୍ଭ ହୟଶିରା
ଦୁର୍ଜୟ କୁଜମ୍ଭ ମହାହନୁ ଅଶ୍ୱଶିରା ।
କୁକ୍କୁରାକ୍ଷ ଭଙ୍ଗକାର ପ୍ରବଶ ଏ ଆଦି
ନିଶାଚରେ ପାରନ୍ତି ଯେ ତିନିପୁର ସାଧି ।
କହନ୍ତି ଯେ ମହାମୁନି ଲୋମହରଷଣ
ପ୍ରହ୍ଲାଦ ନାତିର କଥା କରିଣ ଶ୍ରବଣ ।
ମହାକ୍ରୋଧେ କହିଲେ ସେ ବଳୀକି ଅନାଇ
ଜାଣିଲି ଏଣିକି ଆଉ ତୋର ରକ୍ଷା ନାହିଁ ।
ଦଇତ୍ୟ ଦାନବ ଯେତେ ତୋହର ଅଧୀନ
ସମସ୍ତେ ହୋଇବ ବିଷ୍ଣୁହସ୍ତରେ ନିଧନ ।
ଯେଣୁ ତୁ ବିବେକଶୂନ୍ୟ ଦୁର୍ବୁଦ୍ଧି ସଦୃଶ
ତୋହଭିନ୍ନ ଅନ୍ୟ କେଉଁ ପାପାତ୍ମା ପୁରୁଷ ।
ଦେବଦେବ ମହାଭାଗ ଜନ୍ମ ବିରହିତ
ଯେ କି ଅଣିମାଦି ଅଷ୍ଟ ଅଇଶ୍ୱର୍ଯ୍ୟବନ୍ତ ।
ସେ ପ୍ରଭୁଙ୍କୁ କହିପାରେ ଏମନ୍ତ ବଚନ
କହୁଅଛି ଶୁଣ ଆରେ ଦାନବରାଜନ ।
ଯାହାଙ୍କର ନାମ ଧରି କହିଗଲୁ ତୁହି
କୀଟ ପ୍ରାୟ ମଣନ୍ତି ସେ ବୀରଗଣଙ୍କୁହିଁ ।
ଅଧିକ କି କହିବି ମୁଁ ତିନିପୁରେ ଯେତେ
ଦଇତ୍ୟ ଦାନବଗଣ ରାକ୍ଷସ ସହିତେ ।
ବ୍ରହ୍ମା ରୁଦ୍ର ଇନ୍ଦ୍ର ଆଦି ଯେତେ ଦେବଗଣ
ଯକ୍ଷରକ୍ଷ ବିଦ୍ୟାଧର କିନ୍ନର ଚାରଣ ।
ସ୍ଥାବର ଜଙ୍ଗମ କୀଟ ପତଙ୍ଗ ସହିତ
ତୁହି ମୁହିଁ ନଦନଦୀ ବନ ପରବତ ।
ତରୁ ଲତା ସହିତରେ ଜଗତ ଯେତେକ
ଅନ୍ତରୀକ୍ଷ ଦ୍ୱୀପସିନ୍ଧୁ ଚତୁର୍ଦ୍ଦଶ ଲୋକ ।
ଯାହାଙ୍କର ଏକ ଏକ ଅଂଶରୁ ସମ୍ଭୂତ
ଯେ ପ୍ରଭୁ ଅଟନ୍ତି ଆଦି ଅଚ୍ୟୁତ ଅନନ୍ତ ।
କରନ୍ତି ସକଳେ ଯାର ଚରଣ ବନ୍ଦନ
ସର୍ବବ୍ୟାପୀ ଅନ୍ତର୍ଯ୍ୟାମୀ ସେହୁ ସନାତନ ।
ତାଙ୍କୁ କହ କେଉଁ ଲୋକ କହିପାରେ ଏହା
ଏକା ତୁହି କହିପାରୁ ଆରେ ଦୈତ୍ୟନାହା ।
ଯେହେତୁ ତୋହର ମୃତ୍ୟୁ ହେଲାଣି ନିକଟ
ତେଣୁ ତୋ ମୁଖରୁ ହେଲା ଏ ବାକ୍ୟ ପ୍ରକଟ ।
ସେ ଦେବଦେବଙ୍କୁ ଚିହ୍ନି ନ ପାରିଲୁ ତୁହି
ସଦବୁଦ୍ଧି ସଦଜ୍ଞାନ ହୋଇବ ବା କାହିଁ ।
ସାଧୁ ବୃଦ୍ଧଜନଙ୍କର ନ କରୁଛୁ କଥା
ଏ ସବୁ ଶୋଚନା କରେ ବସି ମୁଁ ସର୍ବଥା ।
କାହିଁକିନା ମୋର ଘରେ ଜନମ ତୋହର
ଜାଣିଲି ଅଧମ ଅଟେ ତୋହର ପିଅର ।
ଯେହେତୁ ତୋ ପରା ପୁତ୍ର ଜାତ କଲା ସେହି
ଦେବଦେବ ବାସୁଦେବ ସାଧୁ ଭାବଗ୍ରାହୀ ।

ତାଙ୍କୁ ଅବମାନନା ତୁ କରୁ ରେ ପାମର
ଏଣୁ ମୋ ପୌତ୍ରକୁ ମୁହିଁ ନିନ୍ଦେ ରେ କୁମର ।
କୃଷ୍ଣଠାରେ ଭକ୍ତି କଲେ ଯାହା ହୁଏ ଲାଭ
ଚତୁର୍ଦ୍ଦଶ ଭୁବନରେ ସେ ଦ୍ରବ୍ୟ ଦୁର୍ଲ୍ଲଭ ।
ସଂସାର ଯାତନା ଦୂର ହୁଅଇ ତାହାର
ଜନନୀ ଜଠରେ ଜାତ ନୋହେ ପୁନର୍ବାର ।
ଆଜିଠାରୁ ଜାଣିଥା ତୁ ଆରେ ଦୈତ୍ୟପତି
ପ୍ରାଣରୁ ଅଧିକ ମୋର ଅଟନ୍ତି ଶ୍ରୀପତି ।
ଏ କଥାକୁ ଜଗତରେ ଜାଣନ୍ତି ସମସ୍ତେ
ସେ ହରିଙ୍କି ଅମାନ୍ୟ ତୁ କରୁ ମୋ ସାକ୍ଷାତେ ।
ତୋର ଗୁରୁ ବିରୋଚନ ମୁଁ ତାହାର ଗୁରୁ
ଶ୍ରୀହରି ମୋହର ଗୁରୁ ତୋ ପରମ ଗୁରୁ ।
ତୁ ତାହାଙ୍କ ନିନ୍ଦା କରୁ ଜାଣିଲି ଏଥର
ଅଳପ ଦିନରେ ଶିରୀ ତୁଟିବ ତୋହର ।
ଜଗତରେ ନାଥ ସେହି ଦେବ ଜନାର୍ଦ୍ଦନ
ତାହାଙ୍କୁ ତୁ ମୋତେ ପୁଣି କଲୁ ଯେ ଅମାନ୍ୟ ।
ଏ କାରଣୁ ତୋତେ ମୁହିଁ ନିଶ୍ଚେ ଶାପ ଦେବି
ବାସୁଦେବ ନିନ୍ଦା କ୍ଷଣେ ସହି ନ ପାରିବି ।
ବିଷ୍ଣୁ ନିନ୍ଦା ମୋର ଶିରଚ୍ଛେଦର ସମାନ
ଏ କାରଣୁ ରାଜ୍ୟଭ୍ରଷ୍ଟ ହୋଇବୁ ରାଜନ ।
ଏହି ଅଭିଶାପ ତୋତେ ଫଳିବ ମୋହର
ନିଶ୍ଚେ ଅଇଶ୍ୱର୍ଯ୍ୟ ଭ୍ରଷ୍ଟ ହୋଇବ ତୋହର ।
କୃଷ୍ଣ ବିନା ବ୍ରହ୍ମାଣ୍ଡରେ ଆନ ଜଣେ ନାହିଁ
ଭବସାଗରରୁ ପାରି କରିବାକୁ କେହି ।
ଏହା କହି ପ୍ରହଲାଦ ହୋଇଲେ ମଉନ
ଦୀନ ଗୋପୀନାଥକୁ ଯେ ରଖ ଭଗବାନ ।

=+=

## ବଳୀ ଯଜ୍ଞେ ବାମନର ଆଗମନ

କହିଲେକ ମହାମୁନି ଲୋମହରଷଣ
ଦୈତ୍ୟପତି ବଳୀ ବିରୋଚନର ନନ୍ଦନ ।
ପ୍ରହ୍ଲାଦର କୋପଯୁକ୍ତ ଶାପ ବାଣୀ ଶୁଣି
ବାରମ୍ବାର ପାଦତଳେ ପଡ଼ି ବୀରମଣି ।
ବୋଇଲେ ଭୋ ତାତ ହୁଅ ମୋଠାରେ ପ୍ରସନ୍ନ
କୋପକୁ ସଂହର ମୁହିଁ ମୋହର ଆଚ୍ଛନ୍ନ ।
ବଳିଦର୍ପେ ହତଜ୍ଞାନ ହେବାରୁ ଏମନ୍ତ
କହିଗଲି ମୋର ଦୋଷ ନ ଧର ଭୋ ତାତ ।
ମୋହବଶୁଁ କାର୍ଯ୍ୟାକାର୍ଯ୍ୟ ଜ୍ଞାନନାହିଁ ମୋର
ଜାଣିଲି ମୋଠାରେ ଦୟା ଥିବାରୁ ତୁମ୍ଭର ।
ଦେଇଅଛ ମୋତେ ତୁମ୍ଭେ ଉଚିତ ଯେ ଶାସ୍ତି
ଆବର ଯା ବୋଲିଅଛି ସେ ସତ୍ୟ ଭାରତୀ ।
ଭଲ କରିଅଛ ଶାପ ଦେଇଅଛ ଯାହା
ରାଜ୍ୟ ଯଶ ଭ୍ରଷ୍ଟ ପଛେ ହେଉ ଯାହା ତାହା ।
ଦୁରାଚାରୀ ପାପଆତ୍ମା କହିଛ ଯେ ମୋତେ
ଏ ସବୁରେ ଦୁଃଖ ଜାତ ନ ହୁଏ ମୋ ଚିତ୍ତେ ।
ମୋହର ଦୁର୍ଲଭ କିଛି ନାହିଁ ତ୍ରିଭୁବନେ
ଯଶ ଶ୍ରୀ ଐଶ୍ୱର୍ଯ୍ୟ ରାଜ୍ୟ ସମ୍ପଦ ଏମାନେ ।
ତୁମ୍ଭ ତୁଲ୍ୟ ଗୁରୁ ଏକ ସଂସାରେ ଦୁର୍ଲଭ
ଏଣୁ ସୁପ୍ରସନ୍ନ ହୋଇ ଦିଅ ପରାଭବ ।
ତୁମ୍ଭ କ୍ରୋଧାନଳେମୋର ଦେହ ପୋଡୁଅଛି
ରୋଷ ପରିହର ବୋଲି ଏଣୁ ମୁଁ କହୁଛି ।
ବଳିର ଏ କଥା ଶୁଣି ବୋଇଲେ ପ୍ରହ୍ଲାଦ
ଆରେ ବତ୍ସ ମୋହରେ ମୋ ବୁଦ୍ଧିହେଲା ଅନ୍ଧ ।
ତେଣୁ ମୋର ବିବେଚନା ନ ପାରିଲା ରହି
କି ନ କରେ ଦେବ ବାବୁ କ୍ଷଣକେ କ୍ରୋଧହିଁ ।
ତାହା ଯୋଗୁଁ ଅଭିଶାପ ଦେଲେ ସିନାତୋତେ
ଭଲ ମନ୍ଦ ବିଚାରଟି ନ ରହିଲା ଚିତ୍ତେ ।
ମୋହେ ଯେବେ ହତଜ୍ଞାନ ମୁହିଁ ହୋଇଥାନ୍ତି
ତୋତେ କି ବାବୁରେ ଅଭିଶାପ ଦେଇଥାନ୍ତି ।
ଭଲଭାବେ ଜାଣଇ ଯେ ସର୍ବବ୍ୟାପୀ ହରି
ତଥାପି ମୁଁ ତୋତେ ଶାପଦେଲି ଦଣ୍ଡଧାରୀ ।
ଯାହା ମୁଁ କହିଛି ତାହା ନୋହିବ ଅନ୍ୟଥା
ଅବଶ୍ୟଫଳିବ ସେଥିପାଇଁ ନାହିଁ ଚିନ୍ତା ।
ଆଜିଠାରୁ ଦେବ ଦେବ ଅଚ୍ୟୁତଙ୍କ ଠାରେ
ଭକତି ରଖରେ ବାବୁ ଭିତରେ ବାହାରେ ।
ସେ ପ୍ରଭୁ କରିବେ ତୋତେ ଶାପରୁ ମୁକତ
ଯେବେ ତୁ ଭଜିବୁ ବାବୁ ଅନନ୍ତ ଅଚ୍ୟୁତ ।
ଏଥିଅନ୍ତେ କହିଲେକ ଲୋମହରଷଣ
ଏଣେ ସର୍ବ କାମପ୍ରଦ ପ୍ରଭୁ ନାରାୟଣ ।
ଅଦିତି ଗର୍ଭରୁ ଜନ୍ମି କ୍ରମେ କ୍ରମେ ବଢ଼ି
ଦଶମାସ ହେଲା ନବମାସ ଗଲା ଗଡ଼ି ।
ବାମନ ମୂରତି ଧରି ଭୂମିରେ ପଡ଼ିଲେ
ନିରାମୟ ଜ୍ୟୋତିର୍ମୟ ତେଜ ପ୍ରକାଶିଲେ ।

ଜନମ ହୁଅନ୍ତେ ହରି ବାମନ ରୂପରେ
ଆନନ୍ଦ ହୋଇଲେ ଦେଖି ସକଳ ଅମରେ ।
ରାକ୍ଷସର ଭୟ ଆଉ ନ ରହିଲା ଚିତ୍ତେ
ଅଦିତିର ଆନନ୍ଦ ମୁଁ କହିବି ବା କେତେ ।
ଧୀରେ ଧୀରେ ବହିଲାକ ଶୀତଳ ପବନ
ପ୍ରଫୁଲ୍ଲିତ କରାଇଲା ଜଗଜ୍ଜନ ମନ ।
ଆକାଶେ ନିର୍ମଳ ହୋଇ ପ୍ରକାଶିଲା ଜ୍ୟୋତି
ସମୁଦାୟ ପ୍ରାଣୀଙ୍କର ଧର୍ମେ ହେଲା ମତି ।
ଉଦ୍ବେଗ ଯେ ନ ରହିଲା ମାନବଙ୍କ ଦେହେ
ସୁସ୍ଥ ଚିତ୍ତ ହେଲେ ପ୍ରାଣୀ ହେ ଦ୍ୱିଜ ନିର୍ବାହେ ।
ଲୋକ ପିତାମହ ବ୍ରହ୍ମାଶ୍ରଦ୍ଧାଚିତ୍ତେ ଆସି
ଜାତ ହେଲା ମାତ୍ରେ ଜାତକର୍ମ କଲେ ବସି ।
ପ୍ରଫୁଲ୍ଲ ମନରେ କରଯୋଡ଼ି କଲେ ସ୍ତୁତି
ଜୟ ଜୟ ହେ ଅଜେୟ ଲୋକ ଅଧିପତି ।
ଜୟ ଜୟ ସର୍ବଜନ ଗୁରୁ ହେ ଅଚ୍ୟୁତ
ଜୟ ଜୟ ଜୟ ମୃତ୍ୟୁ ଜରାର ଅତୀତ ।
ଜୟ ଜୟ ଅଜିତ ହେ ଜୟ ହେ ଅଶେଷ
ଜୟ ଜୟ ଅବ୍ୟକ୍ତ ହେ ଜୟ ପୀତବାସ ।
ଜୟ ଜୟ ସ୍ଥିତି ରୂପୀ ପରମାର୍ଥ ରୂପୀ
ଜୟ ଜୟ ସର୍ବଜ୍ଞ ହେ ଜୟ ବିଶ୍ୱବ୍ୟାପୀ ।
ଜୟ ଜୟ ଜ୍ଞାନମୟ ଜଗତ କରତା
ଜୟ ଜୟ ଜଗଦ୍‌ଗୁରୁ ଜଗତ ହରତା ।
ଜୟ ଜୟ ଜଗଜ୍ଜନ ସାକ୍ଷୀ ନରହରି
ଜୟ ଜୟ ଜଗତର ପ୍ରଭୁ ଦଇତ୍ୟାରି ।
ଜୟ ଜୟ ସର୍ବଜନ ହୃଦୟ ନିବାସ
ଜୟ ଜୟ ଆଦି ମଧ୍ୟ ଅନ୍ତ ହୃଷୀକେଶ ।
ଜୟ ଜୟ ମୋକ୍ଷଦାତା ପୁରୁଷ ଉତ୍ତମ
ଜୟ ଜୟ ନିତ୍ୟାନନ୍ଦ ଅପାର ମହିମ
ଜୟ ଜୟ ଜଗନ୍ମୟ ଜଗତ ମଙ୍ଗଳ
ଜୟ ଜୟ ଗୁଣମୟ ଜୟ ଆଦିମୂଳ ।
ଜୟ ଜୟ ପ୍ରଭୁ ସୂକ୍ଷ୍ମଠାରୁ ସୂକ୍ଷ୍ମ ତୁହି
ଜୟ ଜୟ ଜିତେନ୍ଦ୍ରିୟ ଯୋଗୀ ଭାବଗ୍ରାହୀ ।
ଜୟ ଜୟ ମାୟାଧର ପୁରୁଷ ପୁରାଣ
ଜୟ ଜୟ ଶେଷ ଭୋଗଶାୟୀ ନାରାୟଣ ।
ଜୟ ଜୟ ଅକ୍ଷୟ ହେ ବରାହ ମୂରତି
ଦନ୍ତ ଅଗ୍ରେ ଉଦ୍ଧାରିଲୁ ସର୍ବ ବସୁମତୀ ।

ଜୟ ଜୟ ନୃସିଂହ ହେ ହୃଦୟ ବିଦାରି
ମାୟା ବାମନ ରୂପରେ ଏବେ ଅବତରି ।
ଜୟ ଜୟ କେଶବ ହେ ତୋ ରୂପ ଅନେକ
ଜଗତର ଆତ୍ମା ତୁହି ତୋ ଆତ୍ମା ଅଲେଖ ।
ଅଶେଷ ତୋ ରୂପ ତୋତେ କେ ପାରିବ ଚିହ୍ନି
ଏକମାତ୍ର ନିଧି ତୁହି ଜଗତର ପ୍ରତି ।
ତୁହି ତୋର ମାୟାଜାଲେ ହୋଇଛୁ ଆଚ୍ଛନ୍ନ
ଜଗତ ବିଧାନ କର୍ତ୍ତା ତୁହି ଜନାର୍ଦ୍ଦନ ।
ବିକାର ପ୍ରକୃତି ସିନା ରୂପ ଅଟେ ତୋର
ଆପେ ଆପେ ତୋ ଶରୀର ତୁ ବର୍ଦ୍ଧିତକାର ।
ତୋହର ସ୍ୱରୂପ କେତେ ମୋତେହିଁ ଅଜଣା
ମହାଯୋଗୀ ମହାଦେବ ସେ ହୁଅନ୍ତି ବଣା ।
ଇନ୍ଦ୍ର ଆଦି ଦେବଗଣ ଜାଣିବେ ବା କାହୁଁ
ଅରୂପ ଅଲେଖ ତୁହି ଅଟୁ ମହାବାହୁ ।
ସନକାଦି ଋଷିଗଣ ଯୋଗୀ ମୁନି ଗଣ
ସେହି ଜାଣି ନ ପାରନ୍ତି ତୋର ରୂପଗୁଣ ।
ହେ ଜଗତପତି ମାୟାପଟକୁ ବିସ୍ତାରି
ମହୀତଳେ ବିରାଜୁଛ ଆପେ ଅବତରି ।
ତୋର ଅନୁଗ୍ରହ ଯେବେ ନୋହିବ ଭୋଦେବ
କାହୁଁ ଜାଣି ପାରିବ ସେ ଏତ ଅସମ୍ଭବ ।
ଦେବ ଦେବ ପ୍ରଭୁ ତୋର ପ୍ରସନ୍ନ ବଦନ
ତୋର ଆରାଧନା କରେ ସେ ଜନ ସୁଜନ ।
ସେହି ଏକା ତୋତେ ଜାଣେ ନ ଜାଣନ୍ତି କେହି
ନନ୍ଦୀଶ୍ୱର ଈଶ୍ୱର ତୁ ବିଶ୍ୱ ଭାବଗ୍ରାହୀ ।
ହେ ବାମନ ହେ ବିଶ୍ୱାତ୍ମା ହେ ପୃଥୁଲୋଚନ
ଏ ବିଶ୍ୱପାଳନ କର ସଂହାରି ଦୁର୍ଜନ ।
କହିଲେକ ମହାଋଷି ଲୋମହରଷଣ
ବ୍ରହ୍ମାଙ୍କ ଏମନ୍ତ ସ୍ତୁତି ଶୁଣି ନାରାୟଣ ।
ଈଷତ ମଧୁର ହାସେ ମୋହିଲେ ଜଗତ
ଗଭୀର କୋମଳ ବାକ୍ୟ କହିଲେ ଏମନ୍ତ ।
ଇନ୍ଦ୍ର ଆଦି ଦେବଗଣ କଶ୍ୟପଙ୍କୁ ଘେନି
ମୋତେ ସ୍ତବ କରିଥିଲେ ପୂର୍ବେ ପଦ୍ମଯୋନି
ସେହି ସ୍ତବ ଶୁଣି ମୁହିଁ ପ୍ରସନ୍ନ ହୋଇଲି
ତ୍ରୈଲୋକ୍ୟ ଇନ୍ଦ୍ରଙ୍କୁ ଦେବାପାଇଁ କହିଥିଲି ।
ପୁନରପି ଅଦିତି ଯେ କଲେ ମୋତେ ସ୍ତୁତି
ପ୍ରସନ୍ନେ କହିଲି ଯାହା ଶୁଣ ପ୍ରଜାପତି ।

ଅକଣ୍ଟକ ତ୍ରିଭୂବନ ଦେବାଇଁ ଇନ୍ଦ୍ରଙ୍କୁ
ଏ ସତ୍ୟ ମୋହର ମିଥ୍ୟା ନ କହେ ତୁମ୍ଭଙ୍କୁ ।
ଏମନ୍ତ ଶୁଣିଣ ବେଗେ ଉଠି କୁଶପାଣି
କୃଷ୍ଣାଜିନ ଛାଲ ଦେଲେ ବାମନଙ୍କୁ ଆଣି ।
କନ୍ଧେ ଯଜ୍ଞ ଉପବୀତ ବୃହସ୍ପତି ଦେଲେ
ମରୀଚି ଓ ବ୍ରହ୍ମା ପୁଣି ତା ଦେଖି ଉଠିଲେ ।
ପଲାଶ କାଠର ଦଣ୍ଡ ଦେଲେ ବାମନଙ୍କୁ
ତା ଦେଖି ବଶିଷ୍ଠ ଦେଲେ କମଣ୍ଡଳୁ ତାଙ୍କୁ ।
ଅଙ୍ଗିରା ମହର୍ଷି ଦେଲେ କୁଶବଟୁ ଚୀର
ପୁଲହ ମହର୍ଷି ହେଲେ ଆସନ ସତ୍ୱର ।
ପୁଲସ୍ତ୍ୟ ଯେ ଦେଲେ ପୀତବସନି ଯୁଗଳ
ବେଦ ମନ୍ତ୍ର ଯୋଗ ଶାସ୍ତ୍ର ବେଦାଙ୍ଗ ସକଳ ।
ପ୍ରଣବ ସହିତ ଧ୍ୟାନ ଧାରଣ ଏମାନ
ବାମନଙ୍କୁ ଶିଖାଇଲେ କମଳ ଆସନ ।
ଜଟା ଦଣ୍ଡଛତ୍ର ବଟୁ କମଣ୍ଡଳୁ ଧରି
ବଳିଯଜ୍ଞେ ବିଜେ କଲେ ପ୍ରଭୁ ନରହରି ।
ଆହେ ଋଷିଗଣ ସେହି ଅପୂର୍ବ ବାମନ
ଧୀରେ ଧୀରେ ପୃଥିବୀରେ କରନ୍ତି ଗମନ ।
ଯେଉଁ ଯେଉଁ ସ୍ଥାନେ ପଡ଼େ ବାମନଙ୍କ ପାଦ
ସେହି ସେହି ସ୍ଥାନ କରେ ପୃଥିବୀକି ଭେଦ ।
ଅନେକ ଛିଦ୍ରରେ ପୂର୍ଣ୍ଣ ହୋଇଲା ମେଦିନୀ
ମୃଦୁ ମନ୍ଦ ଗମନ ଯେ କଲେ ତାହା ଜାଣି ।
ତଥାପି ପର୍ବତ ବନ ଦ୍ୱୀପସହ ମହୀ
ଟଳ ଟଳ ହେବା ଦେଖି ବୃହସ୍ପତି କହି ।
ଏହି ବାଟେ ଧୀରେ ଧୀରେ ଆସ ଦେବଦେବ
କ୍ରୀଡ଼ା କଉତୁକ ଗତି କର ହେ ମାଧବ ।
କରନ୍ତେ ସେ ପୃଥିବୀରେ ସେହିପରି ଗତି
ତଥାପି ସେ ପାଦ ଭରା ନ ସହିଲା କ୍ଷିତି ।
ମହାନାଗ ରସାତଳୁ ହୋଇଲା ବାହାର
ବାମନଙ୍କ ପାଦପଦ୍ମେ କରି ନମସ୍କାର ।
କୁଟିଳ ଗତିରେ ଗଲା ତାଙ୍କ ଆଗେ ଆଗେ
ସେହିପରି ଗତି କଲେ ବାମନ ସରାଗେ ।
ଲୋକଙ୍କର ଉପକାର ହୋଇଲା ବହୁତ
ସର୍ପ ଭୟ ନ ହୋଇଲା ତାଙ୍କ ଚିତ୍ତେ ଜାତ ।
ଦେଖିଲେ ନିର୍ଭୟ ହୋଇ ବାମନଙ୍କ ଗତି
ସେ ବାମନ ପାଦେ ରହୁ ଗୋପୀନାଥ ମତି ।

## ବଳୀ ବାମନ ଚରିତ

କହନ୍ତି ଯେ ତପୋଧନ ଲୋମହରଷଣ
ଏଥୁ ଉତ୍ତାରେ ଯେ କଥା ଶୁଣ ବିପ୍ରଗଣ ।
ମହୀ ଟଳ ଟଳ ହେବା ପର୍ବତ କମ୍ପିବା
ମହାସାଗରର ଜଳ କୂଳକୁ ଲଙ୍ଘିବା ।
ଦେଖିଣ ଦାନବରାଜ ମହାବଳ ବଳୀ ।
ଶୁକ୍ରଙ୍କୁ ପ୍ରଣମି କହେ ହୋଇ କୃତାଞ୍ଜଳି ।
ଆହେ ଗୁରୁଦେବ କହ ଏକିସ ଉତ୍ପାତ
ଉଚ୍ଛୁଳଇମହାଜଳ କମ୍ପଇ ପର୍ବତ ।
ଅରଣ୍ୟ ସହିତ ହୁଏମହୀ ଟଳଟଳ
ହବିର୍ଭାଗ ନ ନିଅଇ କିମ୍ପାଇଁ ଅନଳ ।
ଏଥିର କାରଣ ମୋତେ କହ ଗୁରୁଦେବ
କିବା ଅନାଚାର ହେଲା ମୋ ଯଜ୍ଞେ ଉଭବ ।
ବଳୀ ମୁଖୁଁ ଏ ବଚନ ଶୁକ୍ରାଚାର୍ଯ୍ୟ ଶୁଣି
ମନ ମଧ୍ୟେ ପୂର୍ବ କଥା କରିଲେ ଭାଳେଣି ।
ଜଗନ୍ନାଥ ପରମାତ୍ମା ସନାତନ ହରି
ବାମନ ରୂପେ କଶ୍ୟପ ଗୃହେ ଅବତରି ।
ହେ ଦାନବବର ତୋର ଯଜ୍ଞକୁ ଗମନ
କରିବାର ସେହି ଦେବଦେବ ଭଗବାନ ।
ତାହାଙ୍କର ପାଦଭାରା ନ ସହିଣ ମହୀ
ଟଳଟଳ ହୋଇବାରୁ କମ୍ପେ ଗିରି ନଈ ।
ସାଗରର ଜଳ କରେ କୂଳକୁ ଲଙ୍ଘନ
ଘନ ଘନ କମ୍ପମାନ ହୁଏ ମହାବନ ।
ଭୂତପତିଙ୍କୁ ଯେ ପୃଥ୍ୱୀ ନ ପାରଇ ବହି
ଦାନବ ମାନବ ଦେବ ଗନ୍ଧର୍ବ ଯେ ଅହୀ ।
ଯକ୍ଷ ରକ୍ଷ ରାକ୍ଷସ ସେ ପଶୁ ପକ୍ଷୀକୁଳ
ଅନିଳ ଅନଳ ଜଳ ଗଗନ ମଣ୍ଡଳ ।
ପୃଥିବୀ ଏ ସମସ୍ତଙ୍କୁ କରିଛି ବହନ
ଏଣୁ ସେ କମ୍ପନ୍ତେ କମ୍ପେ ସକଳ ଭୁବନ ।
ଜଗତକରତା କୃଷ୍ଣ ମାୟା ଅଗୋଚର
କେମନ୍ତେ ରହିଛି ଦେଖ ଦେଖ ଏ ସଂସାର ।
ପରସ୍ପରେ ଧରାଧରି ହୋଇ ରହିଛନ୍ତି
ଅବତାର ହୋଇବାରୁ ସେହି ଭୂତପତି ।
ତାଙ୍କ ତେଜେ ଦେବଗଣ ହୋଇ ବଳବନ୍ତ
ସେ ବାମନରୂପୀଙ୍କର ସଦା ଅନୁଗତ ।
ତାଙ୍କ ସଙ୍ଗେ ଅଗ୍ନିତ୍ରୟ ଥିବାରୁ ହେ ବଳି
ତୋର ହବିର୍ଭାଗ ବ୍ୟର୍ଥ ହୁଏ ମହାବଳୀ ।

ଶୁକ୍ରଙ୍କ ମୁଖରୁ ଶୁଣି ଏମନ୍ତ ବଚନ
ରୋମାଞ୍ଚିତ ଶରୀରରେ କହଇ ରାଜନ ।
ଧନ୍ୟ ମୋର ପିତା ମାତା ସଂସାରେ ମୁଁ ଧନ୍ୟ
ମୋହର ସମାନ କେହି ନାହିଁ ପୁଣ୍ୟବାନ ।
ଯେ କାରଣୁ ଯଜ୍ଞପତି ସ୍ୱୟଂ ଜନାର୍ଦ୍ଦନ
ମୋହର ଯଜ୍ଞକୁ କରୁଅଛନ୍ତି ଗମନ ।
ଏଣୁ ମୋଠାରୁ ହେ ଗୁରୁ କେ ଅଛି ଅଧିକ
ଯୋଗିଗଣ ନ ଦେଖନ୍ତି ଯାର ରୂପ ରେଖ ।
ଯାହାର ବିନାଶ ନାହିଁ ପରମାତ୍ମା ଯେହି
ମୋ ଯଜ୍ଞକୁ ଆସୁଛନ୍ତି ସେହି ଭାବଗ୍ରାହୀ ।
ଏଥିରୁ ଉତ୍ସବ ଆଉ କି ଅଛି ମୋହର
କି କରିବି ଆହେ ଗୁରୁ ବେଗେ ଆଜ୍ଞା କର ।
ଶୁଣିଣ ବୋଇଲେ ଶୁକ୍ର ଶୁଣ ଦୈତ୍ୟପତି
ବେଦ ଶାସ୍ତ୍ରମାନଙ୍କରେ ଅଛଇଏ ନୀତି ।
ଯଜ୍ଞଭାଗ ଦେବଗଣ କରିବେ ଯେ ଭୋଗ
ତୁ ଦାନବମାନଙ୍କୁ ଯେ ଦେଉହବିର୍ଭାଗ ।
ସତ୍ତ୍ୱଗୁଣଧାରି ହରି ସ୍ଥିତି ଲୟକାରୀ
ଜଗତ ପାଳନ କରେ ପୁଣି ହିଁ ସଂହାରି ।
ଦେବତାଙ୍କୁ ଠକିବାରୁ ତୁ ଦାନବରାଜ
ତେଣୁ ପ୍ରଭୁ ହୋଇଛନ୍ତି କଶ୍ୟପ ଆତ୍ମଜ ।
ଅପୂର୍ବ ବାମନରୂପେ ଛଳିବେକ ତୋତେ
ବିଚାରିଣ କାର୍ଯ୍ୟକର ଯେ ରୁଚେ ତୋ ଚିତ୍ତେ
ଦେବଙ୍କର ହିତ ପାଇଁ ଜନମ ତାଙ୍କର
ତୋହର ଅହିତ ନିଶ୍ଚେ କରିବେ ଶ୍ରୀଧର ।
ଏଣୁ ମୁଁ କହୁଛି ମୋର ବୋଲକର ଏବେ
ସେ ବାମନ ଦାନ ତୋତେ ମାଗିବେଟି ଯେବେ ।
ତୁ ପ୍ରତିଜ୍ଞା ନ କରିବୁ ଦାନ ଦେବାପାଇଁ
ଧନ ରତ୍ନ ବସନ ଯେ ଗୋକାଞ୍ଚନ ଭୂଇଁ ।
କେବଳ ମଧୁର ବାକ୍ୟେ କରିବୁ ସନ୍ତୋଷ
ତହିଁରେ ତୁ ଯଜ୍ଞଫଳ ପାଇବୁ ଅଶେଷ ।
ସ୍ୱଭାବତଃ କୃତକୃତ୍ୟ ହୋଇଲେ ସେ ହରି
ଦେବତାଙ୍କ ହିତ ପାଇଁ ଏରୁପକୁ ଧରି ।
ଏଣୁ ମୁଁ କହୁଛି ତାଙ୍କୁ ଦେଖିଲା ମାତ୍ରକେ
ପାଦେ ପଡ଼ି କରଦୁଇ ଯୋଡ଼ିଣ ମସ୍ତକେ ।
ବୋଲିବୁ ହେ ଦେବ ଯାହା ମାଗୁଛନ୍ତି ମୋତେ
ମୁହିଁ ଦେଇ ନ ପାରଇ ତାହା କଦାଚିତେ ।
ତୁମ୍ଭର ସଞ୍ଚିତ ଏହି ସକଳ ଜଗତ
ତୁମ୍ଭ ଧନ ତୁମ୍ଭଙ୍କୁ ଯେ ଦେବା ଅନୁଚିତ ।
ଏମନ୍ତ କହିଲେ ତୋର ହୋଇବ ମଙ୍ଗଳ
ଏ ବଚନ ଶୁଣି କହେ ଦୈତ୍ୟ ମହୀପାଳ ।
ଆହେ ଗୁରୁଦେବ ତୁମ୍ଭେ ବ୍ରାହ୍ମଣ ପ୍ରଧାନ
କିରୂପେ କହିବି କହ ଏମନ୍ତ ବଚନ ।
ମାଗନ୍ତି ସାମାନ୍ୟ ଲୋକେ ଆସି ମୋତେ ଯାହା
ନିରାଶ ନ କରି ତାଙ୍କୁ ଦେଉଅଛି ତାହା ।
ନାହିଁ ଏ ଶବଦ ମୋର ମୁଖୁଁ ନ ବାହାରେ
ଯେଉଁ ପ୍ରଭୁ ପାପ-ତାପ ନିବାରଣ କରେ ।
ଯାହାର ଦର୍ଶନେ ହୁଏ ଭବ ଭୟ ନାଶ
ଯେ ଦେବାଧିଦେବରାଜ ଜଗତର ଈଶ ।
ତାହାଙ୍କୁ କିରୂପେ ମୁହିଁ କରିବଇଁ ନାହିଁ
ବ୍ରତ ଉପବାସ ଆଦି ହୁଏ ଯାହାପାଇଁ ।
ହରିଙ୍କି ପାଇବା ପାଇଁ ଜଗତରେ ଲୋକେ
ଜପ ତପ ଦାନ ଧ୍ୟାନ କରୁଛନ୍ତି ଥୋକେ ।
ତା ପାଇଁ ସିନା ଏ ଯାଗ ଯଜ୍ଞ ଆଦି କର୍ମ
ଯୋଗିଏ କରନ୍ତି ସିନା ତାଙ୍କ ପାଇଁ କର୍ମ ।
ଅପ୍ରାପ୍ୟ ପଦାର୍ଥ ସେହି ଜଗତରେ ସିନା
କେହି ତାଙ୍କୁ ନ ଦେଖନ୍ତି ଭକତଙ୍କ ବିନା ।
ଯେବେ ଗୁରୁ ଥିବ ମୋର ପୂର୍ବର ସୁକୃତ
ତେବେ ସେ ଗୋବିନ୍ଦ ହୋଇ ଯଜ୍ଞେ ଉପଗତ ।
ଦିଅ ଦିଅ ବୋଲି ମୋତେ କହିବେ ଶ୍ରୀମୁଖେ
ଏହାହୁଁ ଅଧିକ ଆଉ କି ଅଛି ତ୍ରିଲୋକେ ।
ଯେଉଁ ବିଷ୍ଣୁ ପ୍ରୀତିଅର୍ଥେ ଲୋକେ ଶୌଚହୋଇ
ନାନାବିଧ ଯାଗଯଜ୍ଞେ ଚିତ୍ତବୃତ୍ତି ଦେଇ ।
ମୁହିଁ ଯାହା ଦେବଇଁ ଶ୍ରୀହରି ତାହା ଯେବେ
ସାକ୍ଷାତରେ ହସ୍ତ ପାତି ମୋ ହସ୍ତରୁ ନେବେ ।
ଏଥିରୁ ସୁକୃତ ଆଉ ଅଛି କି ଅଧିକ
ତୁମେ ମୋର ଗୁରୁଦେବ ମୁଁ ତୁମ୍ଭ ସେବକ ।
ବିଚାର କରନ୍ତୁ କିନା ଗୁରୁ ହୃଦୟରେ
ଏମନ୍ତ ଭାଗ୍ୟ କି ମୋର ଘଟିବ କର୍ମରେ ।
ଶ୍ରୀହସ୍ତରେ ଦାନ ଦେବ ସ୍ୱହସ୍ତରେ ମୁହିଁ
ସ୍ୱୟଂ ଈଶ୍ୱରଙ୍କୁ କେମ୍ନେ କରିବଇଁ ନାହିଁ ।
ହେ ଗୁରୁ ପଛକେ ମୁହିଁ ତେଜିବି ଜୀବନ
କେବେ ନି ସ୍ଫୁରିବ ମୁଖୁଁ ନାହିଁ ଏ ବଚନ ।

ଯଜ୍ଞେଶ୍ୱର ଜନାର୍ଦ୍ଦନ ସ୍ୱୟଂ ଯଜ୍ଞେ ଯେବେ
ଉପସ୍ଥିତ ହୋଇ ଆସି ପ୍ରାର୍ଥୀ ହେବେ ତେବେ
ନିଶ୍ଚୟ ବାଞ୍ଛିତ ସିଦ୍ଧି ହୋଇବ ମୋହର
ଏଥିରେ ସନ୍ଦେହ ନାହିଁ ଆହେ ମୁନିବର ।
କିଛିମାତ୍ର ବିଚାର ମୁଁ ନ କରି ଅନ୍ତରେ
ଯାହା ସେ ମାଗିବ ତାହା ଦେବି ତାଙ୍କ କରେ
ଦାସ ଦାସୀ ଧନ ଜନ ଭଣ୍ଡାର ସହିତ
ଦେଶ ଗ୍ରାମ ରାଜଧାନୀ ତ୍ରିଲୋକ ପର୍ଯ୍ୟନ୍ତ ।
ସତ୍ୟ କରି କହୁଛି ହେ ଗୁରୁ ତୁମ୍ଭ ଆଗେ
ମାଗିଲେ ମୁଁ ପ୍ରାଣ ଦେଇପାରେ ଅତିବେଗେ ।
ଅଧିକ କି କହିବି ମୁଁ କାଟି ଦେବି ଶିର
ନାହିଁପଦ ମୋ ମୁଖରୁ ନୋହିବ ବାହାର ।
ଦାନ ଦେଉଁ ଶ୍ରୀହରିଙ୍କି ଘଟିଲେ ଆପଦ
ତାହାଙ୍କୁ ମୁଁ ମନେକରେ ଅମୂଲ୍ୟ ସମ୍ପଦ ।
ଦାନ କାର୍ଯ୍ୟେ ବାଧା ଜାତ ନୁହେଁ କଦାଚିତ
ଦାନ ଦେବା ପ୍ରାଣୀର କି ଫଳହୁଏ ବ୍ୟର୍ଥ ।
ସବୁ ଧର୍ମଠାରୁ ଶ୍ରେଷ୍ଠ ଅଟେ ଦାନଧର୍ମ
ଦାନଦେଲା ପ୍ରାଣୀକି ଯେ ନ ଦଣ୍ଡଇ ଯମ ।
ଅକ୍ଳେଶେ ହରିଙ୍କି ପାଏ ଦାନ ଦେଲା ପ୍ରାଣୀ
ଜଗତରେ ଧନ୍ୟ ସେହି ଯେହୁ ଅଟେ ଦାନୀ ।
ଦେଖ ଦେଖ ମୋର ରାଜ୍ୟେ କେହି ନାହିଁ ଦୁଃଖୀ
ଦରିଦ୍ର ଆତୁର ରୋଗୀ ନାହିଁ ସର୍ବେ ସୁଖୀ ।
ସମସ୍ତେ ସୁନ୍ଦର ଦେଖ ମୋର ପୁଣ୍ୟବଳେ
ହୃଷ୍ଟ ପୁଷ୍ଟ ତୁଷ୍ଟ ପୁଣି ସର୍ବଦା ସକଳେ ।
ଅପ୍ରସନ୍ନ ମୁଖ ହୋଇ ଜଣେ ନାହିଁ କେହି
ଅଳଙ୍କାରେ ମଣ୍ଡିଛନ୍ତି ଆପଣାର ଦେହୀ ।
ଉଦ୍‌ବିଗ୍ନ ଜାତ ନୁହଇ କାହାରି ମନରେ
ସର୍ବଦା ସନ୍ତୁଷ୍ଟ ହୋଇଥାନ୍ତି ମୋର ପୁରେ ।
ସର୍ବ ଗୁଣାନ୍ୱିତ ଦେହ ସୁଗନ୍ଧ ସମ୍ପନ୍ନ
ମୋର କଥା କି କହିବି ହେ ବିପ୍ର ପ୍ରଧାନ ।
ସୁଖେ ଚାଲି ଯାଉଅଛି ମୋର ଦିନରାତି
ଦାନ ବୀଜ ବୁଣିବାରୁ ଆହେ ମହାଯତି ।
ତହିଁରୁ ଏ ଶୁଭଫଳ ହେଉଅଛି ଜାତ
ହେ ମୁନି ଶାର୍ଦ୍ଦୂଳ କିମ୍ପା କହୁଛ ଏମନ୍ତ ।
ସର୍ବବୀଜ ଶ୍ରେଷ୍ଠ ସେହି ଦାନପାତ୍ର ହରି
ଦାନବୀଜ ସେ କ୍ଷେତରେ ଯେବେ ବୁଣିପାରି ।
ଧର୍ମ ଅର୍ଥ କାମ ମୋକ୍ଷ ଆଦି ଯେତେ ଫଳ
ସମସ୍ତ ପାଇବି ମୋର ହୋଇବ ମଙ୍ଗଳ ।
ମୋର ଶ୍ରେଷ୍ଠ ଦାନ ବୋଲି ଜାଣିଲି ମୁଁ ଏବେ
ମୋ ଠାରେ ସନ୍ତୁଷ୍ଟ ଯେଣୁ ହୋଇଛନ୍ତି ଦେବେ ।
ଉପଭୋଗଠାରୁ ଦାନ ଶତଗୁଣେ ବେଶି
ସୁଖବୋଲି କହିଛନ୍ତି ସାଧୁଜ୍ଞାନୀ ଋଷି ।
ଯଜ୍ଞରେ ମୁଁ ଆରାଧନା କରିବାରୁ ହରି
ସୁପ୍ରସନ୍ନ ହୋଇ ମୋହ ପାଇଁ ଅବତରି ।
ମୋ ଯଜ୍ଞକୁ ଆସି ମୋତେ ଦେବେ ଦରଶନ
ମୋର ଉପକାର କରି ଯିବେ ଜନାର୍ଦ୍ଦନ ।
ତୁମ୍ଭେ ଅବା ବୋଲ ମୁହିଁ ଦେବଗଣଙ୍କର
ଯଜ୍ଞର ଯେ ହବିର୍ଭାଗ କରିଛି ଅନ୍ତର ।
ସେଥିପାଇଁ କ୍ରୁଦ୍ଧହୋଇ ଯେବେ ଜନାର୍ଦ୍ଦନ
ଆସିଥାନ୍ତି କରିବାକୁ ମୋ ଶିର ଛେଦନ ।
ତାଙ୍କ ହସ୍ତେ ଯେବେ ମୋର ମୃତ୍ୟୁ ହୁଏ ଜାଣ
ଏଥିରୁ ଅଧିକ ଆଉ ଅଛଇ କି ପୁଣ୍ୟ ।
ଅବଶ୍ୟ ଦିନେତ ଯିବ ଏ ଜୀବ ବାହାରି
ଯମ କାହିଁ ପାଇଁ ଦଣ୍ଡଦେବ ବଳେ ଧରି ।
ବିଷ୍ଣୁ ହସ୍ତେ ମଲେ ବଇକୁଣ୍ଠରେ ବସିବି
ଏଥିରୁ ଅଧିକ ସୁଖ ସେଠାରେ ପାଇବି ।
ଏଥିପାଇଁ ନୁହେଁ ଅବା ଅନ୍ୟ କାହିଁ ପାଇଁ
ସଂହାର କରିବେ ମୋତେ ଜଗତ ଗୋସାଇଁ ।
ଏ ସମସ୍ତ ଜାଣି ସୁଦ୍ଧା ଆହେ ମୁନିବର
ଦାନ ମାଗିବାର କାଳେ ପ୍ରଭୁ ଚକ୍ରଧର ।
ତୁମ୍ଭେ ମୋତେ ନ କରିବ କଦାପି ବାରଣ
କହୁଛନ୍ତି ମହାମୁନି ଲୋମହରଷଣ ।
ଶୁକ୍ର ମୁନିଙ୍କି ଯେ ବଳୀ କହନ୍ତେ ଏମନ୍ତ
ଏକାଳେ ବାମନ ହେଲେ ତହିଁ ଉପଗତ ।
ବୃହସ୍ପତି ସହ ଦେବେ ଅଛନ୍ତି ସଙ୍ଗତେ
ତାଙ୍କୁ ଦେଖି ବଳୀ କହେ ଶୁକ୍ରଙ୍କ ଅଗ୍ରତେ ।
ଯେ କାଳେ ମୋହର ଗୃହେ ମିଳିବେ ସେ ହରି
ମାଗିବା ଆଶାରେ କ୍ଷୁଦ୍ର ଦ୍ୱିଜରୂପ ଧରି ।
ଇଚ୍ଛା ଅନୁସାରେ ମୋତେ ମାଗନ୍ତୁ ସେ ଦାନ
ସକଳ ହୃଦୟ ସାକ୍ଷୀ ସେହି ଜନାର୍ଦ୍ଦନ ।
ସର୍ବ ଦେବମୟ ପୁଣି ଅଚିନ୍ତ୍ୟ ଅବ୍ୟୟ
ମାୟାରେ ସେ ହୋଇଛନ୍ତି ଅତି କ୍ଷୁଦ୍ରକାୟ ।

ଯଜ୍ଞଦ୍ୱାରେ ଉପସ୍ଥିତ ହୁଅନ୍ତେ ବାମନ
ରକ୍ଷାକାରୀ ଥିଲେ ଯେତେ ନିଶାଚରଗଣ ।
ସେମାନେ ଦେଖିଲାକ୍ଷଣି ହେଲେ କ୍ରୋଧଭର
ସେକାଳେ ଦିଶିଲେ ସେହି ଅନଳ ପ୍ରକାର ।
ବାମନର ତେଜେ ସର୍ବେ ହୋଇଲେ ନିସ୍ତେଜ
ଅଗ୍ନିତେଜ ନ୍ୟୂନଯେହ୍ନେ ଉଦେହେଲେ ସୂର୍ଯ୍ୟ ।
ସେହି ମହାଯଜ୍ଞେ ଥିଲେ ଯେତେ ଋଷିଗଣ
ଭୟରେ କମ୍ପିଲେ ତାଙ୍କ ତେଜ ହେଲା କ୍ଷୀଣ
ବଶିଷ୍ଠ ଆବର ମୁନି ବିଶ୍ୱାମିତ୍ର ଗାର୍ଗ୍ୟ
ଏହାଙ୍କ ସହିତେ ଥିଲେ ଯେତେ ମୁନିବର୍ଗ ।
ବଳୀସହ ବାମନଙ୍କୁ କରି ନିରୀକ୍ଷଣ
ମୁଖୁଁ ବାକ୍ୟ ନ ସ୍ଫୁରିଲା ହୋଇଲେ ମଉନ ।
ଅପୂର୍ବ ବାମନ ରୂପ ଦେଖି ନେତ୍ରପଥେ
ନିସ୍ତେଜେ ନୀରବେ ରହିଅଛନ୍ତି ସମସ୍ତେ ।
ମନେ କଲେ ଆମ୍ଭମାନଙ୍କର ଜନ୍ମ ସାର୍ଥ
ଏ ଅଦ୍ଭୁତ ରୂପ ଦେଖି ହେଲୁଁ ଯେ କୃତାର୍ଥ
ଏମନ୍ତ ବିଚାର କରି ଉଠିଣ ସକଳେ
ପ୍ରଣମିଲେ ସେ ବାମନ ଚରଣ କମଳେ ।
ଅସୁରରାଜନ ବଳି ଉଠି ଅତିବେଗେ
ପ୍ରଣମିଲା ସେ ବାମନ ପାଦପଦ୍ମ ଯୁଗେ ।
ଦେବଗଣ ପୁରୋହିତ ଯଜ୍ଞ ଯଜମାନ
ଅନଳ ସମ୍ପଦ ଦ୍ରବ୍ୟ ଆଦି ସଭାଜନ ।
ବିପ୍ର ଦ୍ୱିଜ ଋଷି ମୁନି ଥିଲେ ଯହିଁ ଯେତେ
ଏକମୁଖେ ସ୍ତୁତିକଲେ ସେକାଳେ ସମସ୍ତେ ।
ରୋମାଞ୍ଚିତ ପୁଲକିତ ହୋଇ ବଳିରାଜା
ଅର୍ଘ୍ୟ ଘେନି କଲା ବେଗେ ବିଷ୍ଣୁ ପାଦପୂଜା ।
ବୋଇଲା ମଧୁର ମୃଦୁ ଗମ୍ଭୀର ସ୍ୱରରେ
ସୁବର୍ଣ୍ଣ ଯେ ରତ୍ନରାଜି ଅଛି ମୋର ଘରେ ।
ଗଜ ବାଜୀ ଗୋମହିଷ ବସ୍ତ୍ର ଅଳଙ୍କାର
ଦାସ ଦାସୀ ଧନ ଧାନ୍ୟ ଅଛଇଅପାର ।
ଅବଳା ସହିତେ ଅଷ୍ଟଧାତୁ ଅଛି ଯେତେ
ସ୍ୱର୍ଗ ମର୍ତ୍ତ୍ୟ ରସାତଳ ପାତାଳ ସହିତେ ।
ଯହିଁରେ କି ଅଧିକାର ଅଛି ମୋର ଜାଣ
ସେ ସମସ୍ତ ଆପଣଙ୍କୁ କଲି ସମର୍ପଣ ।
ଯହିଁରେ କି ଜନମିବ ଆପଣଙ୍କ ପ୍ରୀତି
ସେ ପଦାର୍ଥ ନିଅ ମୁହିଁ ନ କରଇ ନାସ୍ତି ।

ବଳିମୁଖୁ ଏ ବଚନ ଶୁଣିଣ ବାମନ
ଈଷତରେ ହାସ୍ୟ କରି ବୋଇଲେ ଏସନ ।
ହେ ରାଜନ ହୋମ ଅଗ୍ନି ରଖିବାର ପାଇଁ
ତିନିପାଦ ଭୂମିଦାନ କର ଦୟା ପାଇ ।
ନ ମଗାଇ ସୁବର୍ଣ୍ଣ ମୁଁ ନ ମାଗଇ ଗ୍ରାମ
ନ ମାଗଇ ବୃତ୍ତିବାଡ଼ି ଗୃହ ଯେ ଆରାମ ।
ନ ମାଗଇ ମଣି ମୁକ୍ତା ଧନରତ୍ନ ରାଜି
ଦାସଦାସୀ ଗୋ ମହିଷ ଆଦି ଗଜ ବାଜୀ ।
କେବଳ ମୁଁ ମାଗେ ତିନିପାଦ ଭୂମିଦାନ
ଶୁଣିଣ ବୋଲଇ ବଳୀ ହେ ବଟୁ ବାମନ ।
ତୁମ୍ଭେ ଯେ ଅପୂର୍ବ ଦ୍ୱିଜ ତୁମ୍ଭଙ୍କୁ ମୁଁ ଦେଖି
ପବିତ୍ର କଲଇଁ ଆଜି ମୋର ବେନି ଆଖି ।
ଦଣ୍ଡ କମଣ୍ଡଳୁ ଛତା କନ୍ଧକୁ ପଇତା
କପାଳକୁ ଶୋଭା ଦିଶେ ଉର୍ଦ୍ଧ୍ୱ ପୁଣ୍ଡ୍ରଚିତା ।
କଟୀକି ମେଖଳା ରଜ୍ଜୁ କି ଶୋଭା ଦିଶଇ
ଭାଲେ ଗଳେ ଭୁଜେ ହୃଦେ ଭସ୍ମ ବିରାଜଇ ।
ଅପୂର୍ବ ବାମନରୂପ ଜନମ ତୋହର
ତବ ବ୍ରହ୍ମତେଜ ଫୁଟି ବ୍ୟାପିଛି ସଂସାର ।
ତୁମ୍ଭ ତେଜେ ସୂର୍ଯ୍ୟ ଗ୍ରହ ନକ୍ଷତ୍ରଙ୍କ ତେଜ
ମଳିନ ଦିଶୁଛି ଆହେ କ୍ଷୁଦ୍ର ଆତ୍ମା ଦ୍ୱିଜ ।
ତୁମ୍ଭେ ଶାମବେଦ ଗାନ କର ଯେତେବେଳେ
ଶୁଣନ୍ତି ସକଳ ଲୋକେ ରହିଣ ନିଶ୍ଚଳେ ।
ବିଶ୍ୱାମିତ୍ର ବଶିଷ୍ଠାଦି ମହାମୁନିଗଣ
ଅଗ୍ନିତୁଲ୍ୟ ତେଜୋବନ୍ତ ଜ୍ଞାନରେ ନିପୁଣ ।
ସେମାନେ ତୁମ୍ଭର ଅଗ୍ରେ ଶିଖାହୀନ ହୋଇ
ରହିଛନ୍ତି ଦେଖ ଆହେ ବାମନ ଗୋସାଇଁ ।
ତୁମ୍ଭ ପ୍ରାୟ ଦ୍ୱିଜ ନେତ୍ର ଦେଖିନାହିଁ ମୋର
ତୁମ୍ଭଙ୍କୁ ଉପମା ନାହିଁ ଏହି ତିନିପୁର ।
ମୋର ପୂର୍ବଭାଗ୍ୟୁଁ ଆସି ଦେଖାଦେଲ ମୋତେ
ଯେବେ ମୁହିଁ ଦାନ ଦେଇପାରେ ତୁମ୍ଭ ହସ୍ତେ ।
ତେବେ ମୋର ଦାନପୁଣ୍ୟ ହୋଇବ ସଫଳ
ଥାଇଁକି ହୋଇବ ମୋର ପୃଥିବୀ ମଣ୍ଡଳ ।
ଧନରତ୍ନ ଥାଇଁ ମୋର କି ହୋଇବ ଅବା
ଏ ସର୍ବ ସମ୍ପଦ ମୋର ଥିବା ଯେ ନ ଥିବା ।
ଯେବେ ତୁମ୍ଭପରା ବିପ୍ରଯୋଗ୍ୟ ନ ହୋଇଲା
ଜାଣିଲି ମୋ ଦାନ ପୁଣ୍ୟ ବ୍ୟର୍ଥକୁ ଲଭିଲା ।

ହେ ବାମନ ତୁମ୍ଭେ ଏଡ଼େ ନିର୍ଲୋଭୀ ବ୍ରାହ୍ମଣ
ମାଗିଲେ ମୁଁ କରନ୍ତି ଯେ ସବୁ ସମର୍ପଣ ।
ତିନିପାଦ ଭୂମି ମୋତେ ମାଗ କି ନିମନ୍ତେ
କହିଲେ ବାମନ ଶୁଣି ହସିଣ କିଞ୍ଚିତେ ।
ତୁମ୍ଭେ ମହାଦାନୀ ଅଟ ଅସୁରଈଶ୍ୱର
ଦେଖ ତୋର ଦ୍ୱାରେ କୋଟି ୨ ଦ୍ୱିଜବର ।
ଏହାଙ୍କୁ ତୁ ସେ ସମସ୍ତ ଦାନ କରିଦିଅ
ତିନିପାଦ ଭୂମି ମୋତେ ଦିଅ ମହାରାୟ ।
ଅଗ୍ନିତ୍ରୟ ସ୍ଥାପନ ମୁଁ କରିବି ତହିଁରେ
ଏହା ପାଇ ସନ୍ତୋଷେ ମୁଁ ଯିବି ମୋର ଘରେ
ଆନଦ୍ରବ୍ୟ ନେଇ ମୋର ହୋଇବ ବା କିସ
ନ ଦେଲେ ମୁଁ ଫେରିଯିବି ଅନ୍ୟ ନୃପ ପାଶ ।
ଏ ବଚନ ଶୁଣି ବଳୀ ବୋଇଲା ଦେବଇଁ
ଯାହା ମୋତେ ମାଗିଲ ହେ ବାମନ ଗୋସାଇଁ
ଏମନ୍ତ କହିଣ ଶଙ୍ଖେ ଘେନିଗଲା ବାରି
ନିଅ ନିଅ ବାମନ ହେ ଯେ ଇଚ୍ଛା ତୁମ୍ଭରି ।
ଏହା କହି ଜଳ ଦେଇ ବିପ୍ରର ହସ୍ତରେ
ତୁମ୍ଭ ପାଦେ ମାପି ନିଅ ବୋଲନ୍ତେ ସେକାଳେ
ତତ୍‌କ୍ଷଣେ ସେ ବାମନ ହେଲେ ଅବାମନ
ଚାହୁଁ ଚାହୁଁ ଘୋଟିଗଲେ ସକଳ ଭୁବନ ।
ହୋଇଲେ ଅଦ୍ଭୁତ ବିଶ୍ୱରୂପ ସେହି ହରି
ତଟସ୍ଥ ହୋଇଲେ ଦେଖି ଅସୁର ଅସୁରୀ ।
ସେହି ହରିଙ୍କର ବେନି ନେତ୍ରେ ଚନ୍ଦ୍ର ସୂର୍ଯ୍ୟ
ଶିରେ ସ୍ୱର୍ଗ ବିରାଜଇ ଭୁଜେ ଦେବରାଜ ।
ବିରାଜେ ପୃଥିବୀଦେବୀ ପାଦେ ତାହାଙ୍କର
ଅଙ୍ଗୁଳିରେ ରହିଛନ୍ତି ପିଶାଚ ଆବର ।
ଅଛନ୍ତି ଗୁହ୍ୟକଗଣ ହସ୍ତ ଅଙ୍ଗୁଳିରେ
ବିଶ୍ୱେଦେବାମାନେ ରହିଅଛନ୍ତି ଜାନୁରେ ।
ଜଙ୍ଘମଧ୍ୟେ ଯକ୍ଷମାନେ ବିରାଜୁ ଅଛନ୍ତି
ଅଙ୍ଗପ୍ରତ୍ୟଙ୍ଗରେ ଦେବଗଣେ ରହିଛନ୍ତି ।
ସୂର୍ଯ୍ୟରଶ୍ମି ପ୍ରାୟ ଦୃଷ୍ଟି ଅତ୍ୟନ୍ତ ପ୍ରଖର
ରକ୍ଷଗଣ ତାହାଙ୍କର ନୟନଗୋଚର ।
କେଶପାଶେ ତାରାଗଣ ରୋମେ ମେଘମାଳ
ଲୋମକୂପେ ବିରାଜନ୍ତି ମହର୍ଷି ମଣ୍ଡଳ ।
ବାହୁମୂଳେ ରହିଛନ୍ତି ବିଦିଗ ଯେତେକ
ବିରାଜନ୍ତି ଦୁଇଜାନୁ ମୂଳେ ଦିଗଯାକ ।
ଅଶ୍ୱିନୀ କୁମାର ଦୁଇ କର୍ଣ୍ଣର କୁହରେ
ମହାବଳବନ୍ତ ବାୟୁ ନାସିକା ଭିତରେ ।
ମନମଧ୍ୟେ ଧର୍ମ ଅନୁଗ୍ରହେ ନିଶାପତି
ବାକ୍ୟେ ସତ୍ୟ ଜିହ୍ୱାଅଗ୍ରେ ଦେବୀ ସରସ୍ୱତୀ ।
ଦେବମାତା ଅଦିତି ଯେ ଅଛନ୍ତି ଗ୍ରୀବାରେ
ସବୁବିଦ୍ୟା ବିରାଜନ୍ତି ବଳି ବିଭଙ୍ଗରେ ।
ସ୍ୱର୍ଗ ଦ୍ୱାର ହୋଇଅଛି ମଇତ୍ର ତାଙ୍କର
ତ୍ୱଷ୍ଟା ପୂଷା ଏହି ଦୁଇ ଭ୍ରୂଲତା ଆବର ।
ମୁଖେ ଅଗ୍ନି ବୃଷଣରେ ଦେବ ପ୍ରଜାପତି
ହୃଦୟରେ ପରଂବ୍ରହ୍ମ ବିରାଜୁ ଅଛନ୍ତି ।
ପୁରୁଷତ୍ୱ ତାହାଙ୍କର ଅଟନ୍ତି କଶ୍ୟପ
ପିଠିକି ଯେ ଶୋଭାପାନ୍ତି ଅଷ୍ଟବସୁ ରୂପ ।
ସନ୍ଧିସ୍ଥାନେ ରହିଛନ୍ତି ମରୁତ ଯେତେକ
ବକ୍ଷସ୍ଥଳେ ବିରାଜନ୍ତି ରୁଦ୍ର ଯେ ଅନେକ ।
ସପ୍ତସିନ୍ଧୁ ରହିଅଛି ଧୈର୍ଯ୍ୟକୁ ଆବୋରି
ବହୁତ ଗନ୍ଧର୍ବ ଗର୍ଭମଧ୍ୟେ ଛନ୍ତି ପୂରି ।
ଲକ୍ଷ୍ମୀ ମେଧା ଧୃତି କାନ୍ତି ବିଦ୍ୟାକ୍ରିୟା ଘେନି
କଟୀତଟେ ଶୋଭାପାନ୍ତି ଦେବୀ କମଳିନୀ ।
ସର୍ବଜ୍ୟୋତି ସର୍ବତପ ସ୍ୱରୂପୀ ବାମନ
କ୍ଷଣକ ମଧ୍ୟରେ ଘୋଟି ଗଲେ ତ୍ରିଭୁବନ ।
ବେଳୁ ବେଳ ବିକଶିଲା ଅତ୍ୟଦ୍ଭୁତ ତେଜ
କୁକ୍ଷିମଧ୍ୟେ ଦେବଗଣ ଦେହେ ଦେବରାଜ ।
ଜାନୁଜଙ୍ଘେ ଯାଗଯଜ୍ଞ ଦ୍ୱିଜେ ବିରାଜନ୍ତି
ଏ ଅଦ୍ଭୁତ ଭୟଙ୍କର ଦେବମୟୀ ମୂର୍ତ୍ତି ।
ମହାବଳ ପରାକ୍ରମୀ ଅସୁର ଯେତେକ
ପତଙ୍ଗେ ହୁଅନ୍ତି ଯେହ୍ନେ ଦେଖିଣ ପାବକ ।
ତେସନ ଧାଇଁଲେ କ୍ରୋଧେ ହୋଇଣ ଅଧୀର
ତାଙ୍କ ମଧ୍ୟେ ବଳବନ୍ତ ଅଟଇ ଚିକ୍ଷୁର ।
ସେହି ଆଗ ଧାଇଁ ଯାଇ ବଦନ ବିସ୍ତାରି
ପାଦ ଅଙ୍ଗୁଳିକି ଦାନ୍ତେ କାମୁଡ଼ିଣ ଧରି ।
ତାହା ଦେଖି ବିଶ୍ୱରୂପୀ ସେହି ଜନାର୍ଦ୍ଦନ
ଅଙ୍ଗୁଳି ଛିଞ୍ଚାଡ଼ିଦ୍ୟନ୍ତେ ଝଡ଼ିଲା ଦଶନ ।
ଅସୁର ଗ୍ରୀବାରେ ଯାଇଁ ବାଜିଲା କିଞ୍ଚିତେ
ବଜ୍ରପ୍ରାୟ ମଣିଲା ତା ଚିକ୍ଷୁର ସାକ୍ଷାତେ ।
ବିପ୍ର ଚିତ୍ତ ଆଦି ଥିଲେ ଯେତେକ ଅସୁର
କ୍ରୋଧେ ଦେଖାଯାନ୍ତି ଗିରିମାଳା ପରକାର ।

ତାହାଙ୍କର ଦୃଷ୍ଟପଣ ଦେଖିଣ ବାମନ
ଇଷିତେ କାହାକୁ କଲେ ପାଦରେ ମର୍ଦ୍ଦନ ।
ବାହୁଦଣ୍ଡ କାହାକୁ ବା କାହାକୁ ଚାପୋଡ଼
ଦୃଷ୍ଟଗଣ ବାମନଙ୍କଠାରୁ ଖାଇ ମାଡ଼ ।
କେ ଭୂମିରେ ଲୋଟିଲା କେ ପଳାଇଲା ଛାଡ଼ି
ବାମନଙ୍କ ନିଃଶ୍ୱାସରେ ଗଲା କେହୁ ଉଡ଼ି ।
ଯେସନେ ନଳିନବନ ମନ୍ଥେ ମତ୍ତଗଜ
ମନ୍ଥିଲେ ଅସୁର ଥାଟ ତେହ୍ନେ ଦେବରାଜ ।
କି ଅବା କଦଳୀବନ ଭାଙ୍ଗିଲା ମରୁତ
ଗଜପଲ ମନ୍ଥିଲା କି ସିଂହ ହୋଇ ମତ୍ତ ।
ମହା ବିଶ୍ୱରୂପ ଧରି ଦେବ ଦଇତାରି
ପାଦେ ଆକ୍ରମଣ କଲେ ସର୍ବ ବସୁନ୍ଧରୀ ।
ପୃଥିବୀ ରହିଲା ତାଙ୍କ ପାଦତଳେ ଯହୁଁ
ପାଦେ ଆଚ୍ଛାଦିଲେ ଚରାଚର ମହାବାହୁ ।
ଚନ୍ଦ୍ର ସୂର୍ଯ୍ୟ ହେଲେ ତାଙ୍କ ସ୍ତନଦ୍ୱୟ ପରି
ଏଥୁଅନ୍ତେ ଆକାଶକୁ ଆକ୍ରସିଲେ ହରି ।
ଦ୍ୱିତୀୟ ପାଦକୁ ଟେକି ବିସ୍ତାରିଣ ଦେଲେ
ଛତ୍ରପ୍ରାୟ କରି ତାକୁ ଗଗନେ ରଖିଲେ ।
ଗଗନେ ରହିଲା ତାଙ୍କ ପାଦର ଉପରି
ସୁଦୃଢ଼ ଭାବେ ରହିଲେ ଦେବ ନରହରି ।
ଏହି ରୂପେ ଉରୁକ୍ରମ ବିଷ୍ଣୁ ଦୁଇପାଦେ
ପୃଥିବୀ ଆକାଶେ ଘୋଟି କ୍ଷଣକର ମଧ୍ୟେ ।
ଅସୁରଗଣଙ୍କୁ ଜୟ କରି ଭଗବାନ
ତିନିପୁର କରି ଇନ୍ଦ୍ର ଦେବଙ୍କୁ ପ୍ରଦାନ ।
ନାଭି ଦେଶୁ ପାଦେକ ଯେ ପ୍ରକାଶିଲେ ହରି
ପାତାଳକୁ ଆକ୍ରମିଲେ ବିଶ୍ୱରୂପ ଧରି ।
ତ୍ରିବିକ୍ରମ ରୂପେ କଲେ ତ୍ରିପୁର ଆକ୍ରମ
ବଳିକି ବୋଇଲେ ପୁଣି ସେ ଉରୁବିକ୍ରମ ।
ମୋର ହସ୍ତେ ଜଳ ଯେଣୁ ଦେଇଅଛୁ ତୁହି
ତେଣୁ ମୁହିଁ ଦେବି ତୋତେ ଅକ୍ଷୟ ଯେ ମହୀ
ବସୁଧାର ତଳେ ଅଛି ତା ନାମ ସୁତଳ
ଚଉଦ ଭୁବନେ ସେହିସ୍ଥାନ ପରିମଳ ।
କଳ୍ପପ୍ରମାଣରେ ଆୟୁ ହୋଇବ ତୋହର
ସର୍ବଦା ସୁସ୍ଥ ଯେ ହୋଇଥିବ ତୋ ଶରୀର ।
ଅତି ଆନନ୍ଦରେ ରହି କାଟିବୁ ତୁ କାଳ
ସାବର୍ଣ୍ଣିକ ମନ୍ୱନ୍ତର ହେବୁ ସୁରପାଳ ।

ତିନିଭୁବନରେ ଇନ୍ଦ୍ର ହୋଇବୁରେ ବଳୀ
ତୋରେ ଅଧିକାରଦେଲୁ ମୋର କରେ ତୋଳି ।
ତୋଠାରୁ ଯେ ଦାନଆଜି କରିଲୁଁ ଗ୍ରହଣ
ଆମ୍ଭେ ତାହା ଇନ୍ଦ୍ରକୁ ଯେ କଲଇଁ ପ୍ରଦାନ ।
ସବୁରି ଅଧିକ ଚାରିଯୁଗେ ପୁଣି ମୁହିଁ
ଇନ୍ଦ୍ରର ଯେ ସାହାପକ୍ଷ ହେବ ଆସିକେହି ।
ତୋ ପାଇଁ କରିବି ତାକୁ ମୁଁ ନିଶ୍ଚେ ବନ୍ଧନ
କରିବଇଁ ତୋତେ ତିନିଭୁବନ ପ୍ରଦାନ ।
କାହିଁକିନା ପୂର୍ବେ ମୋତେ ଏହି ଦେବରାଜ
ଭକ୍ତିରେ ମୋହର ପୂଜା କରିବାରୁ ଆଜ ।
ତାକୁ ମୁହିଁ ତିନିପୁର କଲଇଁ ପ୍ରଦାନ
ସୁତଳେ ତୁ ସୁଖେ ରହ ଅସୁର ରାଜନ ।
ମୋର କଥା ମାନି କର ସେ ସ୍ଥାନେ ତୁ ଘର
ଶତଶତ ପ୍ରାସାଦରେ ପୂର୍ଣ୍ଣ ସେହିପୁର ।
ରତ୍ନମୟ ଅଟ୍ଟାଳିକା ଅଛଇ ବହୁତ
କେତେ ସରୋବର ତାର ନାହିଁ ପରିମିତ ।
କୁମୁଦ କହ୍ଲାର ପଦ୍ମେ ବିରାଜନ୍ତି ତହିଁ
ଉପବନେ ନାନା ବିଧ ବୃକ୍ଷେ ଛନ୍ତି ରହି ।
ନଦୀମାନେ ବିରାଜନ୍ତି ସେ ସ୍ଥାନେ ଅନେକ
ଧାଡ଼ି ହୋଇ ରହିଛନ୍ତି କୂଳେ ବୃକ୍ଷଯାକ ।
ଚନ୍ଦନ କୁସୁମମାଳ ସୁଶୀତଳ ଜଳେ
ବସନ ଭୂଷଣ ଦିବ୍ୟ ମଳୟ ଅନିଳେ ।
ଖେଳ ରସ କଉତୁକେ ରହି କର ସୁଖ
ବିପୁଳ ଭୋଗ ତୁ ତହିଁ କର ନାହିଁ ଦୁଃଖ ।
ମୋହର ଆଜ୍ଞାରେ ଶତଶତ ବାରାଙ୍ଗନା
ଘେନି ତୁହି ସୁଖ କର ହୋଇ ହୃଷ୍ଟମନା ।
ଦେବବିପ୍ର ସଙ୍ଗେ ତୁହି ନୋହିବୁ ବିବାଦୀ
ଆନନ୍ଦରେ ଥିବୁ କେହି ନୋହିବେ ତୋ ବାଦୀ ।
ଯେବେ ଦେବ ବିପ୍ରଙ୍କର କରିବୁ ଅନିଷ୍ଟ
କ୍ଷଣକ ମଧରେ ସର୍ବ ସୁଖ ହେବ ନଷ୍ଟ ।
ଦାରୁଣ ପାଶରେ ତୋତେ କରିବି ବନ୍ଧନ
ଶ୍ରୀହରିଙ୍କ ମୁଖୁ ଶୁଣି ଏମନ୍ତ ବଚନ ।
ବଳୀ କହିଲା ହେ ହରି ହେଲି କୃତକୃତ୍ୟ
ତବ ଶ୍ରୀମୁଖର ଆଜ୍ଞା ମୋର ଅଲଙ୍ଘିତ ।
କହିଲେ କରିବି ଘର ପାତାଳରେ ଯାଇଁ
ଭକ୍ଷଣ କରିବି ତହିଁ କି ପଦାର୍ଥ ମୁହିଁ ।

ଯେବଣ ମୋ ଚିତ୍ତ ହେବ ସର୍ବଦା ସନ୍ତୋଷ
ବିଚାରିଣ ସେ ବିଧାନ କର ହେ ଦେବେଶ ।
ଯେମନ୍ତେ ମୁଁ କରୁଥିବି ତୁମ୍ଭଙ୍କୁ ସ୍ମରଣ
ତୁମ୍ଭର ରୂପକୁ ନିତ୍ୟ ଦେଖୁଥିବି ପୁଣ ।
ବଳୀର ଏକଥାଶୁଣି କହିଲେ ବାମନ
ଅବିଧିରେ ଯେଉଁ ଦ୍ରବ୍ୟ ହୁଅଇ ପ୍ରଦାନ ।
ଶ୍ରୋତ୍ରିୟ ବ୍ରାହ୍ମଣ ହୀନ ଯେ ଶ୍ରାଦ୍ଧ ପଦାର୍ଥ
ଅଶ୍ରଦ୍ଧାରେ ଯେଉଁ ହୋମ ହୁଏ ଅନୁଷ୍ଠିତ ।
ଦକ୍ଷିଣା ବିହୀନ ଯଜ୍ଞ ବିଧିହୀନ କ୍ରିୟା
ଯେବଣ ସତ୍କର୍ମ ହୁଏ ହୃଦେ ଥାଇ ମାୟା ।
ବ୍ରତହୀନ ଅଧ୍ୟୟନ ଜଳହୀନ ପୂଜା
ଏ ସବୁ କର୍ମର ଫଳ ଭୋଗିବୁ ତୁ ରାଜା ।
ଘୃତହୀନ ହୋମ ଆଉ ଦାନହୀନ କର୍ମ
ଏ ଫଳଭୋଗୀ ତୁ ହେବୁ ଏ ତୁମ୍ଭର ଧର୍ମ ।
ବିଷ୍ଣୁପଦ ଆଶ୍ରିତରେ ହେବ କର୍ମ ଯେତେ
ଶ୍ରାଦ୍ଧ ବ୍ରତ ନିୟମାଦି ବେଦବିଧିମତେ ।
ଏ କର୍ମ ଫଳରେ ଭାଗ କାହିଁ ଯେ ତୁମ୍ଭର
ଯଜ୍ଞ ହବି ନ ପାଇବେ କଦାପି ଅସୁର ।
ଜ୍ୟୈଷ୍ଠ ମାସ ଶୁକ୍ଳପକ୍ଷ ଏକାଦଶୀ ଦିନ
ଉପବାସେ ରହିବ ଯେ ନ କରି ଭୋଜନ ।
ଦ୍ୱାଦଶୀରେ ବାମନଙ୍କୁ ଦରଶନ କରି
ଗଙ୍ଗାସ୍ନାନ କରି ଦାନ ଦେବ ବୋଲି ହରି ।
ପରମପଦକୁ ନିଶ୍ଚେ ପାଇବ ସେ ଜନ
କହନ୍ତି ଯେ ଲୋମହରଷଣ ତପୋଧନ ।
ବଳୀକି ବାମନ ଦେଇ ଏ ପ୍ରକାରେ ବର
ଦେବରାଜ ଇନ୍ଦ୍ରକୁ ଯେ ଦେଇ ତିନିପୁର ।
ଦେଖୁ ଦେଖୁ ଅନ୍ତର୍ଦ୍ଧାନ ହେଲେ ଦଇତାରି
ତ୍ରିଭୁବନ ପାଳିଲେ ଯେ ଇନ୍ଦ୍ର ବଜ୍ର ଧରି ।
ପାତାଳରେ ବଳୀରାଜା ରହିଲାକ ଯାଇଁ
ବିଷ୍ଣୁର ମହିମା ମୁହିଁ କହିବି ବୁଝାଇ ।
ଯେ ଶୁଣିବ ନ ରହିବ ପାତକ ତା ଦେହେ
ସୂର୍ଯ୍ୟ ଦରଶନେ ଯେହ୍ନେ ଅନ୍ଧାର ନ ରହେ ।
ବ୍ରାହ୍ମଣ ଶୁଣିଲେ ବେଦପାରଗ ହୋଇବ
କ୍ଷତ୍ରିୟ ଶୁଣିଲେ ପୃଥ୍ୱୀ କ୍ଷଣକେ ଜିଣିବ ।
ବଇଶ୍ୟ ଶୁଣିଲେ ଧନ ପାଇବ ବହୁତ
ଶୂଦ୍ର ଶୁଣି ସୁଖଲାଭ କରିବ ନିୟତ ।
ଅଧିକ କି କହିବି ମୁଁ ମହିମା ଏହାର
ପାପ-ତୁଳା - ରାଶିକି ଏ ଅଗ୍ନି ପରକାର ।
ଏ ବାମନ ବଳୀର ଯେ ଅପୂର୍ବ ସମ୍ବାଦ
ଇନ୍ଦ୍ରର ମନ୍ତ୍ରଣା ଯାହା କହିଲା ପ୍ରହ୍ଲାଦ ।
ଯେ ଏହା ଶୁଣିବ ପୁଣି ଶୁଣାଇବ ବସି
ନୋହିବେ ତାହାକୁ ସମ ଦେବତା ମହର୍ଷି ।
ସେ ବାମନରୂପୀ ବିଷ୍ଣୁପାଦେ ରଖିମନ
ଗୀତ କଲା ଅତି କଷ୍ଟେ ଗୋପୀନାଥ ଦୀନ ।
ସାଧୁ ଜନେ ଦୋଷାଦୋଷ ନ ଧରିବ ମୋର
ମୁହିଁ ସଦା ତୁମ୍ଭ ପାଦତଳର କିଙ୍କର ।

=+=

## ସରସ୍ୱତୀ ମାହାତ୍ମ୍ୟ ବର୍ଣ୍ଣନ

ପଚାରିଲେ ଋଷିଗଣ ଆହେ ମୁନିବର
ନଦୀ ଯେତେ ଅଛି ଏହି ପୃଥିବୀ ଭିତର ।
ତା ମଧ୍ୟରେ ସରସ୍ୱତୀ ପବିତ୍ର କାରିଣୀ
ସେ କାହୁଁ ଜନମ ହେଲା କହ ଏହି ବାଣୀ ।
କୁରୁକ୍ଷେତ୍ରେ କିରୂପେ ସେ ମିଳିଲାକ ଆସି
ବ୍ରହ୍ମସରକୁ ସେ ଗଲା କିରୂପେ ହେ ଋଷି ।
ତାର ବେନିପାଖେ ତୀର୍ଥେ ରହିଲେ କେମନ୍ତେ
ଏ ସବୁ ବିସ୍ତାରି କହ ଆମ୍ଭର ଅଗ୍ରତେ ।
ଲୋମହରଷଣ ଋଷି କହିଲେ ହେ ଶୁଣ
ଯାହାକି ଶୁଣିଲେ ପାପ କ୍ଷୟଯିବ ପୁଣ ।
ପ୍ଲକ୍ଷବୃକ୍ଷୁ ଜାତ ହେଲେ ଏହି ସରସ୍ୱତୀ
ଯାହା ମୁଁ ଶୁଣିଛି ତାହା କହୁଛି ସଂପ୍ରତି ।
ଶଇଳ ସହସ୍ର ଭେଦି ଏହି ପୁଣ୍ୟତୋୟା
ଦଇତ ବନରେ ଥିଲେ ଗୁପ୍ତ କରି କାୟା ।
ମହାମୁନି ମାର୍କଣ୍ଡେୟ ଦେଖିଲେକ ଆଗେ
ପ୍ଲକ୍ଷ ବୃକ୍ଷେ ବିଜେ କରିଛନ୍ତି ମହାଭାଗେ ।
ଦେଖିଣ ସେ ମୁନିବର କରି ନମସ୍କାର
ସ୍ତୁତି କଲେ ଶିରେ ରଖି ଯୋଡ଼ି ଦୁଇକର ।
ହେ ଦେବୀ ତୁମ୍ଭେ ଯେ ସର୍ବ ଲୋକର ଜନନୀ
ବେଦର ଅଗ୍ରଣି ତୁହି ଜଗତପାବନୀ ।
ପ୍ରାଣୀଙ୍କର ମଙ୍ଗଳ ତୁ କରୁ ସଦାକାଳେ
ସତକି ଅସତ ଯାହା ଅଛି ଭୂମଣ୍ଡଳେ ।
ମୋକ୍ଷ ପଦ ଆଦି ଯେତେ ବେଦର କଳ୍ପିତ
ସେ ସମସ୍ତ ତୁମ୍ଭଜଳେ ହୁଏ ପତିଷ୍ଠିତ ।

ଯେମନ୍ତେ ସାଗରେ ହୁଏରହି ଜଳରାଶି
ତେସନ ମୋହର ଏହି ଜଗତନିବାସୀ ।
ପରଂବ୍ରହ୍ମ ଅଟନ୍ତି ଯେ ଅକ୍ଷର ସ୍ୱରୂପ
କ୍ଷରରୂପୀ ଜଗତ ଯେ ଅଟଇ ଅମାପ ।
କାଷ୍ଠେ ଅଗ୍ନିଥିଲା ପ୍ରାୟ ସେ ବ୍ରହ୍ମଜଗତ
ଭୂମିରେ ଯେସନେ ଗନ୍ଧ ଥାଇଟି ନିୟତ ।
ଯେସନେ ଯେ ଧର୍ମ ଅର୍ଥ କାମ ମୋକ୍ଷ ଚାରି
ରହିଅଛି ଆଗୋ ମାତ ତବ ଦେହେ ପୂରି ।
ସ୍ଥାବର ଜଙ୍ଗମ ଆଦି ଯେତେକ ପଦାର୍ଥ
ଯେବଣ ଓଁକାରୁ ପୁଣି ହୋଇଛନ୍ତି ଜାତ ।
ସେ ଓଁକାର ଗୋଟି ତିନିମାତ୍ରାରେ ହୋଇଛି
ଆକାର ଉକାର ଆଉ ମକାରେ ରହିଛି ।
ଦୃଶ୍ୟ କି ଅଦୃଶ୍ୟ ଯେତେ ପଦାର୍ଥ ସକଳ
ସେ ଅକ୍ଷରେ ବିରାଜଇ ଜାଣ ତିନିକାଳ ।
ସେହି ଲୋକ ସେହି ବେଦ ସେହି ବିଦ୍ୟା ପୁଣି
ସେହି ଅଗ୍ନି ସେହି ଜ୍ୟୋତି ସେହି ବର୍ଗ ତିନି ।
ତିନି ଗୁଣ ତିନିବର୍ଣ୍ଣ ତିନି ବେଦ ସେହି
ତିନି ଯେ ଅବସ୍ଥା ତିନି ଧାତୁ ହିଁ ବୋଲାଇ ।
ପିତୃଗଣ ଅଣିଆଦି ଆଠଗୋଟି ସିଦ୍ଧି
ତିନିମାତ୍ରାରେ ଏ ସବୁ ରହି ଯଥାବିଧି ।
ଆଗୋ ମାତଃ ସରସ୍ୱତୀ ସେହି ମାତ୍ରା ତିନି
ତୁମ୍ଭର ସ୍ୱରୂପ ଏହା କହିଛନ୍ତି ମୁନି ।
କେବଳ ଆକୃତି ଭିନ୍ନ ଭିନ୍ନ ତାହାଙ୍କର
ଆଦି ଅବିନାଶୀ ରୂପ ଅଟଇ ତୋହର ।
ହୋମ କାଳେ ଅଗ୍ନି ଘୃତେ ରହିଅଛି ଯାହା
ତୁମ୍ଭଯୋଗୁ ସିନା ସାଧ ହୁଅଇଟି ତାହା ।
ତୁମ୍ଭ କୃପା ନୋହିଲେ କି ଉଚ୍ଚାରନ୍ତେ ମନ୍ତ୍ର
ଏଣୁ ତୁମ୍ଭେ ଅଟ ଏହି ଜଗତର ମାତ ।
ତୁମ୍ଭର ଯେ ଅର୍ଦ୍ଧମାତ୍ରା ମହିମା ଅପାର
କ୍ଷୟ ପରିମାଣ ନାହିଁ ଅଟେ ଅବିକାର ।
ସେ ରୂପକୁ ବର୍ଣ୍ଣିବାକୁ ମୋର ସାଧ କାହିଁ ।
ବର୍ଣ୍ଣି ନ ପାରିବେ ପୁଣି ଜଗତରେ କେହି ।
ଜିହ୍ୱା ତାଳୁ ଓଷ୍ଠ ଏହି ତିନିଙ୍କ ସାହାଯ୍ୟେ
ତାହା ଉଚ୍ଚାରଣ ହୋଇ ନପାରେ ହେ ଆର୍ଯ୍ୟେ
ତୁମ୍ଭର ଯେ ଅର୍ଦ୍ଧମାତ୍ରା ରୂପ ଆଗୋ ମାତ
ସାକ୍ଷାତରେ ଚନ୍ଦ୍ର ସୂର୍ଯ୍ୟ ବିଷ୍ଣୁ ଲୋକ ଜାତ ।

କି ବୋଲିବି ବିଶ୍ୱରୂପ ମହେଶଟି ସେହି
ସାଂଖ୍ୟ ବେଦବେଦାନ୍ତରେ ଏହା ଛନ୍ତି କହି ।
ବହୁତ ଶାସ୍ତ୍ରରେ ଏହା ହୋଇଅଛି ସ୍ଥିର
ଆଦି ନାହିଁ ମଧ୍ୟ ନାହିଁ ଅନ୍ତ ନାହିଁ ଯାର ।
ସତ ଯେ ଅସତ ରୂପେ ସଦା ବିରାଜଇ
ଅନେକ ରୂପ ଏ ପୁଣି ଏକରୂପ ହୋଇ ।
କି ନାମ ଏହାର ଏହା କେ ପାରିବ କହି
ତିନିଗୁଣ ଆଶ୍ରିତରେ ଅଛଇ ସେ ରହି ।
ଶକ୍ତିମାନେ ଭାବନା ଯେ କରନ୍ତି ତାହାକୁ
ଭଲ ରୂପେ ଜାଣଇ ଯେ ଶକ୍ତି ଭାବନାକୁ ।
ଏରୂପେ ଜଗତ ବ୍ୟାପି ରହିଛି ଗୋ ମାତ
ବ୍ରହ୍ମକୁ ଯେ ବ୍ୟାପି ତୁମ୍ଭେ ବିରାଜ ଜଗତ ।
ଯେ ସବୁ ପଦାର୍ଥ ନିତ୍ୟ ଅଟେ ଅବିନାଶୀ
ସ୍ଥୂଳ ସୂକ୍ଷ୍ମ ପଦାର୍ଥ ଯେ ଅନ୍ତରୀକ୍ଷବାସୀ ।
ସେହି ସବୁ ପଦାର୍ଥର ଦୃଶ୍ୟ ଅଟ ତୁମ୍ଭେ
ରୂପ ଅରୂପ ଯେ ସବୁ ଅଛନ୍ତି ଏ ଭବେ ।
ପ୍ରାଣୀଏ କରନ୍ତି ଯେବା କିଛି କର୍ମ ଧର୍ମ
ଦେବତା ଗନ୍ଧର୍ବ ଯକ୍ଷ ରକ୍ଷାଦିଙ୍କ କର୍ମ ।
ସେ ସମସ୍ତ ତୁମ୍ଭେ ମାତ ତୁମ୍ଭ ବିନା କିଛି
ହୋଇ ନ ପାରିବ ଏହା ବେଦ ଲେଖିଅଛି ।
ଏମନ୍ତେ କରନ୍ତେ ସ୍ତବ ମାର୍କଣ୍ଡେୟ ମୁନି
ବିଷ୍ଣୁ ଜିହ୍ୱାରୂପିଣୀ ସେ ସରସ୍ୱତୀ ଜାଣି ।
ବୋଇଲେ ଭୋ ବିପ୍ର ମୁହିଁ ହୋଇଲି ପ୍ରସନ୍ନ
ତୁମ୍ଭେ ଯେଣେ ନେବ ମୁହିଁ କରିବି ଗମନ ।
କହିଲେକ ମାର୍କଣ୍ଡେୟ ମହାମୁନିବର
ପ୍ରଥମେ ପବିତ୍ର କର ବ୍ରହ୍ମାନାମେ ସର ।
ତଦନ୍ତେ ପବିତ୍ର କର ନାଗ ନାମେ ହ୍ରଦ
କୁରୁକ୍ଷେତ୍ର ନାମରେ ଯେ ଜଗତେ ପ୍ରସିଦ୍ଧ ।
ସେ ସ୍ଥାନ ପବିତ୍ର କର ତୋର ପୁଣ୍ୟତୋୟେ
ଦୀନ ଗୋପୀନାଥର ଯେ ପାପ କର କ୍ଷୟେ ।

=+=

## କୁରୁକ୍ଷେତ୍ର ମାହାତ୍ମ୍ୟ

କହିଲେକ ମହାମୁନି ଲୋମହରଷଣ
ମାର୍କଣ୍ଡେୟ କଥା ଦେବୀ କରିଣ ଶ୍ରବଣ ।
ନଦୀରୂପେ କୁରୁକ୍ଷେତ୍ରେ ରହିଲେକ ଯାଇଁ
ପୁଣ୍ୟଜଳେ ସେ ସ୍ଥାନକୁ ପବିତ୍ର କରାଇ ।

ତହୁଁ ପୁଣି ହୋଇଲେ ସେ ପଶ୍ଚିମ ବାହିନୀ
ପୂର୍ବେ ଦିନେ କହିଥିଲେ ମୋତେ ପଦ୍ମଯୋନି ।
ସହସ୍ର ସହସ୍ର ତୀର୍ଥ ଅଛଇ ଯେ ସ୍ଥାନେ
ସେ ତୀର୍ଥଙ୍କ ମହିମା ଯେ ଶୁଣ ଋଷିମାନେ ।
ଯେ କରିବ ସେହି ତୀର୍ଥମାନଙ୍କୁ ସ୍ମରଣ
ସନ୍ତୋଷ ହୋଇବେ ତାହାଠାରେ ଦେବଗଣ ।
ଭକ୍ତିରେ କରିବ ସେହି ତୀର୍ଥରେ ଯେ ସ୍ନାନ
ଦେହାନ୍ତେ ପାଇବ ସେହୁ ଦିବ୍ୟ ପୁଣ୍ୟ ସ୍ଥାନ
ଅପବିତ୍ର ହେଉ ଅବା ପବିତ୍ର ଯେ ହେଉ
ପୁଣ୍ଡରୀକନୟନଙ୍କୁ ସ୍ମରଇଟି ଯେହୁ ।
ବାହାର ଅନ୍ତର ଶୁଦ୍ଧି ହୁଅଇ ତାହାର
ସେହି କୁରୁକ୍ଷେତ୍ରେ ଜାଣ ସେହି ପରକାର ।
ସେ ବୋଲଇ ମୁହିଁ କୁରୁକ୍ଷେତ୍ରକୁ ଯିବଇଁ
କୁରୁକ୍ଷେତ୍ରେ ଘର କରି କାଳ କାଟିବଇଁ ।
ଏମନ୍ତ ଲୋକର ପାପ ହୁଅଇ ମୋଚନ
ଯେମନ୍ତେ ତିମିର ନାଶ କରଇ ତପନ ।
ବ୍ରହ୍ମଜ୍ଞାନ ଗୟାଶ୍ରାଦ୍ଧ ଗୋ ଗୃହେ ମରଣ
କୁରୁକ୍ଷେତ୍ର ବାସ ଏହି ଚାରିକଥା ଜାଣ ।
ପରମ ପଦକୁ ଆଣି ଦିଅଇ ସାକ୍ଷାତେ
କୁରୁକ୍ଷେତ୍ର ବିନା ଏହା ନ ପାଇ ଜଗତେ ।
ସରସ୍ୱତୀ ଦୃଷଦ୍‌ବତୀ ଏହି ଦୁଇ ନଈ
ଦେବ ନିର୍ମିତ ଯେ ଦେଶ ମଧ୍ୟରେ ଅଛଇ ।
ତାର ନାମ ଆର୍ଯ୍ୟାବର୍ତ୍ତ ଆହେ ମୁନିଗଣ
ଦେବତୁଲ୍ୟ ଅଟନ୍ତି ଯେ ସେ ସ୍ଥାନର ଜନ ।
ସରସ୍ୱତୀ ତୀରେ ଘର କରିଛନ୍ତି ଯେହୁ
ସଂସାରେ ବୋଲିବ ଏହା ବ୍ରହ୍ମଜ୍ଞାନୀ ସେହୁ ।
ଦେବଗଣ ଋଷିଗଣ ସିଦ୍ଧଗଣ ଯେତେ
କୁରୁଜାଙ୍ଗଳର ସେବା କରନ୍ତି ସମସ୍ତେ ।
ତେଣୁ ନିତ୍ୟ କରନ୍ତି ସେ ବ୍ରହ୍ମ ଦରଶନ
ଜଗତେ ବୋଲାଇଛନ୍ତି ପୁଣ୍ୟବନ୍ତ ଜନ ।
ଯେବଣ ମାନବ କରେ ମୋକ୍ଷକୁ କାମନା
ଅଧିକ କି କହିବି ଯେ ସଦା ପାପମନା ।
ସେ ଯେବେ ସେ ସ୍ଥାନେ ଯାଇ ରହେ ଘର କରି
ବହୁ ଜନ୍ମ କୃତ ପାପରାଶି ଯେ ତାହାରି ।
ଦେହରେ ନ ରହି ଛାଡ଼ି ପଳାଏଟି ଡରେ
ପୁଣ୍ୟ ରାଶି ଆସି ତାର ହୃଦୟେ ସଞ୍ଚରେ ।
ଶୁଦ୍ଧ ସନାତନ ବିଷ୍ଣୁ ରୂପ ଦେଖିକରି
ନିଶ୍ଚୟ ସେ ମୋକ୍ଷ ହୁଏ ଆହେ ତପଚାରୀ ।
ତା ନିକଟେ ଅଛି ବ୍ରହ୍ମବେଦୀ ବ୍ରହ୍ମକ୍ଷର
ତା ସେବାରେ ବ୍ରହ୍ମପଦ ପାଇବ ଯେ ନର ।
ଗ୍ରହ ତାରା ନକ୍ଷତାଦି ଅଛନ୍ତି ଏ ଯେତେ
ଖସି ପଡ଼ନ୍ତି ଏ କାଳବଶେ ଭୂମିଗତେ ।
କୁରୁକ୍ଷେତ୍ରେ ମଲେ ତାର ନାହିଁଟି ସେ ଡ଼ର
କାଳବଶେ ନ ପଡ଼ିବ କଦାପି ସେ ନର ।
ବ୍ରହ୍ମା ଆଦି ଦେବଗଣ ଋଷି ସିଦ୍ଧ ଯେତେ
ଚାରଣ ଗନ୍ଧର୍ବ ଯକ୍ଷ ଅପ୍‌ସରା ସହିତେ ।
ଦିବ୍ୟ ସ୍ଥାନ ପାଇଁ କୁରୁକ୍ଷେତ୍ରକୁ ସେବନ୍ତି
ନିତ୍ୟ ଶ୍ରଦ୍ଧାଚିତ୍ତେ ସେହି ସ୍ଥାନକୁ ଗମନ୍ତି ।
ଯେ ଜନ ସେ ସ୍ଥାଣୁହ୍ରଦେ ସ୍ନାନ କରେ ଯାଇ
ମନେ ଯାହା ବାଞ୍ଛାକରେ ସେ ଫଳ ସେ ପାଇ ।
ବ୍ରହ୍ମସରଃ ପ୍ରଦକ୍ଷିଣ କରି ଯେଉଁ ନରେ
କ୍ଷମା ମାଗନ୍ତି ସେ କରଯୋଡ଼ି ବାରେ ବାରେ ।
ତହୁଁ ସରସ୍ୱତୀ ନଦୀ ଜଳେ କରି ସ୍ନାନ
ଯକ୍ଷକୁ ଦର୍ଶନ କରି ପ୍ରଣମି ସେ ଜନ ।
ପୁଷ୍ପ ଧୂପ ନଇବେଦ୍ୟ ଦେଇ ପୁଣି କହେ
ଆହେ ଯକ୍ଷେଶ୍ୱର ମୁହିଁ ତବ ଅନୁଗ୍ରହେ ।
ନଦୀ ବନ ତୀର୍ଥ ଆଦି ଭ୍ରମଣ କରିବି
ତହିଁର ଯେ ବିଘ୍ନମାନ ଯେମନ୍ତେ ଖଣ୍ଡିବି ।
ଶୁଣିଲ ହେ ମୁନିଜନେ ଏ କ୍ଷେତ୍ର ମହିମା
ଯାହା ମୋତେ କହିଥିଲେ ପୂର୍ବେ ବେଦବ୍ରହ୍ମା ।
ଏହାଶୁଣି ମୁନିମାନେ ହେଲେ କୃତକୃତ୍ୟ
ଦୀନ ଗୋପୀନାଥ ତବ ପାଦତଳ ଭୃତ୍ୟ ।

= + =

## ସପ୍ତବନାଦି ବର୍ଣ୍ଣନ

ପୁନରପି ବୋଇଲେକ ମିଳି ଋଷିଗଣ
ଅନୁଗ୍ରହ କର ଆହେ ଲୋମହରଷଣ ।
ସପ୍ତବନ ସପ୍ତନଦୀ କାହାକୁ କହଇ
ତୀର୍ଥମାନଙ୍କର ନାମ କହ ହେ ବୁଝାଇ ।
ତୀର୍ଥସ୍ନାନ କଲେ କହ କି ଫଳ ହୋଇବ
ବିସ୍ତାରି ଏ ସବୁ କଥା ଏଠାରେ କହିବ ।
ତୁମ୍ଭେ ଯେଣୁ ପୌରାଣିକମାନଙ୍କ ପ୍ରଧାନ
ପଚାରିଲୁ କର ଆମ୍ଭ ସଂଶୟ ମୋଚନ ।

ଏହାଶୁଣି କହିଲେକ ଲୋମହରଷଣ
ସପ୍ତବନର ଯେ ନାମ କର ତା ଶ୍ରବଣ ।
ପରମ ପବିତ୍ର ଏହି ନାମ ଯେ ଶୁଣଇ
ସକଳ ପାତକ ତାର ଦେହୁ କ୍ଷୟ ଯାଇ ।
କୁରୁକ୍ଷେତ୍ର ମଧ୍ୟେ ଅଛି ଏହି ସାତ ବନ
ପ୍ରଥମ ବନର ନାମ ଅଟେ କାମ୍ୟବନ ।
ଦ୍ୱିତୀୟ ଅଦିତିବନ ସେ ଅତି ସୁନ୍ଦର
ତୃତୀୟ ଯେ ବ୍ୟାସବନ ଅତି ମନୋହର ।
ଚତୁର୍ଥ ଫଲକିବନ ପବିତ୍ର ସେ ସ୍ଥାନ
ପଞ୍ଚମ ଯେ ସୂର୍ଯ୍ୟବନ ଷଷ୍ଠ ମଧୁବନ ।
ସପତମ ବନନାମ ଶୀତବନ ଜାଣ
ପରମ ପବିତ୍ର ପୁଣି କଲୁଷ ନାଶନ ।
ଶୁଣିଲତ ଋଷିଗଣ ସପ୍ତବନ ନାମ
ଏବେ ସପ୍ତନଦୀ ନାମ କହୁଅଛି ଶୁଣ ।
ସରସ୍ୱତୀ ବୈତରଣୀ ଗଙ୍ଗା ମନ୍ଦାକିନୀ
ଅମ୍ଳୁ ନଦୀ ମଧୁଶ୍ରବା ଯେ ପାପନାଶିନୀ ।
ଆପଗା ଯେ ମହାପୁଣ୍ୟ କୌଶିକୀ ଆବର
ଦୃଷଦ୍‌ବତୀ ହିରଣ୍ୱତୀ ଏହାଙ୍କର ନୀର ।
ପରମ ପବିତ୍ର ଅଟେ ବରଷା କାଳରେ
ସରସ୍ୱତୀ ବିନା ସର୍ବେ ବଢ଼ନ୍ତି ପ୍ରଖରେ ।
ରଜସ୍ୱଳା ନୁହନ୍ତି ଏ କେତେବେଳେ ପୁଣି
ତୀର୍ଥ ପ୍ରଭାତରୁ ସଦା ପବିତ୍ର ଏ ପାଣି ।
ତୀର୍ଥ ସ୍ନାନର ଯେ ଫଳ କହୁଅଛି ଶୁଣ
ମୋ କଥାରେ ସାବଧାନ ହୋଇ ମୁନିଗଣ ।
ତୀର୍ଥ ସ୍ଥାନ ମାଡ଼ଇ ଯେ ତୀର୍ଥ ନାମ ସ୍ମରେ
ଅଶେଷ କଲୁଷ ତାର ନରହେ ଦେହରେ ।
ତୀର୍ଥ ଯାତ୍ରା କରିବାକୁ ବଳିବ ଯା ମନ
ସେ ଆଗ ରନ୍ତୁକ ତୀର୍ଥ କରିବ ଦର୍ଶନ ।
ମହାବଳ ଦ୍ୱାରପାଳ ଯକ୍ଷକୁ ପ୍ରଣମି
ତଦୁତ୍ତାରେ ତୀର୍ଥଯାତ୍ରା କରିବ ଯେ ପ୍ରାଣୀ ।
ଅଦିତି ବନକୁ ତହୁଁ କରିବେ ଗମନ
ପରମ ପବିତ୍ର ତୀର୍ଥ ପୁଣ୍ୟମୟ ସ୍ଥାନ ।
ପୁତ୍ର କାମନାରେ ଦେବମାତା ଯେ ଅଦିତି
ତହିଁ ଘୋର ତପକଲେ ରହି ଦିବାରାତି ।
ପୂର୍ବେ କହିଅଛି ତୁମ୍ଭ ଆଗେ ତା ବିସ୍ତାରି
ସେ ସ୍ଥାନେ ଯେ ଜନ ଯାଇଁ ହୁଏ ତପଚାରୀ ।
ତାର ସର୍ବ ଦୋଷ ନାଶ ହୁଅଇ ନିଶ୍ଚୟ
ଲଭଇ ସେ ବଳବନ୍ତ ସୁନ୍ଦର ତନୟ ।
ସୂର୍ଯ୍ୟପ୍ରଭ ବିମାନରେ ଚଳିବ ସେ ସ୍ୱର୍ଗେ
ତହୁଁ ବଇକୁଣ୍ଠେ ଯାଏ ଆହେ ବିପ୍ରବର୍ଗେ ।
ସ୍ୱନାମ ବିଖ୍ୟାତ ତୀର୍ଥ ଅଟଇ ଏ ସଦା
ଏ ସ୍ଥାନରେ ରହିଥାନ୍ତି ଶ୍ରୀହରି ସର୍ବଦା ।
ବିମଳ ତୀର୍ଥରେ ସ୍ନାନ କରି ଯେଉଁ ଜନ
ବିମଳେଶ୍ୱରଙ୍କୁ ତହିଁ କରି ଦର୍ଶନ ।
ନିର୍ମଳ ହୋଇ ସେ ସ୍ୱର୍ଗେ ଗମନ କରଇ
ତହୁଁ କିଛି ଦିନେ ରୁଦ୍ର ଲୋକେ ସେ ବସଇ ।
ଯେଉଁ ଜନ ତହୁଁ ଯାଇଁ ଏକାଦଶୀ ଦିନ
ହରି ବଳରାମଙ୍କୁ ହେ କରଇ ଦର୍ଶନ ।
କଳି କଳମଷ ଦୋଷ ନାଶ ହୁଏ ତାର
ଦେହ ଅନ୍ତେ ଗମଇ ସେ ବଇକୁଣ୍ଠ ପୁର ।
ତହୁଁ ପୁଣି ପାରିପ୍ଲବ ତୀର୍ଥକୁ ଗମଇ
ତିନିଭୁବନେ ଯେ ତୀର୍ଥ ବିଖ୍ୟାତ ଅଟଇ ।
ସେ ତୀର୍ଥରେ ସ୍ନାନ କରି ତହୁଁ ପୁଣି ଯିବ
ବ୍ରହ୍ମାଙ୍କୁ ଦର୍ଶନ କରି ଚରଣ ବନ୍ଦିବ ।
ବେଦପୋଥି ବିରାଜଇ ହସ୍ତରେ ତାଙ୍କର
ତାଙ୍କ ଦରଶନେ ଫଳ ମିଳଇ ଅପାର ।
ବ୍ରହ୍ମଯଜ୍ଞର ସେ ଫଳ ପାଇ ତତ୍‌କ୍ଷଣେ
ଦେହ ଅନ୍ତେ ବସଇ ସେ ବ୍ରହ୍ମାର ଭୁବନେ ।
ସମ୍ଭବ ନାମରେ ରମ୍ୟ ତୀର୍ଥେକ ଅଛଇ
କୌଶିକ ତୀର୍ଥରୁ ଜାତ ହୋଇଯାଏ ବହି ।
ତହିଁ ସ୍ନାନ କଲେ ମିଳେ ପରମ ଯେ ପଦ
ତୀରବନ କ୍ଷମା କରେ ସର୍ବ ଅପରାଧ ।
ସେ ସ୍ଥାନରୁ ବାହାରିଛି ସେ ପବିତ୍ର ନଇ
ସେହି ସ୍ଥାନ ସୁପବିତ୍ର ତୀର୍ଥ ଯେ ଅଟଇ ।
ତହୁଁ ପୁଣି ଦକ୍ଷାଶ୍ରମେ କରିବେ ଗମନ
କରି ତହିଁ ଦକ୍ଷେଶ୍ୱର ଶିବ ଦରଶନ ।
ଅଶ୍ୱମେଧ ଫଳ ପାଇ ତହୁଁ ଯିବ ପୁଣି
ଶମ୍ଭୁକ ତୀର୍ଥରେ ଅଛି ସୁନିର୍ମଳ ପାଣି ।
ସେ ତୀର୍ଥରେ ସ୍ନାନ କରି ହରିହର ମୂର୍ତ୍ତି
ଭକତିରେ ତାଙ୍କୁ ପୂଜା କରି ଯଥାଶକ୍ତି ।
ସର୍ବ ପାପ ବିନାଶିଣ ଯିବ ସର୍ପ ତୀର୍ଥେ
ନାଗଗଣ ତହିଁ ସ୍ନାନ କରନ୍ତି ଯେ ନିତ୍ୟେ ।

ସେ ତୀର୍ଥର ନାମ ସର୍ପିଦଧି ବୋଲି ଜାଣ
ସ୍ନାନ କଲେ ହୁଏ ସର୍ପ ଭୟ ନିବାରଣ ।
ତହୁଁ ସେ ନରକୋଦ୍ଧାର ତୀର୍ଥକୁ ଗମିବ
ଏକମାତ୍ର ସେହି ପୁଣ୍ୟ ସ୍ଥାନରେ ରହିବ ।
ପରଦିନ ସ୍ନାନ କରି ପ୍ରଭାତରୁ ଯାଇଁ
ଦ୍ୱିତୀୟ ନାମରେ ଦ୍ୱାରପାଳ ଯେ ଅଛଇ ।
ତାଙ୍କୁ ପୂଜା କରି ଦେବ ବିପ୍ରଙ୍କୁ ଭୋଜନ
ଭୋଜନ ଶେଷରେ ତାଙ୍କୁ ବୋଲିବ ଏସନ ।
ପ୍ରଣାମ କରି ମୁଁ କରଯୋଡ଼ି ମାଗୁଅଛି
ଯେତେକ ପାତକ ମୋର ଶରୀରରେ ଅଛି ।
ଆହେ ଯକ୍ଷେଶ୍ୱର ଆଜି ତବ ପରସାଦେ
ସେ ସକଳ କ୍ଷୟ ଯାଉ ପୁଣ୍ୟ ହେଉ ଉଦେ ।
ମୋର ମନ କାମନା ଯେ ପୂର୍ଣ୍ଣ ହେଉ ପୁଣି
ଏମନ୍ତେ ପ୍ରସନ୍ନ କରି ବିପ୍ର ଯକ୍ଷମଣି ।
ତହୁଁ ପଞ୍ଚନଦ ତୀର୍ଥେ କରିବ ଗମନ
ତାର ନାମ କୋଟି ତୀର୍ଥ ବିଖ୍ୟାତ ଭୁବନ ।
କି ହେନ୍ତୁ ଏ ନାମ ହେଲା ଶୁଣି ଋଷିଗଣେ
ପୂର୍ବେ ଦେବ ଦେବ ମହାରୁଦ୍ର ଯେ ଆପଣେ ।
ପାଞ୍ଚଗୋଟି ନଦୀର ଯେ ପ୍ରତିଷ୍ଠାଦି ବିଧି
କରିବାରୁ ପଞ୍ଚନଦ ନାମେ ସେ ପ୍ରସିଦ୍ଧି ।
ଦାନବଗଣ ଯେ ତହିଁ କରିବାରୁ ବାସ
ଭୟଙ୍କର ହୋଇଥିଲା ଜାଣି କୃତ୍ତିବାସ ।
କୋଟି କୋଟି ତୀର୍ଥ ନାମେ ଖ୍ୟାତ ତ୍ରିଭୁବନେ
ତେଣୁ କୋଟିତୀର୍ଥ ଆଣି ରଖିଲେ ସେ ସ୍ଥାନେ ।
ତହିଁ ସ୍ନାନ କଲେ ମିଳେ ପଞ୍ଚଯଜ୍ଞ ଫଳ
ଶିବ ରହିଛନ୍ତି ଘେନି ଅମର ମଣ୍ଡଳ ।
ତହିଁ ସ୍ନାନ କରି ଅଗ୍ନିଷ୍ଟୋମ ଫଳ ପାଇ
ଶ୍ରଦ୍ଧାନ୍ୱିତ ଜିତେନ୍ଦ୍ରିୟ ହୋଇ ତହୁଁ ଯାଇ ।
ଅଶ୍ୱିନୀକୁମାର ତୀର୍ଥେ କରିବ ଯେ ସ୍ନାନ
ପରମ ଗତିକି ଲଭି ତେଜି ସେହି ସ୍ଥାନ ।
ଉତ୍ତମ ଯେ ସୋମତୀର୍ଥ ତହିଁରେ ମିଳିବ
ସେ ତୀର୍ଥର ମହିମା ଯେ ଦେବଙ୍କୁ ଦୁର୍ଲ୍ଲଭ ।
ପୂର୍ବେ ସୋମ ବ୍ୟାଧିଯୁକ୍ତ ହୋଇଣ ସେଠାରେ
ବ୍ୟାଧି ନ ରହିଲା ତପ କଲାରୁ ଶରୀରେ ।
ସ୍ନାନ କରି ସୋମେଶ୍ୱର ପଦେ ଦରଶନ
ରାଜସୂୟ ଯଜ୍ଞଫଳ ପାଇବ ସେ ଜନ ।
ବ୍ୟାଧ ନ ରହିବ ଦେହେ ଦୋଷ ନ ରହିବ
ସୋମଲୋକେ ଚନ୍ଦ୍ର ପାଖେ ସେ ଯାଇଁ ବସିବ ।
ତହିଁ ଜ୍ୱାଳାମାଳେଶ୍ୱର ଲିଙ୍ଗେକ ଅଛଇ
ତାର ପାଶେ ଭୁତେଶ୍ୱର ଲିଙ୍ଗ ବିରାଜଇ ।
ତାହାଙ୍କୁ ପୂଜିବ ଯେହୁ ବିଧି ଅନୁସାରେ
ପୁନରପି ଜନ୍ମ ସେହୁ ନୋହିବ ସଂସାରେ ।
ତହୁଁ ଯାଇ ଏକ ହଂସତୀର୍ଥେ କଲେ ସ୍ନାନ
ଗୋ ସହସ୍ର ଦାନ ଫଳ ପାଇବ ସେ ଜନ ।
ପୌଣ୍ଡରୀକ ଯଜ୍ଞ କଲେ ଯେତେ ପୁଣ୍ୟ ହୋଇ
ସେ ତୀର୍ଥେ ସେ ସ୍ନାନକରି ତେତେଫଳ ପାଇ ।
ତହୁଁ ଯାଇ ମୁଞ୍ଜବଟ ତୀର୍ଥେ ଏକରାତି
ଉପବାସେ ରହିବ ସେ ହେବ ଗଣପତି ।
ମହାଦେବଙ୍କର ସେହି ତୀର୍ଥ ଯେ ଅଟଇ
ଯକ୍ଷିଣୀ ନାମରେ ଦେବୀ ସେ ସ୍ଥାନେ ଅଟଇ ।
ତହିଁ ସ୍ନାନକଲେ ମହାପାତକ ନ ରହେ
କୁରୁକ୍ଷେତ୍ର ପୁଣ୍ୟଦ୍ୱାର ଏହାକୁଟି କହେ ।
ପ୍ରଦକ୍ଷିଣ କରି ଦେବ ବିପ୍ରଙ୍କୁ ଭୋଜନ
ପୁଷ୍କର ତୀର୍ଥକୁ ତହୁଁ କରିବ ଗମନ ।
ପିତୃଗଣ ଦେବଗଣ ପୂଜା ତହିଁ କରି
ଯମଦଗ୍ନି ନନ୍ଦନ ଯେ ରାମନାମ ଧାରୀ ।
ଏ ତୀର୍ଥ ପ୍ରତିଷ୍ଠା ସେହି କରିଥିଲେ ଜାଣ
ସେ ତୀର୍ଥ ମାଡ଼ିଲେ ହୁଏ ଅଶ୍ୱମେଧ ପୁଣ୍ୟ ।
କାର୍ତ୍ତିକ ମାସରେ ଯେବେ ଯାଇଁ ସେହି ତୀର୍ଥେ
ଏକାଦଶୀ ତିଥିଠାରୁ ପୂର୍ଣ୍ଣିମା ପର୍ଯ୍ୟନ୍ତେ ।
ଯେତେ ତିଥି ଅଛି ଯେବେ ତା ମଧ୍ୟରୁ ଦିନେ
କନ୍ୟାଦାନ କରିପାରେ ତାକୁ ଦେବଗଣେ ।
ସୁପ୍ରସନ୍ନେ ଅଭିମନେ ଫଳ ଦେଇ ଯାନ୍ତି
ସେ ସ୍ଥାନରେ ମହାଯକ୍ଷ କପିଳ ଅଛନ୍ତି ।
ଦ୍ୱାରପାଳ ରୂପେ ତହିଁ କରିଛନ୍ତି ବିଜେ
ପାପିଙ୍କି ସେ ନାନା ଦୁଃଖ ଦିଅନ୍ତି ହେ ଦ୍ୱିଜେ ।
ତାହାଙ୍କର ପତ୍ନୀ ମହାଯକ୍ଷିଣୀ ଅଛଇ
ଉଲୁଖଳ ମେଖଳା ଯେ ତା ନାମ ଅଟଇ ।
ଦୁନ୍ଦୁଭି ବଜାଇ ନିତ୍ୟ ଭ୍ରମଣ ସେ କରେ
ତାର କଥା ଶୁଣ ସେହି ଏକ ଦିନକରେ ।
ପାପିଦେଶ ଜାତ ଏକ ନାରୀକି ଦେଖିଲା
ତାହାର କୋଳରେ ଏକ ପୁତ୍ର ପୁଣି ଥିଲା ।
ଦୁନ୍ଦୁଭି ବଜାଇ ରାତ୍ରେ କହିଲେ ତାହାକୁ
ସୁଗନ୍ଧରେ ଇଚ୍ଛାକରୁ ଦଧି ଖାଇବାକୁ ।

ଅଚ୍ୟୁତ କ୍ଷେତ୍ରରେ ତୋଷ ରହିବାକୁ ମନ
ପୁତ୍ରସହ ଭୂତତୀର୍ଥେ କରିବୁ ତୁ ସ୍ନାନ ।
ଏ ଇଚ୍ଛା ତୋହର ମୁହିଁ ଭାଙ୍ଗିଦେବି ଜାଣ
କାଲି ଦିବସରେ ତୋତେ କରିବି ଭକ୍ଷଣ ।
ଏହା ଶୁଣି ସେ ରମଣୀ ଯୋଡ଼ି ବେନିକର
କହିଲା ବିନତି କରି ବହୁତ ପ୍ରକାର ।
କୃପାକରି ସେ ଯକ୍ଷିଣୀ କହିଲା ତାହାକୁ
ରାହୁ ଆସି ଗ୍ରାସିଥିବ ଯେ କାଳେ ସୂର୍ଯ୍ୟଙ୍କୁ
ସେ ଦିନ ତୁ ସରସ୍ୱତୀ ତୀର୍ଥେ କଲେ ସ୍ନାନ
ପାପ ନାଶି ସ୍ୱର୍ଗପୁରେ କରିବୁ ଗମନ ।
ଆହେ ଦୀନବନ୍ଧୁ ଦୀନଜନ ଦୁଃଖହାରୀ
ମୁକୁନ୍ଦ ମାଧବ ମଧୁସୂଦନ ମୁରାରି ।
ପାତକନାଶନ ପ୍ରଭୁ ପତିତପାବନ
ଦ୍ୱିଜ ଗୋପୀନାଥଙ୍କୁ ଯେ ଦିଅ ସଦଜ୍ଞାନ ।

=+=

## ବିବିଧ ତୀର୍ଥାନୁକୀର୍ତ୍ତନ

ଲୋମହରଷଣ ମୁନି କହିଲେକ ପୁଣି
ଶୁଣ ଋଷିଗଣ ଏବେ ତୀର୍ଥ ଯାତ୍ରାବାଣୀ ।
ସେଠାବରୁ ରାମହ୍ରଦେ କରିବ ଗମନ
କାହିଁକି ତା ନାମ ରାମହ୍ରଦ ହେଲା ଶୁଣ ।
ପରଶୁରାମ ଯେ ଯମଦଗ୍ନିଙ୍କ ନନ୍ଦନ
ଯାହାଙ୍କର ତେଜପୁଞ୍ଜ ଅନଳ ସମାନ ।
ମହାପ୍ରତାପୀ ସେ କ୍ଷତ୍ରିକୁଳ ଅନ୍ତକାରୀ
ଏକ ବିଂଶ ବାରେ କ୍ଷତ୍ରିବଂଶ ଧ୍ୱଂସ କରି ।
ପାଞ୍ଚଗୋଟି ହ୍ରଦପୂର୍ଣ୍ଣ କଲେ ସେ ରୁଧିରେ
ପିତୃତରପଣ କଲେ ବସି ସେ ରୁଧିରେ ।
ରୁଧିର ଅଞ୍ଜଳିପାଇ ତାର ପିତୃଗଣ
ବୋଇଲେରେ ମହାବାହୁ ରାମ ଏବେ ଶୁଣ ।
ତୋର ପିତୃଭକ୍ତି ଆଉ ପରାକ୍ରମ ଦେଖି
ପରମ ସନ୍ତୋଷ ହେଲୁ, ହେଲୁ ମହାସୁଖୀ ।
ତୋର ଏହି ମହାଯଶ ଥାଉ ରବିତଳେ
ତୋହର ମଙ୍ଗଳ ପୁଣ ହେଉ ସଦାକାଳେ ।
ଇଚ୍ଛା ଅନୁସାରେ ଏବେ ମାଗି ଘେନ ବର
ଶୁଣି ସେହି ଯମଦଗ୍ନି ଋଷିଙ୍କ କୁମର ।
କୃତାଞ୍ଜଳିପୁଟେ ତାଙ୍କୁ କହିଲେ ଏମନ୍ତ
ଯଦ୍ୟପି ଆପଣମାନେ ହେଲ ପରିତୃପ୍ତ ।

ମୋ ପ୍ରତି ଏ କୃପାଦାନ କର ପିତୃଗଣ
ମୋର ତପ କରିବାକୁ ଇଚ୍ଛା ହୁଏପୁଣ ।
ରୋଷବଶେ କ୍ଷତ୍ରିବଂଶ କଲି ମୁଁ ନିପାତ
ଯେମନ୍ତେ ସେ ପାତକରୁ ହେବି ମୁଁ ମୁକତ ।
ଏହି ବର ଦିଅତୁମ୍ଭେ କୃପାକରି ମୋତେ
ମୋର ଏହି ହ୍ରଦ ତୀର୍ଥ ହୋଇବ ଯେମନ୍ତେ
ପୃଥିବୀରେ ଏହା ନାମ ହୋଇବ ବିଖ୍ୟାତ
ଏହି ବର ଦେଇ ତୋଷ କର ମୋର ଚିତ୍ତ ।
ରାମର ଏ ଶୁଭ ବାକ୍ୟ ଶୁଣି ପିତୃଗଣ
ପରମ ସନ୍ତୋଷ ହୋଇ କହିଲେ ଏସନ ।
ପିତୃଭକ୍ତି ପ୍ରଭାବେ ତୁ ତପେ ହେବୁ ରତ
ଏ ସକଳ ପାପରୁ ତୁ ହୋଇବୁ ମୁକତ ।
ତୋର ଏହି ପଞ୍ଚହ୍ରଦ ତୀର୍ଥ ବୋଲାଇବ
ଆଜହୁଁ ଏହାର ନାମ ରାମହ୍ରଦ ହେବ ।
ସ୍ନାନ କରି ଏହି ପଞ୍ଚହ୍ରଦେ ଯେଉଁ ଜନ
ପିତୃଙ୍କୁ ଯେ ଜଳାଞ୍ଜଳି କରିବ ପ୍ରଦାନ ।
ତାର ମନୋବାଞ୍ଛା ପୂର୍ଣ୍ଣ ହୋଇବ ଅବଶ୍ୟ
ଅକ୍ଷୟ ସ୍ୱର୍ଗରେ ନିଶ୍ଚେ କରିବ ସେ ବାସ ।
ତା'ପ୍ରତି ସନ୍ତୋଷ ହେବେ ତାର ପିତୃଗଣ
ଏକଥା ଅନ୍ୟଥା କେଭେ ନୋହିବଟି ଜାଣ ।
ଏମନ୍ତ କହିଣ ତହୁଁ ପିତୃଗଣ ଗଲେ
ଏ ହ୍ରଦରେ ସ୍ନାନ କରି ରାମଙ୍କୁ ପୂଜିଲେ ।
ଅନେକ ସୁବର୍ଣ୍ଣ ଜାଣ ମିଳିବ ତାହାକୁ
ତହୁଁ ପୁଣି ଯିବ ବଂଶମୂଳ ଯେ ତୀର୍ଥକୁ ।
ତହିଁ ସ୍ନାନ କରି କୁଳ ଉଦ୍ଧାର କରିବ
କାୟ ଶୋଧନ ଯେ ତୀର୍ଥ ତହିଁକି ଯେ ଯିବ ।
ସ୍ନାନ କରି ସେ ତୀର୍ଥରେ ଦେହ ଶୁଦ୍ଧ କରି
ଲୋକୋଦ୍ଧାର ତୀର୍ଥରେଯେ ଅଛନ୍ତି ଯେ ହରି ।
ପ୍ରଭୁବିଷ୍ଣୁ ବିଷ୍ଣୁ ବୋଲି ତାହାଙ୍କର ନାମ
ସେହି ସ୍ଥାନ ଗୋଟି ଅଟେ ବିଷ୍ଣୁଙ୍କର ଧାମ ।
ଲୋକଙ୍କ ଉଦ୍ଧାରପାଇଁ ରହିଛନ୍ତି ତହିଁ
ସେ ତୀର୍ଥେ ଯେ ଜନ ଧ୍ୟାନ ପରାୟଣ ହୋଇ ।
ସ୍ନାନ କଲେ ବିଷ୍ଣୁଲୋକ ପ୍ରାପତ ହୋଇବ
ଅଛନ୍ତି ଯେ ତହିଁ ବିଷ୍ଣୁନାଥ ମହାଦେବ ।
ତାଙ୍କୁ ନମସ୍କାର କରି ପ୍ରସନ୍ନ କରାଇ
ମୋକ୍ଷକୁ ସଂଗ୍ରହ କରି ତହୁଁ ପୁଣି ଯାଇ ।

ଶ୍ରୀ ତୀର୍ଥରେ ସ୍ନାନ କରି ବିଷ୍ଣୁଙ୍କୁ ତୋଷିବ
ତହୁଁ ଯେ କପିଳା ହ୍ରଦ ତୀର୍ଥକୁ ଗମିବ ।
ସେ ତୀର୍ଥରେ ସ୍ନାନ କରି ଶୁଚିମନ୍ତ ହୋଇ
ପିତୃଙ୍କୁ ପୂଜିବ ଜଳ ତିଳ ଫଳ ଦେଇ ।
ସହସ୍ର କପିଳା ଦାନେ ହୁଏ ଯେତେ ଫଳ
ସେ ଫଳ ପାଇବ ନିଶ୍ଚେ ହେ ଋଷିମଣ୍ଡଳ ।
କପିଳ ବପୁକୁ ବହି ମହାଦେବ ତହିଁ
ତାହାଙ୍କୁ ଯେ ପୂଜଇ ସେ ମୁକ୍ତି କି ଲଭଇ ।
ତହୁଁ ପୁଣି ସୂର୍ଯ୍ୟ ତୀର୍ଥେ କରିବ ଗମନ
ଶୁଦ୍ଧ ଚିତ୍ତେ କରିବ ସେ ତୀର୍ଥ ଜଳେ ସ୍ନାନ ।
ଉପବାସେ ରହି ପିତୃଦେବଙ୍କୁ ପୂଜିବ
ଅଗ୍ନିଷ୍ଟୋମ ଯଜ୍ଞଫଳ ନିଶ୍ଚୟ ପାଇବ ।
ଅନ୍ତକାଳେ ବସିବ ସେ ସୂର୍ଯ୍ୟଲୋକେ ଯାଇ
ସହସ୍ର କିରଣ ଭାନୁ ତହିଁ ବିରାଜଇ ।
ତାହାଙ୍କୁ ଦର୍ଶନ କରି ମୁକତି ପାଇବ
ତହୁଁ ଯେ ଭବାନୀ ବନେ ଗମନ କରିବ ।
ତହିଁର ମହିମା ଶୁଣ କହୁଛି ବିସ୍ତାରି
ପୂର୍ବକାଳରେ ଯେ ଏକଦିନେ କୁଶଧାରୀ ।
ଲୋଭେ ଯେ ଅମୃତପାନ ପେଟଭରି କଲେ
ଜୀର୍ଣ୍ଣ କରି ନ ପାରିଣ ତାହା ଉଦ୍‌ଗାରିଲେ ।
ସେ ବାନ୍ତିରୁ ସୁରଭି ଯେ ହୋଇଲା ସମ୍ଭୂତ
ତତ୍‌କ୍ଷଣେ କଲା ସେହି ପାତାଳ ଆଶ୍ରିତ ।
ସେ ସୁରଭି ଗର୍ଭୁ ଲୋକମାତା ଜାତ ହେଲେ
ସେ ସମସ୍ତେ ସେ ପାତାଳଭୁବନେ ରହିଲେ ।
ଯେ ସମୟେ ଯଜ୍ଞ କଲେ ପୁଣି ପିତାମହ
ଦକ୍ଷିଣା ନିମନ୍ତେ କଲେ ସୁରଭି ସଂଗ୍ରହ ।
ଯଜ୍ଞେ ବରିଥିଲେ ବ୍ରହ୍ମା ଯେତେକ ବ୍ରାହ୍ମଣ
ଆଚମ୍ଭିତ ହେଲେ କରି ବିବର ଦର୍ଶନ ।
ସେ ଯଜ୍ଞ ବିବର ଅଛି ପାତାଳକୁ ଭେଦି
ଅମୃତ ବମନ ତହିଁ କରିଥିଲେ ବିଧି ।
ସୁରଭିଏ ଥିଲେ ସେହି ବିବର ତଳରେ
ଗଣପତି ଅଛନ୍ତି ସେ ବିବର ଦ୍ୱାରରେ ।
ସେ ତୀର୍ଥରେ ଜିତେନ୍ଦ୍ରିୟ ହୋଇ ଯେଉଁଜନ
ଦ୍ୱାରପାଳ ଗଣପତି କରିବ ଦର୍ଶନ ।
ସକଳ କାମନା ସିଦ୍ଧ ହୋଇବ ତାହାର
ସେ ତୀର୍ଥର ମହିମା ଯେ ଅଟଇ ଅପାର ।

ସ୍ନାନ କଲେ ଗୋ ସହସ୍ର ଦାନ ଫଳ ପାଇ
ସଙ୍ଗିନୀ ନାମରେ ପୁଣି ତୀର୍ଥେକ ଅଛଇ ।
ସାକ୍ଷାତେ ସେ ତୀର୍ଥ ଗୋଟି ଅଟେ ମୋକ୍ଷସ୍ଥାନ
ମୋକ୍ଷଲାଭ ହେବ କଲେ ସେ ତୀର୍ଥରେ ସ୍ନାନ ।
ଦେବୀ ତୀର୍ଥେ ସ୍ନାନ କଲେ ଦିଶିବ ସୁନ୍ଦର
ଧନ ସମ୍ପଦ ଯେ ତାକୁ ମିଳିବ ଅପାର ।
ବିପୁଳ ଭୋଗ ସେ କରି ପୁତ୍ର ନାତି ଘେନି
ପାଇବ ପରମପଦ ଜାଣ ସର୍ବ ମୁନି ।
ବ୍ରହ୍ମାବର୍ତ୍ତେ ସ୍ନାନ କଲେ ବ୍ରହ୍ମଜ୍ଞାନ ପାଇ
ଇଚ୍ଛା ଅନୁସାରେ ସେହି ମରଣ ଲଭଇ ।
ତହୁଁ ଯାଇ ଦ୍ୱାରପାଳ ରନ୍ତୁକୁ ଦେଖିବ
ଯକ୍ଷଙ୍କ ରାଜଙ୍କୁ ତହିଁ ଦର୍ଶନ କରିବ ।
ସରସ୍ୱତୀ ନଦୀଜଳେ ସ୍ନାନ ଦାନ କରି
ଉପବାସେ ରହିବ ସେ ବ୍ରତକୁ ଆଚରି ।
ସେ ଯକ୍ଷ ପ୍ରସାଦେ ଜ୍ଞାନଲାଭ ହେବ ତାର
ଇଚ୍ଛା ଅନୁସାରେ ତହିଁ ପାଇବ ସେ ବର ।
ଦ୍ୱିତୀୟ ଯେ ବ୍ରହ୍ମାବର୍ତ୍ତ ସେ ସ୍ଥାନକୁ ଯାଇ
ସ୍ନାନ କଲେ ଲୋକ ନିଶ୍ଚେ ବ୍ରହ୍ମପଦ ପାଇ ।
ତହୁଁ ପୁଣି ଅନୁତ୍ତମ ସୁତୀର୍ଥକୁ ଯିବ
ପିତୃ ଦେବଗଣଙ୍କୁ ସେ ସେଠାରେ ତୋଷିବ
ତହିଁରେ ଯେ ଅଶ୍ୱମେଧ ଯଜ୍ଞ ଫଳ ପାଇ ।
ତହୁଁ ଯିବ ପିତୃଙ୍କୁ ସେ ସନ୍ତୋଷ କରାଇ ।
ଅନ୍ୱବତୀରେ ଯେ ଅଛି କାମେଶ୍ୱର ତୀର୍ଥ
ସେ ସ୍ଥାନରେ ସ୍ନାନ କରି ହେବ ବ୍ୟାଧିମୁକ୍ତ ।
ନିଃସନ୍ଦେହ ବ୍ରହ୍ମଲାଭ କରିବ ସେ ଜନ
ତହୁଁ ଯାଇ ମାତୃତୀର୍ଥେ କରିବ ସେ ସ୍ନାନ ।
ତହିଁ ସ୍ନାନ କଲେ ପୁତ୍ର ସମ୍ପତ୍ତି ବଢ଼ଇ
ଉପବାସେ ରହିବ ସେ ସୀତାବନେ ଯାଇ ।
ସେହି ମହାତୀର୍ଥ ଅଟେ ଦେବଙ୍କୁ ଦୁର୍ଲ୍ଲଭ
ଏକବିଂଶ ପୁରୁଷଙ୍କୁ ତହିଁ ଉଦ୍ଧାରିବ ।
ସେ ତୀର୍ଥେ ମଣ୍ଡନ ହେଲେ ପାପ ଛାଡ଼ିଯାଏ
ବିଶ୍ୱଲୋମପାଦ ନାମେ ତୀଥ ତହିଁ ଥାଏ ।
ସେ ତୀର୍ଥରେ ନଖ ବାଳ ପକାଇବ ସେହୁ
ପବିତ୍ର ହୋଇବ ପାପ ପଳାଇବ ଦେହୁ ।
ଦଶାଶ୍ୱମେଧିକ ନାମେ ତୀର୍ଥ ଯେ ଅଛଇ
ଭକତିରେ ସେ ତୀର୍ଥରେ ସ୍ନାନ ଯେ କରଇ ।

ଦଶାଶ୍ୱମେଧର ଫଳ ନିଶ୍ଚୟ ସେ ପାଇ
ମାନୁଷ ତୀର୍ଥକୁ ପୁଣି ସେ ତୀର୍ଥରୁ ଯାଇ ।
ସେ ତୀର୍ଥ ମାଡ଼ିଲେ ପାପ ଛାଡ଼ିଯାଏ ଦେହୁ
ପୂର୍ବ କାଳର ଯେ କଥା ଶୁଣି ଆମ୍ଭେ କହୁ ।
କୃଷ୍ଣସାର ମୃଗଯୂଥ ଥିଲେ ଅରଣ୍ୟରେ
ଅତ୍ୟନ୍ତ ପୀଡ଼ିତ ହୋଇ ବ୍ୟାଧ ତୀକ୍ଷ୍ଣ ଶରେ
ପଳାଇ ପଶିଲେ ଆସି ଏହି ସରୋବରେ
କୂଳେ ମିଳନ୍ତେ ସେ ଯାଇଁ ମନୁଷ୍ୟ ଶରୀରେ ।
ମୃଗ ମାଂସ ଲୋଭେ ବ୍ୟାଧ ପଛରେ ଧାମଇ
ଦ୍ୱିଜ ରୂପୀ ମୃଗଙ୍କୁ ସେ ଦେଖି ପଚାରଇ ।
ଆହେ ଋଷିଗଣ ତୁମ୍ଭେ ଅଛ ଏହି ସ୍ଥାନେ
ମୋହର ବାଣରେ ବିଦ୍ଧ ହୋଇ ମୃଗମାନେ ।
କେଣେ ଗଲେ ଦେଖିଥିଲେ କହ କୃପାକରି
କିବା ଲୁଚିଛନ୍ତି ଏହି ସରୋବର ବାରି ।
ବ୍ୟାଧର ଏମନ୍ତ ବାକ୍ୟ ଶୁଣି ସେ କହିଲେ
ଆମ୍ଭଙ୍କୁ ସେ ମୃଗ ବୋଲି ଜାଣ ବ୍ୟାଧ ଭଲେ ।
ଏହି ସରୋବରେ ପଶି ମାନବ ହୋଇଲୁ
ଏ ତୀର୍ଥର ମହିମା ହେ ଏମନ୍ତ ଦେଖିଲୁ ।
ଆମ୍ଭ କଥା ମାନି ତୁହି ହିଂସା ଲୋଭ ଛାଡ଼ି
ବାରେ ମାତ୍ର ଏହି ସରୋବରେ ଯାଅ ବୁଡ଼ି ।
ଶ୍ରଦ୍ଧାବନ୍ତ ହୋଇଯେବେ କରିବୁ ତୁ ସ୍ନାନ
ଶୁଦ୍ଧଦେହେ କରିବୁ ତୁ ସ୍ୱର୍ଗକୁ ଗମନ ।
ବ୍ୟାଧ ସେହି ସରୋବରେ ସ୍ନାନ କଲା ପଶି
ଜୀବବଧ-ପାତକ ତା ଦେହୁଁ ବେଗେ ନାଶି ।
ସ୍ୱର୍ଗକୁ ଗମନ କଲା ତାହାଙ୍କ ସାକ୍ଷାତେ
ଏ ତୀର୍ଥର ମହିମା ଯେ ଅଟଇ ଏମନ୍ତେ ।
ଶୁଣିଲତ ଋଷିଗଣ ମହିମା ଏହାର
ଗୋପୀନାଥ ସେ ଋଷିଙ୍କ ଚରଣ କିଙ୍କର ।

= + =

## ବିବିଧ ତୀର୍ଥାନୁକୀର୍ତ୍ତନ

ଲୋମହରଷଣ ମୁନି କହିଲେକ ଶୁଣି
ଶୁଣ ଋଷିଗଣ ତୀର୍ଥମାନଙ୍କ କାହାଣୀ ।
ମାନୁଷ ତୀର୍ଥର ପୂର୍ବ ଦିଗେ କୋଶେ ଦୂରେ
ନଦୀ ଏକ ବହିଯାଏ ଆପଗା ନାଗରେ ।
ଦୁଗ୍ଧ ଘୃତ ସେ ନଦୀରେ ଦେଇ ଯେବେ ଜନ
ବ୍ରାହ୍ମଣମାନଙ୍କୁ ଦିଏ ଶ୍ୟାମାକ ପ୍ରଦାନ ।
ଛାଡ଼ି ପଳାଏ ଯେ ପାପ ତାହାର ଦେହରୁ
ତାହାର ମହିମା ମୁଖେ କେବା କହିପାରୁ ।
ସେ ନଦୀରେ ପିଣ୍ଡଦାନ କରେ ଯେବେ କେହି
ତାର ମନୋବାଞ୍ଛା ଫଳ ସିଦ୍ଧି ହୁଏ ତହିଁ ।
ସର୍ବଦା ତା ପିତୃଗଣ ଏମନ୍ତ ବାଞ୍ଛନ୍ତି
ଆମ୍ଭ ବଂଶେ ହେଉପୁତ୍ର ନାତି ଅଣନାତି ।
ତିଳ ତରପଣ କରେ ଯେ ଜନ ସେଠାରେ
ଶତେକ ପୁରୁଷ ଜାଣ ତାର ସେ ଉଦ୍ଧାରେ ।
ଶ୍ରାବଣ ମାସରେ କୃଷ୍ଣ ଚତୁର୍ଦ୍ଦଶୀ ଦିନ
ମଧ୍ୟାହ୍ନ ସମୟେ ଯେହୁ କରେ ପିଣ୍ଡଦାନ ।
ସେ ମୋକ୍ଷ ଲଭଇ ଏଥେ ନାହିଁଟି ସଂଶୟ
ଏଥୁଅନନ୍ତରେ କଥା ଶୁଣ ଋଷିଚୟ ।
ବ୍ରହ୍ମ ଉଦୁମ୍ବର ନାମେ ତୀର୍ଥେ କ ଅଛଇ
ବ୍ରହ୍ମାଙ୍କର ଅଧିଷ୍ଠାନ କ୍ଷେତ୍ର ଅଟେ ସେହି ।
ସାତଗୋଟି ବ୍ରହ୍ମଋଷି ଛନ୍ତି କୁଣ୍ଡ ପୁଣି
ସେ କୁଣ୍ଡ ମାନଙ୍କେ ସ୍ନାନ କରେ ଯେଉଁ ପ୍ରାଣୀ ।
ସପ୍ତଋଷି ପ୍ରସାଦେ ସେ ଜାଣ ଅକ୍ଳେଶରେ
ସପ୍ତ ସୋମ ଯଜ୍ଞର ଯେ ଫଳ ଲାଭ କରେ ।
ସେ ସପ୍ତଋଷିଙ୍କ ନାମ ଶୁଣ ଦେଇ ମନ
ଭରଦ୍ୱାଜ ଯମଦଗ୍ନି ଅତ୍ରି ତପୋଧନ ।
ବିଶ୍ୱାମିତ୍ର ବଶିଷ୍ଠ ଯେ ଗୌତମ କଶ୍ୟପ
ଏହି ସାତ ଗୋଟି ଋଷି ଅଟନ୍ତି ନିଷ୍ପାପ ।
ଏମାନେ ସେ ସ୍ଥାନେ ମିଳି ସ୍ଥାପିଛନ୍ତି କୁଣ୍ଡ
ବ୍ରହ୍ମା ସେବିବାରୁ ନାମ ବ୍ରହ୍ମଋଷି କୁଣ୍ଡ ।
ସେ ତୀର୍ଥରେ ସ୍ନାନ କଲେ ବ୍ରହ୍ମ ଲୋକ ପାଇ
ତହିଁ ଦେବ ପିତୃଗଣ ଯେ ଜନ ପୂଜଇ ।
ତାର ପିତୃଗଣେ ହୋଇ ତା ପ୍ରତି ସନ୍ତୋଷ
ଦୁର୍ଲଭ ପଦାର୍ଥ ତାକୁ ଦିଅନ୍ତି ବିଶେଷ ।
ସାତଋଷି ନାମ ଧରି ସାତଗୋଟି କୁଣ୍ଡେ
ଯେ ସ୍ନାନ କରଇ ଧନ୍ୟ ଆଗେ ସେ ବ୍ରହ୍ମାଣ୍ଡେ
ସପ୍ତଲୋକେ ଆଧିପତ୍ୟ ଲାଭ କରେ ସେହି
ଆହେ ଋଷିଗଣ ଏଥେ ସନ୍ଦେହ ଯେ ନାହିଁ ।
କପିଳସ୍ଥ ନାମେ ଅଛି ବିଖ୍ୟାତ ଯେ ତୀର୍ଥ
ସର୍ବ ପାପନାଶନ ସେ ଏ କଥା ଯଥାର୍ଥ ।
ମହାଦେବ ପୁଣି ବୃଦ୍ଧକେଦାର ନାମରେ
ଅଧିଷ୍ଠାନ କରିଛନ୍ତି ସେହି ତୀର୍ଥବରେ ।

ତହିଁ ଯେହ୍ନୁ ସ୍ନାନ କରି ରୁଦ୍ରଙ୍କୁ ପୂଜଇ
ଅନ୍ତେ ଶିବଲୋକେ ସୁଖେ ବିହାର କରଇ ।
ତର୍ପଣ କରି ଯେ ତିନିଚଳା ପିଏ ପାଣି
ତାଠାରେ ସନ୍ତୋଷ ହୁଅନ୍ତି ଦେବ ଶୂଳପାଣି ।
ଚୈତ୍ରମାସ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ଦିନ
ଯେ ଶ୍ରାଦ୍ଧ କରଇ ପାଏ ସେ ପରମ ସ୍ଥାନ ।
ସେ ତୀର୍ଥ ରୁ ଚାଲିଯିବ କଳସୀ ତୀର୍ଥକୁ
ତହିଁରେ ଯେ ସ୍ନାନ କରି ପୂଜିବ ଦୁର୍ଗାଙ୍କୁ ।
ସଂସାର ଦୁର୍ଗକୁ ତହୁଁ ପାରହୋଇଯିବ
ସରକ ତୀର୍ଥକୁ ସେହୁ ଗମନ କରିବ ।
ସେ ତୀର୍ଥରେ କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ଦିନ
ମହାଦେବଙ୍କୁ ଯେ ଜନ କରଇ ଦର୍ଶନ ।
ସକଳ କାମନା ସିଦ୍ଧି ହୁଅଇ ତାହାର
ଅନ୍ତେ ପୁଣି ଲଭଇ ସେ କୈଳାସ ନଗର ।
ସେ ସରକ ତୀର୍ଥେ କୋଟି ତୀର୍ଥ ଅଛି ଜାଣ
କୂପେକ ଅଛି ତା ମଧ୍ୟେ ନାହିଁ ତା ପ୍ରମାଣ ।
କୋଟି ରୁଦ୍ର ବିରାଜନ୍ତି ସେ କୂପ ମଧ୍ୟରେ
ଯେଉଁ ଜନ ସ୍ନାନ କରି ସେହି ସରୋବରରେ ।
କୋଟିଏ ରୁଦ୍ରଙ୍କୁ ଧ୍ୟାୟି ଶ୍ରଦ୍ଧାରେ ପୂଜଇ
ତାହାର ଦେହରେ ଦୋଷମାତ୍ର ନ ରହଇ ।
ଇନ୍ଦ୍ରଜାଲ ଆରୋହଣ କରି ସେହି ଜନ
ଲଭଇ ପରମ ପଦ ଆହେ ଋଷିଗଣ ।
ଇଡ଼ାସ୍ପଦ ନାମେ ତୀର୍ଥ ଅଛଇ ଯେ ତହିଁ
ତହିଁ ସ୍ନାନ କଲେ ଦେହେ ପାପ ନ ରହଇ ।
ସେ ତୀର୍ଥ ମାଡ଼ିବା ମାତ୍ରେ ମୋକ୍ଷ ହୁଏ ଜନ
ତହିଁ ଦେବ ପିତୃଙ୍କୁ ସ୍ନେ କରଇଅର୍ଚ୍ଚନ ।
ସକଳ ଦୁର୍ଗତି ନାଶ ହୁଅଇ ତାହାର
ମନେ ଯାହା ବାଞ୍ଛା କରେ ମାନଇ ଆବର ।
କେଦାର ନାମରେ ପୁଣି ତୀର୍ଥେକ ଅଛଇ
ସର୍ବ ପାପ ବିନାଶନକାରୀ ସେ ଅଟଇ ।
ସେ ତୀର୍ଥରେ ସ୍ନାନ କଲେ ଦାନ ଫଳ ମିଳେ
ସେଠାବରୁ ଯାଇ ଯେଉଁ ଜନ ପ୍ରାତଃକାଳେ ।
କିଂରୂପ ତୀର୍ଥରେ ସ୍ନାନ କରେ ଶୁଦ୍ଧଚିତ୍ତେ
ସର୍ବବିଧ ଯଜ୍ଞଲାଭ ଲଭଇ କିଞ୍ଚିତେ ।
ସେହି ମହାତୀର୍ଥେ ଗୋଟି ଲୋକଙ୍କୁ ଦୁର୍ଲଭ
ତାହାର ମହିମା ମୁଖେ କେ କହି ପାରିବ ।

ସରକ ତୀର୍ଥର ପୂର୍ବେ ତୀର୍ଥେକ ଅଛଇ
ତ୍ରିଲୋକ୍ୟ ବିଖ୍ୟାତ ସେହି ତୀର୍ଥଟି ଅଟଇ ।
ତହିଁ ସ୍ନାନ କଲେ ସର୍ବ ପାପ ହୁଏ ନାଶ
ଏହି ତୀର୍ଥେ ପୂର୍ବକାଳେ ପ୍ରଭୁ ପୀତବାସ ।
ଅଲୋକିତ ନରସିଂହ ବପୁ ଧରି କୋପେ
ମହାବଳ ଦାନବଙ୍କୁ ମାରି ପକ୍ଷରୂପେ ।
ରହିଣ ସିଂହଙ୍କୁ ବାନ୍ଧିଥିଲେ ଅନୁରାଗେ
ତାହାଦେଖି ଦେବଗଣ ଗନ୍ଧର୍ବ ସଂଯୋଗେ ।
ବରଦାତା ଶିବଙ୍କର କଲେ ଆରାଧନା
ସ୍ୱଦେହ ଲଭିବେ ବିଷ୍ଣୁ କରି ଏ କାମନା ।
ତାଙ୍କ ଅନୁରୋଧ ଶିବ ଶରଭ ହୋଇଣ
ଆରମ୍ଭିଲେ ପକ୍ଷୀରୂପୀ ବିଷ୍ଣୁ ସଙ୍ଗେ ରଣ ।
ଦେବବର୍ଷେ ସହସ୍ରେକ ବର୍ଷଗଲା ବହି
ହରି ହର ଭୟଙ୍କର ଯୁଦ୍ଧ କରି ତହିଁ ।
ହ୍ରଦ ମଧ୍ୟେ ପଡ଼ି ତହୁଁ ଉଠି ପୁଣି କୂଳେ
ଦେଖିଲେକ ନାରଦଙ୍କୁ ବୋଧିତରୁ ମୂଳେ ।
ଧ୍ୟାନ ପରାୟଣ ହୋଇ ଅଛନ୍ତି ସେ ମୁନି
ହ୍ରଦେ ପଡ଼ି ଚତୁର୍ଭୁଜ ହେଲେ ଚକ୍ରପାଣି ।
ସଦାଶିବ ଲିଙ୍ଗରୂପେ ବିରାଜିଲେ ତହିଁ
ତାଙ୍କର ଏ ରୂପ ଦେଖି ନାରଦ ଗୋସାଇଁ ।
ଭକ୍ତିଭାବେ କରଯୋଡ଼ି କଲେ ଦିବ୍ୟ ସ୍ତୁତି
ନମସ୍ତେ ନମସ୍ତେ ପ୍ରଭୁ ହେ ଭବାନୀ ପତି ।
ପ୍ରଭୁବିଷ୍ଣୁ ବିଷ୍ଣୁ ଆହେ ତୁମ୍ଭଙ୍କୁ ପ୍ରଣାମ
ଆହୋହରି ଉମାପତି ସ୍ଥିତି କାଳ ଧାମ ।
ତୁମ୍ଭ ଦୁଇଜଣଙ୍କୁ ମୁଁ କରେ ନମସ୍କାର
ନମୋ ବିଶ୍ୱରୂପୀ ବିଷ୍ଣୁ ବହୁରୂପୀ ହର ।
ନମସ୍ତେ ପରମ ସିଦ୍ଧରୂପୀ ମହାଦେବ
ନମୋ ନମୋ ଜ୍ଞାନହେତୁ ରୂପୀ କୃଷ୍ଣଦେବ ।
ମୁହିଁ ଧନ୍ୟ ଏ ସଂସାରେ ମୁହିଁ ତ ସୁକୃତି
ଦେଖିଲି ଦୁଇ ପୁରୁଷ ଉତ୍ତମଙ୍କ ମୂର୍ତ୍ତି ।
ପରମ ପବିତ୍ର ଦେଖା ମୋର ଏ ଆଶ୍ରମ
ଆପଣ ଯେ ହେତୁ କଲେ ଏ ସ୍ଥାନେ ବିଶ୍ରାମ ।
ଆଜୁଁ ଧନ ଜନ୍ମ ନାମ ହେଲା ଏ ସ୍ଥାନର
ସ୍ନାନ ଆଚମନ କରି ଏଥେ ଯେଉଁ ନର ।
ଜଳାଞ୍ଜଳି ଦେଇ ପିତୃ ତର୍ପଣ କରିବ
ଇନ୍ଦ୍ରତୁଲ୍ୟ ଜ୍ଞାନବନ୍ତ ସେ ଜନ ହୋଇବ ।

ଏ ଅଶ୍ୱତ୍ଥ ମୂଳେ ସଦା ରହିଥିବି ମୁହିଁ
ଏହା ପ୍ରଦକ୍ଷିଣ ଆଦି ପୂଜା କରି ଯେହି ।
ହରିହର ଦେବତାଙ୍କ ଚରଣେ ନମିବ
ସକଳ ତୀର୍ଥର ଫଳ ତକ୍ଷଣେ ଲଭିବ ।
ତଦନ୍ତେ ହେ ମୁନିବରେ ଯିବ ନାଗହ୍ରଦେ
ତହିଁ ସ୍ନାନ କରି ସେହି ତୀର୍ଥର ପ୍ରସାଦେ ।
ପୁଣ୍ଡରୀକ ଯଜ୍ଞଫଳ ଲଭିବ କିଞ୍ଚିତେ
ଚୈତ୍ର ଶୁକ୍ଳ ଦଶମୀରେଯେହୁ ଶ୍ରଦ୍ଧାଚିତ୍ତେ ।
ସ୍ନାନ ଜପ ଶ୍ରାଦ୍ଧକରେ ସେ ପାଏ ମୁକତି
ତ୍ରିପିଷ୍ଟପ ତୀର୍ଥ କଥା ଶୁଣ ସର୍ବଯତି ।
ସେହି ତୀର୍ଥ ଗୋଟି ଅଟେ ଦେବଗଣଙ୍କର
ବୈତରଣୀ ନଦୀ ବହେ ହୋଇ ଖରତର ।
ପାପ ପ୍ରମୋଚନୀ ସେହି ପୁଣ୍ୟ ସ୍ୱରୂପିଣୀ
ତହିଁ ସ୍ନାନ କରି ଯେହୁ ପୂଜେ ଶୂଳପାଣି ।
ପରମ ଗତିକି ଲଭେ ବିଶୁଦ୍ଧାତ୍ମା ହୋଇ
ରସାବ୍ରତ ନାମେ ମହାତୀର୍ଥେକ ଅଛଇ ।
ତହିଁ ସ୍ନାନ କଲେ ମିଳେ ଅନୁତ୍ତମ ସିଦ୍ଧି
ତୀର୍ଥେକ ଯେ ଅଳେପକ ନାମରେ ପ୍ରସିଦ୍ଧି ।
ଚୈତ୍ରଶୁକ୍ଳ ଚତୁର୍ଦ୍ଦଶୀ ଦିନ କରି ସ୍ନାନ
ଭବାନୀ ପତିଙ୍କି ପୂଜା କରିବ ଯୋଜନ ।
ତାହାର ସକଳ ପାପ ନ ରହିବ ଦେହେ
ଦ୍ୱିଜବରଗଣ ଶୁଣ ଏଥୁଅନ୍ତେ କହେ ।
ପ୍ରଧାନ ଫଳକୀ ବନ ନାମେ ଅଛି ତୀର୍ଥ
ଦେବତା ଗନ୍ଧର୍ବ ସାଧ ସିଦ୍ଧଋଷି ସନ୍ଥ ।
ଦିବ୍ୟ ବର୍ଷେ ସହସ୍ରେକ ବର୍ଷ କଲେ ତପ
ତୀର୍ଥର ପ୍ରସାଦେ ହେଲେ ସେମାନେ ନିଷ୍ପାପ ।
ସେହି ଦୃଷଦ୍ୱତୀ ନଦୀ ଜଳେ କରି ସ୍ନାନ
ଦେବତାମାନଙ୍କୁ କରେ ଜଳାଞ୍ଜଳି ଦାନ ।
ଅଗ୍ନିଷ୍ଟୋମ ଆଦି ଯଜ୍ଞଫଳ ସେହୁ ପାଏ
ଅଥବା ଯେ ଜନ ସୋମବାରେ ଚନ୍ଦ୍ରକ୍ଷୟେ ।
ଶ୍ରାଦ୍ଧକରେ ତାର ପୁଣ୍ୟଫଳ ଏବେ ଶୁଣ
ଗୟାଶ୍ରାଦ୍ଧ ଫଳ ପାଏ ଆହେ ଋଷିଗଣ ।
ଫଳକୀ ବନକୁ ମନେ ମନେ ଯେ ସୁମରେ
ତାର ପିତୃଗଣ ତୃପ୍ତ ହୁଅନ୍ତି ଆନନ୍ଦରେ ।
ତହିଁ ଯେ ସୁମହା ତୀର୍ଥ ଅଛଇ ଆବର
ଦେବଗଣ ଅଳଂକୃତ ସେହି ନିରନ୍ତର ।
ସ୍ନାନ କଲେ ଗୋ ସହସ୍ର ଦାନଫଳ ମିଳେ
ତହୁଁ ଯାଇ ସ୍ନାନ କରି ପାଣିଖାତ ଜଳେ ।
ପିତୃ ତୃପ୍ତି ନିମନ୍ତେ ଯେ ଦିଏ ଜଳାଞ୍ଜଳି
ସାଂଖ୍ୟ ଯୋଗ ରାଜସୂୟ ଯଜ୍ଞଫଳ ମିଳି ।
ସେଠାରୁ ମିଶ୍ରକ ନାମେ ତୀର୍ଥକୁ ଗମିବ
ମୁନିବର ମରୀଚିଙ୍କ ପାଇଁ ବ୍ୟାସଦେବ ।
ସେଠାରେ ମିଶାଇ ଦେଇଛନ୍ତି ତୀର୍ଥଯାକ
ସବୁ ତୀର୍ଥ ଫଳ ପାଏ ସ୍ନାନକଲା ଲୋକ ।
ନିୟତ ସଂଯତାହାରେ ଯିବ ବ୍ୟାସବନେ
ମନୋଜବ ତୀର୍ଥ ସ୍ନାନେ ମନୀଷୀ ଦର୍ଶନେ ।
ମନୋବାଞ୍ଛା ସିଦ୍ଧି କରି ଶୌଚ ହୋଇଯିବ
ଦେବୀ ତୀର୍ଥେ ମଧୁବନେ ପ୍ରବେଶ ହୋଇବ ।
ସ୍ନାନ ଅନ୍ତେ ଦେବ ପିତୃ ଆରାଧନା କରି
ଦେବୀ ଅନୁଜ୍ଞାରେ ହୋଇ ନିୟତ ଆହାରୀ ।
କଉଶିକ ଦୃଷଦ୍ୱତୀ ନଦୀର ସଙ୍ଗମେ
ସ୍ନାନସାରି ପାପ ନାଶି ଯିବ ତହୁଁ କ୍ରମେ ।
ବୁଦ୍ଧିମନ୍ତ ବ୍ୟାସଦେବ ପୁତ୍ର ଶୋକେ ଯହିଁ
ସଂକଳପ କରିଥିଲେ ଦେହ ତ୍ୟାଗ ପାଇଁ ।
ସେଠାରୁ ଉଠାଇ ତାଙ୍କୁ ନେଲେ ଦେବଗଣ
ତାର ନାମ ବ୍ୟାସସ୍ଥଳୀ ପୁଣ୍ୟମୟ ସ୍ଥାନ ।
ସେ ତୀର୍ଥ ମାଡ଼ିବା ମାତ୍ରେ ଯିବ ପୁତ୍ରଶୋକ
କିଂବଦନ୍ତ ରୂପକ ନାମେ ଅଛି ତୀର୍ଥ ଏକ ।
ତହିଁ ଯାଇ ତିଳପ୍ରସ୍ଥ ଦାନ ଯେ କରିବ
ତତ୍‌କ୍ଷଣେ ସେ ପରମ ସିଦ୍ଧିକି ଲଭିବ ।
ମୋକ୍ଷକୁ ସଂଗ୍ରହ କରି ଯିବ ତହୁଁ ବେଗେ
ମହୀରେ ଦୁର୍ଲ୍ଲଭ ଦୁଇ ତୀର୍ଥ ଅଛି ଆଗେ ।
ଏକ ନାମ ଅହ୍ନ ତୀର୍ଥ ଦ୍ୱିତୀୟ ସୁଦିନ
ସେ ଦୁଇ ତୀର୍ଥରେ ଯାଇଁ କରିବ ଯେ ସ୍ନାନ ।
ବିଶୁଦ୍ଧାତ୍ମା ହୋଇଯିବ ଅନ୍ତେ ସୂର୍ଯ୍ୟଲୋକେ
ଏଥୁଅନ୍ତେ ମନ ଦେଇ ଶୁଣ ଏକେ ଏକେ ।
ଭୁବନ ବିଖ୍ୟାତ ତୀର୍ଥ ନାମ କୃତପୁଣ୍ୟ
ତହିଁ ଯାଇ ଗଙ୍ଗାଜଳେ କରିବ ଯେ ସ୍ନାନ ।
ତଦନ୍ତେ ଭକ୍ତିରେ ମହାଦେବ ପୂଜା କରି
ଅଶ୍ୱମେଧ ଫଳ ଲଭି ସନ୍ତୋଷି ମୁରାରୀ ।
କୋଟି ତୀର୍ଥ ପ୍ରତିଷ୍ଠିତ ହୋଇଛି ସେଠାରେ
କୋଟିଶ୍ୱର ପ୍ରଭୁଙ୍କୁ ଯେ ଦରଶନ କରେ ।

ତହିଁ ଯେହୁ ସ୍ନାନ କରି ରୁଦ୍ରଙ୍କୁ ପୂଜଇ
ଅନ୍ତେ ଶିବଲୋକେ ସୁଖେ ବିହାର କରଇ ।
ତର୍ପଣ କରି ଯେ ତିନିଚଳା ପିଏ ପାଣି
ତାଠାରେ ସନ୍ତୋଷ ହୁଅନ୍ତି ଦେବ ଶୂଳପାଣି ।
ଚୈତ୍ରମାସ ଶୁକ୍ଳପକ୍ଷ ଚତୁର୍ଦ୍ଦଶୀ ଦିନ
ଯେ ଶ୍ରାଦ୍ଧ କରଇ ପାଏ ସେ ପରମ ସ୍ଥାନ ।
ସେ ତୀର୍ଥ ରୁ ଚାଲିଯିବ କଳସୀ ତୀର୍ଥକୁ
ତହିଁରେ ଯେ ସ୍ନାନ କରି ପୂଜିବ ଦୁର୍ଗାଙ୍କୁ ।
ସଂସାର ଦୁର୍ଗକୁ ତହୁଁ ପାରହୋଇଯିବ
ସରକ ତୀର୍ଥକୁ ସେହୁ ଗମନ କରିବ ।
ସେ ତୀର୍ଥରେ କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ଦିନ
ମହାଦେବଙ୍କୁ ଯେ ଜନ କରଇ ଦର୍ଶନ ।
ସକଳ କାମନା ସିଦ୍ଧି ହୁଅଇ ତାହାର
ଅନ୍ତେ ପୁଣି ଲଭଇ ସେ କୈଳାସ ନଗର ।
ସେ ସରକ ତୀର୍ଥେ କୋଟି ତୀର୍ଥ ଅଛି ଜାଣ
କୂପେକ ଅଛି ତା ମଧ୍ୟେ ନାହିଁ ତା ପ୍ରମାଣ ।
କୋଟି ରୁଦ୍ର ବିରାଜନ୍ତି ସେ କୂପ ମଧ୍ୟରେ
ଯେଉଁ ଜନ ସ୍ନାନ କରି ସେହି ସରୋବର୍ରେ ।
କୋଟିଏ ରୁଦ୍ରଙ୍କୁ ଧ୍ୟାୟି ଶ୍ରଦ୍ଧାରେ ପୂଜଇ
ତାହାର ଦେହରେ ଦୋଷମାତ୍ର ନ ରହଇ ।
ଇନ୍ଦ୍ରଜାଲ ଆରୋହଣ କରି ସେହି ଜନ
ଲଭଇ ପରମ ପଦ ଆହେ ଋଷିଗଣ ।
ଇଡ଼ାସ୍ପଦ ନାମେ ତୀର୍ଥ ଅଛଇ ଯେ ତହିଁ
ତହିଁ ସ୍ନାନ କଲେ ଦେହେ ପାପ ନ ରହଇ ।
ସେ ତୀର୍ଥ ମାଡ଼ିବା ମାତ୍ରେ ମୋକ୍ଷ ହୁଏ ଜନ
ତହିଁ ଦେବ ପିତୃଙ୍କୁ ସ୍ନେ କରଇଅର୍ଚ୍ଚନ ।
ସକଳ ଦୁର୍ଗତି ନାଶ ହୁଅଇ ତାହାର
ମନେ ଯାହା ବାଞ୍ଛା କରେ ମାନଇ ଆବର ।
କେଦାର ନାମରେ ପୁଣି ତୀର୍ଥେକ ଅଛଇ
ସର୍ବ ପାପ ବିନାଶନକାରୀ ସେ ଅଟଇ ।
ସେ ତୀର୍ଥରେ ସ୍ନାନ କଲେ ଦାନ ଫଳ ମିଳେ
ସେଠାବରୁ ଯାଇ ଯେଉଁ ଜନ ପ୍ରାତଃକାଳେ ।
କିଂରୂପ ତୀର୍ଥରେ ସ୍ନାନ କରେ ଶୁଦ୍ଧଚିତ୍ତେ
ସର୍ବବିଧ ଯଜ୍ଞଲାଭ ଲଭଇ କିଞ୍ଚିତେ ।
ସେହି ମହାତୀର୍ଥ ଗୋଟି ଲୋକଙ୍କୁ ଦୁର୍ଲଭ
ତାହାର ମହିମା ମୁଖେ କେ କହି ପାରିବ ।

ସରକ ତୀର୍ଥର ପୂର୍ବେ ତୀର୍ଥେକ ଅଛଇ
ତ୍ରୈଲୋକ୍ୟ ବିଖ୍ୟାତ ସେହି ତୀର୍ଥଟି ଅଟଇ ।
ତହିଁ ସ୍ନାନ କଲେ ସର୍ବ ପାପ ହୁଏ ନାଶ
ଏହି ତୀର୍ଥେ ପୂର୍ବକାଳେ ପ୍ରଭୁ ପୀତବାସ ।
ଅଲୌକିକ ନରସିଂହ ବପୁ ଧରି କୋପେ
ମହାବଳ ଦାନବଙ୍କୁ ମାରି ପକ୍ଷରୂପେ ।
ରହିଣ ସିଂହଙ୍କୁ ବାନ୍ଧିଥିଲେ ଅନୁରାଗେ
ତାହାଦେଖି ଦେବଗଣ ଗନ୍ଧର୍ବ ସଂଯୋଗେ ।
ବରଦାତା ଶିବଙ୍କର କଲେ ଆରାଧନା
ସ୍ୱଦେହ ଲଭିବେ ବିଷ୍ଣୁ କରି ଏ କାମନା ।
ତାଙ୍କ ଅନୁରୋଧ ଶିବ ଶରଭ ହୋଇଣ
ଆରମ୍ଭିଲେ ପକ୍ଷୀରୂପୀ ବିଷ୍ଣୁ ସଙ୍ଗେ ରଣ ।
ଦେବବର୍ଷେ ସହସ୍ରେକ ବର୍ଷଗଲା ବହି
ହରି ହର ଭୟଙ୍କର ଯୁଦ୍ଧ କରି ତହିଁ ।
ହ୍ରଦ ମଧ୍ୟେ ପଡ଼ି ତହୁଁ ଉଠି ପୁଣି କୂଳେ
ଦେଖିଲେକ ନାରଦଙ୍କୁ ବୋଧିତରୁ ମୂଳେ ।
ଧ୍ୟାନ ପରାୟଣ ହୋଇ ଅଛନ୍ତି ସେ ମୁନି
ହ୍ରଦେ ପଡ଼ି ଚତୁର୍ଭୁଜ ହେଲେ ଚକ୍ରପାଣି ।
ସଦାଶିବ ଲିଙ୍ଗରୂପେ ବିରାଜିଲେ ତହିଁ
ତାଙ୍କର ଏ ରୂପ ଦେଖି ନାରଦ ଗୋସାଇଁ ।
ଭକ୍ତିଭାବେ କରଯୋଡ଼ି କଲେ ଦିବ୍ୟ ସ୍ତୁତି
ନମସ୍ତେ ନମସ୍ତେ ପ୍ରଭୁ ହେ ଭବାନୀ ପତି ।
ପ୍ରଭୁବିଷ୍ଣୁ ବିଷ୍ଣୁ ଆହେ ତୁମ୍ଭଙ୍କୁ ପ୍ରଣାମ
ଆହୋହରି ଉମାପତି ସ୍ଥିତି କାଳ ଧାମ ।
ତୁମ୍ଭ ଦୁଇଜଣଙ୍କୁ ମୁଁ କରେ ନମସ୍କାର
ନମୋ ବିଶ୍ୱରୂପୀ ବିଷ୍ଣୁ ବହୁରୂପୀ ହର ।
ନମସ୍ତେ ପରମ ସିଦ୍ଧରୂପୀ ମହାଦେବ
ନମୋ ନମୋ ଜ୍ଞାନହେତୁ ରୂପୀ କୃଷ୍ଣଦେବ ।
ମୁହିଁ ଧନ୍ୟ ଏ ସଂସାରେ ମୁହିଁ ତ ସୁକୃତି
ଦେଖିଲି ଦୁଇ ପୁରୁଷ ଉତ୍ତମଙ୍କ ମୂର୍ତ୍ତି ।
ପରମ ପବିତ୍ର ଦେଖା ମୋର ଏ ଆଶ୍ରମ
ଆପଣ ଯେ ହେତୁ କଲେ ଏ ସ୍ଥାନେ ବିଶ୍ରାମ ।
ଆଜୁଁ ଧନ ଜନ୍ମ ନାମ ହେଲା ଏ ସ୍ଥାନର
ସ୍ନାନ ଆଚମନ କରି ଏଥେ ଯେଉଁ ନର ।
ଜଳାଞ୍ଜଳି ଦେଇ ପିତୃ ତର୍ପଣ କରିବ
ଇନ୍ଦ୍ରତୁଲ୍ୟ ଜ୍ଞାନବନ୍ତ ସେ ଜନ ହୋଇବ ।

ଏ ଅଶ୍ୱତ୍ଥ ମୂଳେ ସଦା ରହିଥିବି ମୁହିଁ
ଏହା ପ୍ରଦକ୍ଷିଣ ଆଦି ପୂଜା କରି ଯେହି ।
ହରିହର ଦେବତାଙ୍କ ଚରଣେ ନମିବ
ସକଳ ତୀର୍ଥର ଫଳ ତକ୍ଷଣେ ଲଭିବ ।
ତଦନ୍ତେ ହେ ମୁନିବରେ ଯିବ ନାଗହ୍ରଦେ
ତହିଁ ସ୍ନାନ କରି ସେହି ତୀର୍ଥର ପ୍ରସାଦେ ।
ପୁଣ୍ଡରୀକ ଯଜ୍ଞଫଳ ଲଭିବ କିଞ୍ଚିତେ
ଚୈତ୍ର ଶୁକ୍ଳ ଦଶମୀରେଯେହୁ ଶ୍ରଦ୍ଧାଚିତ୍ତେ ।
ସ୍ନାନ ଜପ ଶ୍ରାଦ୍ଧକରେ ସେ ପାଏ ମୁକତି
ତ୍ରିପିଷ୍ଟପ ତୀର୍ଥ କଥା ଶୁଣ ସର୍ବଯତି ।
ସେହି ତୀର୍ଥ ଗୋଟି ଅଟେ ଦେବଗଣଙ୍କର
ବୈତରଣୀ ନଦୀ ବହେ ହୋଇ ଖରତର ।
ପାପ ପ୍ରମୋଚନୀ ସେହି ପୁଣ୍ୟ ସ୍ୱରୂପିଣୀ
ତହିଁ ସ୍ନାନ କରି ଯେହୁ ପୂଜେ ଶୂଳପାଣି ।
ପରମ ଗତିକି ଲଭେ ବିଶୁଦ୍ଧାତ୍ମା ହୋଇ
ରସାବ୍ରତ ନାମେ ମହାତୀର୍ଥେକ ଅଛଇ ।
ତହିଁ ସ୍ନାନ କଲେ ମିଳେ ଅନୁତ୍ତମ ସିଦ୍ଧି
ତୀର୍ଥେକ ଯେ ଅଳେପକ ନାମରେ ପ୍ରସିଦ୍ଧି ।
ଚୈତ୍ରଶୁକ୍ଳ ଚତୁର୍ଦ୍ଦଶୀ ଦିନ କରି ସ୍ନାନ
ଭବାନୀ ପତିଙ୍କି ପୂଜା କରିବ ଯୋଜନ ।
ତାହାର ସକଳ ପାପ ନ ରହିବ ଦେହେ
ଦ୍ୱିଜବରଗଣ ଶୁଣ ଏଥୁଅନ୍ତେ କହେ ।
ପ୍ରଧାନ ଫଳକୀ ବନ ନାମେ ଅଛି ତୀର୍ଥ
ଦେବତା ଗନ୍ଧର୍ବ ସାଧ୍ୟ ସିଦ୍ଧଋଷି ସନ୍ଥ ।
ଦିବ୍ୟ ବର୍ଷେ ସହସ୍ରେକ ବର୍ଷ କଲେ ତପ
ତୀର୍ଥର ପ୍ରସାଦେ ହେଲେ ସେମାନେ ନିଷ୍ପାପ ।
ସେହି ଦୃଷଦ୍ୱତୀ ନଦୀ ଜଳେ କରି ସ୍ନାନ
ଦେବତାମାନଙ୍କୁ କରେ ଜଳାଞ୍ଜଳି ଦାନ ।
ଅଗ୍ନିଷ୍ଟୋମ ଆଦି ଯଜ୍ଞଫଳ ସେହୁ ପାଏ
ଅଥବା ଯେ ଜନ ସୋମବାରେ ଚନ୍ଦ୍ରକ୍ଷୟେ ।
ଶ୍ରାଦ୍ଧକରେ ତାର ପୁଣ୍ୟଫଳ ଏବେ ଶୁଣ
ଗୟାଶ୍ରାଦ୍ଧ ଫଳ ପାଏ ଆହେ ଋଷିଗଣ ।
ଫଳକୀ ବନକୁ ମନେ ମନେ ଯେ ସୁମରେ
ତାର ପିତୃଗଣ ତୃପ୍ତ ହୁଅନ୍ତି ଆନନ୍ଦରେ ।
ତହିଁ ଯେ ସୁମହା ତୀର୍ଥ ଅଛଇ ଆବର
ଦେବଗଣ ଅଳଂକୃତ ସେହି ନିରନ୍ତର ।
ସ୍ନାନ କଲେ ଗୋ ସହସ୍ର ଦାନଫଳ ମିଳେ
ତହୁଁ ଯାଇ ସ୍ନାନ କରି ପାଣିଖାତ ଜଳେ ।
ପିତୃ ତୃପ୍ତି ନିମନ୍ତେ ଯେ ଦିଏ ଜଳାଞ୍ଜଳି
ସାଂଖ୍ୟ ଯୋଗ ରାଜସୂୟ ଯଜ୍ଞଫଳ ମିଳି ।
ସେଠାରୁ ମିଶ୍ରକ ନାମେ ତୀର୍ଥକୁ ଗମିବ
ମୁନିବର ମରୀଚିଙ୍କ ପାଇଁ ବ୍ୟାସଦେବ ।
ସେଠାରେ ମିଶାଇ ଦେଇଛନ୍ତି ତୀର୍ଥଯାକ
ସବୁ ତୀର୍ଥ ଫଳ ପାଏ ସ୍ନାନକଲା ଲୋକ ।
ନିୟତ ସଂଯତାହାରେ ଯିବ ବ୍ୟାସବନେ
ମନୋଜବ ତୀର୍ଥ ସ୍ନାନେ ମନୀଷୀ ଦର୍ଶନେ ।
ମନୋବାଞ୍ଛା ସିଦ୍ଧି କରି ଶୌଚ ହୋଇଯିବ
ଦେବୀ ତୀର୍ଥେ ମଧୁବନେ ପ୍ରବେଶ ହୋଇବ ।
ସ୍ନାନ ଅନ୍ତେ ଦେବ ପିତୃ ଆରାଧନା କରି
ଦେବୀ ଅନୁଜ୍ଞାରେ ହୋଇ ନିୟତ ଆହାରୀ ।
କଉଶିକ ଦୃଷଦ୍ୱତୀ ନଦୀର ସଙ୍ଗମେ
ସ୍ନାନସାରି ପାପ ନାଶି ଯିବ ତହୁଁ କ୍ରମେ ।
ବୁଦ୍ଧିମନ୍ତ ବ୍ୟାସଦେବ ପୁତ୍ର ଶୋକେ ଯହିଁ
ସଂକଳପ କରିଥିଲେ ଦେହ ତ୍ୟାଗ ପାଇଁ ।
ସେଠାରୁ ଉଠାଇ ତାଙ୍କୁ ନେଲେ ଦେବଗଣ
ତାର ନାମ ବ୍ୟାସସ୍ଥଳୀ ପୁଣ୍ୟମୟ ସ୍ଥାନ ।
ସେ ତୀର୍ଥ ମାଡ଼ିବା ମାତ୍ରେ ଯିବ ପୁତ୍ରଶୋକ
କିଂବଦନ୍ତୀ ରୂପକ ନାମେ ଅଛି ତୀର୍ଥ ଏକ ।
ତହିଁ ଯାଇ ତିଳପ୍ରସ୍ଥ ଦାନ ଯେ କରିବ
ତତ୍‌କ୍ଷଣେ ସେ ପରମ ସିଦ୍ଧିକି ଲଭିବ ।
ମୋକ୍ଷକୁ ସଂଗ୍ରହ କରି ଯିବ ତହୁଁ ବେଗେ
ମହୀରେ ଦୁର୍ଲ୍ଲଭ ଦୁଇ ତୀର୍ଥ ଅଛି ଆଗେ ।
ଏକ ନାମ ଅହ୍ନ ତୀର୍ଥ ଦ୍ୱିତୀୟ ସୁଦିନ
ସେ ଦୁଇ ତୀର୍ଥରେ ଯାଇଁ କରିବ ଯେ ସ୍ନାନ ।
ବିଶୁଦ୍ଧାତ୍ମା ହୋଇଯିବ ଅନ୍ତେ ସୂର୍ଯ୍ୟଲୋକେ
ଏଥୁଅନ୍ତେ ମନ ଦେଇ ଶୁଣ ଏକେ ଏକେ ।
ଭୁବନ ବିଖ୍ୟାତ ତୀର୍ଥ ନାମ କୃତପୁଣ୍ୟ
ତହିଁ ଯାଇ ଗଙ୍ଗାଜଳେ କରିବ ଯେ ସ୍ନାନ ।
ତଦନ୍ତେ ଭକ୍ତିରେ ମହାଦେବ ପୂଜା କରି
ଅଶ୍ୱମେଧ ଫଳ ଲଭି ସନ୍ତୋଷି ମୁରାରୀ ।
କୋଟି ତୀର୍ଥ ପ୍ରତିଷ୍ଠିତ ହୋଇଛି ସେଠାରେ
କୋଟିଶ୍ୱର ପ୍ରଭୁଙ୍କୁ ଯେ ଦରଶନ କରେ ।

କୋଟି ଯଜ୍ଞ ଫଳ ମିଳେ ସେହି ତୀର୍ଥ ସ୍ନାନେ
ବାମନ ନାମେ ଯେ ତୀର୍ଥ ଖ୍ୟାତ ତ୍ରିଭୁବନେ ।
ପ୍ରଭୁ ବିଷ୍ଣୁ ବିଷ୍ଣୁ ଏଥେଁ ବାମନ ରୂପରେ
ବଳିରାଜ୍ୟ ହରି ଇନ୍ଦ୍ର ଥାପି ସ୍ୱର୍ଗପୁରେ ।
ତହିଁ ବିଷ୍ଣୁ ପଦେ ସ୍ନାନ କରି ଯେଉଁ ଜନ
ବାମନ ଦେବଙ୍କୁ କରି ଭକ୍ତିରେ ଅର୍ଚ୍ଚନ ।
ବିଶୁଦ୍ଧାତ୍ମା ହୋଏ ନାଶି ସର୍ବବିଧ ପାପ
ଅନ୍ତେ ବିଷ୍ଣୁ ଲୋକେ ଯାଏ ଏ କଥା ସ୍ୱରୂପ ।
ସାରା ପୃଥିବୀ ଭ୍ରମଣ କରିଣ କୌଶଳେ
ଦରଶନ ମାତ୍ରେ ସର୍ବବିଧ ପାପ ହରେ ।
ଲୋକେ ମୁକ୍ତ ହୋଇଯାନ୍ତି ନିଶ୍ଚୟ ଏ କଥା
ଜ୍ୟେଷ୍ଠ ଶୁକ୍ଳ ଏକାଦଶୀ ଦିନ ରାତି ତଥା ।
ଉପବାସେ ରହି ସ୍ନାନ କରି ଦ୍ୱାଦଶୀରେ
ଜ୍ୟେଷ୍ଠ ଶ୍ରେଷ୍ଠ ହେବ ସର୍ବଜନଙ୍କ ଉପରେ ।
ବିଷ୍ଣୁ ଯେଉଁ ବ୍ରାହ୍ମଣଙ୍କୁ ସ୍ଥାପିଛନ୍ତି ତହିଁ
ସୁଦୀକ୍ଷିତ ପ୍ରତିଷ୍ଠିତ ବିଷ୍ଣୁଭକ୍ତ ସେହି ।
ଶ୍ରଦ୍ଧାରେ ଯେ ନାନା ବିଧ ଦାନଦିଏ ତାଙ୍କୁ
ଏକ ମନୁ ଯାଇ ପ୍ରାପ୍ତ ହୁଏ ଅକ୍ଷୟକୁ ।
ତ୍ରିଭୁବନ ଖ୍ୟାତ କୋଟି ତୀର୍ଥ ଅଛି ତହିଁ
ସ୍ନାନକଲା ମାତ୍ରେ କୋଟି ଯଜ୍ଞ ଫଳ ପାଇ ।
କୋଟିଶ୍ୱର ଲିଙ୍ଗକୁ ଯେ କରିବ ଦର୍ଶନ
ଗଣପତି ପଦଲାଭ କରିବ ସେ ଜନ ।
ସୁମହତ ସୂର୍ଯ୍ୟ ତୀର୍ଥ ଅଛି ତହିଁ ପୁଣି
ସ୍ନାନକଲା ମାତ୍ରେ ଶକ୍ତିମନ୍ତ ହୁଏ ପ୍ରାଣୀ ।
ସୂର୍ଯ୍ୟଲୋକେ ପୂଜାପାଏ ଅନ୍ତେ ସେହି ଜନ
ସେଠାବରୁ ପୁନରପି କରିବ ଗମନ ।
ପହୁଞ୍ଚିବ କୁଳଉତ୍ତାରଣ ତୀର୍ଥେ ଯାଇଁ
ସେ ତୀର୍ଥର ପ୍ରକୃତି ଯେ କଲ୍ମଷ ନାଶଇ ।
ପୂର୍ବୁ ବିଷ୍ଣୁ ପ୍ରତିଷ୍ଠିତ ଅଟଇ ସେ ତୀର୍ଥ
ସକଳ ଆଶ୍ରମ ସର୍ବ ବର୍ଣ୍ଣ ଉଦ୍ଧାରାର୍ଥ ।
ଲଭିବ ପରମ ପଦ ସେ ତୀର୍ଥ ଦର୍ଶନେ
ବ୍ରହ୍ମଚାରୀ ବାନପ୍ରସ୍ଥ ଯତି ଗୃହୀଜନେ ।
ସ୍ନାନ କରି ସପ୍ତ ସପ୍ତ କୁଳ ଉଦ୍ଧାରନ୍ତି
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଶୂଦ୍ର ଚାରିଜାତି ।
ସେ ତୀର୍ଥକୁ ଯାଇଁ କଲେ ଭକତିରେ ସ୍ନାନ
ଅନ୍ତକାଳେ ଲଭନ୍ତି ସେ ବଇକୁଣ୍ଠ ସ୍ଥାନ ।
ଦୂରେ ଥାଇ କୁରୁକ୍ଷେତ୍ରେ ବାମନଙ୍କୁ ସ୍ମରେ
ସେ ଜନ ନିଶ୍ଚୟ ଅନ୍ତେ ମୋକ୍ଷଲାଭ କରେ ।
ତହିଁ ବାସ କରୁଥିବା ଜନର ଯେ ଫଳ
କେ କହିପାରିବ ତାହା ହେ ବିପ୍ରମଣ୍ଡଳ ।
ବିପ୍ର ଗୋପୀନାଥର ଏ ଜନ୍ମ ଅକାରଣ
ବାମନଙ୍କ ଶ୍ରୀଚରଣେ ପଶିଲା ଶରଣ ।

ଇତି ପୂର୍ବାର୍ଦ୍ଧଃ ସମାପ୍ତ ।

= ✢ =

## ବାମନ ପୁରାଣ ଉତ୍ତରାର୍ଦ୍ଧ
## ସରସ୍ୱତୀ ମାହାତ୍ମ୍ୟ

ଲୋମହରଷଣ ଋଷି କହିଲେକ ପୁଣି
ଅଛନ୍ତି ପବନ ହ୍ରଦେ ଦେବ ଶୂଳପାଣି ।
ସେ ତୀର୍ଥରେ ସ୍ନାନ କରି ତାହାର ଦର୍ଶନେ
ସକଳ କଳୁଷ ନାଶି ଯିବ ଶିବ ସ୍ଥାନେ ।
ପୁତ୍ରଶୋକେ ବାୟୁ ଏଥେ ହୋଇଥିଲେ ଲୀନ
ବ୍ରହ୍ମାଙ୍କ ସହିତେ ତହିଁ ମିଳି ଦେବଗଣ ।
ପରମ ଭକ୍ତିରେ କଲେ ପବନଙ୍କୁ ସ୍ତବ
ହନୁମାନ କ୍ଷେତ୍ରେ ତହିଁ ଥିଲେ ସଦାଶିବ ।
ଦେବତା ଗନ୍ଧର୍ବ ମିଳି ସେ ସ୍ଥାନକୁ ଯାଇ
ବୀର ହନୁମାନଙ୍କୁ ଯେ ଦେଲେକ ବଞ୍ଚାଇ ।
ତହିଁ ସ୍ନାନକଲେ ଲୋକେ ହୁଅନ୍ତି ଅମର
କୁଳ ଉତ୍ତାରଣ ତୀର୍ଥେ ତହୁଁ ଯାଇ ନର ।
ମାତୃକୁଳ ପିତୃକୁଳ ଉଦ୍ଧାର ସେ କରି
ଶାଳିହୋତ୍ର ତୀର୍ଥେ ଯିବ ଆହେ ତପଚାରୀ ।
ସେହି ତୀର୍ଥଗୋଟି ତ୍ରିଭୁବନରେ ବିଖ୍ୟାତ
ସେ ତୀର୍ଥରେ ସ୍ନାନ କଲା ମାତ୍ରେ ଦେହ ଜାତ ।
ଯେତେ କଳମଷ ସବୁ ନାଶ ହୋଇଯିବ
ଶ୍ରୀକୁଞ୍ଜ ତୀର୍ଥକୁ ତହୁଁ ଗମନ କରିବ ।
ସରସ୍ୱତୀରେ ସେ ତୀର୍ଥ ବିଦିତ ଭୁବନେ
ଅଗ୍ନି ଷ୍ଟୋମ ଫଳ ମିଳେ ଭକ୍ତି ସହ ସ୍ନାନେ ।
ଶୁଚି ହୋଇ ନଇମିଷ କୁଞ୍ଜେ ତହୁଁ ଯିବ
ସ୍ନାନ ଅଭିଷେକ କରି ସୁପୁଣ୍ୟ ସଞ୍ଚିବ ।
ବେଦମତୀ ନାମେ ଅଛି ମହାତୀର୍ଥ ତହିଁ
ବେଦମତୀ କେଶ ଧରିଥିଲା ଲଙ୍କସାଇଁ ।
ତା ବଧ ନିମନ୍ତେ ସତୀ ଏଥେ ଦେଲା ପ୍ରାଣ
ମିଥିଳା ନଗରେ କଲେ ସେ ଜନ୍ମ ଗ୍ରହଣ ।

ଶ୍ରୀରାମଙ୍କ ପତ୍ନୀ ହେଲେ ସୀତା ନାମ ବହି
ରାବଣ ତାହାଙ୍କୁ ନେଲା ନିଜ ବଧ ପାଇଁ ।
ଶ୍ରୀରାମ ସେ ରାବଣକୁ କଲେକ ସଂହାର
ବିଭୀଷଣ ହସ୍ତେ ଦେଲେ ଲଙ୍କା ରାଜ୍ୟ ଭାର ।
ମୂର୍ତ୍ତିମତୀ କୀର୍ତ୍ତି ରୂପା ସୀତାଙ୍କୁ ଉଦ୍ଧାରି
ଅଯୋଧ୍ୟାରେ ଘେନି ତାଙ୍କୁ ହେଲେ ଦଣ୍ଡଧାରୀ ।
କନ୍ୟା ଯଜ୍ଞ ଫଳ ମିଳେ ସେହି ତୀର୍ଥ ସ୍ନାନେ
କଳୁଷ ବିନାଶି ଯାଏ ବଇକୁଣ୍ଠ ସ୍ଥାନେ ।
ଯହୁଁ ବ୍ରହ୍ମ ସ୍ଥାନ ମହାତୀର୍ଥକୁ ଯେ ଯିବ
ନୀଚ ଜାତି ସ୍ନାନ କଲେ ତହିଁ ବିପ୍ର ହେବ ।
ବ୍ରାହ୍ମଣ ସେ ତୀର୍ଥେ ଯେବେ ସ୍ନାନକରେ ଯାଇ
ବିଶୁଦ୍ଧାତ୍ମା ହୋଇ ପୁଣି ବଇକୁଣ୍ଠ ପାଇ ।
ସେ ସ୍ଥାନରୁ ତୀର୍ଥକାରୀ ଗମନ କରିବ
ସୋମ ନାମେ ତୀର୍ଥ ତିନିଭୁବନେ ଦୁର୍ଲ୍ଲଭ ।
ସୋମ ତପ କରି ତିହିଁ ହେଲେ ଦ୍ୱିଜରାଜ
ତହିଁ ସ୍ନାନ କଲା ଫଳ ଶୁଣ ମୁନିରାଜ ।
ଯେଉଁ ଜନ ସ୍ନାନ କରି ପୂଜେ ପିତୃଗଣ
ଦେବଗଣଙ୍କର ପୁଣି କରଇ ଅର୍ଚ୍ଚନ ।
କାର୍ତ୍ତିକେ ବାମନ ପୂଜି ସ୍ୱର୍ଗେ ମିଳେ ଯଥା
ସେହି ଜନ ସ୍ୱର୍ଗଲାଭ ଫଳ ପାଏ ତଥା ।
ସପ୍ତ ସାରସ୍ୱତ ନାମେ ତୀର୍ଥେକ ଅଛଇ
ତ୍ରୈଲୋକ୍ୟରେ ସେହି ତୀର୍ଥ ଦୁର୍ଲ୍ଲଭ ଅଟଇ ।
ଯହିଁ ସପ୍ତସରସ୍ୱତୀ ମିଳି ବହିଯାନ୍ତି
ତାହାଙ୍କର ନାମ ଶୁଣ କହୁଛି ସମ୍ପ୍ରତି ।
ସୁପ୍ରଭା କାଞ୍ଚନ ଅକ୍ଷୀ ବିମଳା ଏ ତିନି
ମାନସହ୍ରଦକୁ ଘେନି ଚାରି ଜଣ ମୁନି ।
ସୁବର୍ଣ୍ଣା ବିମଳୋଦକା ସାରସ୍ୱତ ତୋୟା
ଏ ତିନିକି ଘେନି ସାତ ନଦୀ ପୁଣ୍ୟତୋୟା
ପିତାମହ ଯଜ୍ଞ କଲେ ରହିଣ ପୁଷ୍କରେ
ଋଷିଗଣ ବୋଇଲେ ଯେ ତାଙ୍କ ସମ୍ମୁଖରେ ।
ତୁମ୍ଭର ଏ ଯଜ୍ଞ ମହାଫଳ ନ ଦିଅଇ
ସମ୍ମୁଖରେ ସରସ୍ୱତୀ ଯେଣୁ ନ ରହଇ ।
ପଦ୍ମଯୋନି ଋଷିଙ୍କର କଥା କର୍ଣ୍ଣେ ଶୁଣି
ସରସ୍ୱତୀଙ୍କି ସ୍ମରଣ କଲେ ତୋଷେ ପୁଣି ।
ଯଜ୍ଞକାରୀ ପିତାମହ କରନ୍ତେ ସ୍ମରଣ
ବହିଗଲେ ଦେବୀ ଜଳ ରୂପକୁ ବହିଣ ।

ସୁପ୍ରଭା ନାମେ ସେ ଦେବୀ ହୋଇଲେ ବିଖ୍ୟାତ
ବେଗବତୀ ସରସ୍ୱତୀ ଦେଖି ମୁନିବ୍ରାତ ।
ପରମ ସନ୍ତୋଷେ ତାଙ୍କୁ କଲେ ନିରୀକ୍ଷଣ
ପିତାମହଙ୍କର ପୂଜା ଦେଖି ଋଷିଗଣ ।
ବହୁତ ଆଦରେ ସରସ୍ୱତୀଙ୍କି ପୂଜିଲେ
ପୁଷ୍କରଗାମିନୀ ଦେବୀ ଏହି ରୂପେ ହେଲେ ।
ଚିରଜୀବୀ ମହାତ୍ମା ଯେ ମୁନି ମାର୍କଣ୍ଡେୟ
କୁରୁକ୍ଷେତ୍ରେ ଆଣି କଲେ ପୁଣ୍ୟର ସଞ୍ଚୟ ।
ଶୌନକାଦି ମୁନିଗଣ ଥାଇ ନଇମିଷେ
ପଚାରିଲେ ଲୋମହରଷଣଙ୍କୁ ବିଶେଷେ ।
ଆହେ ମୁନିବର ଆମ୍ଭେ ରହି ସତପଥେ
ଯଜ୍ଞର ଯେ ଫଳ ଲାଭ କରିବୁଁ କେମନ୍ତେ ।
କହିଲେ ପ୍ରମାଣ କରି ଲୋମହରଷଣ
ସରସ୍ୱତୀ ଥିବା ସ୍ଥାନେ ଆହେ ମୁନିଗଣ ।
ଯଜ୍ଞ କଲେ ମହାଫଳ ଅବଶ୍ୟ ମିଳଇ
ବିବିଧ ସାଧ୍ୟାୟ ବେଦୀ ମୁନିଗଣ ତହିଁ ।
ମିଳି କଲେ ସରସ୍ୱତୀ ଦେବୀଙ୍କ ସ୍ମରଣ
ପ୍ରସନ୍ନେ ନୈମିଷେ ଦେବୀ କଲେ ଆଗମନ ।
ସେ ନଦୀର ନାମ ତହିଁ ହେଲା କାଞ୍ଚନାକ୍ଷୀ
ମହାତେଜା ମଙ୍କଣ ତା ନୟନରେ ଦେଖି ।
ପୁଣ୍ୟତୋୟା ସରସ୍ୱତୀ ସଙ୍ଗତରେ ଘେନି
କୁରୁକ୍ଷେତ୍ରେ ଚାଲିଗଲେ ତୋଷେ ମହାମୁନି ।
ତହିଁ ତା ନାମ ବିଶାଳା ଦେଲେ ମୁନିଗଣ
ମହାତ୍ମା ମଙ୍କଣ ପୁଣି କଲେକ ଆହ୍ୱାନ ।
କୁରୁକ୍ଷେତ୍ରେ ମିଳନ୍ତେ ସେ ମହାନଦୀ ଆସି
ତହିଁ ତାଙ୍କୁ ପୂଜା କଲେ ଦେବ ବ୍ରହ୍ମଋଷି ।
ଉତ୍ତର କୋଶଳ ମୁନି ଉଦ୍ଦାଳକ ଧ୍ୟାନେ
ସରସ୍ୱତୀ ଆଗମନ କଲେ ସେହି ସ୍ଥାନେ ।
ବକଳ ଅଜିନ ପିନ୍ଧି ଋଷିଗଣ ତହିଁ
ପୂଜା କଲେ ସେ ଦେବୀଙ୍କି ମନେ ତୋଷ ବହି ।
କୋପରେ ସେ ମନୋହରା ନାମକୁ ବହିଲେ
ଋଷିଗଣ ସିଦ୍ଧଗଣ ତାଙ୍କ ସେବା କଲେ ।
ମନୋହରା ସର୍ବପାପ କ୍ଷୟକରା ହେଲେ
ପରମେଶ୍ୱରଙ୍କ ପୂଜା ମଙ୍କଣକ କଲେ ।
ତହିଁରେ ପ୍ରସନ୍ନ ହୋଇ ପରମ ଈଶ୍ୱରେ
କୁରୁକ୍ଷେତ୍ରେ ପ୍ରବେଶିଲେ ମୁନି ଉପକାରେ ।

ଗଙ୍ଗାଦ୍ୱାରେ ଦକ୍ଷଯଜ୍ଞ କରିବାର କାଳେ
ତହିଁ ସେ ବିକଳତୋୟା ନାମକୁ ବହିଲେ ।
ମହାତ୍ମା ମଙ୍କଣ ତାଙ୍କୁ କଲେକ ଆହ୍ୱାନ
ସେ ସ୍ଥାନକୁ ସରସ୍ୱତୀ କଲେ ଆଗମନ ।
କୁରୁରାଜା ଯଜ୍ଞ କଲେ କୁରୁକ୍ଷେତ୍ରେ ରହି
ସରସ୍ୱତୀ ଘେନିଗଲେ ମଙ୍କଣକ ତହିଁ ।
ସରମଧ୍ୟେ ମିଳାଇଲେ ମାର୍କଣ୍ଡେୟ ଋଷି
ସରସ୍ୱତୀ ସ୍ତବ କଲେ ମଙ୍କଣକୁ ଆସି ।
ସିଦ୍ଧି ଲାଭ କଲେ ରହି ସପ୍ତ ସାରସ୍ୱତେ
ଗୋପୀନାଥ ମନ ସଦା ରହୁ ସେହି ତୀର୍ଥେ ।

=+=

## ମଙ୍କଣକ ସିଦ୍ଧି

ଋଷିଗଣ ପଚାରିଲେ ମଙ୍କଣକ ମୁନି
କେମନ୍ତେ ହୋଇଲେ ସେହି ସିଦ୍ଧ ମହାଜ୍ଞାନୀ
କାହାଠାରୁ ଜାତ ସେହି ନୃତ୍ୟକଲା ବେଳେ
ମହାଦେବ କାହିଁ ପାଇଁ ତାହା ନିବାରିଲେ ।
ଏହାଶୁଣି କହିଲେ ଯେ ଲୋମହରଷଣ
କଶ୍ୟପ ମାନସପୁତ୍ର ମହର୍ଷି ମଙ୍କଣ ।
ଦିନେ ସେ ବକଳ ପିନ୍ଧି କରୁଥିଲେ ସ୍ନାନ
ରମ୍ଭା ଆଦି ଅପସରା କଲେ ଆଗମନ ।
ଅନିନ୍ଦିତା ସେ ସୁନ୍ଦରୀ ଅପସରା ତହିଁ
ବସ୍ତ୍ର ତ୍ୟାଗ କରି ସର୍ବେ ସ୍ନାନ କଲେ ରହି ।
ଦେଖି ମଙ୍କଣକ ମୁନି ମନ ବିଚଳିତ
ସ୍ଖଳିତ ହୋଇଣ ଜଳେ ପତିତ ସେ ରେତ ।
ଏକ ବ୍ୟାଧ ଜଳସଙ୍ଗେ ସେ ରେତକୁ ନେଲା
କଳଶ ମଧ୍ୟରେରଖୁଁ ସାତଭାଗ ହେଲା ।
ସାତଭାଗୁଁ ସାତଋଷି ଲଭିଲେ ଜନମ
ମରୁଦ୍‌ଗଣ ବୋଲି ହେଲା ତାହାଙ୍କର ନାମ ।
ଗୋଟି ଗୋଟି ନାମ ଶୁଣ କରି ମନ ସ୍ଥିର
ବାୟୁବେଗ ବାୟୁଫଳ ବାୟୁହା ଆବର ।
ବାୟୁଚକ୍ର ବାୟୁରେତା ଯେ ବାୟୁମଣ୍ଡଳ
ସପତମ ପୁତ୍ର ନାମ ହେଲା ବାୟୁକାଳ ।
ସେ ହୋଇଲେ ଚରାଚର ବିଶ୍ୱର ଧାରଣ
କୁଶାଗ୍ର ସହାୟେ ସିଦ୍ଧି ଲଭିଲେ ମଙ୍କଣ ।
କୁଶ ଅଗ୍ରେ ହସ୍ତକ୍ଷତ ହେବାରୁ ତାଙ୍କର
ସେ କ୍ଷତରୁ ଶାକରସ ହୋଇଲା ବାହାର ।
ତା ଦେଖି ହରଷେ ମୁନି ଆରମ୍ଭିଲେ ନୃତ୍ୟ
ସ୍ଥାବର ଜଙ୍ଗମାତ୍ମକ ସକଳ ଜଗତ ।
ନାଚିଲେ ମୋହିତ ହୋଇ ଋଷିଙ୍କର ତେଜେ
କି କହିବି ତୁମ୍ଭ ଆଗେ ଆହେ ଋଷିବ୍ରଜେ ।
ଦେଖି ବ୍ରହ୍ମା ସୁରଗଣ ଋଷି ତପୋଧନେ
ଜଣାଇଲେ ମହାଦେବ ଦେବ ସନ୍ନିଧାନେ ।
ଯେମନ୍ତେ ଏ ଋଷି ନୃତ୍ୟ ନ କରିବେ ଆଉ
ତାହାର ଉପାୟ କର ଏ ସଂସାର ରହୁ ।
ମହାଦେବ ମୁନିଙ୍କର ହୃଷ୍ଟଚିତ୍ତ ଦେଖି
କହିଲେ ଦେବଙ୍କ ହିତ କଥା ମନେ ରଖି ।
ହେ ମୁନିସତ୍ତମ ତୁମ୍ଭେ ଅଟ ତପୋଧନ
କରିଅଛ ପୁଣି ଧର୍ମ ପଥରେ ଗମନ ।
କି କାରଣେ ଏହି ହର୍ଷ ଜାତ ତୁମ୍ଭ ମନେ
ଋଷି କହିଲେ ସାକ୍ଷାତେ ଦେଖୁଛ ଆପଣେ ।
ଆମ୍ଭ ହସ୍ତୁ ଶାକରସ ହେଉଛି ବାହାର
ଆନନ୍ଦେ ମୁଁ ନୃତ୍ୟ କରେଁ ଦେଖି ଏ ବ୍ୟାପାର ।
ମହାଦେବ ହାସ୍ୟକରି ବୋଇଲେ ହେ ଦ୍ୱିଜ
ରାଗମୁଗ୍ଧ ମଙ୍କଣକ କଶ୍ୟପ ଆତ୍ମଜ ।
ଦେଖ ଏ ବ୍ୟାପାରଦେଖି ନୁହେଁ ମୁଁ ବିସ୍ମିତ
ଦେବ ଦେବ ମହାଦ୍ୟୁତି ଗିରିସୁତା କାନ୍ତ ।
ନିଜ ଅଙ୍ଗୁଳିରେ ନିଜ ଅଙ୍ଗୁଳି ପ୍ରହାରି
ହିମତୁଲ୍ୟ କିସ୍ମକ୍ଷତ ସ୍ଥାନରୁ ବାହାରି ।
ଦେଖି ମଙ୍କଣକ ବିପ୍ର ଲଜ୍ଜିତ ହୋଇଲେ
ତାଙ୍କ ପାଦଦ୍ୱୟ ତଳେ ପଡ଼ିଣ କହିଲେ ।
ମହାଦେବ ଶୂଳ ପାଣି ମହାତ୍ମାଙ୍କ ଭିନ୍ନ
ଅନ୍ୟ କେଉଁ ଦେବତାଙ୍କୁ ନ କରେଁ ସମ୍ମାନ ।
ଚରାଚର ଜଗତର ଗୁରୁ-ଶୂଳଧର
ହେ ଅନଘ ବ୍ରହ୍ମା ଆଦି ଯେତେକ ଅମର ।
ଜଣାଯାଏ ଆପଣଙ୍କ ଆଶ୍ରିତ ସମସ୍ତେ
ସକଳ ସ୍ୱରୂପେ ଅଛ ଆପଣ ଜଗତେ ।
କର୍ତ୍ତା କାରୟିତା ବହୁରୂପୀ ଯେ ଆପଣ
ଆପଣଙ୍କ ପ୍ରସାଦରୁ ସମସ୍ତ ଗୀର୍ବାଣ ।
ଆମୋଦ ପ୍ରମୋଦ କରିଅଛନ୍ତି ନିର୍ଭୟେ
ସୁରାସୁର ଅଧୀଶ୍ୱର ଆପଣ ନିଶ୍ଚୟେ ।
ଅତିଯତ୍ନେ ସଞ୍ଚିତ ଏ ତପସ୍ୟାର କ୍ଷୟ
ଯେମନ୍ତେ ନ ହୁଏ କର ତାହାର ଉପାୟ ।

କହିଲେକ ମହାମୁନି ଲୋମହରଷଣ
ଏମନ୍ତେ ପ୍ରଣତି ସ୍ତୁତି ଦେଖି ତ୍ରିଲୋଚନ ।
ପ୍ରସନ୍ନେ କହିଲେ ବିପ୍ର ମୋହର ପ୍ରସାଦେ
ତୋ ତପ ସହସ୍ରଗୁଣ ହେଉ ବିଶ୍ୱମଧେ ।
ଏ ଆଶ୍ରମେ ସର୍ବଦା ମୁଁ ତୋର ସଙ୍ଗେ ଥିବି
ସତ୍ୟ କରୁଅଛି କେଭେ ଆନ ନ କରିବି ।
ସପ୍ତସାରସ୍ୱତ ଆସି କରିବେ ଯେ ସ୍ନାନ
ଆମ୍ଭଙ୍କୁ ଏ ଆଶ୍ରମରେ କର ଆରାଧନ ।
ଇହ ପରଲୋକେ କିଛି ନୋହିବ ଦୁର୍ଲ୍ଲଭ
ସେ ନିଶ୍ଚୟ ସାରସ୍ୱତ ଲୋକ ପ୍ରାପ୍ତ ହେବ ।
ପରମ ପଦ ଲଭିବ ଆମ୍ଭ ପରସାଦେ
ଗୋପୀନାଥ ମନ ରହୁ ସଦାଶିବ ପାଦେ ।

=+=

## ବିବିଧ ତୀର୍ଥାନୁ କୀର୍ତ୍ତନ

କହିଲେକ ମହାମୁନି ଲୋମହରଷଣ
ଶ୍ରଦ୍ଧାନ୍ୱିତ ହୋଇ ତହୁଁ କଲେ ସେ ଗମନ ।
ଉଶନଶ ତୀର୍ଥେ ମୁନି ମିଳିଲେକ ଯାଇ
ଯହିଁରେ ଉଶନା ସିଦ୍ଧି ଗ୍ରହ ପଦ ପାଇ ।
ମାଡ଼ିବ ଯେ ସେ ପବିତ୍ର କୁରୁକ୍ଷେତ୍ର ସ୍ଥାନ
ଜାତ ହେବା ପାତକରୁ ହୋଇବ ମୋଚନ ।
ପରଂବ୍ରହ୍ମ ପଦ ଲାଭ ବହିବ ସେ ପୁଣି
ଏ ସଂସାରେ ପୁନର୍ଜନ୍ମ ନୋହିବ ସେ ପ୍ରାଣୀ ।
ରହୋଦର ନାମେ ପୂର୍ବେ ଥିଲେ ଏକମୁନି
ବିଶାଳ ମସ୍ତକ ଗ୍ରସ୍ତ ହୋଇ ତୀର୍ଥ ଭ୍ରମି ।
ଏ ତୀର୍ଥ ମହିମା ଦେଖି ହେଲେ ଏଥେ ସିଦ୍ଧି
ଋଷିଏ କହିଲେ କହ ହୋଇଣ ସଂଶ୍ରଦ୍ଧି ।
କେମନ୍ତେ ମସ୍ତକ ଗ୍ରସ୍ତ ହେଲେ ମହାମୁନି
କେମନ୍ତେ ଯେ ମୋକ୍ଷ ହେଲେ କହ ତାହାପୁଣି
ଶୁଣିବାକୁ ମନ ହୁଏ ସେ ତୀର୍ଥ ମହିମା
କହିଲେ ଲୋମହର୍ଷଣ ପୂର୍ବେ ମହାତମା ।
ଶ୍ରୀରାମ ଦଣ୍ଡକାରଣ୍ୟେ କରିଥିଲେ ବାସ
ରାକ୍ଷସମାନଙ୍କୁ ଶରେ କରିଣ ବିନାଶ ।
ତା ମଧରେ ଥିଲା ଏକ ଦୁରାତ୍ମା ଅସୁର
ତା ମୁଣ୍ଡ କାଟିଲେ ମାରି ଶତଧାର କ୍ଷୁର ।
ସେ ଛିନ୍ନମସ୍ତକ ପଡ଼ିଥିଲା ମହାବନେ
ରହୋଦର ବୁଲୁଥିଲାବନେ ସେ କାନନେ ।
ସେ ମସ୍ତକ ତାର ଗ୍ରୀବା ଦେଶେ ଲାଗିଗଲା
କ୍ରମେ କ୍ରମେ ସେ ମସ୍ତକ ଅସ୍ଥି ଭେଦ କଲା ।
ଅସୁରର ଗଳମଧେ କରନ୍ତେ ପ୍ରବେଶ
ତୀର୍ଥ ଭ୍ରମି ନ ପାରିଲା ତେଣୁ ସେ ରାକ୍ଷସ ।
କ୍ରମେ ସେହି ବେଦନାରେ ହୋଇଲେ କାତର
ତଥାପି ସେ ମହାପ୍ରାଜ୍ଞ ମୁନି ରହୋଦର ।
ପୃଥିବୀ ମଧରେଥିଲା ଯେତେ ତୀର୍ଥ ସ୍ଥାନ
ସେ ସକଳ ତୀର୍ଥକୁ ସେ କଲେ ପର୍ଯ୍ୟଟନ ।
ତ୍ରିକାଳଜ୍ଞ ମହାଋଷିମାନଙ୍କ ଆଗରେ
କହିଲେ ଏ ସବୁ କଥା ଦୁଃଖ ମୁନିବରେ ।
ସେ ବୋଇଲେ ବିପ୍ରବର ଆମ୍ଭର ବଚନ
କରନ୍ତୁ ଯେ ଉଶସନ ତୀର୍ଥକୁ ଗମନ ।
ତାହାଙ୍କର ଏ ବଚନ ଶୁଣି ରହୋଦର
ଉଶନସ ତୀର୍ଥେସ୍ନାନ କରି ବାରମ୍ବାର ।
ଗଳଦେଶ ତେଜି ମୁଣ୍ଡ ପଡ଼ିଲା ଜଳରେ
ରଜୋହୀନ ପାପହୀନ ପବିତ୍ର ଶରୀରେ ।
ହୃଷ୍ଟମନେ ଫେରି ଆସି ଆପଣା ଆଶ୍ରମେ
କହନ୍ତେ ସକଳ କଥା ଶୁଣି ଋଷିଗ୍ରାମେ ।
କପାଳ ମୋଚନ ତୀର୍ଥ ଦେଲେ ତାର ନାମ
ତହିଁ ଅଛି ବିଶ୍ୱାମିତ୍ର ତୀର୍ଥ ଅନୁପମ ।
ମହାମୁନି ବିଶ୍ୱାମିତ୍ର ହେଲେ ବ୍ରହ୍ମଋଷି
ସେହି ତୀର୍ଥବରେ କେହି ସ୍ନାନ କଲେ ଆସି ।
ଅବଶ୍ୟ ବ୍ରାହ୍ମଣ୍ୟ ହେବ ଏକଥା ନିଶ୍ଚୟ
ବିପ୍ର ପରଂପଦ ଲଭେ ହୋଇ ଶୁଦ୍ଧ କାୟ ।
ନିୟତ ନିୟତାହାର ହୋଇ ଏଥୁଅନ୍ତେ
ଗମନ କରିବ ଯେବେ ପୃଥୂବକ ତୀର୍ଥେ ।
ଯହିଁ ସିଦ୍ଧି ହେଲେ ରହି ଋଷଙ୍ଗୁ ମହର୍ଷି
ଜାତିସ୍ମର ହୋଇ ସେହି ଗଙ୍ଗାଦ୍ୱାରେ ଆସି ।
କିଛି ଦିନ ରହି ତହିଁ କଟାଇଲେ କାଳ
ଉପସ୍ଥିତ ହେବା ଦେଖି ଋଷି ଅନ୍ତଃକାଳ ।
ତୀର୍ଥର ସମସ୍ତ ଗୁଣ କରିଣ ସ୍ମରଣ
ବୋଇଲେ କହୁଛି ଶୁଣ ଆହେ ପୁତ୍ରଗଣ ।
ସରସ୍ୱତୀରେ ଉତ୍ତମ ତୀର୍ଥେ ଯେଉଁ ଜନ
ତନୁତ୍ୟାଗୀ ପୃଥୁଦକେ ଜପ ପରାୟଣ ।
ଅମର ହୁଅଇ ସେହି ଏ କଥା ନିଶ୍ଚୟ
ବ୍ରହ୍ମା ପୂର୍ବେ ସେ ତୀର୍ଥକୁ କରିଣ ଆଶ୍ରୟ ।

ରହିବାରୁ ସରସ୍ୱତୀ ତୀର୍ଥବର ତୀରେ
ତାର ନାମ ବ୍ରହ୍ମଯୋନି ବିଖ୍ୟାତ ସଂସାରେ ।
ଆତ୍ମଜ୍ଞାନ ପରାୟଣ ହେଲେ ସୃଷ୍ଟି ଅର୍ଥେ
ସେ ଅବ୍ୟକ୍ତ ଜନ୍ମ ବ୍ରହ୍ମା ରହୁ ଧ୍ୟାନ ପଥେ ।
ତାହାଙ୍କ ମୁଖରୁ ହେଲେ ବ୍ରାହ୍ମଣ ଉତ୍ପତ୍ତି
ବାହୁ ଯୁଗଳରୁ ଜାତ କ୍ଷତ୍ରିୟ ସନ୍ତତି ।
ବୈଶ୍ୟ ଜାତି ତାଙ୍କ ଉରୁ ଦ୍ୱୟରୁ ସମ୍ଭୂତ
ପାଦ ଯୁଗଳରୁ ଶୂଦ୍ର ଜାତି ହେଲେ ଜାତ ।
ଚାରିଜାତି ଉତପତ୍ତି ଦେଖି ପଦ୍ମାସନ
ସେଠାରୁ ଆଶ୍ରମମାନ କଲେକ ସ୍ଥାପନ ।
ଏଣୁ ଏହି ତୀର୍ଥନାମ ଅଟେ ବ୍ରହ୍ମଯୋନି
ଯେ ତୀର୍ଥରେ ସ୍ନାନ କଲେ ମୋକ୍ଷହୋଏ ପ୍ରାଣୀ
ଅବତୀର୍ଣ୍ଣ ନାମେ ତହିଁ ଅଛି ଖ୍ୟାତ ତୀର୍ଥ
ଅପମାନେ ବକଦାନ୍ୟ ବିପ୍ରଙ୍କ ସହିତ ।
ସେ ସ୍ଥାନେ ମିଳିତ ହୋଇ କଲେ ମନ୍ତ୍ରେହୋମ
ଦେଖି ରାଜାଅଙ୍ଗେ କଲା ଚୈତନ୍ୟ ବିଶ୍ରାମ ।
ଋଷିଗଣ ପଚାରିଲେ କେମନ୍ତେ ସେ ତୀର୍ଥ
ଅବତୀର୍ଣ୍ଣ ନାମେ ପୁଣି ହେଲା ପ୍ରତିଷ୍ଠିତ ।
ରାଜା ଧୃତରାଷ୍ଟ୍ର କିମ୍ପା ନୋହିଲେ ପ୍ରସନ୍ନ
ଏହା ଶୁଣି ବୋଇଲେକ ଲୋମହରଷଣ ।
ନଇମିଷବାସୀ ଋଷି ଗଲେ ଦକ୍ଷିଣାର୍ଥେ
ତାଙ୍କ ମଧ୍ୟେ ବକଦାଲ୍‌ଭ୍ୟ ଦକ୍ଷିଣା ମାଗନ୍ତେ ।
ଧୃତରାଷ୍ଟ୍ର ରାଜା ତାଙ୍କୁ ନିନ୍ଦା କଲେ ପୁଣି
ଅତି କ୍ରୋଧେ ତହୁଁ ଗଲେ ଋଷିତାହା ଶୁଣି ।
ଅବକୀର୍ଣ୍ଣ ନାମେ ପୃଥୁଦକ ମହାତୀର୍ଥେ
ହୋମକଲେ ମାଂସ କାଟି ଧୃତରାଷ୍ଟ୍ର ଅର୍ଥେ ।
ରାଜାର ସକଳ ରାଜ୍ୟ ହେଲା ସନ୍ତାପିତ
ରାଜାଙ୍କର ପାପେ ହେଲା ରାଜ୍ୟ କ୍ଷୟପ୍ରାପ୍ତ ।
ନରପତି ଧୃତରାଷ୍ଟ୍ର ତାହା ଜାଣିପାରି
ରତ୍ନ ଘେନି ପୁରୋହିତ ସଙ୍ଗେ ଦଣ୍ଡଧାରୀ ।
ଋଷିଙ୍କି ତୋଷିବା ଅର୍ଥେ ଅବକୀର୍ଣ୍ଣେ ଗଲେ
ରତ୍ନ ଦେଇ ତାହାଙ୍କୁ ସେ ସୁପ୍ରସନ୍ନ କଲେ ।
ରାଜାଙ୍କୁ କହିଲେ ଋଷି ହୋଇ ସୁପ୍ରସନ୍ନ
ଜ୍ଞାନବାନ ପୁରୁଷ ତୁ ବିପ୍ର ଅପମାନ ।
କଲେ ତ୍ରିପୁରୁଷ କୁଳ ଦଗ୍‌ଧ ହେବେ ଜାଣ
ଏହା କହି କଲେ ରାଜା ହିତ ଅନୁଷ୍ଠାନ ।
ଘୃତପୟ ପାଇ ମୃତ ଜୀବିତ ହୋଇଲେ
ଜିତେନ୍ଦ୍ରିୟ ହୋଇ କେହି ତହିଁ ସ୍ନାନ କଲେ ।
ମନର କଳ୍ପିତ ଫଳ ପାଇବ ଅବଶ୍ୟ
ଆବର ଯା ଜାତ ନାମେ ତୀର୍ଥ ତା ସଦୃଶ ।
ଯଜ୍ଞ କଲେ ତହିଁ ନଦୀମଧ୍ୟେ ମଧୂକ୍ଷରେ
ପାପୁଁ ମୁକ୍ତ ହେବ ସ୍ନାନ କଲେ ଶ୍ରଦ୍ଧାଭରେ ।
ଅଶ୍ୱମେଧ ଯଜ୍ଞଫଳ ଲଭଇ ସେ ପୁଣି
ମଧୁସ୍ରବ ନାମେ ତୀର୍ଥ ଅଛି ଦ୍ୱିଜଶ୍ରେଣୀ ।
ଭକ୍ତିରେ ଯେ ଏ ପବିତ୍ର ତୀର୍ଥେ କରେ ସ୍ନାନ
ପିତୃଗଣେ ତୃପ୍ତ ହୋନ୍ତି କରି ମଧୁପାନ ।
ବଶିଷ୍ଠୋଦ୍ୱାହ ନାମରେ ଅଛି ମହାତୀର୍ଥ
ତହିଁରେ ଯେ ସ୍ନାନ କରେ ହୋଇ ଶ୍ରଦ୍ଧାବନ୍ତ ।
ବଶିଷ୍ଠ ଲୋକରେ ଯାଇଁ ବସଇସେ ଜନ
ସକଳ ପାତକ ତାର ହୁଅଇ ମୋଚନ ।

=+=

## ସରସ୍ୱତୀ ତୀର୍ଥ ଶୋଧନ

ପଚାରିଲେ ଋଷିଗଣ ହେ ଲୋମହର୍ଷଣ
ମହାଋଷି ବଶିଷ୍ଠଙ୍କୁ କହ କି କାରଣ ।
ସରସ୍ୱତୀ ନଦୀସ୍ରୋତେ ନେଲେକ ଭସାଇ
ପୁଣି ସେ ତାହାଙ୍କୁ କିମ୍ପା ରଖିଲେ ବୁଡ଼ାଇ ।
ଏହା ଶୁଣି କହିଲେକ ଲୋମହରଷଣ
ବିଶ୍ୱାମିତ୍ର ବଶିଷ୍ଠ ଏ ମୁନି ଦୁଇଜଣ ।
ତପ ଯୋଗୁଁ ପରସ୍ପରେ ହୋଇଲେ ବଇରୀ
ସାବଧାନେ ଶୁଣ ସର୍ବେ କହୁଛି ବିସ୍ତାରି ।
ମହାଋଷି ବଶିଷ୍ଠ ଯେ ସ୍ଥାଣୁ ତୀର୍ଥେ ଯାଇଁ
ଆଶ୍ରମ ନିର୍ମାଣ କରି ରହିଥିଲେ ତହିଁ ।
ତା ପଶ୍ଚିମଦିଗେ ବିଶ୍ୱାମିତ୍ରଙ୍କ ଆଶ୍ରମ
ତହିଁ ତପ କରନ୍ତି ସେ ମୁନିଙ୍କ ଉତ୍ତମ ।
ପୂର୍ବକାଳେ ଦେବଦେବ ମହାଦେବ ସ୍ଥାଣୁ
ଯଜ୍ଞ ସରସ୍ୱତୀ ପୂଜା କରିବାରୁ ତେଣୁ ।
ସେ ସ୍ଥାନର ନାମ ହୋଇଅଛି ସ୍ଥାଣୁତୀର୍ଥ
ଯେ କର୍ମ କରିବ ତହିଁ ସେ ନୋହିବ ବ୍ୟର୍ଥ ।
ଏହା ଜାଣି ମୁନିବର ବଶିଷ୍ଠ ସେ ସ୍ଥାନେ
ଘୋର ତପ ଆଚରନ୍ତି ବସି ଯୋଗାସନେ ।
ତାଙ୍କ ତପେ ବିଶ୍ୱାମିତ୍ର ତପ ହେଲା କ୍ଷୀଣ
ତପକ୍ଷୀଣ ହେବାରୁ ସେ ହେଲେ ତେଜୋହୀନ ।

ତପୋବଳେ ତେଜୋବନ୍ତ ବଶିଷ୍ଠ ହୋଇଲେ
ବିଶ୍ୱାମିତ୍ର ମୁନି ତାହା ସହି ନ ପାରିଲେ ।
ମନ ମଧ୍ୟେ ଈର୍ଷ୍ୟାଭାବ ବହି ମୁନିବର
ବଶିଷ୍ଠଙ୍କୁ ମାରିବାକୁ କଲେକ ବିଚାର ।
କହିଲେ ସେ ସରସ୍ୱତୀ ନଦୀକି ଡାକିଣ
ତୋର ସ୍ରୋତେ ବଶିଷ୍ଠଙ୍କୁ ମୋ ପାଶକୁ ଆଣ ।
ଏ ସ୍ଥାନକୁ ଆସିଲେ ସେ ମୁଁ ତାଙ୍କୁ ମାରିବି
ମୋର ମନର ଯେ କଷ୍ଟ ତାହା ପାଶୋରିବି ।
ଏହା ଶୁଣି ସରସ୍ୱତୀ ହୋଇଲେ ବ୍ୟାକୁଳ
କମ୍ପମାନ ହେଲା ଅଙ୍ଗପ୍ରତ୍ୟଙ୍ଗ ସକଳ ।
ବାତାଘାତ ରମ୍ଭାତରୁ ପ୍ରାୟ ତାଙ୍କୁ ଦେଖି
କ୍ରୋଧେ ରକ୍ତବର୍ଣ୍ଣ ହେଲା ମୁନିଙ୍କର ଆଖି ।
ବୋଇଲେକ ପୁନରପି ଆଗୋ ସରସ୍ୱତୀ
ବେଗେ ବଶିଷ୍ଠଙ୍କୁ ଆଣ ମୋ ଆଶ୍ରମ କତି ।
ସରସ୍ୱତୀ ତହୁଁ ଗଲେ ମୁନିଙ୍କର ଡରେ
ବଶିଷ୍ଠଙ୍କ ଆଗେ ଅଶ୍ରୁପୂର୍ଣ୍ଣ ନୟନରେ ।
ବୋଇଲେ ବିସ୍ତାର କରି ବିଶ୍ୱାମିତ୍ର ବାଣୀ
କହୁଁ କହୁଁ ଶୋକେ ତାଙ୍କ ନେତ୍ରୁ ବହେପାଣି ।
ତପ ପ୍ରଭାବରୁ କୃଶ ହେଲା ତାଙ୍କ ଅଙ୍ଗ
କାନ୍ତି ବିବର୍ଣ୍ଣରୁ ମୁଖ ଦିଶଇ ବିଭଙ୍ଗ ।
ସରସ୍ୱତୀ ନଦୀର ଏ ଦଶା ଦେଖି ଋଷି
କହିଲେ କିମ୍ପାଇ ଭୟ କରୁ ଶୁଭ୍ରକେଶୀ ।
ତୋର ସ୍ରୋତ ଜଳେ ମୋତେ ନିଅତୁ ଭସାଇ
ମାରୁ ମୋତେ ବିଶ୍ୱାମିତ୍ର ତୁହି ପାଅ ତ୍ରାହି ।
କୃପାଶୀଳ ଋଷିଙ୍କର ଶୁଣି ଏ ବଚନ
ମହାନଦୀ ସରସ୍ୱତୀ ହୋଇଣ ବିଷନ୍ନ ।
ତାଙ୍କ ଆଶ୍ରମକୁ ଦେଲେ ଜଳରେ ବୁଡ଼ାଇ
ଭଉଁରିରେ ବୁଡ଼ିଗଲେ ସେ ମୁନି ଗୋସାଇଁ ।
ଆତଙ୍କେ ବୋଇଲେ ମୋତେ ରଖ ସରସ୍ୱତୀ
ବ୍ରହ୍ମ ସରୋବରୁ ତୁହି ହୋଇଛୁ ଉତ୍ପତ୍ତି ।
ପରମ ପବିତ୍ର ଅଟେ ତୋହର ସଲିଳ
ତୁ ଦେବୀ ବିନାଶ କରୁ କଳୁଷ ସକଳ ।
ଇଚ୍ଛା ଅନୁସାରେ କରୁ ଯେଣେ ତେଣେ ଗତି
ତୋର ଜଳ ମେଘରୂପେ ଶୂନ୍ୟେ ଅବସ୍ଥିତି ।
ତୋହର ମହିମା କେତେ କେ ପାରିବ କହି
ମୁଁ କାହୁଁ କହିବି ମୋତେ ଅଗୋଚର ସେହି ।
ସ୍ୱାହା ସ୍ୱଧା ବାଣୀ ତୁହି ପୁଷ୍ଟି ଧୃତି କୀର୍ତ୍ତି
ତୁହିଁ ସିଦ୍ଧି ତୁହି କ୍ଷମା ତୁହି ପୁଣି ଶାନ୍ତି ।
ସମସ୍ତ ଜଗତ ଅଟେ ତୋହର ଆୟତ୍ତ
ସର୍ବଭୂତେ ବାଣୀ ରୂପେ ତୋର ଅବସ୍ଥିତ ।
ଏହି ରୂପେ ସ୍ତୁତି କଲେ ଯହୁଁ ମହାଯତି
ପ୍ରସନ୍ନ ହୋଇଣ ଭଗବତୀ ସରସ୍ୱତୀ ।
ସ୍ରୋତ ଜଳେ ତାଙ୍କୁ ସୁଖେ ନେଲେକ ଭସାଇ
ଯେସନେ ଜନନୀ କୋଳେ ଶିଶୁ ରହିଥାଇ ।
କିଛିମାତ୍ର କଷ୍ଟ ମନେ ନୋହିଲା ତାଙ୍କର
ସ୍ରୋତେ ସୁଖେ ଭାସି ଭାସି ଗଲେ ମୁନିବର ।
ଲାଗିଲେକ ବିଶ୍ୱାମିତ୍ର ଆଶ୍ରମ ପାଖରେ
ସରସ୍ୱତୀ ଦେବୀ ତହୁଁ ଗଲେ ଖରତରେ ।
କହିଲେକ ବିଶ୍ୱାମିତ୍ର ଆଗରେ ସେ ଯାଇଁ
ବଶିଷ୍ଠ ମୁନିଙ୍କି ସ୍ରୋତେ ଆଣିଲି ଭସାଇ ।
ଶୁଣି ବିଶ୍ୱାମିତ୍ର ମୁନି ସାନନ୍ଦ ହୋଇଲେ
ଉଠି ଯାଇଁ ବଶିଷ୍ଠଙ୍କୁ ନୟନେ ଦେଖିଲେ ।
ଆଶ୍ରମ ନିକଟେ କୂଳେ ଲାଗିଛନ୍ତି ଋଷି
ଦେଖି ସରସ୍ୱତୀଙ୍କି ସେ ବହୁତ ପ୍ରଶଂସି ।
ଆଶ୍ରମକୁ ଗଲେ ଅସ୍ତ୍ର ଆଣିବା ନିମନ୍ତେ
ତାହା ଦେଖି ସରସ୍ୱତୀ ବିଚାରିଲେ ଚିତ୍ତେ ।
ବଡ଼ ନିଦାରୁଣ ଅଟେ ଏହି ମୁନିବର
ତିଳେ ମାତ୍ର ଚିତ୍ତେ ଦୟା ନାହିଁ ଏହାଙ୍କର ।
ଏଡ଼େବଡ଼ ମୁନିଙ୍କି ସେ ସଂହାରିବା ପାଇଁ
ଅସ୍ତ୍ର ଆଣିବାକୁ ଗଲେ ଆଶ୍ରମକୁ ଧାଇଁ ।
ମାଇଲେ ଏ ବ୍ରହ୍ମହତ୍ୟା ଦୋଷ ହେବ ମୋର
ଏମନ୍ତ ବିଚାରି ଦେବୀ ହୃଦୟ ମଧ୍ୟର ।
ସ୍ରୋତଜଳେ ପୁଣି ତାଙ୍କୁ ନେଲେକ ଭସାଇ
ବିଶ୍ୱାମିତ୍ର ଅସ୍ତ୍ର ଧରି ଅଇଲେକ ଧାଇଁ ।
ଦେଖିଲେକ ସେ ସ୍ଥାନରେ ବଶିଷ୍ଠ ନାହାନ୍ତି
କ୍ରୋଧେ ପୁଣିବୋଇଲେସେ ଆଲୋ ସରସ୍ୱତୀ ।
ମୋତେ ତୁ ଠକିଲୁ ଏବେ ଘେନ ମୋର ଶାପ
ରୁଧିର ବିଲିପ୍ତ ହେଉ ଏ ତୋହର ଆପ ।
ରାକ୍ଷସଗଣରେ ତୁହି ହୁଅ ଲୋ ମିଳିତ
ଏହିପରି ଶାପ ଯହୁଁ ଦେଲେ ଗାଧିସୁତ ।
ସରସ୍ୱତୀ ଜଳ ହେଲା ଶୋଣିତ ତକ୍ଷଣେ
ଏଥୁ ଅନନ୍ତରେ କଥା ଶୁଣ ଋଷିଗଣେ ।

ବହିଲା ରୁଧିର ଜଳ ବରଷେ ପର୍ଯ୍ୟନ୍ତ
ସରସ୍ୱତୀ ଜଳ ଯହୁଁ ହୋଇଲା ଏମନ୍ତ ।
ଗନ୍ଧର୍ବ ଅପ୍‌ସରାଗଣ ଋଷି ଦେବଗଣ
ସରସ୍ୱତୀର ଏ ଦଶା କରି ଦରଶନ ।
ଅତ୍ୟନ୍ତ ଦୁଃଖିତ ହେଲେ ହରି ହରି ଭାଷି
ରାକ୍ଷସପିଶାଚ ଭୁତ ଅନ୍ତରୀକ୍ଷ ବାସୀ ।
ସେ ଶୋଣିତ ଜଳ ପାନ କରି ଆନନ୍ଦରେ
ହାସ୍ୟ ନୃତ୍ୟ ରସେ ମାତି ଗାଇଲେ ସୁସ୍ୱରେ
ସ୍ୱର୍ଗ ସମ୍ପଦ କି ଲାଭ ହୋଇଲା ତାହାଙ୍କୁ
ଗର୍ବ କରି ନ ମାନିଲେ ଜଗତେ ତାହାକୁ ।
ଏଥୁ ଅନ୍ତେ କିଛି କାଳ ହୋଇଲା ଅତୀତ
ଏକ ଦିନେ ଋଷିଗଣ ହେଲେ ଉପଗତ ।
ତୀର୍ଥ ଯାତ୍ରା ଅର୍ଥେ ଶତ ଯୋଜନ ପର୍ଯ୍ୟନ୍ତେ
ସରସ୍ୱତୀର ଏ ଦଶା ଦେଖି ନେତ୍ରପଥେ ।
ମନମଧ୍ୟେ ବିଚାରିଲେ ବସି ତପୋଧନେ
ଦେଖ ନିଶାଚରେ ମତ୍ତ ଏହା ଜଳପାନେ ।
ପାପନାଶିନୀ ଏ ନଦୀ ହୋଇଲା ଏମନ୍ତ
ଭୟଙ୍କର ନିଶାଚରେ ପିଇହେଲେ ତୃପ୍ତ ।
ରୁଧିର ହେବାରୁ ସିନା ଆନନ୍ଦେ ରାକ୍ଷସେ
ରକ୍ତ ପାନ କରୁଛନ୍ତି ଦିବା ନିଶି ତୋଷେ ।
କି କରିବା କେମନ୍ତେ ଏ ହୋଇବ ଉଦ୍ଧାର
ନୋହିଲେ ହୋଇବ ନିଶ୍ଚେ ଜଗତସଂହାର ।
ରକ୍ତ ପିଇ ନିଶାଚରେ ହୋଇବେ ବଳିଷ୍ଠ
ଆମ୍ଭମାନଙ୍କର ନିଶ୍ଚେ କରିବେ ଅନିଷ୍ଟ ।
ଯାଗଯଜ୍ଞ ଆମ୍ଭେ କିଛି କରି ନ ପାରିବା
ଯେବେ ଏ ବିଷୟେ ବେଗେ ଯତ୍ନ ନ କରିବା
ଏମନ୍ତ ବିଚାରି ସେହି ତପୋଧନଗଣ
ସରସ୍ୱତୀକି ଯେ ଡାକି କହିଲେ ଏସନ ।
ପବିତ୍ର ସଲିଳା ତୁହି ଆଗୋ ସରସ୍ୱତୀ
ସରିଦ୍‌ବରା ବୋଲି ତୋତେ ସମସ୍ତେ ଡାକନ୍ତି
କି ନିମନ୍ତେ ହେଲା ତୋର ଜଳ ଯେ ଶୋଣିତ
ତୋତେ ଦେଖି ଆମ୍ଭମନ ହେଉଛି ବ୍ୟଥିତ ।
ଏହାର କାରଣ ତୁ ଗୋ କହ ଆମ୍ଭ ଆଗେ
ଏହା ଶୁଣି ସରସ୍ୱତୀ କାନ୍ଦି ଉଦବେଗେ ।
ବୋଇଲେ କି କହିବି ମୁଁ ମୋର କର୍ମ ଦୋଷ
ବିଶ୍ୱାମିତ୍ର ଶାପ ଦେଲେ ମନେ ବହି ରୋଷ ।
କିଛି ମାତ୍ର କରିନାହିଁ ତାଙ୍କ ଅପକାର
ବିନାଦୋଷେ ଅଭିଶାପ ଦେଲେ ମୁନିବର ।
ଏହାକହି ଜଣାଇଲେ ପୂର୍ବର ବୃତ୍ତାନ୍ତ
ଯେମନ୍ତେ ବିବାଦ କଲେ ଦୁଇ ତପୋବନ୍ତ ।
ସେ ସମସ୍ତ କଥା ଶୁଣି ଋଷିମାନେ ଗଲେ
ଅରୁଣା ନଦୀରୁ ସରସ୍ୱତୀଙ୍କି ଆଣିଲେ ।
ଅତି ପବିତ୍ର ସେ ଜଳ ନାଶଇ ଦୁଷ୍କୃତ
ସେ ଜଳରେ ସରସ୍ୱତୀ ହୋଇଲା ପବିତ୍ର ।
ରୁଧିରାକ୍ତ କଳେବର ଗଲା ତାର କେଣେ
ଦୁଃଖିତ ହୋଇଲେ ଦେଖି ନିଶାଚରଗଣେ ।
ସମସ୍ତେ ମିଳିତ ହୋଇ ଆସି ଏକାବେଳେ
ଋଷିମାନଙ୍କର ଆଗେ କହିଲେ ସକଳେ ।
ସ୍ୱଭାବେତ ଆମ୍ଭେ ଧର୍ମହୀନ କ୍ଷୁଧାତୁର
କେତେବେଳେ କ୍ଷୟ ନାହିଁ ଆମ୍ଭମାନଙ୍କର ।
କଦାପି ନକରୁ ପାପ ଇଚ୍ଛା ଅନୁସାରେ
ଆପଣଙ୍କ କୃପା ଆଉ ଦୁଷ୍କୃତ ବଳିରେ ।
ଆମ୍ଭମାନଙ୍କର ପକ୍ଷ ହୋଇଲା ବର୍ଦ୍ଧିତ
ଯେଉଁ କାରଣରୁ ବ୍ରହ୍ମ ରାକ୍ଷସ ଆମ୍ଭେତ ।
ଏରୂପେ କୁକାର୍ଯ୍ୟ କରି କ୍ଷତ୍ରି ଶୂଦ୍ର ବୈଶ୍ୟ
ବ୍ରାହ୍ମଣ ବିଦ୍ୱେଷୀ ହୋଇ ହୁଅନ୍ତି ରାକ୍ଷସ ।
ଗୁରୁ ମାତା ପିତା ଦ୍ୱେଷୀ ହୁଏ ଯେଉଁଜନ
ଆବର କରଇ ବୃଦ୍ଧଜନଙ୍କୁ ଅମାନ୍ୟ ।
ରାକ୍ଷସ ଯୋନିରେ ସେହି ଜନମ ହୁଅଇ
ପାପିନୀ କାମିନୀ ଯୋନି ଦୋଷୁଁ ଏ ଘଟଇ ।
ଆପଣତ ଋଷିଗଣ ପବିତ୍ର ଆବର
ସକଳ ଲୋକଙ୍କୁ ପରିତ୍ରାଣ କରିପାର ।
କୃପାକରି ଆମ୍ଭଙ୍କୁ ଯେ ନିଅନ୍ତୁ ଉଦ୍ଧାରି
ସାଧୁ ଆଶ୍ରାକରି ପାପିମାନେ ଯାନ୍ତି ତରି ।
ତାହାଙ୍କର ଏ ବଚନ ଋଷିଗଣ ଶୁଣି
ଆପଣା ଆପଣା ମଧ୍ୟେ କରନ୍ତି ଭାଳେଣି ।
ଛିଙ୍କ ଆଉ ପୋକ ପଡ଼ିଥାଏ ଯେଉଁ ଅନ୍ନେ
ଭୁଞ୍ଜି ଛାଡ଼ିଥାନ୍ତି ଯାହା ଅବଶିଷ୍ଟ ଜନେ ।
ଯେବଣ ଅନ୍ନରୁ ବାଳ ହୁଅଇ ବାହାର
ରାକ୍ଷସେ କରନ୍ତି ସେହି ଅନ୍ନକୁ ଆହାର ।
ନିଃଶ୍ୱାସ ଦୁଷିତ ଅନ୍ନ ରାକ୍ଷସଙ୍କ ଭକ୍ଷ
ଜ୍ଞାନିଙ୍କର ଏ ସମସ୍ତ ଅଟଇ ଅଭକ୍ଷ ।

ଯେ ଅବା ଏମନ୍ତ ଅନ୍ନ ଭୋଜନ କରଇ
ରାକ୍ଷସ ଭୋଜନ ବୋଲି ତାହାକୁଟି କହି ।
ଏମନ୍ତ ବିଚାର କରି ତପୋଧନମାନେ
ରାକ୍ଷସଙ୍କ ମୋକ୍ଷ ଅର୍ଥେ ତୀର୍ଥର ଶୋଧନେ ।
ମନରେ ସଂକଳ୍ପ କରି କଲେକ ଉଦ୍ୟମ
କରାଇଲେ ସରସ୍ୱତୀ ଅରୁଣା ସଙ୍ଗମ ।
ସେହି ଦୁଇ ଗୋଟି ନଈ ଜଗତେ ବିଖ୍ୟାତ
ତାହାଙ୍କ ସଙ୍ଗମ ସ୍ଥାନେ ମିଳି ଋଷିବ୍ରାତ ।
ସ୍ନାନ କରି ଉପବାସେ ରହି ତିନିରାତି
ସର୍ବ ପାପ ବିମୋଚନ କରିଣ ବୋଲନ୍ତି ।
କଳିଯୁଗେ ହେବ ଏହି ତୀର୍ଥ ମଧ୍ୟେ ସାର
ଏ ତୀର୍ଥରେ ତିନିରାତି ରହି ଅନାହାର ।
ଯେ ସ୍ନାନ କରିବ ସେହି ମୁକତି ଲଭିବ
ତାହାର ଦେହରୁ ସର୍ବ ପାପ ଛାଡ଼ିଯିବ ।
ଦିବ୍ୟ ମାଲ୍ୟ ଦିବ୍ୟ ବସ୍ତ୍ର ପିନ୍ଧି ସେହି ଜନ
ସୁରନାରୀଗଣ ସଙ୍ଗେ ହୋଇବ ମିଳନ ।
ଏମନ୍ତ ଶୁଣି ସେ ବ୍ରହ୍ମରାକ୍ଷସେ ତକ୍ଷଣେ
ସ୍ନାନ କରି ଉପବାସୀ ହୋଇ ଜଣେ ଜଣେ ।
ସକଳ ପାପରୁ ମୋକ୍ଷ ହୋଇ ଅନ୍ତରୀକ୍ଷେ
ବିମାନ ଆରୋହୀ ଗଲେ ଦେଖିଲେ ପ୍ରତ୍ୟକ୍ଷେ
ଏମନ୍ତେ ସେ ତୀର୍ଥ ଗୋଟି ହୋଇଲା ଶୋଧନ
ଦୀନ ଗୋପୀନାଥ ପାପ ନାଶ ଋଷିଗଣ ।

=+=

## କୁରୁକ୍ଷେତ୍ରାଦି ତୀର୍ଥାନୁ କୀର୍ତ୍ତନ

ପୁନପପି କହିଲେ ସେ ଲୋମହରଷଣ
ସେହି ସ୍ଥାନେ ପୂର୍ବକାଳେ ସେହି ଋଷିଗଣ ।
କରିଥିଲେ ଚାରିଗୋଟି ସମୁଦ୍ର ନିର୍ମାଣ
ସେ ସକଳ ସମୁଦ୍ରରେ ଯେ କରଇ ସ୍ନାନ ।
ଗୋ ସହସ୍ର ଦାନର ସେ ଫଳ ଲାଭ କରେ
ତପେ ଦୁଷ୍କୃତୀର ଦୋଷ ନ ରହେ ଶରୀରେ ।
ଶତିକ ନାମରେ ଅଛି ତୀର୍ଥ ଯେ ଆବର
ଶତସାହସ୍ରକ ତୀର୍ଥ ଅଛି ଦ୍ୱିଜବର ।
ସେ ଦୁଇ ତୀର୍ଥରେ ସ୍ନାନ କରଇ ଯେ ଜନ
ସହସ୍ରେ ଗୋ ଦାନ ସଙ୍ଗେ ତା ଫଳ ସମାନ
ସେହି ସରସ୍ୱତୀ ତଟେ ଅଛି ସେହି ତୀର୍ଥ
ତହିଁରେ ଯେ ସ୍ନାନ କରେ ତା ଜନ୍ମ କୃତାର୍ଥ ।
ରାଜସୂୟ ଯଜ୍ଞ ଫଳ ଲଭଇ ସେ ଜନ
ତହୁଁ ଶ୍ରଦ୍ଧାବନ୍ତ ହୋଇ ଯେ କରେ ଗମନ ।
ଜିତେନ୍ଦ୍ରିୟ ହୋଇ ରେଣୁକାଷ୍ଟରେ ମିଳଇ
ମାତୃଭକ୍ତିରେ ଯେ ପୁଣ୍ୟ ସେ ପୁଣ୍ୟ ଲଭଇ ।
କୁମାରାଭିଷେକ ନାମେ ତୀର୍ଥ ଅଛି ଜାଣ
ସେ ତୀର୍ଥେ ସେବନ୍ତି ନିତ୍ୟ ଯାଇଁ ବିପ୍ରଗଣ ।
ଓଜସତୀର୍ଥ ଯେ ଋଣ ମୋଚନ ଆବର
ଏହି ତିନିଗୋଟି ତୀର୍ଥ ଜାଣ ତୀର୍ଥବର ।
ଯଶସ୍ୱୀ କୁମାରପୁର ପାଇ କଲେ ସ୍ନାନ
ଚୈତ୍ର ଶୁକ୍ଳପକ୍ଷ ଷଷ୍ଠୀ ତିଥିରେ ଯେ ଜନ ।
ଶ୍ରାଦ୍ଧ କଲେ ଗୟା ଶ୍ରାଦ୍ଧ ଫଳ ସେହୁ ପାଇ
ପୂର୍ବେ ବାୟୁ କହିଛନ୍ତି ଶୁଣ ତା କହଇଁ ।
ସନ୍ନିହତୀ ତୀର୍ଥେ ଶ୍ରାଦ୍ଧ କଲେ ଯେଉଁ ଫଳ
ଏ ତୀର୍ଥରେ ଶ୍ରାଦ୍ଧ କଲେ ମିଳେ ସେ ସକଳ ।
ଏଣୁ ଏ ତୀର୍ଥରେ ଶ୍ରାଦ୍ଧ କରିବା ବିହିତ
ଯେଣୁ ସେ ତୀର୍ଥର ଫଳ ହୁଅଇ ସଞ୍ଚିତ ।
ଚୈତ୍ରମାସ ଶୁକ୍ଳପକ୍ଷ ତିଥିରେ ଯେ ଜନ
ସ୍ନାନ କରି ପିତୃଙ୍କୁ କେ କରେ ଜଳଦାନ ।
ତାହାର ସଲିଳ ଯାକ ଅକ୍ଷୟ ହୁଅଇ
ପଞ୍ଚବଟ ନାମେ ତୀର୍ଥ ସେଠାରେ ଅଛଇ ।
ତ୍ରିଲୋକ ବିଖ୍ୟାତ ଅଟେ ସେହି ତୀର୍ଥ ଗୋଟି
ଯୋଗ ମୂର୍ତ୍ତି ଧରିଛନ୍ତି ସେ ସ୍ଥାନେ ଧୂର୍ଜଟି ।
ସ୍ନାନ କରି ମହେଶଙ୍କୁ ଅର୍ଚ୍ଚନା ଯେ କରେ
ଗାଣପତ୍ୟ ଲଭି ବସେ ଦେବଙ୍କ ସଙ୍ଗରେ ।
କୁରୁକ୍ଷେତ୍ର ନାମେ ତୀର୍ଥ ଜଗତେ ବିଦିତ
କୁରୁ ରାଜାଙ୍କୁ ତ ଜାଣ ଆହେ ମୁନିବ୍ରାତ ।
ସେ କ୍ଷେତ୍ରକୁ ଚଷି ତହିଁ କରିଥିଲେ ତପ
ତାହାଙ୍କ କଠୋର ତପ ଦେଖି ସୁରଭୂପ ।
ବୋଲିଥିଲେ ହେ ରାଜର୍ଷି ତୁମ୍ଭେ ତ ସୁ ବ୍ରତ
ତୁମ୍ଭର ଏ ତପେ ହେଲା ସନ୍ତୁଷ୍ଟ ମୋ ଚିତ୍ତ ।
ଏହି କୁରୁକ୍ଷେତ୍ରେ ଯଜ୍ଞ ଯେ ଜନ କରିବ
ପାପ ବିନାଶି ସେ ପୁଣ୍ୟ ଫଳକୁ ପାଇବ ।
ଏହା କହି ଅବହାସ କରି ତହୁଁ ଗଲେ
ପୁନର୍ବାର ଆସି ତାଙ୍କୁ ଅବହାସ କଲେ ।
ଏହିପରି ବାର ବାର ଆସି ସୁରପତି
କୁରୁଙ୍କୁ ପଚାରି ଅବହାସ କରିଯାନ୍ତି ।

ଯେତେବେଳେ ଉଗ୍ରତପେ ସେହି ମହୀପାଳ
ଦିଶିଲେ ଅନଳତୁଲ୍ୟ ଦେଖି ଆଖଣ୍ଡଳ ।
ସୁପ୍ରସନ୍ନ ହୋଇ ତାଙ୍କୁ କହିଲେ ଏମନ୍ତ
ତୁମ୍ଭର କି ମନୋରଥ କହ ମୋ ଅଗ୍ରତ ।
ଏହା ଶୁଣି ବୋଇଲେକ କୁରୁ ନରପତି
ଶ୍ରଦ୍ଧାରେ କରିବେ ଯେହୁ ଏକ୍ଷେତ୍ରେ ବସତି ।
ତାହାଙ୍କର ହେବ କେହ୍ନେ ବ୍ରହ୍ମପଦ ଲାଭ
ପାପ ବିନାଶନକାରୀ ଯେହ୍ନେ ପଦ୍ମନାଭ ।
ତେସନେ ଯେ ପଞ୍ଚପାପୀ ଏ ସ୍ଥାନକୁ ଆସି
ପାତକ ବିନାଶି ହେବେ ବଇକୁଣ୍ଠବାସୀ ।
ଆବର ଏ ପୁଣ୍ୟକ୍ଷେତ୍ରେ ଯେ କରିବ ସ୍ନାନ
ଲଭିବ ପରମଗତି ହେ ସୁରରାଜନ ।
ହେ ଦ୍ୱିଜସତ୍ତମଗଣ ସେହି ପୁଣ୍ୟମୟ
କ୍ଷେତ୍ରକୁ ଯେ ଦେଖିବ ତା ପାପ ହେବ କ୍ଷୟ ।
ପାଇବ ପରମପଦ ଏ କଥା ନିୟତ
କୁରୁ ନୃପତିଙ୍କ ଆଜ୍ଞା ଅଟେ ଅଲଙ୍ଘିତ ।
ଭୁବନ ବିଖ୍ୟାତ ତୀର୍ଥ ନାମ ଅନରକ
ତଦୁତ୍ତାରେସେ ତୀର୍ଥକୁ ଯିବେ ପୁଣି ଲୋକ ।
ପୂର୍ବେ ତହିଁ ଦିନେ ବ୍ରହ୍ମା ଶିବ ଋଷି ଘେନି
ବାସ କରି ରହିଥିଲେ ଆହେ ସର୍ବମୁନି ।
ରୁଦ୍ରାଣୀ ଅଛନ୍ତି ତାର ପଶ୍ଚିମ ଦିଗରେ
ବିଜେ କରିଛନ୍ତି ପଦ୍ମନାଭ ତା ଉତ୍ତରେ ।
ମଧ୍ୟେ ଅନରକ ତୀର୍ତ ଲୋକେ ତା ଦୁର୍ଲ୍ଲଭ
ସ୍ନାନ କଲେ ଅକ୍ଲେଶରେ ହୁଏ ମୋକ୍ଷଲାଭ ।
ବୈଶାଖ ମାସରେ ଯେବେ ଅଷ୍ଟମୀ ତିଥିରେ
ପଡ଼ଇ ମଙ୍ଗଳବାର ଆସି ଏ ତୀର୍ଥରେ ।
କେବଳ କରିବ ସ୍ନାନ ଲଭିବ ସୁଗତି
ଆବର ଶାସ୍ତ୍ରରେ ଅଛି ବିଧି ଯେଉଁମତି ।
କହୁଅଛୁ ତାହା ଶୁଣ ହୋଇ ସାବଧାନ
କଳଶେକ କରିବ ସେ ତୀର୍ଥରେ ପ୍ରଦାନ ।
ସେ କଳଶେ ରହିଥିବ ଚାରିଭାଗ ସ୍ୱର୍ଣ୍ଣ
ଅପୂର୍ଣ୍ଣରେ ଶୋଭାପାଉଥିବ ହୋଇପୂର୍ଣ୍ଣ ।
ତାହାର ପ୍ରଦାନେ ପାପ ମୋଚନ ହୋଇବ
ପ୍ରଥମେ କରକ ସବୁ ରତ୍ନେ ପୁରାଇବ ।
ତହିଁରେ କରିବ ଆଗ ଦେବତାଙ୍କୁ ପ୍ରୀତ
ତଦନ୍ତେ କଳଶ ଯୁଗ୍ମ କରି ସୁଶୋଭିତ ।
ପ୍ରଦାନ କରିବ ଆହେ ଦ୍ୱିଜୋତ୍ତମଗଣ
ଏ ବିଧିରେ ଅଭିଷେକ କରିବ ଯେ ଜନ ।
ସେ ସର୍ବକଳୁଷ ନାଶି ବିମୁକ୍ତ ହୋଇବ
ପରମପଦକୁ ଜାଣ ଅକ୍ଲେଶେ ପାଇବ ।
ପଡ଼ିଥିଲେ ଷଷ୍ଠୀତିଥି ମଙ୍ଗଳବାରରେ
ଯେବେ କେହି ଲୋକ ଆସି ଏ ପୁଣ୍ୟ ତୀର୍ଥରେ ।
ଯାହା କଛି କାର୍ଯ୍ୟ କରେ ଇଚ୍ଛାରେ ତାହାର
ତହିଁରେ ସେ ମୋକ୍ଷ ହୋଇ ଲଭେ ଦିବ୍ୟପୁର ।
ପାପ ପ୍ରଶମନକାରୀ ଯେ କାମ୍ୟକ-ବନ
ତହିଁରେ ପ୍ରବେଶ କଲାମାତ୍ରେ ଜାଣ ଜନ ।
ବିନାଶି କଳୁଷରାଶି ଲଭେ ମୋକ୍ଷପଦ
ସେ ବନକୁ ଆଶ୍ରାକରି ସୂର୍ଯ୍ୟ ରଶ୍ମିପଦ ।
ତାହାର ଦର୍ଶନ ମୋକ୍ଷ ମିଳେ ମୁନିଗଣ ।
ରବିବାରେ ଆସି ସ୍ନାନ କରେ ଯେଉଁ ଜନ ।
ମନଃଶୁଦ୍ଧ ବାଞ୍ଛାସିଦ୍ଧ ହୁଅଇ ତାହାର
ଶୁଣିଲତ ମୁନିମାନେ ତୀର୍ଥ ସମାଚାର ।
ସେ ମୁନିମାନଙ୍କ ପାଦପଦ୍ମେ ରଖି ଚିତ୍ତ
ଲୋକହିତେ ଗୋପୀନାଥ କଲା ଏହା ଗୀତ ।
ସାଧୁଜନେ ନ ଘେନିବ ମୋର ଦୋଷାଦୋଷ
ମୁହିଁପରା ସଦା ତୁମ୍ଭ ପାଦତଳ ଦାସ ।

= + =

## ସ୍ଥାଣୁ ତୀର୍ଥାଦି କଥନ

ପଚାରିଲେ ଋଷିଗଣ ହେ ଲୋମହର୍ଷଣ
କାମ୍ୟକର ପୂର୍ବଭାଗେ ବୋଇଲେ ଆପଣ ।
ଦେବଗଣ ନିସେବିତ କୁଞ୍ଜୋକ ଅଛଇ
ବିସ୍ତାରିଣ କହ ତୀର୍ଥ ହେଲା ସେ କିମ୍ପାଇଁ ।
ଲୋମ ହରଷଣ ମୁନି କହିଲେ ସକଳେ
ତୀର୍ଥର ମହିମା ଶୁଣ ମନର ନିଶ୍ଚଳେ ।
ଶୁଣିଲେ ସୁଜ୍ଞାନୀ ମୁନିଗଣଙ୍କ ଚରିତ
ଦେହେପାପ ନ ରହିବ ହୋଇବ ପବିତ୍ର ।
ନଇମିଷବାସୀ ଋଷି କୁରୁକ୍ଷେତ୍ରେ ଆସି
ସ୍ନାନଅର୍ଥେ ସରସ୍ୱତୀ ତୀର୍ଥରେ ପ୍ରବେଶି ।
ତୀର୍ଥେକ କଳ୍ପନା କଲେ ସେ ଅତି ପ୍ରଶସ୍ତ
ଯଜ୍ଞୋପବୀତୀତୋ ନାମ ଦେଲେ ଋଷିବ୍ରାତ ।
କେତେକ ମୁନି ସେ ତୀର୍ଥେ ନ ପାରିଲେ ପଶି
ସେ ଚକ୍ରତୀର୍ଥ ମହିମା ଶୁଣ ହେ ବିଶେଷି ।

ରନ୍ତକ ଆଶ୍ରମ ଜାଣ ଦୀର୍ଘ ପ୍ରତି ଯେତେ
ଚକ୍ରକ ତୀର୍ଥର ଅଟେ ବିସ୍ତାରହିଁ ଯେତେ ।
ଏହି ତୀର୍ଥ ବିପ୍ରଗଣେ ପୂରିଥିବା ଦେଖି
ତାଙ୍କ ହିତେ ସରସ୍ୱତୀ କୁଣ୍ଡ ଏକ ରଖି ।
ପଶ୍ଚିମ ମାର୍ଗରେ ତହୁଁ ଦେବୀ ଗଲେ ବହି
ପ୍ରାଣୀ ହିତେ ସ୍ଥାନେ ସ୍ଥାନେ ଗଲେ ରହି ରହି ।
ସେ ଦେବୀର ପୂର୍ବସ୍ରୋତେ କରେ ଯେହୁସ୍ନାନ
ଗଙ୍ଗା ସ୍ନାନ ଫଳ ଲାଭ କରଇ ସେ ଜନ ।
ମିଳିଛି ନର୍ମଦା ନଦୀ ତା ଦକ୍ଷିଣ ସ୍ରୋତେ
ପଶ୍ଚିମେ ଯମୁନା ନଦୀ ରହିଛି ଆଶ୍ରିତେ ।
ଏହି ନଦୀ ହୁଏ ଯେବେ ଉତ୍ତର ବାହିନୀ
ସିନ୍ଧୁନଦୀ ବୋଲନ୍ତି ଯେ ତାକୁ ସର୍ବପ୍ରାଣୀ ।
ଏହି ରୂପେ ଦିଗେ ଦିଗେ ବହେ ସରସ୍ୱତୀ
ଭକ୍ତିରେ ସକଳ ଜନେ ତାହାଙ୍କୁ ପୂଜନ୍ତି ।
ସ୍ନାନ କଲେ ସର୍ବ ତୀର୍ଥ ସ୍ନାନ ଫଳ ମିଳେ
ପୁଣି କହୁଥାଇ ଶୁଣ ହେ ଋଷି ସକଳେ ।
ତହୁଁ ମଦନର ତୀର୍ଥେ କରିବ ଗମନ
ଏ ତୀର୍ଥ ବିହାର ନାମେ ଖ୍ୟାତ ତ୍ରିଭୁବନ ।
ଦେବେ ମିଳିଥିଲେ ଯହିଁ ଶିବଙ୍କ ଦର୍ଶନେ ।
ଦେବୀ ସହ ଶିବଙ୍କୁ ସେ ନଦେଖି ନୟନେ ।
କଲେ ଶିବ ନନ୍ଦୀଗଣପତିଙ୍କର ସ୍ତୁତି
ନନ୍ଦୀଶ୍ୱର ସୁପ୍ରସନ୍ନ ହୋଇ ତାଙ୍କ ପ୍ରତି ।
ବୋଇଲେ ଯେ ମହାଦେବ ଦେବୀର ସହିତ
ବିହାର ତୀର୍ଥରେ କ୍ରୀଡ଼ା ରସରେ ପ୍ରବୃତ୍ତ ।
ପୁଣି ଦେବେ ସପତ୍ନୀକ ହୋଇ ତହୁଁ ଗଲେ
ତାଙ୍କୁ ଦେଖି ମହାଦେବ ସନ୍ତୁଷ୍ଟ ହୋଇଲେ ।
ଆଉର କହିଲେ ଶ୍ରଦ୍ଧାଭରେ ଯେଉଁ ଜନ
ଏ ବିହାର ତୀର୍ଥ ଜଳେ କରିବଟି ସ୍ନାନ ।
ଧନଧାନ୍ୟ ପ୍ରିୟବସ୍ତୁ ମିଳିବ ତାହାକୁ
ଦୁର୍ଗା ତୀର୍ଥେ ଯାଇ ପୂଜା କରିବ ଦୁର୍ଗାଙ୍କୁ ।
ସ୍ନାନ କରି ପୂଜାରେ ସେ ଶିବଙ୍କୁ ତୋଷିବ
ଯେତେକ ଦୁର୍ଗତି ତାର ସବୁ କ୍ଷୟ ଯିବ ।
ସରସ୍ୱତୀ କୂପ ଅଛି ଯେଉଁ ସ୍ଥାନେ ରହି
ଦର୍ଶନ ମାତ୍ରକେ ତାକୁ ମୁକତି ମିଳଇ ।
ସକଳ ପାତକ ତାର ହୁଅଇ ମୋଚନ
ଶ୍ରଦ୍ଧାଭରେ ଯେଉଁ ଜନ ତହିଁ କରେ ସ୍ନାନ ।

ଦେବଗଣ ପିତୃଗଣ ତର୍ପଣ କରଇ
ତାହାର ସକଳ କଥା ଅକ୍ଷୟ ହୁଅଇ ।
ପିତୃ ତୀର୍ଥ ଅପେକ୍ଷା ଏ ଅଟଇ ପ୍ରଧାନ
ମାତୃ ପିତୃ ବ୍ରହ୍ମହତ୍ୟାକାରୀ ଯେଉଁ ଜନ ।
ଗୁରୁପତ୍ନୀ ହରିଥାଏ ଯେ ଜନ ଅଜ୍ଞାନୀ
ଏଥେଁ ସ୍ନାନ କଲେ ଶୁଦ୍ଧି ଲଭେ ସେହିପ୍ରାଣୀ ।
ତହିଁ ପୂର୍ବବାହିନୀ ଯେ ଦେବୀ ସରସ୍ୱତୀ
ପ୍ରତିଷ୍ଠାର୍ଥେ ଦେବମାର୍ଗେ ଗମନ କରନ୍ତି ।
ପ୍ରାଚୀ ସରସ୍ୱତୀ କରେ ଦୁଷ୍କୃତି ପବିତ୍ର
ପ୍ରାଚୀ ସରସ୍ୱତୀ ଯେ ରହେ ତିନିରାତ୍ର ।
ଦୁଷ୍କୃତ ମାତ୍ରକେ ତାର ନ ରହଇ ଦେହେ
ସର୍ବଦା ସୁକୃତ ଥାଇ ତାହାର ଆଶ୍ରୟେ ।
ନର ନାରାୟଣ ବ୍ରହ୍ମା ସ୍ଥାଣୁ ଋଷି ଦେବେ
ଏହାଙ୍କ ସହିତେ ଇନ୍ଦ୍ର ପ୍ରାଚୀ ନଦୀ ସେବେ ।
ପ୍ରାଚୀ ସରସ୍ୱତୀ ତୀରେ ଯେ ଶ୍ରାଦ୍ଧ କରଇ
ଇହ ପରଲୋକେ ତାକୁ ସକଳ ମିଳଇ ।
ପଞ୍ଚମୀରେ ପ୍ରାଚୀ ସେବାକଲେ ଲକ୍ଷ୍ମୀ ମିଳେ
ଶୁଦ୍ଧ ହେବ ସରସ୍ୱତୀ ପ୍ରାଚୀ ସ୍ନାନ ଫଳେ ।
ତ୍ରୈଲୋକ୍ୟ ଦୁର୍ଲ୍ଲଭ ତହିଁ ଉଶନସ ତୀର୍ଥ
ପରମ ଈଶ୍ୱର ଠାରେ ଶୁକ୍ର ରଖି ଚିତ୍ତ ।
ସିଦ୍ଧ ହୋଇ ଗ୍ରହମଧେ ହୋଇଲେ ଗଣନା
ପରମ ତୀର୍ଥର ସେବା କଲାରୁ ଉଶନା ।
ଶ୍ରଦ୍ଧାଭରେ ସେ ତୀର୍ଥର ସେବା ଯେହୁ କରେ
ସେ ପରମ ଗତି ଲଭେ ଇହ ଜଗତରେ ।
ସେ ତୀର୍ଥରେ ଶ୍ରାଦ୍ଧକରେ ଶ୍ରଦ୍ଧାରେ ଯେ ନର
ନିଶ୍ଚେ ସେ କରଇ ପିତୃଗଣଙ୍କ ଉଦ୍ଧାର ।
ବ୍ରହ୍ମତୀର୍ଥେ ଚତୁର୍ମୁଖ ଅଛନ୍ତି ଯେ ସ୍ଥାନେ
ଉପବାସ କରି ତହିଁ ଚତୁର୍ଦ୍ଦଶୀ ଦିନେ ।
ଚୈତ୍ର କୃଷ୍ଣ ଅଷ୍ଟମୀରେ ସେ ତୀର୍ଥରେ ରହି
ଶ୍ରଦ୍ଧାରେ ଭକ୍ତିରେ ପୁଣି ତାହାଙ୍କୁ ସେବଇ ।
ଆହେ ଦ୍ୱିଜୋତ୍ତମଗଣ ଜାଣ ସେହି ଜନ
ଅବ୍ୟକ୍ତ ପରମ ବ୍ରହ୍ମ କରଇ ଦର୍ଶନ ।
ପୁନରପି ଜନମ ସେ ନୋହିବ ସଂସାରେ
ସ୍ଥାଣୁତୀର୍ଥେ ଯିବ ପୁଣି ଏଥୁ ଅନନ୍ତରେ ।
ସହସ୍ର ଲିଙ୍ଗରେ ସେହି ହୋଇଛି ଶୋଭିତ
ସ୍ଥାଣୁବଟ ଦେଖି ହେବ ଶାପରୁ ମୁକତ ।

ବାମନ ପୁରାଣ କଥା ରସ ସୁଧାକର
ଗୋପୀନାଥ କହେ ଜନେ ପିଅ ନିରନ୍ତର ।

=✣=

## ବ୍ରହ୍ମାନୁ ଶାସନ

ପଚାରିଲେ ଋଷଗଣ କହ ମୁନିବର
ସ୍ଥାଣୁତୀର୍ଥ ସ୍ଥାଣୁବଟ ମହିମା ଆବର ।
କେଉଁ ରୂପେ ସନ୍ନିହତ ହୋଇଲା ଉତ୍ପତ୍ତି
ପାଂଶୁରେ କେମନ୍ତେ ଶୁଣି ହେଲା ପରିପୂର୍ତ୍ତି ।
କି ପୁଣ୍ୟ ହୁଅଇ ଲିଙ୍ଗଦର୍ଶନ ସ୍ପର୍ଶନେ
ସରୋବର କଥା କହ ଆମ୍ଭ ସନ୍ନିଧାନେ ।
ଏହା ଶୁଣି କହିଲେକ ଲୋମହରଷଣ
ଦେବତା ସ୍ୱରୂପ ସିନା ଅଟନ୍ତି ଆପଣ ।
ଶୁଣିଲେ ବାମନ ମହାପୁରାଣର କଥା
ବାମନ ପ୍ରସାଦେ ମୁକ୍ତି ହେବ ନୋହେ ମିଥ୍ୟା
ସ୍ଥାଣୁ ବଟମୂଳେ ଋଷି ସନତକୁମାର
ବାଲଖିଲ୍ୟା ଆଦି ଋଷି ଅଛନ୍ତି ଆବର ।
ଏ ସମୟେ ମାର୍କଣ୍ଡେୟ ଚିରଜୀବୀ ଋଷି
ବିନୟରେ ପଚାରିଲେ ସେ ସ୍ଥାନକୁ ଆସି ।
ଆହେ ମହାଭାଗ ତୁମ୍ଭେ ବ୍ରହ୍ମାର ନନ୍ଦନ
ସର୍ବଶାସ୍ତ୍ର ବିଶାରଦ ଅଟନ୍ତି ଆପଣ ।
ଯାହା କି ଶୁଣିଲେ ସର୍ବପାପ ଯିବ କ୍ଷୟ
ସେ ସର ମହିମା କହ ବ୍ରହ୍ମାର ତନୟ ।
କେମନ୍ତେ ତା ସ୍ଥିତି ହେଲା କହ ତା ପ୍ରମାଣ
ହେ ଦ୍ୱିଜ ସତ୍ତମ କର ସ୍ୱରୂପ ବଖାଣ ।
କେଉଁ ତୀର୍ଥ ଦୃଶ୍ୟ କେଉଁ ତୀର୍ଥ ବା ଅଦୃଶ୍ୟ
ନିକଟରେ ଯେତେ ସ୍ଥାଣୁ ଲିଙ୍ଗ ହୁଏ ଦୃଶ୍ୟ ।
ତା ମଧ୍ୟରେ କେଉଁ ଲିଙ୍ଗ ପବିତ୍ର ଅଟଇ
ଦେଖିଲା ମାତ୍ରେ ତକ୍ଷଣେ ମୁକତି ମିଳଇ ।
କି ରୂପେ କରିବେ ସ୍ଥାଣୁବଟ ଦରଶନ
କଲା ମାତ୍ରେ ପୁଣ୍ୟ ଫଳ ଲଭିବ ସେ ଜନ ।
କେମନ୍ତେ ହୋଇଲା ସେହି ବଟର ଉତ୍ପତ୍ତି
ବିସ୍ତାରି ତା ଆମ୍ଭଆଗେ କହ ମହାଯତି ।
ତୀର୍ଥ ପ୍ରଦକ୍ଷିଣ କଲେ ହୁଏ କେଉଁ ଫଳ
ତହିଁ ସ୍ନାନ କଲେ ହୁଏ କି ପୁଣ୍ୟ ତା ବୋଲ ।
ଗୁପ୍ତ ତୀର୍ଥ ଦେବଙ୍କୁ ହିଁ ଜଣା ଯେଉଁ ତୀର୍ଥ
କେମନ୍ତେ ସେ ସ୍ଥାନେ ହୁଏ ମହାପୁଣ୍ୟ ଜାତ ।
ଦେବ ଦେବ ସ୍ଥାଣୁ କିମ୍ବା ସରୋବର ବାସୀ
ଇନ୍ଦ୍ର କାହିଁପାଇଁ ତୀର୍ଥେ ପାଂଶୁ ଘେନି ଆସି ।
ପୁନର୍ବାର ପୂର୍ଣ୍ଣକଲେ ତାହାକୁ କେମନ୍ତେ
ସ୍ଥାଣୁ ତୀର୍ଥର ମାହାତ୍ମ୍ୟ ବଢ଼ିଲା ଯେମନ୍ତେ ।
ଚକ୍ରତୀର୍ଥେ କେଉଁରୂପେ ଫଳ ମିଳେ କହ
ସୂର୍ଯ୍ୟତୀର୍ଥ ସୋମତୀର୍ଥ ମହିମା ନିବହ ।
କିଏ ଶିବ ବିଷ୍ଣୁଙ୍କର ଅଟେ ଗୁପ୍ତ ସ୍ଥାନ
କେମନ୍ତେ ସେ ପ୍ରତିଷ୍ଠିତ ହେଲେ ବର୍ତ୍ତମାନ ।
ଆହେ ମହାଭାଗ ତାହା କରନ୍ତୁ ବର୍ଣ୍ଣନ
ସରସ୍ୱତୀ ନଦୀର ଯେ ଅଟେ ପୁଣ୍ୟ ସ୍ଥାନ ।
ବିରଞ୍ଚିଙ୍କ ପ୍ରସାଦରୁ ଦେବଙ୍କ ମହିମା
ଜାଣନ୍ତି ଯଥାର୍ଥ ରୂପେ ଆହେ ମହାତମା ।
କହିଲେକ ମହାମୁନି ଲୋମ ହରଷଣ
ମାର୍କଣ୍ଡେୟ ଋଷିକଥା କରିଣ ଶ୍ରବଣ ।
ତୀର୍ଥ ପ୍ରତି ଅତିଭକ୍ତି ଉଦେହେବା ଦେଖି
ମହାମୁନି ବ୍ରହ୍ମାତ୍ମଜ ମନେ ହୋଇ ସୁଖୀ ।
ପଲଙ୍କ ଶିଥିଳ କରି ହରଙ୍କୁ ପ୍ରଣମି
ପୂର୍ବେ ଯାହା ଶୁଣିଥିଲେ ବ୍ରହ୍ମାମୁଖୁଁ ପୁଣି ।
କହିବାକୁ ଆରମ୍ଭିଲେ ବିସ୍ତାରିଣ ତାହା
ବରଦାତା ଅଟନ୍ତି ଯେ ସର୍ବ ଲୋକ ନାହା ।
ମଙ୍ଗଳ ସ୍ୱରୂପ ମହାଦେବଙ୍କୁ ପ୍ରଣମି
କହୁଛି ତା ଯାହା କହିଥିଲେ ପଦ୍ମଯୋନି ।
ପୂର୍ବେ ଯେତେବେଳେ ହେଲା ଘୋର ଏକାର୍ଣ୍ଣବ
ସ୍ଥାବର ଜଙ୍ଗମ ଆଦି ମଲେ ସର୍ବଜୀବ ।
ଅଦ୍ଭୁତେ ବୃହତ ଅଣ୍ଡହୋଇଲା ସମ୍ଭୂତ
ପ୍ରଜାବୀଜ ସ୍ୱରୂପ ସେ ଜାଣ ଋଷିବ୍ରାତ ।
ଶୋଇବାକୁ ଆରମ୍ଭିଲେ ବ୍ରହ୍ମା ତହିଁ ରହି
ଏମନ୍ତେ ସହସ୍ର ଯୁଗ ଜାଣ ଗଲା ବହି ।
ତଦୁତ୍ତାରେ ବ୍ରହ୍ମା ପୁଣି ଉଠିଲେ ଚିଆଁଇ
କେବଳସେ ସତ୍ତ୍ୱଗୁଣ ଆଶ୍ରୟରେ ରହି ।
ଦେଖିଲେ ସକଳ ଲୋକ ଦିଶେ ଶୂନ୍ୟମୟ
ମୁଗ୍ଧ ହୋଇ କଲେ ରଜୋଗୁଣକୁ ଆଶ୍ରୟ ।
କେମନ୍ତେ ହୋଇବ ସୃଷ୍ଟି ଚିନ୍ତାକଲେ ବସି
ସୃଷ୍ଟି ରଜୋଗୁଣ ବୋଲି ବିଜ୍ଞଜନେ ଭାଷି ।
ଆବର ସତ୍ତ୍ୱହିଁ ଅଟେ ସ୍ଥିତିର ଯେ ଗୁଣ
ପ୍ରଳୟ ସମୟେ ଜାତ ତମୋଗୁଣ ପୁଣ ।

ସର୍ବବ୍ୟାପି ପୁରୁଷ ଯେ ସେହି ଭଗବାନ
ଗୁଣାବତୀ ବୋଲି ତାଙ୍କୁ କହନ୍ତି ସଜ୍ଜନ ।
ଜୀବନାମଧାରୀ ଜାଣ ଅଛନ୍ତି ଯେତେକ
ସେହିସିନା ତାହାଙ୍କର ଅଟନ୍ତି ବ୍ୟାପକ ।
ସେହି ବ୍ରହ୍ମା ସେ ଗୋବିନ୍ଦ ସନାତନ ହର
ସେହି ମହାତ୍ମା କେବଳ ତାହାଙ୍କୁ ଗୋଚର ।
ସର୍ବଜ୍ଞ ପୁରୁଷ ନିଶ୍ଚେ ସେହି ଗୁଣାତୀତ
ସେହି ପରମାତ୍ମା ସେହି ବିଦ୍ୟମାନ ନିତ୍ୟ ।
ତାହାଙ୍କୁ ଯେ ଜାଣଇ ସେ ମୋକ୍ଷକୁ ଜାଣଇ
ସେହିଟି ସଂସାରେ ଜାଣ ସର୍ବଜ୍ଞ ବୋଲାଇ ।
ଯାର ମନ ସ୍ଥିରଭାବେ ରହେ ତାଙ୍କ ପ୍ରତି
କିମ୍ପାଇ ସେ ତୀର୍ଥ ସେବା କରିବ ଯେ ଯତି ।
ଆଶ୍ରମ ଧର୍ମରେ ଅବା ରହିବ କିମ୍ପାଇ
ପରମାତ୍ମା ଜାଣ ନଦୀ ସ୍ୱରୂପ ଅଟଇ ।
ସଂଯମ ପବିତ୍ରତୀର୍ଥ ଅଟେ ସେ ନଦୀର
ସତ୍ୟହିଁ ଅଟଇ ସେହି ଆତ୍ମାନଦୀ ନୀର ।
ସେ ନଦୀର ଜଳଜନ୍ତୁ ଶ୍ରମ ଦମ ଆଦି
ପବିତ୍ରକାରିଣୀ ଜାଣ ଅଟଇ ସେ ନଦୀ ।
ସ୍ନାନ କଲା ଜନ ହୁଏ ପବିତ୍ର ସେ ଜଳେ
ଅନ୍ତରାତ୍ମା ପରିଶୁଦ୍ଧ ନୁହେଁ କି ସଲିଳେ ।
ଆତ୍ମଜ୍ଞାନ ରୂପ ସୁଖେ ରହିଥାଏ ସେହି
ପୁରୁଷ ପ୍ରଧାନ କର୍ମ ଅଟେ ସିନା ଏହି ।
ସାଧୁଏ ବୋଲନ୍ତି ତାଙ୍କୁ ଜାଣିବାହିଁ ମୂଳ
ପୁରୁଷର ଏକମାତ୍ର କର୍ମହିଁ କେବଳ ।
ଆତ୍ମାଲାଭ କାରୀ ଜନ ନିଷ୍କାମୀ ହୁଅଇ
ବ୍ରାହ୍ମଣର ମନ ଜାଣ ଏରୂପ ଅଟଇ ।
ଏକତା ସମତାଶୀଳ ସତ୍ୟତା ଯେ ସ୍ଥିତି
ଦଣ୍ଡନିଧାନ ଋଜୁତା କ୍ରିୟାର ନିବୃତ୍ତି ।
ଏ ସମସ୍ତ ଗୁଣରେ ସେ ଯୁକ୍ତ ହୋଇଥାଏ
ବ୍ରାହ୍ମଣର ମନ କେଭେ ତହିଁରୁ ନଯାଏ ।
ଆହେ ଦ୍ୱିଜୋତ୍ତମ ତୁମ୍ଭ ଅଗ୍ରତରେ ଜାଣ
ସଂକ୍ଷେପରେ କଲୁ ବ୍ରହ୍ମା ସ୍ୱରୂପ ବଖାଣ ।
ସେ ଜ୍ଞାନେ ତୁମ୍ଭର ହେବ ପରଂବ୍ରହ୍ମ ପ୍ରାପ୍ତି
ଏଥିରେ ସନ୍ଦେହ ନାହିଁ ଆହେ ମହାଯତି ।
ପରମାତ୍ମା ବ୍ରହ୍ମାଜନ୍ମ କହୁଅଛୁଁ ଶୁଣ
କି ନିମନ୍ତେ ହେଲା ବିଷ୍ଣୁ ନାମ ନାରାୟଣ ।

ସେ ବିଷୟେ ଶ୍ଳୋକ ଏକ ହୋଇଛି କଥିତ
ବିସ୍ତାରି କହୁଛୁଁ ଆମ୍ଭେ ଏବେ ତାର ଅର୍ଥ ।
ନରର ଅପତ୍ୟ ହେତୁ ଜଳ ନାମ ତାର
ସେ ଜଳରେ ଶୋଇଛନ୍ତି ଯେଣୁ ଚକ୍ରଧର ।
ସେ କାରଣୁ ତାଙ୍କ ନାମ ହେଲା ନାରାୟଣ
ଜଗତ ସେ ଶୁଦ୍ଧଜଳେ ହୋଇବାରୁ ଲୀନ ।
ଜାଣି ଅଣ୍ଡଭେଦ କଲେ ପ୍ରଭୁ ଭଗବାନ
ଓଁକାର ହୋଇଲା ତାହା ମଧ୍ୟରୁ ଉତ୍ପନ୍ନ ।
ସେ ଓଁକାରୁ ଭୁଅକ୍ଷର ହୋଇଲା ସମ୍ଭୂତ
ଭୁବଃ ଶବଦ ହୋଇଲା ତହୁଁ ପୁଣି ଜାତ ।
ତଦୁତ୍ତାରୁ ସ୍ୱଃ ଶବଦ ହୋଇଲା ତୃତୀୟେ
ବୋଲାଇଲା ଭର୍ଭୁ ବଃ ସ୍ୱଃ ନାମ ସମୁଚ୍ଚୟେ ।
ତଦ୍‌ସବିତୁର୍ବରେଣ୍ୟଂ ଏ ଅଟେ ତାର ତେଜ
ସେ ତେଜରୁ ଅଣ୍ଡ ଜାତ ହୋଇଲା ହେ ଦ୍ୱିଜ ।
ସମୁଦାୟ ସଲିଳକୁ ଜଲା ସେ ଶୋଷଣ
ତେଜୋବଳେ ଶୁଖୁଶୁଖୁ ଅବଶିଷ୍ଟ ଜାଣ ।
କଳଳତ୍ୱ ପ୍ରାପ୍ତ ହେଲା କଲଲୁଁ ବୁଦ୍‌ବୁଦ୍
ସେ ବୁଦ୍‌ବୁଦ୍ କଠିନତା ଲଭି ହେଲା ମେଦ ।
ସେ ମେଦ ହୋଇଲା ଭୂତଗଣର ଧାରିଣୀ
ସେ ସ୍ଥାନେ ରହିଲା ଅଣ୍ଡ ସରୋବର ଘେନି ।
ସେ ଆଦ୍ୟ ତେଜରୁ ଜାତ ହୋଇଲେ ଆଦିତ୍ୟ
ଲୋକ ପିତାମହ ବ୍ରହ୍ମା ଅଣ୍ଡ ମଧ୍ୟୁ ଜାତ ।
ଗର୍ଭଆଚ୍ଛାଦନ ଚର୍ମ ତାର ମେରୁଗିରି
ଆଉ ସବୁ ପର୍ବତହିଁ ଜରାୟୁ ତାହାରି ।
ଯେତେକ ସମୁଦ୍ର ନଦୀ ତା ଗର୍ଭୁ ଉଦୟ
ତାର ନାଭି ସ୍ଥଳୁଁ ଜାତ ସ୍ୱଚ୍ଛ ଜଳମୟ ।
ସେ ନିର୍ମଳ ଜଳେ ପୂର୍ଣ୍ଣ ହେଲା ମହାସର
ସରମଧ୍ୟେ ସ୍ଥାଣୁରୂପୀ ବଟ ତରୁ ବର ।
ତହୁଁ ଜାତ ବିପ୍ରକ୍ଷତ୍ରୀ ବୈଶ୍ୟ ତିନିଜାତି
ଶୂଦ୍ର ହେଲେ ଦ୍ୱିଜସେବା ନିମନ୍ତେ ଉତ୍ପତ୍ତି ।
ସେ ଅବ୍ୟକ୍ତ ଜନ୍ମ ବ୍ରହ୍ମା ଏଥୁ ଅନନ୍ତରେ
ସୃଷ୍ଟି କରିବାକୁ ଚିନ୍ତା କଲେ ହୃଦୟରେ ।
ସେ ବ୍ରହ୍ମା ମନରୁ ଜାତ ହେଲେ ଋଷିଗଣ
ସାକ୍ଷାତେ ସେ ଋଷି ଶୁଦ୍ଧି ସ୍ୱରୂପହିଁ ଜାଣ ।
ତାଙ୍କ ନାମ ବାଲଖିଲ୍ୟା ଅଠାଶୀ ହଜାର
ସେ ସମସ୍ତେ ଉର୍ଦ୍ଧ୍ୱରେତା ପ୍ରଧାନ ଆବର ।

ସେ ଅବ୍ୟକ୍ତି ଜନ୍ମ ବ୍ରହ୍ମା ହୃଦୟ ମଧ୍ୟରେ
ସୃଷ୍ଟି କରିବାକୁ ଚିନ୍ତା କଲେ ପୁନର୍ବାରେ ।
ତାହାଙ୍କ ମନରୁ ଜାତ ସନକାଦି ଋଷି
ଏଥିଅନ୍ତେ ବୁଦ୍ଧିମନ୍ତ ବ୍ରହ୍ମାପୁଣି ବସି ।
ପ୍ରଜାପାଇଁ ଚିନ୍ତାକରୁଁ ସପ୍ତଋଷି ଜାତ
ସେ ସମସ୍ତେ ପ୍ରଜାପତି ରୂପରେ ସମ୍ଭୂତ ।
ପୁନରପି ରଜରେ ସେ ହୋଇଲେ ମୋହିତ
ଚିନ୍ତାକରୁଁ ଋଷିଗଣ ମନମଧ୍ୟୁ ଜାତ ।
ସେ ସମସ୍ତେ ତପୋନିଷ୍ଠ ଦେବ ବିଦ୍ୟାରତ
ସ୍ନାନ ଦେବାର୍ଚ୍ଚନେ ରତ ହେଲେ ସେ ସତତ ।
କଲେ ସେ କଠୋର ବ୍ରତ ଉପବାସେ ରହି
କ୍ରମେ ନାଡ଼ୀ ଶୁଷ୍କ ହେଲା ଶୁଖିଗଲା ଦେହୀ ।
ଦେବ ବର୍ଷେ ସହସ୍ରେକ ବର୍ଷ କଲେ ତପ
ଶଙ୍କରଙ୍କ ଆରାଧନା କଲେ କଳ୍ପ କଳ୍ପ ।
ତଥାପି ସେ ମହାଦେବ ନୋହିଲେ ପ୍ରସନ୍ନ
ଦିନେ ହର ଉମା କରୁ ଆକର୍ଷେ ଭ୍ରମଣ ।
ସେ ତପସ୍ୱୀଗଣ ଦେଖି ଦୁଃଖିତା ପାର୍ବତୀ
ପ୍ରସନ୍ନ କରାଇ ଦେବୀ ଶିବଙ୍କୁ ବୋଲନ୍ତି ।
ଦେବ ଦେବ ମହାଦେବ ବାରେକୃପାକର
ଦେଖ ଏହି ଦେବଦାରୁ ବାରେ ମୁନିବର ।
କ୍ଳେଶ ପାଉଛନ୍ତି ତାଙ୍କ କଷ୍ଟକର କ୍ଷୟ
ଧର୍ମନିଷ୍ଠ ଅଟନ୍ତି ଏ ତପସ୍ୱୀ ନିଚୟ ।
ଅକ୍ଷୟ ଦୁଷ୍କର୍ମ ଦେଖ କରୁଛନ୍ତି ଏହି
ସବୁ ଶୁଷ୍କ ସ୍ନାୟୁ ନାଡ଼ି ମାତ୍ର ଅଛି ରହି ।
ତଥାପି ଏ ସିଦ୍ଧ ଲାଭ କରି ନ ପାରନ୍ତି
ପିନାକୀ-ପତିତାନ୍ତକ ଦେବ ପଶୁପତି ।
ପାର୍ବତୀଙ୍କ କଥାଶୁଣି କହିଲେ କହସି
ନ ଜାଣ ଧର୍ମର ତତ୍ତ୍ୱ ଶୁଣ ଶୁଭ୍ରକେଶୀ ।
ଅଟଇ ଧର୍ମର ଗତି ଅତ୍ୟନ୍ତ ଦୁର୍ଜ୍ଞେୟ
ତାହା ଜାଣି ନାହାନ୍ତି ଏ ତପସ୍ୱୀ ନିଚୟ ।
କାମ କ୍ରୋଧ ଲୋଭ ମୋହ ହୋଇ କାହିଁଦୂର
ପାର୍ବତୀ ବୋଇଲେ ଶୁଣି ଆହେ ମହେଶ୍ୱର ।
ଆପଣ ଏହାଙ୍କୁ ବାରେ ଦିଅନ୍ତୁ ଦର୍ଶନ
ମୋର ଅନୁରୋଧ ରକ୍ଷା କରି ତ୍ରିଲୋଚନ ।
ଶଙ୍କର ବୋଇଲେ ଦରହର୍ଷିତ ବଦନେ
ଏଠାରେ ଅପେକ୍ଷା କରି ରହ ବରାନନେ ।
ଯହିଁ ରହି ଏ ସମସ୍ତ ଋଷି ଶ୍ରେଷ୍ଠଗଣ
ଘୋର ତପ କରୁଛନ୍ତି ଯାଇଁ ଏହିକ୍ଷଣ ।
ଦେଖି ଆସେ ବୋଲି କହି ଗଲେ ତହୁଁ ଚଳି
ଆନନ୍ଦେ କହିଲେ ଦେବୀ ଯାଅ ଯାଅ ବୋଲି ।
ଦେଖିଲେ ଯେ ଋଷିମାନେ ନିଜ ନିଜ ଘରେ
ଅଗ୍ନି ରଖି ନିଜ ନିଜ ବିଧି ଅନୁସାରେ ।
ନିରନ୍ତର କରୁଛନ୍ତି ବେଦ ଅଧ୍ୟୟନ
ରହିଛନ୍ତି କାଷ୍ଠ ଲୋଷ୍ଟ୍ର ରହଇ ଯେସନ ।
ସେମାନଙ୍କୁ ଏ ପ୍ରକାର ଦେଖି ତ୍ରିଲୋଚନ
ସର୍ବାଙ୍ଗ ସୁନ୍ଦର ଦେହେ ନ ରଖି ବସନ ।
ଗଳେ ଶୋହେ ବନମାଳା ଯୁବା କଳେବର
ଭିକ୍ଷା ଅର୍ଥେ କପାଳକୁ ଧରିଛନ୍ତି କର ।
ପ୍ରବେଶିଲେ ଯାଇଁ ମୁନିଜନ ଆଶ୍ରମରେ
ଭିକ୍ଷା ଦିଅ କହି ଭିକ୍ଷା ମାଗି ଘରେ ଘରେ ।
ବ୍ରହ୍ମାବାଦୀ ଋଷିଙ୍କର ଋଷି ପତ୍ନୀମାନେ
ଏ ଅପୂର୍ବ ରୂପଗୋଟି ଦେଖିଣ ନୟନେ ।
ମୋହିତ ହୋଇଣ କଉତୁକେ ପରସ୍ପରେ
ଆସ ଆସ କହି ମିଳି ଭିକ୍ଷୁକ ପାଶରେ ।
ନାନାବିଧ ଫଳ ଫୁଲ ଘେନି ରାମାଗଣ
ବୋଇଲେ ଆମ୍ଭର ଭିକ୍ଷା କରନ୍ତୁ ଗ୍ରହଣ ।
ଆଦରେ କହିଲେ ହର କପାଳ ପ୍ରସାରି
ତପସ୍ୱିନୀ ଗଣ ହେଉ ମଙ୍ଗଳ ତୁମ୍ଭରି ।
ଆମ୍ଭର ଏ ଭିକ୍ଷା ପାତ୍ରେ ଭିକ୍ଷା ଦିଅ ଆଣି
ସହାସ୍ୟ ବଦନେ ଶିବ ବୋଇଲେ ଏ ବାଣୀ ।
ଅଦୃଶ୍ୟ ଭାବରେ ରହି ଦେଖନ୍ତି ପାର୍ବତୀ
ଭିକ୍ଷା ଦେଇ କାମାତୁରା ହୋଇଲେ ଯୁବତୀ ।
ବୋଇଲେ ତୁମ୍ଭର ଏ କି ବ୍ରତ ଆହେ ଯଦି
ଏକ ଆସନରେ ପ୍ରାୟ ନୁହେଁ ତୁମ୍ଭଛିତି ।
ଶରୀର ଉଲଗ୍ନ ବନମାଳାରେ ଭୂଷିତ
ଏ ତପସ୍ୱୀ ବେଶ ହରେ ସର୍ବଜନ ଚିତ୍ତ ।
ମନ ହେଲେ ସବୁ କଥା କହନ୍ତି ବିସ୍ତାରି
ସହାସ୍ୟ ବଦନେ ଶିବ ବୋଇଲେ ଏପରି ।
କିଞ୍ଚିତ ରହସ୍ୟ ମୟ ଆମ୍ଭର ଏ ବ୍ରତ
ସେ ହେତୁ ପ୍ରକାଶ ଏହା କରି ନୁହଇତ ।
ଯହିଁ ବହୁଜନ ତହିଁ କହି ନ ଯୋଗାଇ
ବିଚାରି ସୁଭଗା କୁଳ ଯାଅ ବିଦାହୋଇ ।

ଶୁଣିଣ ରମଣୀଗଣ କହିଲେ ଭୋ ମୁନି ।
ଆମ୍ଭେମାନେ ଅଟୁ ପୁଣି ସମସ୍ତେ କାମିନୀ ।
ଶୁଣିବାକୁ ଜନ୍ମୁ ଅଛି ଅତି କୁତୂହଳ
ଆମ୍ଭେମାନେ ଯିବୁଁ ତୁମ୍ଭେ ଆଗହୋଇ ଚଳ ।
ଏହା କହି ତାଙ୍କ ପାଣି ପଲ୍ଲବ ଧଇଲେ
କେହି କେହି କାମାତୁରେ କଣ୍ଠଲଗ୍ନ ହେଲେ ।
କେହି କାମ ବଶେ ଜାନୁ ଯୁଗଳ ଧଇଲା
କେହି କେଶପାଶ ଧରି ଓହଳି ପଡିଲା ।
କେହି କଟୀ ଧରେ କେହି ପାଦ ଦୁଇ ଧରେ
ଦେଖିଣ ଆଶ୍ରମବାସୀ ମହର୍ଷି ନିକରେ ।
ମାର ଏ ତପୀକି କାଷ୍ଠ ପାଷାଣରେ ଧରି
ଏହା କହି ଧାଇଁଗଲେ ସର୍ବ ତପଚାରୀ ।
ଯେଉଁ ଉର୍ଦ୍ଧ୍ୱଲିଙ୍ଗ ଗୋଟି ଅତି ଭୟଙ୍କର
ଛେଦି ତଳେ ପକାଇଲେ ମହାଦେବଙ୍କର ।
ଲିଙ୍ଗ ଛିଡୁ ମହାଦେବ ଗଲେ ଅନ୍ତର୍ଦ୍ଧାନେ
ହାସ୍ୟକରି ଦେବୀ ସହ କୈଳାସ ଭବନେ ।
ଶିବଲିଙ୍ଗ ଯହୁଁ ଭୂମିପୃଷ୍ଠରେ ପଡ଼ିଲା
ଋଷିଙ୍କର ଚିତ୍ତ ଅତି ଚଞ୍ଚଳ ହୋଇଲା ।
ସକଳେ ବ୍ୟାକୁଳ ହେବା ଦେଖି ଏକ ଋଷି
ବୋଇଲେ ବ୍ରହ୍ମାଙ୍କୁ ଚାଲ କହିବା ବିଶେଷି ।
ତାଙ୍କ ଭିନ୍ନ ଏହା କେହି ନ ପାରିବେ କହି
ତହିଁରେ ସକଳ ଋଷି ଅସମ୍ମତ ନୋହି ।
ଦେବଙ୍କୁ ସଙ୍ଗରେ ଘେନି ଗଲେ ବ୍ରହ୍ମାପାଶେ
ଶିରକୁ ନିବେଶି ପିତାମହ ପାଦଦେଶେ ।
ଖଣ୍ଡେଦୂରେ ଉଭାହେଲେ ଲାଜେ ଅଧୋମୁଖେ
ଅତ୍ୟନ୍ତ ଦୁଃଖିତ ହୋଇ ବ୍ରହ୍ମା ତାଙ୍କୁ ଦୁଃଖେ ।
ବୋଇଲେ ଯେ ଅତି ମୂଢ଼ ଅଟ ତୁମ୍ଭେମାନେ
ତେଣୁ କଳୁଷିତ ହେଲ କ୍ରୋଧେ ଅଭିମାନେ ।
ମୂଢ଼ ବୁଦ୍ଧି କିଛି କ୍ରିୟା ଧର୍ମ ନ ଛାଡ଼ଇ
ଧର୍ମ କଥା ଶୁଣ ଏବେ ମୁଁ କହୁଅଛଇ ।
ସୁବୁଦ୍ଧି ଯା ଜାଣି ଧର୍ମ ଫଳ ଲାଭ କରେ
ଆତ୍ମାରୂପେ ଯେଉଁ ବିଭୁ ଥାଏ କଳେବରେ ।
ଅନାଦି ସେ ମହାସ୍ଥାଣୁ ନିର୍ଲିପ୍ତ ଅଟଇ
କର୍ମବଶେ ସେହି ସ୍ୱର୍ଗ ନରକ ଭୋଗଇ ।
ଏଣୁ ବୁଦ୍ଧିମନ୍ତ ଜନ ଆତ୍ମା ଶୁଦ୍ଧି ସାଧି
କରିବ ଯେ ମନ ଜ୍ଞାନ ଯୋଗଶୁଦ୍ଧି ବିଧି ।
ଆତ୍ମଜ୍ଞାନେ ଅନ୍ତରାତ୍ମା ହୁଏ ନିରାକୁଳ
ଦଗ୍ଧହୁଏ ଶାରୀରିକ କ୍ଳେଶହିଁ ସକଳ ।
ଯାହା ମନ ଶୁଦ୍ଧ ସେହି ଶୁଦ୍ଧି ଲାଭ କରେ
ସତ କ୍ରିୟା ଶରୀରରୁ ସର୍ବ ପାପ ହରେ ।
ଏ ମଳିନ ଦେହ ଶୁଦ୍ଧି ନ ଲଭଇ ବେଗେ
ଏଣୁ ଚାଲୁଥିବ ଲୋକ ପରମ୍ପରା ମାର୍ଗେ ।
ସତପଥ ପ୍ରବର୍ତ୍ତକ ସେ ମାର୍ଗ ଅଟଇ
ବର୍ଣ୍ଣାଶ୍ରମ ବିଭାଗହିଁ ଯାହାକି ଚଳଇ ।
ସେ ବିଶିଷ୍ଟ ଲୋକ ତାହା କରିଛି ସ୍ଥାପନ
ମୋହର ମାହାତ୍ମ୍ୟ ପଥେ ନାହିଁବିଦ୍ୟମାନ ।
ତୁମ୍ଭେମାନେ ପୁଣି ସେହି ଆଶ୍ରମରେ ରହି
କ୍ରୋଧ ଆଉ କାମ ଜିଣି ନ ପାରିଛ କେହି ।
ଆଶ୍ରମହିଁ ଜ୍ଞାନିଜନମାନଙ୍କର ଘର
ଯୋଗୀ ଯେ ନୁହନ୍ତି ତାଙ୍କ ଆଶ୍ରମହିଁ ଘର ।
ସମସ୍ତ ବାସନା ତ୍ୟାଗ ଅଛଇ ବା କାହିଁ
କେଉଁ ଠାରେ ନାରୀମୟ ଭ୍ରମ ବା ଅଛଇ ।
ଏହି ଭୟଙ୍କର କ୍ରୋଧ ଅଛି କେଉଁଠାରେ
ଏହାଯୋଗୁ ଆତ୍ମାଜ୍ଞାନ ରହେ ଯାଇଁ ଦୂରେ ।
କ୍ରୋଧୀଲୋକ କଲେ ପୂଜା ଦାନ ତପ ହୋମ
ନିଷ୍ଫଳ ହୁଅଇ ତେଣେ ନାହିଁ କିଛି ଧର୍ମ ।

=+=

## ହର ସ୍ତୁତି

ଏଥୁଅନ୍ତେ କହିଲେକ ସନତକୁମାର
ବ୍ରହ୍ମାର ଏ କଥା ଶୁଣି ସେ ଋଷି ନିକର ।
ପଚାରିଲେ ଜଗତର ମଙ୍ଗଳ କାରଣ
ବିଧାତା ବୋଇଲେ ନେବା ଶିବଙ୍କ ଶରଣ ।
ତାହାଙ୍କ ପ୍ରସାଦେ ତୁମ୍ଭେ ପୂର୍ବାବସ୍ଥା ଲାଭ
ଏହା କହି ପିତାମହ ଉଠି ତହୁଁ ଜବ ।
ସମସ୍ତଙ୍କୁ ସଙ୍ଗେ ଘେନି ଗଲେ କଇଳାସେ
ମହାଦେବ ବସିଛନ୍ତି ଉମା ତାଙ୍କ ପାଶେ ।
ତାହାଙ୍କୁ ଦେଖିଲା ମାତ୍ରେ ବ୍ରହ୍ମା କଲେ ସ୍ତବ
ବିଶ୍ୱେଶ୍ୱର ବରଦାତା ଦେବ ଅଧିଦେବ ।
ତୁମ୍ଭେ ଯେ ଅନନ୍ତ ତୁମ୍ଭେ ପିନାକଧାରଣ
ମୋର ନମସ୍କାର ବାରେ କରନ୍ତୁ ଗ୍ରହଣ ।
ତୁମ୍ଭେ ସ୍ଥାଣୁ ପରମାତ୍ମା ମହାଦେବ ଦେବ
ତ୍ରିଭୁବନେ ଈଶ ତୁମ୍ଭେ ତାରକେଶ ଶିବ ।

ତୁମ୍ଭେ ଜ୍ଞାନଦାତା ତୁମ୍ଭେ ପୁରୁଷଉତ୍ତମ
ତୁମ୍ଭପାଦପଦ୍ମେ ମୁହିଁ କରୁଛି ପ୍ରଣାମ ।
ନମୋ ପଦ୍ମଗର୍ଭ ନମୋ ହୃଦପଦ୍ମ ଶାୟି
ନମୋ ଚଣ୍ଡକ୍ରୋଧ ନମୋ ଘୋର ପାପକ୍ଷୟୀ
ନମସ୍ତେ ନମସ୍ତେ ସୁର ନାୟକ ବିଶ୍ୱେଶ
ନମସ୍ତେ ନମସ୍ତେ ଶୂଳପାଣି ବିଶ୍ୱବାସ ।
ତୁମ୍ଭଙ୍କୁ ପ୍ରଣାମ ମୋର ହେ ବିଶ୍ୱଭାବନ
ଏମନ୍ତେ କରନ୍ତେ ସ୍ତୁତି ଋଷି ପଦ୍ମାସନ ।
ବୋଇଲେକ ମହାଦେବ ଯାଅ ତୁମ୍ଭେମାନେ
ଲିଙ୍ଗ ପ୍ରାଦୁର୍ଭୂତ ହେବ ପୁଣି ସେହିସ୍ଥାନେ ।
ତୁମ୍ଭେମାନେ କର ଆମ୍ଭ ଆଦେଶ ପାଳନ
ପ୍ରତିଷ୍ଠା କରିଣ କର ସେ ଲିଙ୍ଗ ପୂଜନ ।
ତହିଁରେ ପରମପ୍ରୀତ ହୋଇବି ଏ ଧ୍ରୁବ
ଭକ୍ତିରେ ପୂଜିଲେ ତାର କି ଦ୍ରବ୍ୟ ଦୁର୍ଲ୍ଲଭ ।
ଅଧିକ କି କହିବି ମୁଁ ଲିଙ୍ଗ ପୂଜା ଫଳ
ନାଶଯିବ ଜ୍ଞାନକୃତ ପାତକ ସକଳ ।
ତୁମ୍ଭେମାନେ ବେଗେ ଏଥୁଁ ସନ୍ନିହତୀ ଯାଇ
ପ୍ରତିଷ୍ଠା କର ସେ ଲିଙ୍ଗ ପଡ଼ିଅଛି ଯହିଁ ।
ସେ ବିଖ୍ୟାତ ମହାସର କର ଯା ଉଦ୍ଧାର
ନିଜ ଅଭିଳାଷ ସିଦ୍ଧି ହେଉ ଯେ ତୁମ୍ଭର ।
ସ୍ଥାଣୁ ନାମ ହେବ ଆଜିଠାରୁ ସେ ଲିଙ୍ଗର
ପ୍ରତ୍ୟହ ପୂଜିବେ ତାଙ୍କୁ ଅମର ନିକର ।
ସ୍ଥାଣୁ ଦରଶନେ ଦେହ ଶୁଦ୍ଧ ମୋକ୍ଷ ହେବ
ବ୍ରହ୍ମାଦି ଋଷିଙ୍କୁ ଏହା କହି ସଦାଶିବ ।
ତହୁ ଯାଇଁ ଦେବଗଣ ଋଷିଗଣ ମିଳି
ଦାରୁବନେ ପଡ଼ିଥିଲା ଲିଙ୍ଗ କରେ ଟୋଳି ।
ନେବାପାଇଁ ଆରମ୍ଭିଲେ ନ ଟଳିଲା ତିଳେ
ଶ୍ରମପାଇ ସ୍ୱେଦବିନ୍ଦୁ ଗଳେ ଲୋମମୂଳେ ।
ବ୍ରହ୍ମାଙ୍କ ପାଦରେ ଯାଇ ପଶିଲେ ଶରଣ
ବ୍ରହ୍ମା ବୋଇଲେ ଏ ଶ୍ରମ ହେଲା ଅକାରଣ ।
ସେ ଲିଙ୍ଗକୁ ବହି ତୁମ୍ଭେ ନ ପାରିବ କେଭେ
ମୋର ବୋଲ କର ଯାହା କହୁଛି ମୁଁ ଏବେ ।
ଦେବଋଷି ମିଳି ନିଅ ସେ ଲିଙ୍ଗ ଶରଣ
ପ୍ରସନ୍ନ ହୋଇବେ ଯେବେ ପିନାକ ଧାରଣ ।
ଆପେ ଆସି ସେ ଲିଙ୍ଗକୁ କରିବେ ଚାଳନା
ଦେବଗଣ ଋଷିଗଣ ହୋଇ ହୃଷ୍ଟମନା ।

ବ୍ରହ୍ମା ସହିତରେ ଗଲେ ଗିରି କଇଳାସେ
ଶିବଙ୍କୁ ନ ପାଇ ତହିଁ ବିସ୍ମିତ ମାନସେ ।
ବ୍ରହ୍ମାଙ୍କୁ କହିଲେ କାହିଁ ଅଛନ୍ତି ଶଙ୍କର
ଧ୍ୟାନ ପରାୟଣ ହେଲେ ବ୍ରହ୍ମା ଅନନ୍ତର ।
ଧ୍ୟାନରେ ଜାଣିଲେ ଶିବ ହସ୍ତୀରୂପେ ଯାଇ
ସରୋବରେ ରହିଛନ୍ତି ମୁନି ହିତପାଇଁ ।
ତହୁଁ ସଙ୍ଗେ ଦେବଗଣ ଋଷିଗଣ ଘେନି
ମିଳିଲେକ ମହାସରୋବରେ ପଦ୍ମଯୋନି ।
ତହିଁ ରହିଛନ୍ତି ଦେବଦେବ ମହେଶ୍ୱର
ଦେଖି ନ ପାରିଲେ ଋଷି ବ୍ରହ୍ମାଦି ଅମର ।
ଖୋଜି ଖୋଜି ନପାଇଣ ହୋଇଲେ ଚିନ୍ତିତ
ଏ ସମୟେ ପାର୍ବତୀଙ୍କି ଦେଖି ଲୋକତାତ ।
କମଣ୍ଡଳୁ ବିଭୂଷିତା ହୋଇଛନ୍ତି ସେହି
ତାହାଙ୍କ ଦର୍ଶନେ ବ୍ରହ୍ମା ଅତି ପ୍ରୀତ ହୋଇ ।
ବୋଇଲେ ଗୋ ମାତଃ କହ କାହିଁଗଲେ ଶିବ
କେତେ ଶ୍ରମ ପାଇଲୁଣି କହିଲେ କି ହେବ ।
ଦେବୀ କୃପାକରି ତାଙ୍କୁ କହିଲେ ଏମନ୍ତ
ଏସ୍ଥାନେ ପାଇବ ଆଜି ମହେଶ ନିୟତ ।
ଆହେ ସୁରବର୍ଗ ତୁମ୍ଭେ ସୁଧାପାନ କର
ତୁମ୍ଭଙ୍କୁ ଦର୍ଶନ ଦେବେ ଅବଶ୍ୟ ଶଙ୍କର ।
ଭବାନୀ ବଚନେ ଦେବେ କଲେ ସୁଧାପାନ
ସୁସ୍ଥ ହୋଇ ବୋଇଲେକ ଦେବୀ ସନ୍ନିଧାନ ।
ପାର୍ବତୀ ବୋଇଲେ ସେହି ହସ୍ତୀରୂପ ଧରି
ଏ ସ୍ଥାନକୁ ଆସିଛନ୍ତି ରୂପ ପରିହରି ।
ଏହି ସରୋବର ମଧ୍ୟେ ରହିଛନ୍ତି ଦେଖ
ତାହାଙ୍କୁ ଦର୍ଶନ କରି ବାସବ ପ୍ରମୁଖ ।
ସମସ୍ତ ଦେବତା ଋଷି ହେଲେ ଆନନ୍ଦିତ
ବ୍ରହ୍ମାଙ୍କ ଆଗରେ ରଖି ବୋଇଲେ ଏମନ୍ତ ।
ଯେଉଁ ଲିଙ୍ଗ ପରିତ୍ୟାଗ କରିଛନ୍ତି ହର
ତାହା ଆଣି ନ ପାରିଲୁ ଯେତେକ ଅମର ।
ଶୁଣି ତାଙ୍କ ସଙ୍ଗେ ହର ଗଲେ ଦାରୁବନେ
ଶୁଣ୍ଢରେ ଧଇଲେ ତାହା କୁସୁମ ସମାନେ ।
ଋଷିଗଣ ଦେବଗଣ କରୁଛନ୍ତି ସ୍ତୁତି
ସରୋବର ପଶ୍ଚିମରେ କଲେ ଅବସ୍ଥିତି ।
ଆତ୍ମାକୁ ସଫଳ କରି ଦେବ ଋଷିଗଣ
ଶିବ ସ୍ତୁତି ପାଠ କଲେ କରକୁ ଯୋଡ଼ିଣ ।

ନମସ୍ତେ ହେ ପରମାତ୍ମା ହେ ପରମଯୋନି
ଲୋକସାକ୍ଷି ପରମେଷ୍ଠି ଭଗବାନ ଜ୍ଞାନୀ ।
ସର୍ବଜ୍ଞ କ୍ଷେତ୍ରଜ୍ଞ ଜ୍ଞାନଜ୍ଞେୟ ସର୍ବେଶ୍ୱର
ହେ ମହା ବିରଞ୍ଚି ମହାବିଭୂତି ଆବର ।
ହେ ମହା କ୍ଷେତ୍ରଜ୍ଞ ମହାପୁରୁଷ ନମସ୍ତେ
ସର୍ବଭୂତବାସ ଆଦି ଦେବ ନିତ୍ୟ ତୋତେ ।
ମହାଦେବ ସଦାଶିବ ହେ ପ୍ରଭୁ ଈଶାନ
ଦୁର୍ବିଜ୍ଞେୟ ଦୁରାରାଧ୍ୟ ଭୂତେଶ ପ୍ରଧାନ ।
ପରମ ଈଶ୍ୱର ଆହେ ମହାଯୋଗେଶ୍ୱର
ତ୍ରିଅମ୍ବକ ମହାଯୋଗୀ ପରଂବ୍ରହ୍ମ ହର ।
ପରମଜ୍ୟୋତି ବ୍ରହ୍ମବିଦଙ୍କର ଉତ୍ତମ
ଓଁକାର ବଷଟ କାର ତୁମ୍ଭଙ୍କୁ ପ୍ରଣାମ ।
ସ୍ୱାହାକାର ସ୍ୱାଧାକାର ପରମ କାରଣ
ଆହେ ସର୍ବଗତ ସର୍ବ ହେ ସର୍ବଦର୍ଶନ ।
ନମସ୍ତେ ହେ ସର୍ବଶକ୍ତ ସର୍ବଦେବ ଆଜ
ସହସ୍ରର୍ଚ୍ଚି ହେ ସୂଧାମ ହରଧାମ ବୀଜ ।
ବଂଶବର୍ତ୍ତ ସଂବର୍ତ୍ତ ହେ ନମୋ ସଂକର୍ଷଣ
ବଡ଼ବାଅନଳ ଅଗ୍ନି ଯୋଗାତ୍ମକ ଗୁଣ ।
ସମସ୍ତେ ପବିତ୍ର ମହାପବିତ୍ର ଆବର
ମହାମେଘ ମହାକାମ ହଳ ମହେଶ୍ୱର ।
ହଂସ ହେ ପରମହଂସ ହେ ମହାରାଜିବ
ମହେଶ ହେ ମହାହଂସ ହେ ମହାକାମୁକ ।
ଭବକ୍ଷୟ କର ଆହେ ପୁରସିଦ୍ଧାଚ୍ଛତ
ନମସ୍ତେ ହରିଣ୍ୟବାହୁ ହେ ହିରଣ୍ୟରେତ ।
ନମସ୍ତେ ହିରଣ୍ୟନାଭ ହିରଣ୍ୟାଗ୍ର କେଶ
ମୁଞ୍ଜାକେଶି ସର୍ବଲୋକ ବଇପ୍ରଦ ଈଶ ।
ସର୍ବ ଅନୁଗ୍ରହ କର ହେ କମଳେଶୟ
ନମସ୍ତେ ହେ ଜ୍ଞାନୋଦଧି ହେ ହୃଦୟେଶୟ ।
ଶମ୍ଭୁ ବିଭୁ ମହାଯଜ୍ଞ ଯେ ମହାଯାଜ୍ଞିକ
ସର୍ବ ଯଜ୍ଞମୟ ସର୍ବଯଜ୍ଞ ସମ୍ଭୂତକ ।
ନିରାଶ୍ରୟ ସମୁଦ୍ରେଶ ହେ ଅତ୍ରି ସମ୍ଭୁତ
ଭକ୍ତାନୁକମ୍ପକ ଆହେ ଭୂତପତି ନାଥ ।
ଅଭଗ୍ନ ଯୋଗ ହେ ଯୋଗଧର ଶୁଭ୍ରଦେହ
ହେ ବାସୁକି ମହାଅହି- ଦ୍ୟୋତିତ ବିଗ୍ରହ ।
ହରିବି ନୟନ ତ୍ରିଲୋଚନ ଜଟାଧର
ନମସ୍ତେ ହେ ନୀଳକଣ୍ଠ ଚନ୍ଦ୍ରାର୍ଦ୍ଧଶେଖର ।
ଉମାଶରୀରାର୍ଦ୍ଧଧର ଆହେ ଶୂଳଧର
ଖଡ଼୍‌ଗଚର୍ମଧର ଆହେ ଗଜ ଚର୍ମାମ୍ବର ।
ଦୁସ୍ତର ସଂସାର ମହାସଂସାର କାରକ
ଭକତବତ୍ସଳ ଆହେ ପିନାକଧାରକ ।
ତବପାଦେ ନମସ୍କାର, ହୁଅ ସୁପ୍ରସନ୍ନ
ସ୍ତବେ ତୁଷ୍ଟ ହେଲେ ଦେବଦେବ ତ୍ରିଲୋଚନ ।
ହସ୍ତୀରୂପ ତେଜି ଲିଙ୍ଗମଧ୍ୟେ କଲେ ବାସ
ଦୀନ ଗୋପୀନାଥ ତାଙ୍କ ପାଦତଳ ଦାସ ।

=+=

## ସ୍ଥାଣୁତୀର୍ଥାନୁକୀର୍ତ୍ତନ

ଏଥୁଅନ୍ତେ କହିଲେ ଯେ ସନତକୁମାର
ବ୍ରହ୍ମାଆଦି ଦେବରଷି ଆଗେ ମହେଶ୍ୱର ।
କହିବାକୁ ଆରମ୍ଭିଲେ ତୀର୍ଥର ମହିମା
ନିକଟେ ଅଛଇ ଯେଉଁସର ଆହେ ବ୍ରହ୍ମା ।
ଅତ୍ୟନ୍ତ ପବିତ୍ର ବୋଲି ହୋଇଛି କଥିତ
ମୁଁ ଏଥେ ରହିଲି ମୋକ୍ଷ ଦେବ ଏ ନିୟତ ।
ବ୍ରାହ୍ମଣ କ୍ଷତ୍ରିୟ ବୈଶ୍ୟ ଆଦି ଯେତେ ଜାତି
ଏ ସ୍ଥାନକୁ ଆସି ଲିଙ୍ଗ ଦର୍ଶନ କରନ୍ତି ।
ତାହାଙ୍କୁ ପରମପଦ ମିଳିବ ତକ୍ଷଣେ
ଦିବସର ଅର୍ଦ୍ଧଭାଗେ ଏଥେ ଦିନେ ଦିନେ ।
ସମୁଦ୍ର ପର୍ଯ୍ୟନ୍ତ ତୀର୍ଥ ଯେତେକ ଅଛଇ
ଏହି ସ୍ଥାଣୁତୀର୍ଥେ ଜାଣ ଥିବେ ଆସି ରହି ।
ଭକତିରେ ଆମ୍ଭ ସ୍ତବ ସ୍ତୋତ୍ର ଯେ ପଢ଼ିବ
ନିଃସନ୍ଦେହେ ତାର ନିତ୍ୟ ସୁଲଭ ହୋଇବ ।
ଏହା କହି ଅନ୍ତର୍ଦ୍ଧାନେ ଗଲେ ତ୍ରିଲୋଚନ
ନିଜ ନିଜ ସ୍ଥାନେ ଗଲେ ଦେବରଷିଗଣ ।
ସ୍ଥାଣୁଲିଙ୍ଗ ଦରଶନେ ଲୋକେ ସ୍ୱର୍ଗଗଲେ
ମାନବରେ ପୂର୍ଣ୍ଣହେବା ପୁରକୁ ଦେଖିଲେ ।
ଦେବଗଣ ନେଲେ ଯାଇ ବ୍ରହ୍ମାଙ୍କ ଶରଣ ।
ମନୁଷ୍ୟ ଭୟରୁ ରକ୍ଷା କରନ୍ତୁ ଆପଣ ।
ପିତାମହ ବୋଇଲେକ ଇନ୍ଦ୍ରଙ୍କୁ ଅନାଇ
ପାଂଶୁ ବରଷଣ କର ଏ ଦେବଙ୍କ ପାଇଁ ।
ସାତଦିନ ସାତ ରାତି ବରଷିଲେ ପାଂଶୁ
ଲିଙ୍ଗରୂପୀ ଶିବ ବଟ ବୃକ୍ଷ ହେଲେ ଆଶୁ ।
ଏ କାରଣୁ ପୁଣ୍ୟତମ ହେଲା ଏହି ତୀର୍ଥ
ପାଦୋଦକ ତୀର୍ଥ ରାଜ ଯହିଁ ପ୍ରତିଷ୍ଠିତ ।

ତହିଁ ସ୍ନାନ କଲେ ସବୁ ତୀର୍ଥଫଳ ପାଇ
ଲିଙ୍ଗବଟ ମଧରେ ଯେ ଶ୍ରାଦ୍ଧକଲେ ଯାଇଁ ।
ତାର ପିତୃଗଣ ତୃପ୍ତ ହୋଇ ତାହାଠାରେ
ତାହାଙ୍କୁ ଦିଅନ୍ତି ଯାହା ଦୁର୍ଲ୍ଲଭ ସଂସାରେ ।
ପାଂଶୁପୂର୍ଣ୍ଣ ହେବା ଦେଖି ଶ୍ରଦ୍ଧାରେ ଋଷିଏ
ଦେହେ ବୋଳି ହେବାରୁ ଯେ ପାପଗଲା କ୍ଷୟେ ।
ସ୍ୱର୍ଗେ ଦେବଲୋକଠାରୁ ପାଇ ସମାଦର
ଅବଶେଷେ ବ୍ରହ୍ମପଦେ କଲେ ଯାଇ ଘର ।
ସେ ସିଦ୍ଧ ପୁରୁଷ ଲିଙ୍ଗପୂଜା କରେ ଯାଇ
ମୋକ୍ଷ ପାଇ ସେ ପରମ ସିଦ୍ଧିକି ଲଭଇ ।
ଲିଙ୍ଗକୁ ପାଷାଣମୟ ଜାଣି ବେଦବର
ତା ଉପରେ ଆଦ୍ୟଲିଙ୍ଗେ ଥାପିଲେ ସତ୍ୱର ।
ବହୁକାଳେ ତାର ତେଜେ ପୃଥିବୀ ରଞ୍ଜିତ
ଲୋକେ ସ୍ପର୍ଶମାତ୍ରେ ହେଲେ ପରଂପଦ ପ୍ରାପ୍ତ ।
ପୁନରପି ଜଣାଇଲେ ବ୍ରହ୍ମାଙ୍କୁ ଅମରେ
ଲିଙ୍ଗ ଦରଶନେ ସିଦ୍ଧ ହେଲେ ସର୍ବନରେ ।
ତାହା ଶୁଣି ବେଦବର ଦେବତାଙ୍କ ହିତେ
ଲିଙ୍ଗ ପରେ ଲିଙ୍ଗ ସ୍ଥାପି ସାତୋଟି ପର୍ଯ୍ୟନ୍ତେ ।
ଅଇଲେ ଆପଣା ପୁରେ ଏଥୁଅନନ୍ତରେ
ସିଦ୍ଧାଶ୍ରମ ପରାୟଣ ମୁକ୍ତି କାମନାରେ ।
ଲଭିଲେ ପରମ ପଦ ସେ ପାଂଶୁ ସେବନେ
ପାଂଶୁରାଶି ଉଠି ଉଠି ଆସିଲା ପବନେ ।
କୁରୁକ୍ଷେତ୍ର ଚତୁର୍ଦ୍ଦିଗେ ହୋଇଲା ବେଷ୍ଟିତ
ତା ସ୍ପରଶେ ଦୁଷ୍କର୍ମାଏ ପରଂପଦ ପ୍ରାପ୍ତ ।
ନାରୀ ବା ପୁରୁଷ କେହି ଜ୍ଞାନେ ବା ଅଜ୍ଞାନେ
ଯେତେ ପାପ କରିଥିଲେ ସ୍ଥାଣୁତୀର୍ଥ ସ୍ନାନେ ।
ଦୁଷ୍କୃତିରୁ ଅବଶ୍ୟ ସେ ନିଷ୍କୃତି ପାଇବ
ଲିଙ୍ଗ ଦରଶନ ମାତ୍ରେ ମୁକତି ହୋଇବ ।
ସ୍ଥାଣୁବଟ ସ୍ପରଶରେ ଲଭିବ ମୁକତି
ପାଶେ ଥିବା ଜଳସ୍ନାନେ ବାଞ୍ଛାଫଳ ପ୍ରାପ୍ତି ।
ଯେ ଜନ ସେ ଜଳେ କରେ ପିତୃଙ୍କ ତର୍ପଣ
ଫଳ ପାଏ ତେତେ, ଯେତେ ତା ବିନ୍ଦୁ ପ୍ରମାଣ ।
ସ୍ଥାଣୁଲିଙ୍ଗ ପଶ୍ଚିମରେ କୃଷ୍ଣତିଳ ବାରି
ଶ୍ରଦ୍ଧାରେ ଯେ ଶ୍ରାଦ୍ଧ ପିତୃତରପଣ କରି ।
ତିନିଯୁଗ ଯାଏ କରେ ପିତୃଙ୍କୁ ସନ୍ତୋଷ
ମନ୍ୱନ୍ତର ଯାଏ ସେହି ନୁହଇ ବିନାଶ ।

ଯେତେଦିନ ଯାଏ ସ୍ଥାଣୁଲିଙ୍ଗ ତହିଁ ଥାଇ
ତେତେଦିନ ଯାଏ ପିତୃଗଣ ତୃପ୍ତ ହୋଇ ।
ସେ ପବିତ୍ର ଜଳପାନ କରୁଥାନ୍ତି ସୁଖେ
ଆବର କଥିତ ଯାହା ଅଛି ଶାସ୍ତ୍ର ମୁଖେ ।
ସତ୍ୟେ ସନ୍ନିହତୀ ତୀର୍ଥେ ରୁଦ୍ରହ୍ରଦ ଥାଏ
ବାୟୁ ସଞ୍ଚୀତ ତୀର୍ଥରେ ତ୍ରେତାୟୁଗେ ରହେ ।
ଦ୍ୱାପର ସେ କୂପ ମଧେ ରହିଥାଇ ପୁଣି
ସାଧୁ ସନ୍ଥଜନମାନେ ଏହି କଥା ଜାଣି ।
ଚୈତ୍ର କୃଷ୍ଣ ଚତୁର୍ଦ୍ଦଶୀତିଥି ଦିନ ଆସି
ସ୍ନାନ କରନ୍ତି ଯେ ରୁଦ୍ରକର ତୀର୍ଥେ ପଶି ।
ପରମ ପଦକୁ ସେହି ଲଭନ୍ତି ଅବଶ୍ୟ
ସ୍ଥାଣୁବଟ ମୂଳେ ଯେଉଁଜନ କରି ବାସ ।
ପରମେଶ୍ୱରଙ୍କୁ କରେ ରଜନୀରେ ଧ୍ୟାନ
ବାଞ୍ଛାଫଳ ପାଏ ବଟପ୍ରସାଦେ ସେ ଜନ ।

= + =

## ସ୍ଥାଣୁଲିଙ୍ଗ ମାହାତ୍ମ୍ୟ

ସନତକୁମାର ଋଷି କହିଲେ ତଦନ୍ତେ
ମହାଦେବ ବ୍ରହ୍ମାଆଦି ଦେବଙ୍କ ଅଗ୍ରତେ ।
ତୀର୍ଥର ମହିମାମାନ କହିଲେ ବିସ୍ତାରି
ଏହି ନିକଟରେ ଥିବା ସରୋବରେ ବାରି ।
ଅତି ପୁଣ୍ୟତମ ବୋଲି ହୋଇଛି କଥିତ
ଯେଣୁ ମୁହିଁ କରିଅଛି ତହିଁ ଅବସ୍ଥିତ ।
ତେଣୁ ମୁକ୍ତି ପ୍ରଦାୟକ ତୀର୍ଥ ଅଟେ ସେହି
ବ୍ରାହ୍ମଣ କ୍ଷତ୍ରିୟ କିବା ବୈଶ୍ୟ ଏଥେ କେହି ।
ଏ ସ୍ଥାନରେ କରେ ସ୍ଥାଣୁଲିଙ୍ଗର ଦର୍ଶନ
ପରମପଦକୁ ଲଭେ ସେହି ତତ୍‌କ୍ଷଣ ।
ଗଗନର ମଧଭାବେ ସୂର୍ଯ୍ୟ ଥିବା ବେଳେ
ସବୁତୀର୍ଥ ଜଳ ଆସି ସ୍ଥାଣୁତୀର୍ଥେ ମିଳେ ।
ସ୍ତୋତ୍ର ପଢ଼ି ଯେ କରଇ ଭକତିରେ ସ୍ତବ
ସର୍ବଦା ଅଟଇ ମୁହିଁ ତାହାର ସୁଲଭ ।
ଏହା କହି ସଦାଶିବ ଗଲେ ଅନ୍ତର୍ଦ୍ଧାନେ
ଦେବ ଋଷିଗଣ ଗଲେ ଯେ ଯାହାର ସ୍ଥାନେ ।
ସ୍ଥାଣୁଲିଙ୍ଗ ଦରଶନେ ଲୋକେ ଗଲେ ସ୍ୱର୍ଗେ
କାଳେ ତହିଁ ମିଶିଗଲେ ନରଦେବ ବର୍ଗେ ।
ତାହା ଦେଖି ଦେବେ ନେଲେ ବ୍ରହ୍ମାଙ୍କ ଶରଣ
କି କାରଣେ ଆସିଅଛ କହ ଦେବଗଣ ।

ମାନବ ଭୟରୁ ରକ୍ଷା କରନ୍ତୁ ଆମ୍ଭଙ୍କୁ
ବ୍ରହ୍ମା ବୋଇଲେକ ଚାହିଁ ଇନ୍ଦ୍ର ଦେବତାଙ୍କୁ ।
ତୁମ୍ଭେମାନେ ମିଳି କର ପାଂଶୁରେ ତା ପୂର୍ଣ୍ଣ
ଶୁଣି ପାଂଶୁ ବୃଷ୍ଟି କଲେ ସହସ୍ର ଲୋଚନ ।
ସେହି ପାଂଶୁ ବୃଷ୍ଟି ଦେଖି ଦେବ ମହେଶ୍ୱର
ସାତଦିନ ପାଂଶୁ ବୃଷ୍ଟି କଲେ ସୁନାସୀର ।
ଲିଙ୍ଗ ପାଂଶୁ ଫୁଟି ବଟବୃକ୍ଷ ଉପୁଜିଲା
ଶାଖାପ୍ରଶାଖା ବାହାରି କ୍ରମେ ସେ ବଢ଼ିଲା ।
ଏକାରଣେ ଏହି ତୀର୍ଥ ହେଲା ପୁଣ୍ୟତମ
ତହିଁ ଅଛି ପାଦୋଦକ ଆହେ ମହାତମ ।
ସବୁ ତୀର୍ଥ ଫଳ ମିଳେ ଏଥି କଲେ ସ୍ନାନ
ବଟଲିଙ୍ଗ ମଧ୍ୟେ କରେ ଶ୍ରାଦ୍ଧ ଯେଉଁ ଜନ ।
ତହିଁରେ ତା ପିତୃଗଣ ସନ୍ତୁଷ୍ଟ ହୁଅନ୍ତି
ଦୁର୍ଲ୍ଲଭ ପଦାର୍ଥ ତାଙ୍କୁ ପୃଥିବୀ ଦିଅନ୍ତି ।
ଋଷିଏ ଶରୀର କଲେ ପାଂଶୁରେ ଭୂଷଣ
ହେଲା ତାଙ୍କ ଅଙ୍ଗୁସର୍ବ ପାପ ବିମୋଚନ ।
ସ୍ୱର୍ଗପୁରେ ଗଲେ ଦେବେ କଲେ ତାଙ୍କୁ ପୂଜା
ଶେଷେ ବ୍ରହ୍ମପଦ ପ୍ରାପ୍ତ ହେଲେ ସର୍ବ ଦ୍ୱିଜା ।
ସେ ସିଦ୍ଧ ପୁରୁଷ କଲେ ଲିଙ୍ଗପୂଜା ନିତି
ଲଭଇ ପରମ ସିଦ୍ଧି ନୁହଇ ଉତ୍ପତ୍ତି ।
ବ୍ରହ୍ମା ସେହି ଲିଙ୍ଗକୁ ଯେ ଶୈଳମନ ଜାଣି
ତା ଉପରେ ଆଦ୍ୟ ଲିଙ୍ଗ ସ୍ଥାପିଲେକ ଆଣି ।
ତା ତେଜେରଞ୍ଜିତ ହେଲା ସେହି ବାହୁବଳେ
ସିଦ୍ଧି ହେଲେ ସେ ଲିଙ୍ଗର ସ୍ୱରଶେ ସକଳେ ।
ପରମ ପଦକୁ ପ୍ରାପ୍ତ ହେଲେ ଅବଶେଷେ
ପୁଣି ଦେବେ ଜଣାଇଲେ ପିତାମହ ପାଶେ ।
ଲିଙ୍ଗ ଦରଶନେ ସର୍ବେ ଲଭିଲେଣି ସିଦ୍ଧି
ଏବେ କର କେଉଁ ବୁଦ୍ଧି ଅଛି ଆହେ ବିଧି ।
ଦେବଙ୍କର ହିତେ ବ୍ରହ୍ମା ଉଠିଲେ ସତ୍ୱର
ସାତ ଲିଙ୍ଗ ସ୍ଥାପିଲେ ସେ ଲିଙ୍ଗର ଉପର ।
ସିଦ୍ଧାଶ୍ରମ ପରାୟଣ ମୁକ୍ତିକାମୀ ଜନ
ସେ ସ୍ଥାନରେ ରହିକଲେ ସେ ପାଂଶୁ ସେବନ ।
ବାୟୁବଶେ ପାଂଶୁରାଶି ବ୍ୟାପେ କୁରୁକ୍ଷେତ୍ରେ
ମହାପାପୀ ଜନେ ମୁକ୍ତ ହେଲେ ସ୍ପର୍ଶମାତ୍ରେ ।
ନାରୀ ବା ପୁରୁଷ ହେଉ ଜ୍ଞାନେ ବା ଅଜ୍ଞାନେ
ଯେତେ ପାପ କରିଥାଉ ସ୍ଥାଣୁତୀର୍ଥ ସ୍ଥାନେ ।
ପ୍ରବେଶେ ସେ ଦୁଷ୍କୃତିରୁ ନିଷ୍କୃତି ପାଇବ
ସ୍ଥାଣୁଲିଙ୍ଗ ଦରଶନ ମାତ୍ରେ ମୁକ୍ତ ହେବ ।
ମୁକ୍ତ ହୋଇ ବଟକୁ ସେ କରନ୍ତେ ସ୍ପରଶ
ମୋକ୍ଷ ଲଭି ପାଇବ ସେ ବଇକୁଣ୍ଠ ବାସ ।
ତାର ନିକଟରେ ଥିବା ଜଳେ କଲେ ସ୍ନାନ
ବାଞ୍ଛା ଫଳ ପ୍ରାପ୍ତ ହେବ ନିଶ୍ଚେ ସେହି ଜନ ।
ଯେ ଜନ ସେ ଜଳେ କରେ ପିତୃଙ୍କୁ ତର୍ପଣ
ଫଳ ପାଏ ଯେତେ ତାର ବିନ୍ଦୁ ପରିମାଣ ।
ସ୍ଥାଣୁ ଲିଙ୍ଗ ପଶ୍ଚିମେ ଯେ କୃଷ୍ଣତିଳ ଘେନି
ଶ୍ରଦ୍ଧାରେ ଯେ କରେ ଶ୍ରାଦ୍ଧ ତରପଣ ପୁଣି ।
ତିନିଯୁଗ ପିତୃଙ୍କୁ ସେ ସନ୍ତୋଷ କରଇ
ଏହିପରି ପୁରାଣାଦି ଶାସ୍ତ୍ରରେ ଅଛଇ ।
ଯେତେକାଳ ଲିଙ୍ଗଥାଏ ଥାଏ ମନ୍ୱନ୍ତର
ପିତୃଏ କରନ୍ତି ତୋଷେ ସେ ଜଳ ଆହାର ।
ଚୈତ୍ରମାସ କୃଷ୍ଣପକ୍ଷ ଚତୁର୍ଦ୍ଦଶୀ ଦିନେ
ରୁଦ୍ରକର ତୀର୍ଥେ ସ୍ନାନ କରି ସାଧୁଜନେ ।
ଲଭନ୍ତି ପରମ ପଦ ନିଶ୍ଚୟ ଏ କଥା
ଯେଉଁ ଜନ ସ୍ଥାଣୁ ବଟ ମୂଳେ ରହି ତଥା ।
ପରମେଶ୍ୱରଙ୍କୁ ଧ୍ୟାନ କରେ ରାତିଯାକ
ମନୋରଥ ଫଳ ମିଳେ ଅଧିକୁ ଅଧିକ ।
ଶୁଣିଲତ ସ୍ଥାଣୁବଟ ମହିମା ପ୍ରଭାବ
ଦୀନ ଗୋପୀନାଥକୁ ଯେ ରଖ ସଦାଶିବ ।

=+=

## ସ୍ଥାଣୁବଟ ମାହାତ୍ମ୍ୟ

ଆବର କହିଲେ ଋଷି ସନତ କୁମାର
ଶାସ୍ତ୍ରରେ କଥିତ ଅଛି ପୁଣି ଏ ପ୍ରକାର ।
ତା ଉତ୍ତରେ ଶୁକ୍ରତୀର୍ଥ ପୂର୍ବେ ବ୍ୟୋମତୀର୍ଥ
ପଶ୍ଚିମେ ବକୁଳତୀର୍ଥ ଦକ୍ଷେ ଦକ୍ଷ ତୀର୍ଥ ।
ଚାରିଦିଗେ ପୁଣ୍ୟତୀର୍ଥ ମଧ୍ୟେ ସ୍ଥାଣୁବଟ
ଦରଶନ ମାତ୍ରେ ମିଳେ ପରମ ବୈକୁଣ୍ଠ ।
ଚତୁର୍ଦ୍ଦଶୀ ଅଷ୍ଟମୀରେ ଏ ତୀର୍ଥ ଭ୍ରମିବ
ଉମାଦେବୀ ନ ଛାଡ଼ନ୍ତି ଲିଙ୍ଗରୂପୀ ଶିବ ।
ତାଙ୍କ ଦରଶନେ ସିଦ୍ଧ ଲଭନ୍ତି ସୁଜନେ
ବଟର ଉତ୍ତର ପାଖେ ପୁଣ୍ୟମୟ ସ୍ଥାନେ ।
ସର୍ବକାମ ପ୍ରଦାୟକ ମହାଲିଙ୍ଗ ଏକ
ବିଧିମତେ ସ୍ଥାପିଛନ୍ତି ମହାତ୍ମା ତକ୍ଷକ ।

ପ୍ରତ୍ୟଙ୍ମୁଖ ମହାଲିଙ୍ଗ ତାର ପୂର୍ବଭାଗେ
ବିଶ୍ୱକର୍ମା ଗଢ଼ି ସ୍ଥାପି ଅଛନ୍ତି ସରାଗେ ।
ଲିଙ୍ଗରୂପେ ବିରାଜନ୍ତି ତହିଁ ସରସ୍ୱତୀ
ତାଙ୍କ ଦରଶନେ ମିଳେ ବୁଦ୍ଧି ମେଧାମତି ।
ନିଜେ ବ୍ରହ୍ମା ସ୍ଥାପିଛନ୍ତି ବଟପାଖ ଲିଙ୍ଗ
ତାଙ୍କ ନାମ ବଟେଶ୍ୱର ଆହେ ମୁନିବର୍ଗ ।
ମିଳିଲେ ପରମପଦ ତାଙ୍କ ଦରଶନେ
ବଟବୃକ୍ଷ ପ୍ରଦକ୍ଷିଣ କରନ୍ତି ଯେ ଜନେ ।
ମିଳେ ସପ୍ତଦ୍ୱୀପା ପୃଥ୍ୱୀପ୍ରଦକ୍ଷିଣ ଫଳ
ପଶ୍ଚିମେ ଅଛନ୍ତି ତାର ଯେତେକ ନକୁଳ ।
ପୂଜିଲେ ସେ ନକୁଳୀଶ ଗଣଙ୍କୁ ଯତନେ
ସକଳ ପାପରୁ ମୁକ୍ତ ହେବ ତତ୍କ୍ଷଣେ ।
ରୁଦ୍ରକର ତୀର୍ଥେ ଅଛି ଦକ୍ଷିଣେ ତାହାର
ସେ ତୀର୍ଥରେ ସ୍ନାନକରେ ଯାଇ ଯେଉଁ ନର ।
ସକଳ ତୀର୍ଥର ସ୍ନାନ ଫଳ ସେହି ପାଇ
ଗୋକର୍ଣ୍ଣ ନାମରେ ଲିଙ୍ଗ ଉତ୍ତରେ ଅଛଇ ।
ସ୍ଥାପିଛି ସେ ମହାଲିଙ୍ଗ ମହାତ୍ମା ରାବଣ
ଆଷାଢ଼ ମାସରେ କୃଷ୍ଣ ଚତୁର୍ଦ୍ଦଶୀ ଦିନ ।
ଉପବାସେ ରହି କରେ ସେ ତୀର୍ଥେ ଯେ ସ୍ନାନ
ସକଳ ପାପରୁ ନିଶ୍ଚେ ହୁଅଇ ମୋଚନ ।
ଲିଙ୍ଗେକ ଅଛଇ ତହିଁ ନାମ ସିଦ୍ଧି ପ୍ରଦ
ପୂର୍ବେ ତାହା ସ୍ଥାପିଅଛି ପୁତ୍ର ମେଘନାଦ ।
ଯତ୍ନେ ପୂଜିଲେ ସେ ଲିଙ୍ଗ ମିଳଇ ସମ୍ପତ୍ତି
ତା ପଶ୍ଚିମେ ଲିଙ୍ଗ ଏକ କରି ଅବସ୍ଥିତି ।
ସେ ଲିଙ୍ଗକୁ ପୂଜିଥିଲା ପୂର୍ବେ କୁମ୍ଭକର୍ଣ୍ଣ
ଜ୍ୟେଷ୍ଠମାସ ଶୁକ୍ଲପକ୍ଷ ଅଷ୍ଟମୀର ଦିନ ।
ଶ୍ରଦ୍ଧାରେ ଯେ ଜନ ଉପବାସେ ରହେ ତହିଁ
ଯେଉଁ ପୁଣ୍ୟଫଳ ମିଳେ ଶୁଣ ମନଦେଇ ।
ପଦେ ପଦେ ଯଜ୍ଞଫଳ ମିଳଇ ନିଶ୍ଚୟ
ମୁନିଗଣ ସାଧଗଣ ଆଦିତ୍ୟ ନିଶ୍ଚୟ ।
ବସୁଗଣ ମରୁଦ୍‌ଗଣ ଅଗ୍ନିଗଣ ଆସି
ଏ ତୀର୍ଥ ସେବନ୍ତି ଯତ୍ନେ ରହି ଦିବାନିଶି ।
ଯେବେ କେହି ପ୍ରାଣୀକରେ ଏ ତୀର୍ଥେ ପ୍ରବେଶ
ପାପମୁକ୍ତ ହୋଇ ନିତ୍ୟସ୍ଥାନେ କରେ ବାସ ।
ଯେଉଁ ଶିବଲିଙ୍ଗ ଅଛି ବଟ ଚାରିପାଶେ
ସେ ଲିଙ୍ଗକୁ ଉମା ତ୍ୟାଗ ନ କରନ୍ତିଲେଶେ ।

ଯେ ଜନ ଗୋକର୍ଣ୍ଣ ତୀର୍ଥ ଦରଶନ କରେ
ଜ୍ଞାନାଜ୍ଞାନ ପାପ ଯେତେ ଥାଇ ତା ଶରୀରେ ।
ଶୁଚିହୋଇ ପୂଜାକଲେ ମହାଦେବ ଶିବ
ପାପରୁ ମୁକତ ହୋଇ ପୁଣ୍ୟ କରେ ଲାଭ ।
କୁମାର ବୟସେ ଯେବେ ବ୍ରହ୍ମଚାରୀ ହୋଇ
ସେହି ବ୍ରତକରି ପୁଣ୍ୟ ଯେତେ ସେ ସଞ୍ଚଇ ।
ଅଷ୍ଟମୀ ତିଥିରେ ତହିଁ ପୂଜିଲେ ଶଙ୍କର
ତେତିକି ପୁଣ୍ୟ ସଞ୍ଚୟ କରଇ ସେ ନର ।
ରୂପ ସଉଭାଗ୍ୟ ଧନ ସମ୍ପଦ ଇଚ୍ଛୁକ
ହୁଅଇ ସେବକ ଯେବେ କୁମାରେଶ୍ୱରଙ୍କ
ଅବଶ୍ୟ ତା ପାଇ ଏବେ ନାହିଁତ ସଂଶୟ
ତା ଉତ୍ତରେ ଅଛି ଏକ ଲିଙ୍ଗ ଶିଳାମୟ ।
ବୀର ବିଭୀଷଣ କରି ଯାହାଙ୍କର ପୂଜା
ଅଜର ଅମର ହୋଇ ହେଲା ଲଙ୍କରାଜା ।
ଆଷାଢ଼ ଶୁକଳପକ୍ଷ ଅଷ୍ଟମୀ ଦିବସେ
ଏ ଲିଙ୍ଗକୁ ପୂଜାକରେ ରହି ଉପବାସେ ।
ନିଶ୍ଚୟ ହୋଇବ ସେହି ଅଜର ଅମର
ଆହେ ଦ୍ୱିଜୋତ୍ତମ ଅଛି ଲିଙ୍ଗେକ ଆବର ।
ପୂର୍ଣ୍ଣେରିତ ନାମେ ସେହି ବିଖ୍ୟାତ ସଂସାରେ
ପୂଜିଲେ କାମନା ସିଦ୍ଧ ହୁଅଇ ସତ୍ୱରେ ।
ଏହି ଲିଙ୍ଗ ପୂଜା କରି ତ୍ରିଶିରା ଦୂଷଣ
ପାଇଥିଲେ ମହା ବଳ ବୀର୍ଯ୍ୟ ଧନୁର୍ବାଣ ।
ଚୈତ୍ରମାସେ ଶୁକ୍ଳ ପକ୍ଷେ ସେ ସ୍ଥାନରେ ରହି
ଦେବୀ ସହ ଦେବଙ୍କୁ ଯେ ଭକ୍ତିରେ ପୂଜଇ ।
ତାର ମନୋବାଞ୍ଛା ସିଦ୍ଧ ହୁଅଇ ଅବଶ୍ୟ
ହସ୍ତୀ ପାଦେଶ୍ୱର ନାମେ ଅଟନ୍ତି ଯେ ଈଶ ।
ଅଛନ୍ତି ସେ ମହାଲିଙ୍ଗ ସ୍ଥାଣୁବଟ ପୂର୍ବେ
ତାହାଙ୍କୁ ଦର୍ଶନ ଯାଇ କରିବଟି ଯେବେ ।
ପର ଜନ୍ମ କୃତ ପାପ ନ ରହିବ ଦେହେ
ଇହଜନ୍ମ କୃତ ପାପ କାହୁଁ ଅବା ରହେ ।
ତାହାର ଦକ୍ଷିଣ ଦିଗେ ଲିଙ୍ଗେକ ଅଛଇ
ହର୍ଷି ହାରିତ ତାହାଙ୍କୁ ସ୍ଥାପିଥିଲେ ନେଇ ।
ଶ୍ରଦ୍ଧାରେ ପୂଜିଲେ ସିଦ୍ଧି ମିଳଇ ନିଶ୍ଚୟ
ତା ଦକ୍ଷିଣେ ବ୍ୟାପିଅଛି ଆହେ ଋଷିଚୟ ।
ଲିଙ୍ଗ ଅଛି ସେ ପରମ ମଙ୍ଗଳ ସ୍ୱରୂପ
ତ୍ରୈଲୋକ୍ୟ ବିଖ୍ୟାତଲିଙ୍ଗ ହରେ ସର୍ବପାପ ।

ପରମ ମହାତ୍ମା ସ୍ୱୟଂ କଙ୍କାଳ ଧାରଣ
କରିଛନ୍ତି ସେହି ମହାଲିଙ୍ଗର ସ୍ଥାପନ ।
ଏହି ମହା ଶିବଲିଙ୍ଗ ଭକ୍ତି ମୁକ୍ତି ପ୍ରଦ
ଦରଶନେ ଅଗ୍ନିଷ୍ଟୋମ ଯଜ୍ଞ ହୁଏ ସିଦ୍ଧ ।
ଏକ ସିଦ୍ଧ ଲିଙ୍ଗ ଅଛି ପଶ୍ଚିମେ ଏହାର
ସିଦ୍ଧେଶ୍ୱର ନାମେ ସେହି ବିଖ୍ୟାତ ସଂସାର ।
ସର୍ବବିଧ ସିଦ୍ଧିକି ଏ ପ୍ରଦାନ କରଇ
ମୃକଣ୍ଡୁ ସ୍ଥାପିତ ଲିଙ୍ଗ ଦକ୍ଷିଣେ ଅଛଇ ।
ସର୍ବସିଦ୍ଧି ହୁଏ ସେହି ଲିଙ୍ଗ ଦରଶନେ
ଲିଙ୍ଗେକ ଅଛଇ ପୂର୍ବେ ତାର ସନ୍ନିଧାନେ ।
କରିଛନ୍ତି ସେ ଲିଙ୍ଗକୁ ଆଦିତ୍ୟ ସ୍ଥାପନ
ସେହିଲିଙ୍ଗ କରେ ସର୍ବ କଳୁଷ ନାଶନ ।
ଚିତ୍ରାଙ୍ଗଦା ନାମେ ଏକ ଗନ୍ଧର୍ବ ପ୍ରଧାନ
ରମ୍ଭା ଅପସରା ଅଛି ତାର ବିଦ୍ୟମାନ ।
ଅନୁରାଗେ ଦୁହେଁ ଗଲେ ସ୍ଥାଣୁ ଦରଶନେ
ସାନୁରାଗେ ଦରଶନ କରି ବେନିଜନେ ।
ମହାଦେବ ପୂଜାକରି ଘରକୁ ଆସନ୍ତେ
ସେହି ଦୁଇଲିଙ୍ଗ ଖ୍ୟାତି ଲଭିଲେ ଜଗତେ ।
ଚିତ୍ରାଙ୍ଗଦେଶ୍ୱର ଆଉ ନାମ ରମ୍ଭେଶ୍ୱର
ତାହାଙ୍କ ଦର୍ଶନେ ହୁଏ ଶରୀର ସୁନ୍ଦର ।
ମହାବଂଶେ ଜାତ ପୁଣି ହୁଅଇ ସେ ଜନ
ଯେଉଁ ଲିଙ୍ଗ ସ୍ଥାପିଥିଲେ ସହସ୍ରଲୋଚନ ।
ତାହାର ଦକ୍ଷିଣେ ସେହି ଲିଙ୍ଗ ପରସାଦେ
ମନୋବାଞ୍ଛା ସିଦ୍ଧି ଲାଭ ହୁଏ ଅପ୍ରମାଦେ ।
ପୂଜିଥିଲେ ଯେଉଁ ଲିଙ୍ଗ ଋଷି ପରାଶର
ତାଙ୍କ ଦରଶନେ ହୁଏ କବିତ୍ୱ ଆବର ।
ପୂଜିଥିଲେ ଯେଉଁ ଲିଙ୍ଗ ମୁନି ବେଦବ୍ୟାସ
ସର୍ବଜ୍ଞତ୍ୱ ବ୍ରହ୍ମଜ୍ଞତ୍ୱ ଦ୍ୟନ୍ତି ସେ ଅବଶ୍ୟ ।
ସ୍ଥାଣୁର ପଶ୍ଚିମେ ବିଜେ ହିମାଳୟେଶ୍ୱର
ସ୍ଥାପିଛନ୍ତି ତାହାପୂର୍ବେ ପୁଣ୍ୟକାରୀ ନର ।
ତା ପଶ୍ଚିମେ କାର୍ତ୍ତବୀର୍ଯ୍ୟ ସ୍ଥାପିତ ଯେ ଲିଙ୍ଗ
ତା ଦର୍ଶନେ ପାପରାଶି ନ ଛୁଇଁବ ଅଙ୍ଗ ।
ସୁପାର୍ଶ୍ୱ ସ୍ଥାପିତ ଲିଙ୍ଗ ତାହାର ଉତ୍ତରେ
ହନୁମାନ ସେ ଲିଙ୍ଗର ଆରାଧନା କରେ ।
ସେ ଲିଙ୍ଗ ପ୍ରସାଦେ ସିଦ୍ଧି ଅବଶ୍ୟ ମିଳଇ
ତାହାର ପୂର୍ବରେ ଯେଉ ଲିଙ୍ଗ ବିରାଜଇ ।
ବିଷ୍ଣୁ ଚକ୍ର ମଧ୍ୟେ ସେହି ପରମ ସୁନ୍ଦର
ତାହାଙ୍କୁ ପୂଜିଲେ ସର୍ବସିଦ୍ଧି ଲଭେ ନର ।
ତହିଁ ଲିଙ୍ଗ ସ୍ଥାପିଛନ୍ତି ବାସବ ଅରୁଣ
ସେହି ଦୁଇଲିଙ୍ଗ କରେ କାମନା ପ୍ରଦାନ ।
ମୁନି ସାଧ୍ୟ ଆଦିତ୍ୟ ଯେ ବସୁଗଣ ମିଳି
ପୂଜାକଲେ ପାପହର ଲିଙ୍ଗରୂପୀ ଶୂଳୀ ।
ତତ୍ତ୍ୱଦର୍ଶୀ ଋଷିଗଣ ସ୍ଥାପିଛନ୍ତି ଯେତେ
ତାର ସଂଖ୍ୟାନାହିଁ ମୁହିଁ କହିବଇଁ କେତେ ।
ତାର ପୂର୍ବ ଦିଗେ ଋଷି ବାଳଖିଲ୍ୟାଗଣ
ରୁଦ୍ରକୋଟି ନାମେ ତୀର୍ଥ କରିଣ ସ୍ଥାପନ ।
ଉମା ବ୍ରହ୍ମ ସରୋବର ନିକଟରେ ସେହି
ତାହାର ଦକ୍ଷିଣେ ଯେତେ ଲିଙ୍ଗ ଅଛି ରହି ।
ଗନ୍ଧର୍ବ କିନ୍ନର ଯକ୍ଷେ ସ୍ଥାପିଛନ୍ତି ତାହା
ଲିଙ୍ଗର ଯେ ସଂଖ୍ୟା ବାୟୁ ବୋଲିଛନ୍ତି ଯାହା ।
ସାର୍ଦ୍ଧ ତିନି କୋଟି ଲିଙ୍ଗ ରହିଛନ୍ତି ତହିଁ
ତାହା ଭିନ୍ନ ଆଉ କେତେ ତାର ସଂଖ୍ୟା ନାହିଁ ।
ସମୁଦାୟ ସ୍ଥାନ ଅଟେ ରୁଦ୍ରଙ୍କ ଆଶ୍ରୟ
ଏହା ଜାଣି ପୂଜଇ ଯେ ସେ ଲିଙ୍ଗ ନିଚୟ ।
ମନୋବାଞ୍ଛା ସିଦ୍ଧି ଲାଭ ହୁଅଇ ତାହାର
ଆବର ମହିମା ଶୁଣ ସେ ସ୍ଥାଣୁ ଲିଙ୍ଗର ।
ସ୍ଥାଣୁ ମନ୍ଦିରକୁ ଗଲେ ଜ୍ଞାନେ ବା ଅଜ୍ଞାନେ
ନିଷ୍ପାପୀ ହୋଇ ସେ ବସେ ବଇକୁଣ୍ଠ ସ୍ଥାନେ ।
ଚୈତ୍ର ତ୍ରୟୋଦଶୀ ଶୁଭ ନକ୍ଷତ୍ର ଯୋଗରେ
ସଂକ୍ରମଣ ଦିନେ ଶୁକ୍ର ଅର୍କ ଚନ୍ଦ୍ରବାରେ ।
ପବିତ୍ର ଦିବସେ ବ୍ରହ୍ମା ପବିତ୍ର ମାନସେ
ସ୍ଥାପିଛନ୍ତି ସ୍ଥାଣୁ ଲିଙ୍ଗ ତେଣୁ ଦିବୌକସେ ।
ଋଷିଗଣ ଘେନି ପୂଜା କରନ୍ତି ଭକ୍ତିରେ
ନିରାହାର ହୋଇଯେବେ କେହି ଶ୍ରଦ୍ଧାଭରେ ।
ମହାଦେବ ପୂଜା କରେ ସ୍ଥାଣୁ ତୀର୍ଥେ ରହି
ପ୍ରଦକ୍ଷିଣ କରଇ ଯେ ସ୍ଥାଣୁ ଲିଙ୍ଗ ତହିଁ ।
ପୃଥ୍ୱୀ ପ୍ରଦକ୍ଷିଣେ ଫଳ ଲଭଇ ସେ ଜନ
ଶେଷେ ସେ ପରମ ସ୍ଥାନେ କରେ ଅବସ୍ଥାନ ।
ସ୍ଥାଣୁବଟ ମାହାତ୍ମ୍ୟ ଏଠାରୁ ସମାପନ
ଗୋପୀନାଥ କରେ ଶିବ ଚରଣେ ପ୍ରଣାମ ।

=+=

## ଶିବ ମାହାତ୍ମ୍ୟ ଓ ସ୍ତୁତି

ପଚାରିଲେ ମାର୍କଣ୍ଡେୟ ଚିରଜୀବୀ ମୁନି
ଆମ୍ଭେ ସ୍ଥାଣୁ ଲିଙ୍ଗବଟ ମହିମା ଯେ ଶୁଣି ।
ତଥାପି ମନରେ ହେଲା ସଂଶୟ ଉତ୍ପନ୍ନ
ଫଳ ପାଇଅଛି କହ କେଉଁ ପାପୀଜନ ।
କହିଲେକ ମୁନିବର ସନତ କୁମାର
ଶୁଣ ମନଦେଇ ସ୍ଥାଣୁ ମାହାତ୍ମ୍ୟ ଆବର ।
ଯାହା ଶୁଣି ଲୋକେ ହେବେ ପାପରୁ ମୁକତ
ସ୍ଥାବର ଜଙ୍ଗମାତ୍ମକ କାଳେ ଏ ଜଗତ ।
ଜଳ ଗହଳରେ ନାଶ ହେଲା ଏକାର୍ଣ୍ଣବେ
ପୁଣି ବିଷ୍ଣୁ ସର୍ଜିବାକୁ ମନ ଦେଲେ ଭବେ ।
ଆପଣା ନାଭିରୁ କଲେ ପଦ୍ମ ଏକ ଶତ
ସେ ପଦ୍ମରୁ ଉପୁଜିଲେ ବ୍ରହ୍ମା ଲୋକତାତ ।
ତାଙ୍କଠାରୁ ହେଲେ ମୁନି ମରୀଚି ଉତ୍ପତ୍ତି
ମରୀଚି ମୁନିର ପୁତ୍ର କଶ୍ୟପ ଯେ ଯତି ।
କଶ୍ୟପଙ୍କଠାରୁ ଜାତ ହୋଇଲେ ଭାସ୍କର
ମନୁ ନୃପେ ହୋଇଲେ ଯେ ତାହାଙ୍କ ନନ୍ଦନ ।
ମନୁଙ୍କ ଛିଙ୍କରୁ ହେଲା ପୁତ୍ରେକ ଉତ୍ପତ୍ତି
ରାଜା ହୋଇ ରଖିଲା ସେ ସସାଗରା କ୍ଷିତି ।
ତାହାର ଭାରିଯା ନାମ ଅଟଇ ଯେ ଭୟା
ସେହି ଲୋକମାନଙ୍କର ଥିଲା ଭୟାବହା ।
ମୃତ୍ୟୁରୂପୀ କାଳଠାରୁ ଜାତ ସେହି ନାରୀ
ତାହାର ଗର୍ଭରୁ ଜାତ ବେଣ ଦଣ୍ଡଧାରୀ ।
ସେହି ବେଣ ଥିଲା ବେଦନିନ୍ଦକ ଦୁରାତ୍ମା !
ଛିଙ୍କ ପୁତ୍ର ମୁଖ ଦେଖି ମନୁ ମହାତମା ।
ଅରଣ୍ୟ ମଧ୍ୟରେ ରହି କଲେ ଘୋରତପ
ଲଭିଲେ ପରମ ଧର୍ମ ହୋଇଣ ନିଷ୍ପାପ ।
ତପଧର୍ମେ କଲେ ସ୍ୱର୍ଗ ପୃଥିବୀ ଆବୃତ
ତେଣେ କଲେ ସେହି ପୁନର୍ଜନ୍ମ ନିରାକୃତ ।
ବେଣ ହେଲା ସସାଗରା ପୃଥିବୀ ଈଶ୍ୱର
ପୂଜିଲେ ସକଳ ଲୋକେ ତାହାର ପୟର ।
କାଳାତ୍ମଜାତ୍ମଜ ବେଣ ମାତାମହ ଦୋଷେ
ଦୁଷ୍ଟବୁଦ୍ଧିରେ ଘୋଷଣାଦେଲା ଦେଶେ ଦେଶେ ।
ଦାନ ଯଜ୍ଞ ହୋମ ଆଉ ନ କରିବେ କେହି
ତୁମ୍ଭମାନଙ୍କର ଏକା ବନ୍ଦନୀୟ ମହିଁ ।
ତୁମ୍ଭଙ୍କୁ ମୁଁ ପାଳୁଅଛି ସୁଖେ ରହ ତୁମ୍ଭେ
ସଂସାରେ ନାହାନ୍ତି ମୋର ଭିନ୍ନ ଅନ୍ୟଦେବେ ।
ରାଜାର ଏ କଥା ଶୁଣି ଆସି ଋଷିଗଣ
ବୋଇଲେ ଦେଖାଇ ଶ୍ରୁତି ଧର୍ମର ପ୍ରମାଣ ।
ଯହିଁରେ କି ଅଛି ଯଜ୍ଞ ବିଧି ଅନୁଷ୍ଠାନ
ଯଜ୍ଞ ବିନେ ସ୍ୱର୍ଗବାସୀ ନ ହୁଅଇ ଜନ ।
ଯଜ୍ଞ ବିନେ ନ ହୁଅଇ ଦେବଙ୍କର ପ୍ରୀତି
ଦେବ ଅସନ୍ତୋଷେ ନୋହେ ଶସ୍ୟର ଉତ୍ପତ୍ତି ।
ଶସ୍ୟ ବୃଦ୍ଧି ପାଇଁ ଦେବେ ବରଷନ୍ତି ଜଳ
ଏ କାରଣୁ ଯଜ୍ଞ ଅଟେ ପ୍ରଜାଙ୍କର ମୂଳ ।
ଯଜ୍ଞେ ହବି ପାଇ ତୋଷେ ଅମର ନିକର
ଜଳେ ଶସ୍ୟ ବୃଦ୍ଧି କରି ପୋଷନ୍ତି ସଂସାର ।
ଏହି କଥା ଶୁଣି କ୍ରୋଧେ ବେଣ ଦଣ୍ଡଧାରୀ
କହିଲେ ସେ ଲୋଚନକୁ ସଞ୍ଚାଳନ କରି ।
ଦାନ ଯଜ୍ଞ କେହି ଆଉ କରି ନ ପାରିବେ
କ୍ରୋଧଅନ୍ଧହୋଇ ବେଣ ଏହା ବୋଲୁଁ ଜବେ ।
ଋଷିଗଣଙ୍କର ହୃଦେ କ୍ରୋଧ ହେଲା ଜାତ
ବଜ୍ର ସମନ୍ୱିତ କୁଶ କରି ମନ୍ତ୍ରପୂତ ।
ବେଣକୁ ନିହତ କଲେ ସେହି କୁଶମୂଳେ
ରାଜ୍ୟଯାକ ଅରାଜକ ହେଲା ସେହି କାଳେ ।
ସମୁଦାୟ ପୃଥ୍ୱୀ ହେଲା ଅନ୍ଧକାରାଚ୍ଛନ୍ନ
ଦସ୍ୟୁଗଣ ହରିନେଲେ ଲୋକଙ୍କର ଧନ ।
ଦସ୍ୟୁ ପୀଡ଼ାପାଇଣ ଯେ ଲୋକେ ଗଲେ ଧାଇଁ
ଋଷିଙ୍କ ଶରଣ ନେଲେ ଉପାୟ ନ ପାଇ ।
ତାହା ଦେଖି ଋଷିଗଣ ପୁଣି ହେଲେ ମେଳ
ଧରିଲେକ ଯାଇଁ ବେଣ ବାମ ବାହୁ ମୂଳ ।
ମନ୍ଥନ କରନ୍ତେ ହେଲା ପୁରୁଷେକ ଜାତ
ତାର ଖର୍ବ ଦେହ- ଦେଖି ଭାଳି ଋଷିବ୍ରାତ ।
ବୋଇଲେ ବେଣର ଥିଲା ଯେତେକ କଲ୍ମଷ
ନିଷାଦ ରୂପରେ ଜାତ କରୁଏ ପୁରୁଷ ।
ବେଣର ଦକ୍ଷିଣ କର ମନ୍ଥିଲେକ ପୁଣି
ପୁରୁଷେକ ଜାତ ହେଲା ଦୀର୍ଘ ଶୈଳ ଜାଣି ।
ଦିବ୍ୟ ଲକ୍ଷଣରେ ସେହି ହୋଇଛି ଲକ୍ଷିତ
ହସ୍ତଚକ୍ର ଛତ୍ର ଧ୍ୱଜ ଧନୁର୍ବାଣାଙ୍କିତ ।
ପୁରନ୍ଦର ପୁରଃସର ଅମର ନିକର
ସେହି ପୁରୁଷକୁ କଲେ ପୃଥିବୀ ଈଶ୍ୱର ।

ରାଜା ହୋଇ ଧର୍ମେ ସେହି ପ୍ରଜାଙ୍କୁ ପାଳିଲେ
ନୀରସା ରସାଙ୍କୁ ଏହି ସୁରସା ଯେ କଲେ ।
ମନ ମଧ୍ୟେ ଭାବିଲା ସେ ବେଣର ନନ୍ଦନ
ଅଧାର୍ମିକ ପିତା କଲେ ଯଜ୍ଞ ବିନାଶନ ।
କିରୂପେ ତାଙ୍କର ହେବ ପରଲୋକେ ସୁଖ
ଏମନ୍ତେ ସେ ଚିନ୍ତା କରି ହୁଅନ୍ତେ ବିମୁଖ ।
ଏ ସମୟେ ଉପସ୍ଥିତ ଦେବର୍ଷି ନାରଦ
ତାହାଙ୍କୁ ଦେଖିଣ ରାଜା ହୋଇଣ ଆନନ୍ଦ ।
ଚରଣେ ପ୍ରଣମି ଦେଲେ ବସିବା ଆସନ
ବୋଇଲେ ଭୋ ମୁନି ତୁମ୍ଭେ ବ୍ରହ୍ମାଙ୍କ ନନ୍ଦନ ।
ତିନିପୁର ଶୁଭାଶୁଭ ତୁମ୍ଭଙ୍କୁ ବିଦିତ
ମୋର ପିତା ଦୁରାଚାର ଧର୍ମ ବିବର୍ଜିତ ।
ପରଲୋକେ ଦିବ୍ୟସୁଖ ପାଇବେ କେମନ୍ତେ
ଏହା ବିଚାରିଣ କହ ମୁନିବର ମୋତେ ।
ଦେବର୍ଷି ନାରଦ ଜାଣିପାରି ଦିବ୍ୟଜ୍ଞାନେ
ବୋଇଲେ ତୋ ପିତା ଅଛି ମ୍ଳେଚ୍ଛସନ୍ନିଧାନେ
ମ୍ଳେଚ୍ଛଜନ୍ମ ପାଇ ସେହି କ୍ଷୟକୁଷ୍ଠୀ ହୋଇ
ଘୋର ଦୁଃଖ ପାଉଅଛି ଆହେ ନରସାଇଁ ।
ମହାତ୍ମା ନାରଦ କଥା ଶୁଣିଣ ରାଜନ
ଅତ୍ୟନ୍ତ ଦୁଃଖିତ ହୋଇ ଭାଳିଲେ ଏସନ ।
ପିତାଙ୍କୁ ଭୟରୁ ରକ୍ଷା କରି ଯେ ପାରଇ
ସେହି ସିନା ପୁତ୍ର ମଧ୍ୟେ ଗଣନା ହୁଅଇ ।
ଏତେ ଭାଳି ପଚାରିଲେ ନାରଦଙ୍କୁ ପୁଣି
ମହାତ୍ମା ନାରଦ ସେହି ନୃପ କଥା ଶୁଣି ।
ବୋଇଲେ ତା ଦେହ କର ତୀର୍ଥେ ନିଗମନ
ଯେଉଁ ମହାତୀର୍ଥ ଅଛି ସର ସନ୍ନିଧାନ ।
ତହିଁରେ ବୁଡ଼ାଇ କର ତାଦେହକୁ ଶୁଦ୍ଧ
ଏହା କହି ଶୂନ୍ୟଯାନେ ଗଲେ ସେ ନାରଦ ।
ବେଣସୁତ ତହୁଁ ମ୍ଳେଚ୍ଛଦେଶେ ଯାତ୍ରାକଲେ
ଉତ୍ତର ଦିଗରେ ମ୍ଳେଚ୍ଛ ଦେଶେ ପହୁଞ୍ଚିଲେ ।
ଦେଖିଲେ ତାହାଙ୍କ ପିତା ମ୍ଳେଚ୍ଛଙ୍କ ମଧ୍ୟରେ
ବସିଅଛି କ୍ଷୟକୁଷ୍ଠରୋଗେ ଦୁଃଖ ଭରେ ।
ତାହାଙ୍କୁ ଦେଖିଣ ଶୋକ ସନ୍ତପ୍ତ ହୃଦୟେ
ବୋଇଲେ ସ୍ୱକର୍ମଫଳ ଭୋଗୁଛ ଭୋ ରାୟେ ।
ଆବର ମ୍ଳେଚ୍ଛଙ୍କୁ ଚାହିଁ ବୋଇଲେ ଏମନ୍ତ
ଏ ଯେଉଁ ପୁରୁଷ ସୂକ୍ଷ୍ମକାୟ ରୋଗାକ୍ରାନ୍ତ ।
ଏହାଙ୍କୁ ମୁଁ ଗୃହେ ନେବି ଦିଅ ଅନୁମତି
ଭଲ କରାଇବି ବୈଦ୍ୟ ଲଗାଇ ସମ୍ପ୍ରତି ।
ଦୟାଳୁ ନୃପତି କଥା ଶୁଣି ମ୍ଳେଚ୍ଛଗଣ
ବୋଇଲେ ପ୍ରମାଣ କରି ଧନ୍ୟ ହେ ରାଜନ ।
ଏ ରୋଗୀକି ଯେବେ ତୁମ୍ଭେ ଭଲ କରି ପାର
ଜଗତେ ତୁମ୍ଭର ଖ୍ୟାତ ହୋଇବ ଅପାର ।
ଏହିକ୍ଷଣି ନିଅ ଏଥେ ନାହିଁ ନା ଆପତ୍ତି
ମ୍ଳେଚ୍ଛଙ୍କର କଥା ଶୁଣି ତକ୍ଷଣେ ନୃପତି ।
ଶିବିକା ବାହନକାରୀ ପୁରୁଷଙ୍କୁ ଆଣି
ବୋଇଲେ ଦ୍ୱିଗୁଣ ଧନ ଦେବି ମୁହିଁ ଗଣି ।
ଏହି ପୁରୁଷଙ୍କୁ ତୁମ୍ଭେ ସୁଖେ ଘେନି ଚାଲ
ଦୟାଳୁ ରାଜାର କଥା ଶୁଣି ସେ ଗୋପାଳ ।
ଶିବିକାରେ ବସାଇଲେ ପୁରୁଷଙ୍କୁ ନେଇ
କୁରୁକ୍ଷେତ୍ରେ ପ୍ରବେଶିଲେ ଯାଇ ନରସାଇଁ ।
ତହୁଁ ଯାଇ ସ୍ଥାଣୁତୀର୍ଥେ ହୋଇଲେ ପ୍ରବେଶ
ଶିବିକାରୁ ଓହ୍ଲାଇଲେ ତହିଁ ସେ ପୁରୁଷ ।
ଗୋପାଳେ ଶିବିକାଧନ ଘେନି ଗଲେ ଘରେ
ବେଣର ନନ୍ଦନ ତହୁଁ ଏଥୁ ଅନନ୍ତରେ ।
ମଧ୍ୟାହ୍ନ ସମୟେ ତୀର୍ଥେ କରାନ୍ତେ ସେ ସ୍ନାନ
ଅନ୍ତରୀକ୍ଷେ ଥାଇ ବାୟୁ ବୋଇଲେ ଏସନ ।
ଏ ଦୁଷ୍ଟର କର୍ମ ବାବୁ ନ କର ଭୋ ତାତ
ଯତ୍ନେ ଏ ତୀର୍ଥକୁ ରକ୍ଷା କର ବେଣସୁତ ।
ଭୟଙ୍କର ମହାପାପୀ ଅଟେ ଏହି ଜନ
ଏହ ବ୍ୟକ୍ତି ଯେବେ କରେ ଏ ତୀର୍ଥରେ ସ୍ନାନ ।
ନିଶ୍ଚୟ ଏ ମହାତୀର୍ଥ ବିନାଶ ପାଇବ
ଏ ମହାପାପରୁ କେବେ ମୋକ୍ଷ ନ ହୋଇବ ।
ବାୟୁର ଏ କଥା ଶୁଣି ଦୁଃଖିତ ରାଜନ
ବୋଇଲେ ଭୋ ଦେବ ତୁମ୍ଭ ଆଜ୍ଞା ଅଲଙ୍ଘନ ।
ପାପର ଯେ ପ୍ରାୟଶ୍ଚିତ୍ତ କହିବ ଯେପରି
ତାହା ମୁଁ କରିବି ସତ୍ୟ ସତ୍ୟ ଏ ମୋହରି ।
ଏ ଜନ ହୋଇଛି ଘୋର ପାପରେ ଆଚ୍ଛନ୍ନ
ସୁଦୟା କରିଣ କହ ମୋକ୍ଷର ବିଧାନ ।
ଏହା ଶୁଣି ବୋଇଲେକ ଅମର ନିକର
ଏହା ପାଇଁ ତୁମ୍ଭେ ପ୍ରତିତୀର୍ଥେ ସ୍ନାନକର ।
ସବୁ ତୀର୍ଥ ଜଳ ଆଣି ଢ଼ାଳ ଏହାଶିରେ
ପ୍ରତିକୂଳ ବାହିନୀ ଯେ ସରସ୍ୱତୀ ନୀରେ ।

ଏହା ଶିରେ ଢ଼ାଳଆଣି ପାପ ଯାଉ କ୍ଷୟ
ଶୁଣି ଆଶ୍ରମେକ କଲେ ତହିଁ ମହାରାୟ ।
ପ୍ରତିଦିନ ତୀର୍ଥ ସ୍ନାନ କରି ତୀର୍ଥ ଜଳେ
ପିତାଙ୍କୁ କରାନ୍ତି ସ୍ନାନ ତହିଁ ମହୀପାଳେ ।
ସ୍ଥାଣୁମଠେ ପହୁଞ୍ଚିଲା ଏକଇ କୁକ୍କୁର
ପୂର୍ବେ ସେହି ଥିଲା କୌଳଗଣ ଅଧୀଶ୍ୱର ।
ଦେବ ଦ୍ରବ୍ୟ ରକ୍ଷା ସେହି କରେ ବିଧି ମତେ
ତେଣୁ ଲୋକଙ୍କର ପ୍ରିୟ ହୋଇଥାଇ ନିତ୍ୟେ
ଦେବ କାର୍ଯ୍ୟ ପରାୟଣ ହୋଇ କାଟେ ଦିନ
କାଳେ ପୁଣି କଲା ଦେବଦ୍ରବ୍ୟ ବିନାଶନ ।
ସେହି ଧନେ ଆପଣାର କୁଟୁମ୍ବ ପୋଷିଲା
ସମୟେ ଏ ମୃତ୍ୟୁ ପାଇ ଯମପୁରେ ଗଲା ।
ଯମ ବୋଇଲେରେ ପାପି କୁକ୍କୁର ତୁ ହୁଅ
ଯମ ବାକ୍ୟେ ଅଇଲା ସେ କୌଳଗଣ ରାୟ ।
ରହିଲା କୁକ୍କୁର ହୋଇ ସୌଗନ୍ଧିକ ବନେ
ବହୁକାଳ ପରେ ସେହି ପୁଣି ଏକ ଦିନେ ।
ଦୈତ ବଳ ତ୍ୟାଗ କରି ସାନ୍ନହତ୍ୟ ସରେ
ପ୍ରବେଶ ହୁଅନ୍ତେ ସ୍ଥାଣୁବଟ ପ୍ରସାଦରେ ।
ଅତ୍ୟନ୍ତ ପିପାସୁ ହୋଇ ଦିନେ ଏ କୁକ୍କୁର
ସ୍ନାନ କରି ପାନକଲା ସରସ୍ୱତୀ ନୀର ।
କିଞ୍ଚିତ ପାତକ ତାର ନ ରହିଲା ଦେହେ
ଆହାରାର୍ଥେ କଲା ସେହି ମଠରେ ବିଜୟେ ।
ବେଣ ଧୀରେ ଧୀରେ ଯାଇଁ କଲେ ତାକୁ ସ୍ପର୍ଶ
ନିର୍ଭୟେ ସେ କୁକ୍କୁରଟି ରହିଲେ ତାପାଶ ।
ସେ କୁକ୍କୁର ଦେହେ ଯେତେ ଜଳବିନ୍ଦୁ ଥିଲା
ବେଣ ନୃପତିର ଦେହେ ଆସି ସେ ପଡ଼ିଲା ।
ସଂସାରେ ବିରକ୍ତ ଚିତ୍ତ ହେଲା ସେ ତକ୍ଷଣେ
ସ୍ଥାଣୁତୀର୍ଥ ପରସାଦେ ପୁତ୍ରର ଯତନେ ।
ଦିବ୍ୟଦେହ ପାଇ ହେଲା ଜିତାତ୍ମା ଆବର
ସ୍ଥାଣୁ ସ୍ତୁତି ଆରମ୍ଭିଲା କରି ନମସ୍କାର ।
ଦିବ୍ୟଲୀଳା ବିଗ୍ରହ ଭୋ ସକଳ ନିୟନ୍ତା
ଚନ୍ଦ୍ରଭୂଷଣ ନରେଶ ଶରଣ ସର୍ବଥା ।
ମହାଦେବ ମହାତ୍ମା ହେ ବିଶ୍ୱଜନ ପତି
ତୁମ୍ଭର ଶରଣ ନେଲି ମୁଁ ଦୁର୍ଗତ ଅତି ।
ହେ ଦେବଦେବେଶ ସର୍ବ ଶତ୍ରୁନିସୂଦନ
ଦେବେଶ ବଳବିଷ୍ଟବ୍ଧ ମୁଁ ତୁମ୍ଭ ଶରଣ ।

ଦେବଦୈତ୍ୟ ପୂଜିତ ହେ ବିରୂପାକ୍ଷ ଯକ୍ଷ
ସହସ୍ରାକ୍ଷ ଯକ୍ଷେଶ୍ୱର ପ୍ରିୟ ପଞ୍ଚମୁଖ ।
ଆହେ ଦେବପାଦ ପଦ୍ମ ବିସ୍ତୃତ ତୁମ୍ଭର
ବିଶ୍ୱବ୍ୟାପୀ ଅଟେ ତୁମ୍ଭ ଆଖି ମୁଖ ଶିର ।
ସଂସାରର ସବୁ କଥା ଯାକ ତୁମ୍ଭେ ଶୁଣ
ସବୁ ବ୍ୟାପିରହିଛନ୍ତି ଆହେ ଶଙ୍କୁକର୍ଣ୍ଣ ।
ମହାକର୍ଣ୍ଣ କୁମ୍ଭକର୍ଣ୍ଣ ଅର୍ଣ୍ଣବ ନିଳୟ
ଗୋକର୍ଣ୍ଣ ରାଜେନ୍ଦ୍ର କର୍ଣ୍ଣ ମଣିକର୍ଣ୍ଣ ପ୍ରିୟ ।
ତୁମ୍ଭଙ୍କୁ ମୁଁ ବାରମ୍ବାର କରେଁ ନମସ୍କାର
ଶତଜିହ୍ୱା ଶତାବର୍ତ୍ତ ତୁମ୍ଭେ ଶତୋଦର ।
ତୁମ୍ଭେ ସନାତନ ତୁମ୍ଭ ମହିମାକୁ ଗାନ
କରନ୍ତି ଗାୟତ୍ରୀ ଦେବୀ ଉପାସକ ଗଣ ।
ତୁମ୍ଭେ ଦେବ ଅର୍କରୂପୀ ତୁମ୍ଭର ଯେ ସ୍ତୁତି
ଅର୍କ ଉପାସକ ଗଣ କରୁଥାନ୍ତି ନିତି ।
ତୁମ୍ଭେ ବ୍ରହ୍ମମୂର୍ତ୍ତି ଶତକ୍ରତୁ ଉର୍ଦ୍ଧ୍ୱେ ରହ
ତୁମ୍ଭେ ମହାମୂର୍ତ୍ତି ଗୋଷ୍ଠେ ଗୋରୂପଲ ପ୍ରାୟ ।
ସପତ ସମୁଦ୍ର ଆଉ ଦେବତା ସକଳ
ତୁମ୍ଭର ମୂର୍ତ୍ତିରେ ଅଛି ମେଦିନୀ ମଣ୍ଡଳ ।
ମୁଁ ତୁମ୍ଭ ଶରୀରେ ଦେଖେ ସୋମାଗ୍ନି ବରୁଣ
ସୂର୍ଯ୍ୟ ବ୍ରହ୍ମା ବୃହସ୍ପତି ଦେବ ନାରାୟଣ ।
ତୁମ୍ଭେ କାର୍ଯ୍ୟକାରଣ ହେ କ୍ରିୟା କ୍ରିୟାକର୍ତ୍ତା
ତୁମ୍ଭେ ସଦସତ ଅଧିଷ୍ଠାତୃ ଯେ ଦେବତା ।
ଆହେ ଭଗବାନ ତୁମ୍ଭେ ପ୍ରଳୟ ପ୍ରଭାବ
ବରଦ ହେ ଉଗ୍ରରୂପୀ ତୁମ୍ଭେ ସର୍ବଭବ ।
ତୁମ୍ଭଙ୍କୁ ପ୍ରଣାମ ଆହେ ଅନ୍ଧକ-ସୂଦନ
ତୁମ୍ଭେ ଦେବ ପଶୁପତି ମୋ ପ୍ରଣତି ଘେନ ।
ତ୍ରିଶୂଳ ଆସକ୍ତ ପାଣି ତ୍ରିଜଟ ତ୍ରିଶୀର୍ଷ
ତୁମ୍ଭ ଶ୍ରୀଚରଣେ ମୋରପ୍ରଣାମ ଅଶେଷ ।
ତ୍ର୍ୟମ୍ବକ ତ୍ରିନେତ୍ର ଆହେ ତ୍ରିପୁର ନିହନ୍ତା
ତୁମ୍ଭଙ୍କୁ ପ୍ରଣାମ କରେଁ ମୁହିଁ ହତଚେତା ।
ଡ଼ିଣ୍ଡିମ ଆସକ୍ତ ହସ୍ତ ନମୋ ଦଣ୍ଡମୁଣ୍ଡ ।
ଊର୍ଦ୍ଧ୍ୱକେଶ ଊର୍ଦ୍ଧ୍ୱଦଂଷ୍ଟ୍ର ତୁମ୍ଭେ ଶୁକ୍ଳଚଣ୍ଡ ।
ବିକୃତି ସ୍ୱରୂପ ତୁମ୍ଭେ ଧୂମ୍ର ରକ୍ତବର୍ଣ୍ଣ
ପ୍ରଣତି ହେ ନୀଳଗ୍ରୀବ ତୁମ୍ଭେ କୃଷ୍ଣବର୍ଣ୍ଣ ।
ନମସ୍ତେ ଅପ୍ରତି ରୂପ ବିରୂପ ହେ ଶିବ
ସୂର୍ଯ୍ୟରୂପ ସୂର୍ଯ୍ୟମାଳ ତୁମ୍ଭେ ମହାଦେବ ।

ତୁମ୍ଭେ ଯେ ସ୍ୱରୂପ ଧ୍ୱଜମାଳାରେ ଭୂଷିତ
ତୁମ୍ଭ ଶ୍ରୀ ଚରଣତଳେ ମୋର ପ୍ରଣିପାତ ।
ନମୋ ନାନା ଅଭିରାମ ନମ ପଟ୍ଟଚର
ନମସ୍ତେ ଗଣେନ୍ଦ୍ର ନାଥ ବୃକ୍ଷସ୍କନ୍ଧ ହର ।
ନମଃ ପର୍ଣ୍ଣଧାରପୁଟ'ଧ୍ୱନି ସଂକ୍ରନ୍ଦନ
ନମସ୍ତେ ହରିଣ୍ୟବର୍ଣ୍ଣ ଜଗତ ବନ୍ଦନ ।
ସ୍ତୁତ ସ୍ତୁତ୍ୟ ସ୍ତୁତିସ୍ଥ ହେ କନକବର୍ଚ୍ଚସ
ସର୍ବଭୂତ ଶରୀଚ ହେ ସର୍ବ ସର୍ବଭକ୍ଷ ।
ନମସ୍ତେ ସନତାଦଗ୍ର ପତାକୀ ହେ ହୋତା
ନମୋରୂପୀ ମନ୍ତ୍ରରୂପୀ ନମସ୍ତେ ହେ ହନ୍ତା ।
କଟକଟ ସ୍ୱରୂପ ହେ ନମସ୍ତେ ନମସ୍ତେ
ଶୟିତ ଉତ୍‌ଥିତ ମୋର ନମସ୍କାର ତୋତେ ।
ତୁମ୍ଭେ କୃଶ ନାଶ ତୁମ୍ଭେ ସ୍ଥିତ ଧାମ ସାର
କୁଟିଳ ହେ ମୁଣ୍ଡ ଘେନ ମୋର ନମସ୍କାର ।
କର୍ତ୍ତନଶୀଳ ହେ ଲୟ ବାଦିତ୍ର ଶାଳିନେ
ପ୍ରଣାମ କରୁଛି ଘେନ ତୁମ୍ଭ ଶ୍ରୀଚରଣେ ।
ନାଟ୍ୟ ଉପହାର ଲୁବ୍‌ଧ ମୁଖ୍ୟବାହ୍ୟ ଶାଳି
ତୁମ୍ଭଙ୍କୁ ମୁଁ ନମସ୍କାର କରେ ଆହେ ଶୂଳି ।
ନମସ୍ତେ ହେ ବଳ ଅତି ବଳ ଘାତି ଜ୍ୟେଷ୍ଠ
କାଳବିନାଶକ କାଳ ସ୍ୱରୂପ ହେ ଶ୍ରେଷ୍ଠ ।
ହେ ସଂସାରକ୍ଷୟରୂପୀ ତୁମ୍ଭଙ୍କୁ ପ୍ରଣତି
ତୁମ୍ଭେ ହେବ ହିମାଳୟ ଦୁହିତାର ପତି ।
ନମସ୍ତେ ଭୈରବ ଉଗ୍ର ଦଶବାହୁ ଭବ
ନମସ୍ତେ ନମସ୍ତେ ଚିତିଭସ୍ମପ୍ରିୟ ଦେବ ।
କପାଳ ଆସକ୍ତ ପାଣି ନମୋ ବିଭୀଷଣ
ଭୀଷ୍ମ ହିମବ୍ରତ ଧର ଚରଣେ ଶରଣ ।
ବିକୃତବକ୍ତ୍ର ହେ ବକପ୍ରାନ୍ତ ଉଗ୍ରଦୃଷ୍ଟି
ନମଃ ପକ୍ୱ ଆମ ମାଂସଲୁବ୍‌ଧ ହେ ଧୂର୍ଜଟି ।
ତୁମ୍ଭି ବୀଣାପ୍ରିୟ ପାଦେ ମୋର ନମସ୍କାର
ଭାବନ ବିରକ୍ତ ବକ୍ତ୍ର ଅକ୍ଷମାଳା ଧର ।
ନମସ୍ତେ ବିଭେଦ ଭେଦ ଭିନ୍ନ ରୂପ ଛାୟା
ତପନ ସ୍ୱରୂପ ଯାର ଦେହେ ନାହିଁ ମାୟା ।
ଅଘୋରହେ ଘୋର ରୂପଘୋର ଘୋରତର
ଶିବ ଶାନ୍ତ ସ୍ୱରୂପଙ୍କୁ ମୋର ନମସ୍କାର ।
କପାଳ ସ୍ୱରୂପ ବହୁନେତ୍ର ଏକମୂର୍ତ୍ତି
କ୍ଷୁଦ୍ରଲବ୍‌ଧଯଜ୍ଞ ପ୍ରିୟ ତୁମ୍ଭଙ୍କୁ ପ୍ରଣତି ।

ପଞ୍ଚାଳ ସିତାଙ୍ଗ ତୁମ୍ଭେ ଯମ ନିୟମିତା
ତୁମ୍ଭେ ଜଗତର ସୃଷ୍ଟି ସ୍ଥିତି ଲୟକର୍ତ୍ତା ।
ଘଣ୍ଟାଘଣ୍ଟ ନିର୍ଘଣ୍ଟ ହେ ଚିତ୍ର ଉରୁଘଣ୍ଟ
ଘଣ୍ଟାମାଳା ବିଭୂଷିତ ସସ୍ର ଶତଘଣ୍ଟ ।
ପ୍ରାଣି ସଂଘଣ୍ଟ ଘଣ୍ଟାର ତୁମ୍ଭଙ୍କୁ ପ୍ରଣତି
କିଳିକିଳା ପ୍ରିୟ ଆହେ ପ୍ରଭୁ ବିଶ୍ୱପତି ।
ନମସ୍ତେ ହୁଙ୍କାର ପ୍ରିୟ ହୁଁ ହୁଁକାର ପାର
ସମସମ ତୁମ୍ଭଙ୍କୁ ହେ ମୋର ନମସ୍କାର ।
ଗୃହ ବୃକ୍ଷ ନିକେତନ ହେ ତାରକ ତର
ଗର୍ଭମାଂସ ଶୃଗାଳଙ୍କୁ ପ୍ରଣାମ ମୋହର ।
ଯଜ୍ଞ ଯଜମାନ ତୁମ୍ଭେ ହୁତହେ ପ୍ରହୁତ
ଯଜ୍ଞବାହ ହବ୍ୟତପ୍ୟ ତପନ ତାପିତ ।
ତୁମ୍ଭେ ତୁଣ୍ଡ ତୁଣ୍ଡ୍ୟ ତୁମ୍ଭେ ତୁମ୍ଭେ ଗଣପତି
ତୁମ୍ଭଙ୍କୁ ମୁଁ ବାରବାର କରୁଛି ପ୍ରଣତି ।
ତୁମ୍ଭେ ଅନ୍ନପତି ପ୍ରଭୁ ତୁମ୍ଭେ ଅନ୍ନଦାତା
ନମସ୍କାର ଘେନ ଆହେ ବିବିଧାନ୍ନ ଭୋକ୍ତା
ନମସ୍ତେ ସହସ୍ରପାଦ ହେ ସହସ୍ରଶିର
ସହସ୍ର ସହସ୍ର ଶୂଳ ଉଦ୍ୟତ ତୁମ୍ଭର ।
ସହସ୍ରାଭରଣ ଆହେ ବାଳ ଅନୁଚର
ବାଳଲୀଳା ବିଳାସିଙ୍କୁ ପ୍ରଣାମ ମୋହର ।
ତୁମ୍ଭେ ବାଳବୃଦ୍ଧ କ୍ଷୁବ୍‌ଧ କ୍ଷୋଭଣ ସ୍ୱରୂପ
ଲୁଳିତ ତୁମ୍ଭର କେଶେ ଭାଗୀରଥି ଆପ ।
ତୁମ୍ଭେ ଷଟକର୍ମ ତୁଷ୍ଟ ତୁମ୍ଭେ ମୁଞ୍ଜାକେଶ
ତ୍ରିକର୍ମ ନିରତଙ୍କୁ ଯେ ପ୍ରଣାମ ଅଶେଷ ।
ତୁମ୍ଭେ ଲଗ୍ନ ପ୍ରାଣଚଣ୍ଡ କୃଶ ଯେ ସ୍ଫୋଟନ
ଧର୍ମାର୍ଥ କାମ ମୋକ୍ଷର କଥ୍ୟ ଯେ କଥନ ।
ସଂଖ୍ୟ ସଂଖ୍ୟମୁଖ୍ୟ ତୁମ୍ଭେ ସଂଖ୍ୟଯୋଗମୁଖ
ଚତୁଷ୍ପଦ ରଥ ରଥ୍ୟ ହର ମୋର ଦୁଃଖ ।
କୃଷ୍ଣାଜିନୋତ୍ତରୀୟ ହେ ନମସ୍ତେ ବିରଥ
ନମୋ ନମୋ ହରିକେଶ ହେ ଅମ୍ବିକାନାଥ ।
ତୁମ୍ଭେ ବ୍ୟକ୍ତ ଅବ୍ୟକ୍ତ ଯେ ସକଳ ବିଧାତା
କାମଦ କାମଘ୍ନ କାମ ବିଚାର କରତା ।
ତୃପ୍ତା ତୃପ୍ତ ବିଚାରିଣେ ସର୍ବ ଦୟାପନ୍ନ
ନମସ୍ତେ ହେ ପ୍ରଭୁ କଳ୍ପ ସନ୍ଧ୍ୟା ବିଚାରଣ ।
ମହାସତ୍ତ୍ୱ ମହାବାହୁ ତୁମ୍ଭେ ମହାବଳ
ତୁମ୍ଭେ ମହା ମେଘଧର ପ୍ରଖ୍ୟ ମହାକାଳ ।

ତୁମ୍ଭଙ୍କୁ ଯେ ନମସ୍କାର ଆହେ ମହାଦ୍ୟୁତି
ମେଘାବର୍ତ୍ତ ଯୁଗାବର୍ତ୍ତ ହେ ଚନ୍ଦ୍ରାର୍କପତି ।
ତୁମ୍ଭେ ଅନ୍ନ ଅନ୍ନ ଭୋକ୍ତା ତୁମ୍ଭେ ପକ୍ୱଭୁଜ
ଜରାୟୁଜ ସ୍ୱେଦଜ ଯେ ଅଣ୍ଡଜ ଉଦ୍ଭିଜ ।
ନମସ୍ତେ ଅନଳ ରୂପି ଦେବ ଦେବ ଈଶ
ଚରାଚର ସାମ୍ୟଙ୍କୁ ଯେ ପ୍ରଣାମ ବିଶେଷ ।
ତୁମ୍ଭେ ପାତା ତୁମ୍ଭେ ହନ୍ତା ତୁମ୍ଭେ ପରଂବ୍ରହ୍ମ
ତୁମ୍ଭେ ବହୁବିଦ ଜନ ଗତି ନମୋନମ ।
ମନର ପରମ ଜ୍ୟୋତି ଜ୍ୟୋତିଷ୍କରଜ୍ୟୋତି
ହଂସ ବୋଲି ବ୍ରହ୍ମବାଦୀ ତୁମ୍ଭଙ୍କୁ ବୋଲନ୍ତି ।
ତୁମ୍ଭେ ବୃକ୍ଷ ତୁମ୍ଭ ନାମ ଅଟେ ମଧୁକର
ଯଜ୍ଞେଷ୍ଟକ ନାମ ଦେଲେ ମୁନିଏ ତୁମ୍ଭର ।
ଆବର ଶ୍ରେଷ୍ଟକ ବୋଲି ବୋଲନ୍ତି ଯେ ମୁନି
ତୁମ୍ଭଙ୍କୁ କରନ୍ତି ସ୍ତୁତି ନିତ୍ୟ ବେଦ ଘେନି ।
ଉପନିଷଦ ଯେ ସ୍ତବ କରଇ ତୁମ୍ଭର
ତୁମ୍ଭେ ବିପ୍ର କ୍ଷତ୍ରି ବୈଶ୍ୟ ଶୂଦ୍ର ବର୍ଣ୍ଣାବର ।
ତୁମ୍ଭେ ମେଘସଂଘ ବିଦ୍ୟୁତ୍ ଅଶନି ଗର୍ଜନ
ତୁମ୍ଭେ ମୋର କୋଟି କୋଟି ନମସ୍କାରଘେନ ।
ତୁମ୍ଭେ ସଂବତ୍ସର ଋତୁ ଯୁଗ ପକ୍ଷ ମାସ
କଳା କାଷ୍ଠା ନିମେଷ ଯେ ନକ୍ଷତ୍ର ବିଶେଷ ।
ବୃକ୍ଷଗଣ ମଧ୍ୟେ ତମ୍ଭେ କକୁଭ ବୋଲାଅ
ଗିରିବର ମଧ୍ୟେ ତୁମ୍ଭେ ଅଟ ହିମାଳୟ ।
ମୃଗ ମଧ୍ୟେ ବ୍ୟାଘ୍ର ତୁମ୍ଭେ ପକ୍ଷି ମଧ୍ୟେ ତାର୍କ୍ଷ
ସର୍ପ ମଧ୍ୟେ ଅନନ୍ତ ହେ ଅଟ ବିରୂପାକ୍ଷ ।
ସିନ୍ଧୁ ମଧ୍ୟେ କ୍ଷୀର ସିନ୍ଧୁ ଯନ୍ତ୍ର ମଧ୍ୟେ ଧନୁ
ବ୍ରତ ମଧ୍ୟେ ସତ୍ୟ ତୁମ୍ଭେ ଗ୍ରହ ମଧ୍ୟେ ଭାନୁ ।
ତୁମ୍ଭେ ଦ୍ୱେଷ ଇଚ୍ଛା ରାଗ ମୋକ୍ଷ କ୍ଷମାକ୍ଷମ
ତୁମ୍ଭେ ବ୍ୟବସାୟ ଧୃତି ଲୋଭ କ୍ରୋଧ କାମ ।
ତୁମ୍ଭେ ଜୟାଜୟ ଚାପଧର ଗଦାଧର
ତୁମ୍ଭେ ଯେ ଖଟ୍ୱାଙ୍ଗଧାରୀ ତୁମ୍ଭେ ଶରଧର ।
ତୁମ୍ଭେ ଛେତ୍ତା ଭେତ୍ତା ହର୍ତ୍ତା ମନ୍ତା ଅବିନାଶୀ
ଦଶ ଲକ୍ଷଣରେ ଯୁକ୍ତ ତୁମ୍ଭେ କାଶୀବାସୀ ।
ଧର୍ମ ଅର୍ଥ କାମ ତୁମ୍ଭେ ସମୁଦ୍ର ସରିତ
ଜାହ୍ନବୀ ପର୍ବତ ତୁମ୍ଭେ ସରୋବର ତୀର୍ଥ ।
ତୁମ୍ଭେ ତୃଣ ଲତା ବଲ୍ଲୀ ଔଷଧି ସମୂହ
ତୁମ୍ଭେ ପଶୁ ପକ୍ଷୀ ମୃଗରୂପୀ ବିଶ୍ୱଦେହ ।

ତୁମ୍ଭେ ଯେ ସୁବର୍ଣ୍ଣ ବର୍ଣ୍ଣ ଅବର୍ଣ୍ଣ ଆବର
କପୋତ ମେଚକ କଦ୍ରୁ କପିଳ ଈଶ୍ୱର ।
ତୁମ୍ଭେ ହର୍ତ୍ତା କର୍ତ୍ତା ଇନ୍ଦ୍ର ଚନ୍ଦ୍ର ଦିବାକର
ତୁମ୍ଭେ ଯେ ସ୍ୱର୍ଭାନୁ ଭାନୁବରୁଣ କୁବେର ।
ପୃଥୁ କର୍ମ ଗୁଣାରମ୍ଭ ତୁମ୍ଭେ ଶ୍ୱେତ ପାତ
ତୁମ୍ଭେ କୃଷ୍ଣ ନୀଳ ତୁମ୍ଭ ହରିତ ଲୋହିତ ।
ତୁମ୍ଭେ ପୁଷ୍ପ ଫଳପ୍ରଦ ତୁମ୍ଭେ ଉପପ୍ଲବ
ତୁମ୍ଭେ ବହ୍ନି ତୁମ୍ଭେ ସୂର୍ଯ୍ୟ ତୁମ୍ଭେ ହବ୍ୟକବ୍ୟ ।
ତୁମ୍ଭେ ଶିଷ୍ୟ ତୁମ୍ଭେ ହୋତ୍ର ଯଜୁର୍ବେଦିଙ୍କର
ତୁମ୍ଭେ ତ୍ରିସୌପର୍ଣ୍ଣ ଶତ ରୁଦ୍ରୀୟ ଆବର ।
ତୁମ୍ଭେ ଯେ ପବିତ୍ର ବର ସକଳ ପବିତ୍ର
ମଙ୍ଗଳର ମଙ୍ଗଳ ଯେ ତୁମ୍ଭେ ତିନିନେତ୍ର ।
ତିନ୍ଦୁକ ଗିରିଜ ବୃକ୍ଷ ସରଳ ଜୀବର
ମୁଗ୍ଧ ପ୍ରାଣ ସତ୍ୱ ରଜ ତମ ଯେ ଆବର ।
ପ୍ରତିପଦା ପତି ତୁମ୍ଭେ ପ୍ରାଣ ଯେ ଅପାନ
ତୁମ୍ଭେ ବ୍ୟାନ ତୁମ୍ଭେ ପୁଣି ସମାନ ଉଦାନ ।
ଉନ୍ମେଷ ନିମିଷ ତୁମ୍ଭେ କ୍ଷୁତ ଯେ ଜୃମ୍ଭିତ
ତୁମ୍ଭେ ସିନା ଅନ୍ତର୍ଗତ ଦୃଷ୍ଟି ଯେ ଲୋହିତ ।
ଶୁଚିରୋମା ମହାବକ୍ତ୍ର ତୁମ୍ଭେ ମହୋଦର
ହରିଶ୍ମଶ୍ରୁ ଉର୍ଦ୍ଧ୍ୱକେଶ ଚଳାଚଳ ହର ।
ନୃତ୍ୟ ଗୀତ ବାଦିତ୍ରଙ୍କ ଗୀତ ବାଦ୍ୟ ପ୍ରିୟ
ତୁମ୍ଭେ ମତ୍ସ୍ୟ ତୁମ୍ଭେ ଜାଳ ଜଳୌକନିଚୟ ।
ତୁମ୍ଭେ କେଳି କଳାକଳିକାଳ ଯେ ଅକାଳ
ତୁମ୍ଭେ କାଳ ସ୍ୱରୂପ ଯେ ବିକାଳ ଦୁଷ୍କାଳ ।
ତୁମ୍ଭେ ମୃତ୍ୟୁ ତୁମ୍ଭେ ମୃତ୍ୟୁକର୍ତ୍ତା ହେ ଶଙ୍କର
ତୁମ୍ଭେ ପୁଣି ଯଜ୍ଞ ଅଟ ଯଜ୍ଞ ଭୟଙ୍କର ।
ତୁମ୍ଭେ ଯେ ଅନ୍ତକ ପୁଣି ତୁମ୍ଭେ ସଂବର୍ତ୍ତକ
ତୁମ୍ଭେ ଘଣ୍ଟଘଣ୍ଟୀ ମହାଘଣ୍ଟୀ ବଳାହକ ।
ତୁମ୍ଭେ ମାଳି ମାତଳି ହେ ତୁମ୍ଭେ ସିନାଚରୀ
ତୁମ୍ଭେ ବ୍ରହ୍ମା କାଳଯମ ଅଗ୍ନି ଦଣ୍ଡକାରୀ ।
ତୁମ୍ଭେ ଦଣ୍ଡୀ ତ୍ରିମୁଣ୍ଡୀ ହେ ତୁମ୍ଭେ ଯୁଗବେଦ
ଚତୁର୍ହୋତ୍ର ପ୍ରବର୍ତ୍ତକ ତୁମ୍ଭେ ବିନ୍ଦୁ ନାଦ ।
ତୁମ୍ଭେ ଯେ ଆଶ୍ରମ ନେତା ବର୍ଣ୍ଣ ପ୍ରତିଷ୍ଠାତା
ତୁମ୍ଭେ ନିତ୍ୟ ଲକ୍ଷପ୍ରିୟ ମୂର୍ତ୍ତି ମାନଧାତା ।
ଗଣାଧିକ ଗଣାଧିପ ରକ୍ତ ମାଲ୍ୟଧାରୀ
ତୁମ୍ଭେ ରକ୍ତ ବସ୍ତ୍ର ଅଙ୍ଗେ ପରିଧାନ କାରୀ ।

ତୁମ୍ଭର ପରମ ପ୍ରିୟ ଗିରିଗଇରିକ
ତୁମ୍ଭେ ଶିଳ୍ପିମାନଙ୍କର ଅଟ ପ୍ରବର୍ତ୍ତକ ।
ତୁମ୍ଭେ ସ୍ୱୟଂ ଶିଳ୍ପି ପୁଣି ଶିଳ୍ପିଙ୍କ ପ୍ରଧାନ
ତୁମ୍ଭେ ନାଶ କରିଅଛ ପୂଷାର ଦଶନ ।
ତୁମ୍ଭେ ଭଗନେତ୍ରାଙ୍କୁଶ ଶମ୍ଭୁ ବଷଟ୍‌କାର
ତୁମ୍ଭେ ସ୍ୱାହା ସ୍ୱଧା ପୁଣି ତୁମ୍ଭେ ନମସ୍କାର ।
ତାରକ ତାରକପ୍ରିୟ ତୁମ୍ଭେ ଗୃଢ଼ବ୍ରତ
ତୁମ୍ଭେ ଗୁହ୍ୟ ତପା ବ୍ରହ୍ମାତୁମ୍ଭେ ତପସତ୍ୟ ।
ତୁମ୍ଭେ ଧାତା ବିଧାତା ଯେ ପୃଥିବୀ ସଂଧାତା
ତୁମ୍ଭେ ବ୍ରହ୍ମଚର୍ଯ୍ୟ ପୁଣି ତୁମ୍ଭେ ଯେ ରୁଜତା ।
ତୁମ୍ଭେ ଯେ ଭୂତାତ୍ମା ଭୂତି ତୁମ୍ଭେ ଭୂତକୃତ
ଭୂତଭବ୍ୟ ଭବୋଭବ ତୁମ୍ଭେ ଭୂତନାଥ ।
ବ୍ୟାହୃତି ସ୍ୱରୂପ ତୁମ୍ଭେ ରୁତ ଧ୍ରୁତବନ୍ତ
ମହେଶ୍ୱର ଦୀକ୍ଷିତ ଯେ ତୁମ୍ଭେ ଅଦୀକ୍ଷିତ ।
ତୁମ୍ଭେ ଯେ ଦୁର୍ଦ୍ଧାନ୍ତ ଦାନ୍ତ ସଂଭବ ହେ କାନ୍ତ
ଯୁଗାବର୍ତ୍ତ ଚନ୍ଦ୍ରାବର୍ତ୍ତ ତୁମ୍ଭେ ଉମାକାନ୍ତ ।
ସଂବର୍ତ୍ତ ସଂପ୍ରବର୍ତ୍ତକ କାମସ୍ଥଳ ଅଣୁ
ବର୍ଣ୍ଣିକାର- ସ୍ରଜ- ପ୍ରିୟ ଆହେ ଦେବ ସ୍ଥାଣୁ ।
ଶକୁନି ହରିଣ୍ୟଗର୍ଭ ସୁମୁଖ ଦୁର୍ମୁଖ
ତୁମ୍ଭେ ନନ୍ଦିମୁଖ ପୁଣି ତୁମ୍ଭେ ଭୀମମୁଖ ।
ବିରାଟ ସ୍ୱରୂପ ତୁମ୍ଭେ ମହୋରଗ ପତି
ତୁମ୍ଭେ ହେ ଅଧର୍ମ ହନ୍ତା ଅଗତିର ଗତି ।
ଗଣୋତ୍କଟ ମହାଦେବ ତୁମ୍ଭେ ଦଣ୍ଡଧର
ଗୋନର୍ଦ୍ଦ ଗୋବୃଷେଶ୍ୱର ବାହନ ଯାହାର ।
ତୁମ୍ଭେ ଅଟ ତ୍ରଇଲୋକ୍ୟ ଗୋପ୍ତା ଗୋପ୍ରତାର
ଗୋବିନ୍ଦ ଗୋ ମାର୍ଗ ମାର୍ଗରୂପୀ ତୁମ୍ଭେ ସ୍ଥିର ।
ତୁମ୍ଭେଶ୍ରେଷ୍ଠ ତୁମ୍ଭେସ୍ଥାଣୁ ତୁମ୍ଭେ କୋପକୋପ
ତୁମ୍ଭେ ଯେ ଦୁରତିକ୍ରମ ଦୁଃସହ ସ୍ୱରୂପ ।
ଦୁର୍ବାରଣ ଦୁର୍ବିସହ ତୁମ୍ଭେ ଦୁଷ୍ପ୍ରକାଶ
ଦୁର୍ଦ୍ଧର୍ଷ ଦୁର୍ଜୟ ତୁମ୍ଭେ ତୁମ୍ଭେ ଯେ ଦୁର୍ଦ୍ଦର୍ଶ ।
ତୁମ୍ଭେ ଯେ ଶଶଙ୍କବ୍ୟାଧି ଶୀତ ଉଷ୍ଣ ସିଦ୍ଧି
ତୁମ୍ଭେ କ୍ଷୁଧାତୃଷ୍ଣା ଜରାମୟ ଆଧିବ୍ୟାଧି ।
ତୁମ୍ଭେ ଆଧିବିନାଶକ ବ୍ୟାଧି ନିରହକ
ସମୂହ ଯେ ଅସମୂହ ତୁମ୍ଭେ ତ୍ରିଅମ୍ବକ ।
ଶାଶ୍ୱତ ସ୍ୱରୂପ ତୁମ୍ଭେ ଶିଖଣ୍ଡୀ ନିହନ୍ତା
ତୁମ୍ଭେ ପୁଣ୍ଡରୀକ ବନନିବାସୀ ନିୟନ୍ତା ।

ତୁମ୍ଭେ ଉଗ୍ରଦଂଷ୍ଟ୍ର ତୁମ୍ଭେ ପୁଣ୍ଡରୀକ ଅକ୍ଷ
ତୁମ୍ଭେ ସୁର ଶ୍ରେଷ୍ଠ ତୁମ୍ଭେ ପୁଣି କୁଳାନ୍ତକ ।
ସୋମପ ମରୁତପତି ତୁମ୍ଭେ ଅମୃତାଶୀ
ଜଗନ୍ନାଥ ଦେବ ଦେବ ତୁମ୍ଭେ ଗିରିବାସୀ ।
ତୁମ୍ଭେ ଗଣେଶ୍ୱର ତୁମ୍ଭେ ବିଷ ଅଗ୍ନିପାୟୀ
ସୋମପାୟୀ କ୍ଷୀରପାୟୀ ତୁମ୍ଭେ ଆଜ୍ୟପାୟୀ
ତୁମ୍ଭେ ଯେ ମଧୁପ ମଧୁ ବ୍ରହ୍ମ ଘୃତ ଚ୍ୟୁତ
ସକଳ ଲୋକର ଭୋକ୍ତା ତୁମ୍ଭେ ଲୋକାତୀତ
ସର୍ବଲୋକ ପିତାମହହରିଣ୍ୟ ରେତସ
ତୁମ୍ଭେ ଅଧ ଅଦ୍ୱିତୀୟ ପରମ ପୁରୁଷ ।
ତୁମ୍ଭେ ସ୍ତ୍ରୀ ପୁରୁଷ ତୁମ୍ଭେ ପୁଣି ନପୁଂସକ
ତୁମ୍ଭେ ଜୀର୍ଣ୍ଣଦଂଷ୍ଟ୍ର ବୃଦ୍ଧ ଯୁବକ ବାଳକ ।
ତୁମ୍ଭେ ପୁଣି ବିଶ୍ୱକୃତ ତୁମ୍ଭେ ବିଶ୍ୱକର୍ତ୍ତା
ବିଶ୍ୱକୃତଗଣଙ୍କର ତୁମ୍ଭେ ଯେ ବିଧାତା ।
ଯେତେକ ବରଣ୍ୟ ଆଉ ବିଶ୍ୱକୃତଗଣ
କରନ୍ତି ପ୍ରଣତ ହୋଇ ତୁମ୍ଭର ପୂଜନ ।
ସୂର୍ଯ୍ୟ ଚନ୍ଦ୍ର ଅନଳ ଏ ତୁମ୍ଭ ନେତ୍ର ତିନି
ତୁମ୍ଭେ ଯେ ପ୍ରପିତାମହ ଅଟ ମହାଜ୍ଞାନୀ ।
ତୁମ୍ଭେ ସରସ୍ୱତୀ ବାକ୍ୟ ବଳ ମୂଳ ମାତା
ନିମେଷ ଉନ୍ମେଷ ତୁମ୍ଭେ ଅହୋରାତ୍ରକର୍ତ୍ତା ।
ପ୍ରାଚୀନ ମହର୍ଷି ବୃନ୍ଦ ବ୍ରହ୍ମା ବିଷ୍ଣୁ କେହି
ତୁମ୍ଭର ମହିଁମା ମୁଖେ ନ ପାରିବେ କହି ।
ତୁମ୍ଭେ ଯେ ପୁରୁଷ ଶତ ସହସ୍ରରେ ବ୍ୟାପି
ଅପାର ଅନ୍ଧାରେ ରହିଅଛ ଯେ ଅଦ୍ୟାପି ।
ତୁମ୍ଭେ ଗୋପନ୍ତା ମନ୍ତା ତୁମ୍ଭେ ତୁମ୍ଭଙ୍କୁ ପ୍ରଣତି
ତୁମ୍ଭେ ଯେ ଯୋଗାତ୍ମା ତୁମ୍ଭେ ସ୍ୱରୂପରେଜ୍ୟୋତି ।
ଲୋକେ ପୁଣି ଜିତଶ୍ୱାସ ଜିତେନ୍ଦ୍ରିୟ ହୋଇ
ସତ୍ୱ ଗୁଣ ଅନୁସାରେ ଯୋଗମାର୍ଗେ ରହି ।
ଜିତନିଦ୍ର ତୁମ୍ଭଙ୍କୁ ଯେ ଦର୍ଶନ କରନ୍ତି
ବାରମ୍ବାର ତୁମ୍ଭ ପାଦେ କରୁଛି ପ୍ରଣତି ।
ତୁମ୍ଭେ ଯେ ଅବ୍ୟକ୍ତ ମୂର୍ତ୍ତି କେ ପାରିବ ଜାଣି
ପିତା ପୁତ୍ର ପ୍ରାୟ ମୋତେ ରଖ ଶୂଳପାଣି ।
ହେ ଅପାପ ବିଦ୍ଧି ଆମ୍ଭେ ତୁମ୍ଭ ପାଳନୀୟ
ଆମ୍ଭଙ୍କୁ ପାଳନ କର ଆହେ ଦୟାମୟ ।
ଭକ୍ତଠାରେ ଅନୁକମ୍ପା ଅଛଇ ତୋହର
ମୁହିଁ ତୋରଭକ୍ତ ମୋହ ପ୍ରତି କୃପା କର ।

ତୁମ୍ଭେ ଜଟୀ ତୁମ୍ଭେଦଣ୍ଡୀ ତୁମ୍ଭେ ଲମ୍ୱୋଦର
ତୁମ୍ଭେ କ୍ରତୁରୂପ ରୁଦ୍ର ଆମ୍ଭା ଯେ ତୁମ୍ଭର ।
ଦୀର୍ଘ ଜିହ୍ୱା ମହାଦଂଷ୍ଟ୍ର ତୁମ୍ଭଙ୍କୁ ପ୍ରଣାମ
ଆହେ ବାମଦେବ ମୋର ପୂର୍ଣ୍ଣକର କାମ ।
କେଶଜାଳେ ମେଘମାଳ ସନ୍ଧିସ୍ଥଳେ ନଦୀ
କୁକ୍ଷି ମଧ୍ୟେ ବିରାଜଇ ସପତ ଉଦଧି ।
ଏରୂପ ତୋୟାତ୍ମା ତୁମ୍ଭେ ତୁମ୍ଭଙ୍କୁ ନମସ୍ତେ
ପ୍ରଳୟ ସମୟେ ରହି ଜଳ ଅନ୍ତର୍ଗତେ ।
ସକଳ ପ୍ରାଣୀଙ୍କି ଭରି ଉଦରେ ତୋହର
ସୁଖରେ ଶୟନ କରୁ ଚିନ୍ତା କରି ଦୂର ।
ଏଣୁ ତୋର ଆମ୍ବୁଶାୟୀ ନାମ ତୋ ଶରଣ
ରାହୁ ମୁଖେ ରହି ରାତ୍ରେ କରୁ ସୋମପାନ ।
ସୂର୍ଯ୍ୟଗ୍ରାସ କାଳେ ରଖୁ ସ୍ୱଭାନୁକୁ ତେଜେ
ପ୍ରଣାମ କରୁଛି ମୁହିଁ ତବ ପଦ କଞ୍ଜେ ।
ସ୍ୱାହା ସ୍ୱଧାରୂପୀ ରଖୁ ତୁ ପତିତ ଗର୍ଭ
ଆମ୍ଭଙ୍କୁ ସର୍ବଦା ରକ୍ଷାକର ଦେବ ସର୍ବ ।
ଅଙ୍ଗୁଷ୍ଠ ପ୍ରଣାମ ରୂପେ ପ୍ରାଣୀ ଦେହେଁ ଥାଅ
ସେ ପୁରୁଷରୂପେ ମୋର ସନ୍ନିଧିରେ ରହ
ଯେ ନଦୀ ସମୁଦ୍ର ଗିରିଗୁହା ତରୁ ମୂଳେ
ଗହନ କାନ୍ତାର ଗୋଷ୍ଠ ରଥ୍ୟା ସଭାତଳେ ।
ଚତୁଷ୍ପଥ ଚତ୍ୱର ଯେ ହସ୍ତୀ ରଥ ଶାଳ
ଉଦ୍ୟାନ ଆଳୟ ଆଦି ଯେତେ ଅଶ୍ୱଶାଳ ।
ପଞ୍ଚଭୂତ ଦିଗ୍‌ବଳୟ ବିଦିଗର ପ୍ରାନ୍ତେ
ଚନ୍ଦ୍ର ସୂର୍ଯ୍ୟ ଅଭ୍ୟନ୍ତର ରଶ୍ମି ମଧ୍ୟଗତେ ।
ଅବସ୍ଥାନ କରି କରେ ରସାତଳେ ଗତି
ତାହାର ଚରଣତଳେ ମୋହର ପ୍ରଣତି ।
ବାରମ୍ବାର ନମସ୍କାର ତାହାଙ୍କୁ ମୋହର
ସଂଖ୍ୟା ନାହିଁ ପ୍ରମାଣହିଁ ନାହିଁଟି ଯାହାର ।
ରୂପ ନାହିଁ ଅଗଣିତ ଯେଉଁ ରୁଦ୍ରଗଣ
ନମସ୍କାର କରି ପଶେ ଚରଣେ ଶରଣ ।
ଆହେ ଦେବ ମୋହଠାରେ ହୁଅ ସୁପ୍ରସନ୍ନ
ଯେପରି ସର୍ବଦା ରହୁ ତୁମ୍ଭଠାରେ ମନ ।
ସର୍ବଦା ଯେପରି ଥାଉ ତୋର ପାଦେ ମତି
ଦୀନ ଗୋପୀନାଥର ଯେ ନ ରଖ ଦୁର୍ଗତି ।

=✢=

## ସ୍ଥାଣୁପ୍ରଭାବାନୁ କୀର୍ତ୍ତନ

କହିଲେକ ମୁନିବର ସନତକୁମାର
ତ୍ରୈଲୋକ୍ୟାଧିପତି ବାକ୍ୟବିଦ ମହେଶ୍ୱର ।
ଆଶ୍ୱାସନା ବାକ୍ୟେ ତାଙ୍କୁ ବୋଇଲେ ଏମନ୍ତ
ହେ ରାଜନ ତବ ସ୍ତବେ ମୋର ତୁଷ୍ଟ ଚିତ୍ତ ।
ଅଧିକ କି କହିବି ମୁଁ ତୁ ମୋ ପାଶେ ଥିବୁ
ବହୁକାଳ ରହି ମୋର ଦେହେ ଲୀନ ହେବୁ ।
ପୁଣି ମୋ ଦେହରୁ ଜାତ ହେବୁ ନରବର
ଅନ୍ଧକ ଅସୁର ନାମ ହୋଇବ ତୋହର ।
ଦେବଗଣଙ୍କର ତୁହି ହୋଇବୁ ବଇରୀ
ହରିଣ୍ୟାକ୍ଷ ଘରେ ଜନ୍ମ ହୋଇବ ତୋହରି ।
ବେଦ ନିନ୍ଦା ଜନିତ ହେ ପାପ ଭୟଙ୍କର
ତେଣୁ ତୁ ଅସୁର ଯୋନି ଲଭିବୁ ଆବର ।
ଜଗତ ଜନନୀ ଦେବୀ ପାର୍ବତୀଙ୍କ ପ୍ରତି
ବଳାଇବୁ ମତି ତେଣୁରେ ଦୁଷ୍ଟ ପ୍ରକୃତି ।
ଶୂଳ ମାରି ତୋତେ ଆମ୍ଭେ କରିବୁ ସଂହାର
ତେତେବେଳେ ନିଷ୍ପାତକ ହେବୁଁ ନରବର ।
ଭକ୍ତିରେ କରିବୁ ତହି ଆମ୍ଭଙ୍କୁ ଦର୍ଶନ
ପୁନରପି ଆମ୍ଭ ଅଂଶେ ହୋଇବୁ ଉତ୍ପନ୍ନ ।
ଭୃଙ୍ଗ ରିଷ୍ଟ ନାମ ତୋର ଦେବୁ ଗଣାଧିପ
ସଦା ଆମ୍ଭ ପାଶେ ଥାଇ ସିଦ୍ଧ ହେବୁ ନୃପ ।
ବେଣସ୍ତବ ଯେଉଁ ଜନ କରଇ ଶ୍ରବଣ
ନ ହେବ ଅଶୁଭଗ୍ରସ୍ତ ସେହି କଦାଚନ ।
ଦୀର୍ଘଜୀବୀ ହୋଇବ ସେ ଏ କଥା ନିଶ୍ଚୟ
ଦେବଗଣ ମଧ୍ୟେ ଯେହ୍ନେ ଶିବ ମହାଶୟ ।
ତେସନ ସ୍ତବଙ୍କ ମଧ୍ୟେ ବେଣସ୍ତବ ଜାଣ
ଯେ ଜନ ଇଛଇ ସୁଖ ରାଜ୍ୟ ଯଶଧନ ।
ଅଇଶ୍ୱର୍ଯ୍ୟମାନ ବିଦ୍ୟା କାମନା ଯେ କରେ
ଭକ୍ତିକି ଆଶ୍ରୟ କରି ଅତ୍ୟନ୍ତ ଯତ୍ନରେ ।
ମନଯୋଗ କରି ଏହି ସ୍ତବକୁ ଶୁଣିବ
ଯେବେ ରୋଗୀ ଦୁଃଖୀ ଦୀନ ଭୟମୁକ୍ତ ହେବ
ରାଜକାର୍ଯ୍ୟୁ ବହିର୍ଭୂତ ହୋଇଥିବ ଯେବେ
ସର୍ବ ଦୂରୀଭୂତ ହେବ ତାର ଏହି ସ୍ତବେ ।
ଏ ଦେହେ ସେ ସର୍ବ ବର୍ଣ୍ଣେ ହୋଇବ ପ୍ରଧାନ
ତେଜସ୍ୱୀ ଯଶସ୍ୱୀ ଶୁଦ୍ଧି ହେବ ସେହି ଜନ ।

ଏହି ସ୍ତବ ପଢ଼ାଯାଏ ନିତ୍ୟ ଯେଉଁ ଗରେ
ବିଘ୍ନକାରୀ ତାର ବିଘ୍ନ କରି ଯେ ନ ପାରେ ।
ରାକ୍ଷସ ପିଶାଚ ଭୂତ ବିନାୟକ ଗଣ
ଡ଼ରି ପଳାଇବେ କରି ଏ ସ୍ତବ ଶ୍ରବଣ ।
ସ୍ୱାମୀ ଅନୁମତି ନେଇ ଶୁଣେ ଯେଉଁ ନାରୀ
ମାତୃ ପିତୃକୁଳେ ପୂଜା ପାଏ ଦେବୀପରି ।
କୀର୍ତ୍ତନ ଶ୍ରବଣ କରେ ଏ ସ୍ତବ ଯେ ଜନ
ତାର ସବୁକାର୍ଯ୍ୟ ସିଦ୍ଧି ହୁଏ ପ୍ରତିଦିନ ।
ମାନସିକ ବାଚନିକ କର୍ମଜ ପାତକ
ନାଶଯାଏ ଏହି ସ୍ତବ ପଢ଼େ ଯେଉଁ ଲୋକ ।
ଏବେ ଇଚ୍ଛା ଅନୁସାରେ ମାଗି ଘେନ ବର
ତୁମ୍ଭର ମଙ୍ଗଳ ହେଉ ଆହେ ନରବର ।
ବେଣବୋଇଲେ ଭୋ ଦେବ ଲିଙ୍ଗ ଦରଶନେ
ପାପୁଁ ମୁକ୍ତ ହେଲି ରହି ତବ ସନ୍ନିଧାନେ ।
ଆହେ ଦେବ ଦେବ ଯେବେ ହେଲ ସୁପ୍ରସନ୍ନ
ଅଭିଳାଷ ଅଛି ଯେବେ ଦେବ ବରଦାନ ।
ଦେବ ଦ୍ରବ୍ୟ ଭକ୍ଷିବାରୁ ଏ ତୁମ୍ଭର ଭୃତ୍ୟ
କୁକ୍କୁର ହୋଇଛି କର ଏ ପାପରୁ ମୁକ୍ତ ।
କୃପାକର ଏହାପ୍ରତି ହେ ପ୍ରଭୁ ଶଙ୍କର
ଏହା ଭୟେ ପାଇଲି ମୁଁ ଏହି ସରୋବର ।
କରାଇ ନ ଦେଲେ ଦେବେ ଏ ତୀର୍ଥରେ ସ୍ନାନ
ଏ କୁକ୍କୁର ଗୋଟି ମୋର ଉପକାରୀ ଜନ ।
ତେଣୁ ଏହି ବରମାଗେ ଦିଅ ସୁପ୍ରସନ୍ନେ
ଏହା ଶୁଣି ମହାଦେବ ଅତି ତୋଷ ମନେ ।
ନିଃସନ୍ଦେହେ ପାପୁଁ ମୁକ୍ତ ହେବ ଏ କୁକୁର
ମୋ ପ୍ରସାଦେ ଶିବଲୋକେ ଯିବ ହେ ନୃବର ।
ତବକୃତ ସ୍ତବ ଶୁଣି ପାପ ନ ରହିବ
କୁରୁକ୍ଷେତ୍ର ମହିମା ଏ ସରର ପ୍ରଭାବ ।
ଲିଙ୍ଗର ଉତ୍ପତ୍ତି କଥା ଶୁଣ ମନହେଇ
ମୋ ପୁରେ ବସିବ ସୁଖେ ପାପୁଁ ମୁକ୍ତ ହୋଇ ।
ବୋଇଲେକ ମହାମୁନି ସନତ କୁମାର
ଏହା କହି ଅନ୍ତର୍ଦ୍ଧାନେ ଗଲେ ଦେବ ହର ।
ସେ କୁକ୍କୁର ପୂର୍ବ ଜନ୍ମେ ସ୍ମରି ତତ୍‌କ୍ଷଣେ
ଦିବ୍ୟମୂର୍ତ୍ତି ଧରି ମିଳି ବେଣ ସନ୍ନିଧାନେ ।
ଏଣେ ବେଣୁ ସୁତ ପିତୃ ଦର୍ଶନ ଲାଳସେ
ସ୍ଥାଣୁତୀର୍ଥ କୁଟୀରକୁ ସ୍ନାନକରି ଆସେ ।
ପର୍ଣ୍ଣଶାଳା ଶୂନ୍ୟ ଦେଖି ଶୋକକଲା ବସି
ପୁତ୍ରକୁ ଦେଖିଣ ବେଣରାଜା ବୋଲେ ହସି ।
ଆରେ ପୁତ୍ର ତୁହି ଅଟୁ ସପୁତ୍ର ମୋହର
କରଲ ସମୁଦ୍ରୁ ମୋତେ କଲୁ ତୁ ଉଦ୍ଧାର ।
ସ୍ଥାଣୁ ପରସାଦେ ମୋରପାପ ଗଲାଃ କେଣେ
ଶିବ ଲୋକେ ଯାଉଅଛି ବାବୁ ମୁଁ ଏକ୍ଷଣେ ।
ପିତୃଋଣୁ ମୁକ୍ତ ହୋଇ ବେଣର ନନ୍ଦନ
ସ୍ୱଧର୍ମରେରହି କଲା ପୃଥିବୀ ପାଳନ ।
ପୁତ୍ର ଉତ୍ପାଦନ କରି ଯାଗଯଜ୍ଞ କଲା
ବିବିଧ ସମ୍ଭୋଗ ଦେଇ ବିପ୍ରେ ଦାନ ଦେଲା ।
ନାରୀଙ୍କୁ ସନ୍ତୋଷ କରି ବିପ୍ରେ ଦେଇ ଧନ
ପୁତ୍ରେ ରାଜ୍ୟ ଦେଇ କଲା ତୀର୍ଥକୁ ଗମନ ।
କୁରୁକ୍ଷେତ୍ରେ ରହି ତପେ ଶଙ୍କର ତୋଷିଲା
କଳେବର ପରିହରି ବଇକୁଣ୍ଠେ ଗଲା ।
ସ୍ଥାଣୁର ଏ ପ୍ରଭାବକୁ ଶୁଣେ ଯେଉଁ ଜନ
ସର୍ବବିଧ ପାତକରୁ ହୁଅଇ ମୋଚନ ।

=+=

## ସ୍ଥାଣୁ ତୀର୍ଥ ମାହାତ୍ମ୍ୟ

କହିଲେକ ମାର୍କଣ୍ଡେୟ ହେ ଅନଘ ମୁନି
କେମନ୍ତେ ଉତ୍ପତ୍ତି ହେଲା ଚତୁର୍ମୁଖ ପୁଣି ।
ପୃଥ୍ୱୀଶ୍ୱର ଜନ୍ମ କଥା କହନ୍ତୁ ବିସ୍ତାରି
ଏହା ଶୁଣିବାକୁ ଇଚ୍ଛା ହୋଇଛି ଆମ୍ଭରି ।
କହିଲେକ ମହାମୁନି ସନତକୁମାର
ସୃଷ୍ଟି ଆଦ୍ୟ କଥା ଶୁଣ ଆହେ ମୁନିବର ।
ଲୋକ ପିତାମହା ବ୍ରହ୍ମା ହେଲେ ଉତ୍ପତ୍ତି
ସ୍ଥାବର ଜଙ୍ଗମ ପ୍ରାଣୀ ସର୍ଜି ପ୍ରଜାପତି ।
ପୁଣି ସୃଷ୍ଟି ପାଇଁ ହେଲେ ଚିନ୍ତା ପରାୟଣ
କନ୍ୟା ଏକ ଜନମିଲା କଟୀତାର କ୍ଷୀଣ ।
ନୀଳୋତ୍ପଳ ଦଳ ପରି ବର୍ଣ୍ଣ ତା ଶ୍ୟାମଳ
ପରମ ସୁନ୍ଦର ତାର ନୟନ ଯୁଗଳ ।
ବ୍ରହ୍ମା ତାର ରୂପ ଦେଖି କଲେ ଆଲିଙ୍ଗନ
ଏହି ମହାପାପେ ତାଙ୍କ ଶିର ହେଲା ଶୀର୍ଣ୍ଣ ।
ଶୀର୍ଣ୍ଣଶିରା ହୋଇଗଲେ ସାନ୍ନିହିତ୍ୟ ଶରେ
ପରମ ପବିତ୍ର ତୀର୍ଥ ପାପ କ୍ଷୟ କରେ ।
ଋଦ୍ଧି ସିଦ୍ଧ ନିଶେବିତ ସେହି ସ୍ଥାଣୁତୀର୍ଥ
ତା ଉତ୍ତରେ ପୁଣ୍ୟତୋୟା ସରସ୍ୱତୀ ତୀର୍ଥ ।

ତହିଁ ମହାଦେବ ସ୍ଥାପି ଗନ୍ଧ ଧୂପ ଦେଲେ
ମନୋହର ଉପହାରେ ରୁଦ୍ରଙ୍କୁ ପୂଜିଲେ ।
ଏହି ରୂପେ ଭକତିରେ ପୂଜୁ ଦିନେ ଦିନେ
ଶିବ ଉପସ୍ଥିତ ହେଲେ ବ୍ରହ୍ମା ସନ୍ନିଧାନେ ।
ଦେଖି ବ୍ରହ୍ମା କରଯୋଡ଼ି ଆରମ୍ଭିଲେ ସ୍ତବ
ତ୍ରିକାଳ ଆଶ୍ରୟ ତୁମ୍ଭେ ଆହେ ମହାଦେବ ।
ତୁମ୍ଭଙ୍କୁ ମୁଁ ନମସ୍କାର କରେ ବାରବାର
ତ୍ରିଲୋକ ପାଳକ ତୋତେ ମୋର ନମସ୍କାର
ତୁ ପବିତ୍ର ଦେହଧାରୀ ପାପ ନାଶକାରୀ
ନମସ୍କାର କରୁଛି ମୁଁ ଚରଣେ ତୋହରି ।
ରୁରୁ ମୃଗଚର୍ମ ପରିଧାନ ଯେ ତୋହର
ଲୋମ ବହିର୍ଭୂତ ତୁହି ତୋତେ ନମସ୍କାର ।
ତୁହି ଯେ ସଲିଳ ରାଶି କଲ୍ଲୋଳ ସଂକ୍ଷୁବ୍ଧ
ମହାବୃଦ୍ଧି ବିଘଟନ ତୁହି ବାଳ ବୃଦ୍ଧ ।
ତୋର ନାମ ଜପକଲେ ପୁନର୍ଜନ୍ମ ନାହିଁ
ତୁ ନିତ୍ୟ ତ୍ରୈଲୋକ୍ୟହନ୍ତା ତୋପାଦେନମଇଁ
ତୁ ଶଙ୍କର ଅପ୍ରମେୟ ସ୍ୱରୂପ ତୋହର
ବ୍ୟାଧି ଉପଶମକାରୀ ତୁହି ପରାପର ।
ଅପ୍ରମେୟ ସର୍ବଭୂତ ପ୍ରିୟ ଯୋଗେଶ୍ୱର
ଦିବ୍ୟମୂର୍ତ୍ତି ସର୍ବପାପ ବିନାଶକ ହର ।
ତୁ ସ୍ଥାଣୁ ପ୍ରସିଦ୍ଧ ତୋର ଚରଣେ ନମଇଁ
ତୁହି ସିଦ୍ଧ ବନ୍ଦିସ୍ତୁତ ଭୂତଦୁର୍ଗ ତୁହି ।
ତୁହି ବିଶ୍ୱରୂପ ତୋତେ ମୋର ନମସ୍କାର
ଫଣୀନ୍ଦ୍ରୋକ୍ତ ମହିଷ ହେ ଫଣୀନ୍ଦ୍ରାଙ୍ଗ ଧର ।
ତୁ ଭାସ୍କର ଫଣିହାର ବରେ ବିଭୂଷିତ
ତୁମ୍ଭର ଚରଣେ ମୋର କୋଟି ପ୍ରଣିପାତ ।
ଏରୂପେ ବ୍ରହ୍ମାଙ୍କ ସ୍ତବ ଶୁଣି ମହାଦେବ
ବୋଇଲେ ବରାହ କଳ୍ପେ କଲୁ ତୁହି ଗର୍ବ ।
ତୋ ମସ୍ତକ ଛେଦିଥିଲି ଚାପୋଡ଼ ପ୍ରହାରି
ସେହିଦିନୁ ଚାରିମୁଖ ରହିଲା ତୋହରି ।
ସେ ଚାରିବଦନ ତୋର ବିନାଶ ନ ଯିବ
ଏହି ସାନ୍ନିହିତ୍ୟ ତୀର୍ଥେ ରହି ପଦ୍ମଭବ ।
ମୋ ଲିଙ୍ଗ ସ୍ଥାପନେ ହେବ ପାପ ବିମୋଚନ
ଆଦର କରୁଛି ଶୁଣ ଆହେ ପଦ୍ମାସନ ।
ପଠାଇଥିଲ ଯେ ମୋତେ ପୂର୍ବେ ସୃଷ୍ଟି ଅର୍ଥେ
ମୁଁ ସମ୍ମତ ହୋଇ ତହୁଁ ଗଲି ଶୂନ୍ୟପଥେ ।
ଭୂତଗଣଙ୍କୁ ମୁଁ ଆସି ଦେଲି ଦରଶନ
ବହୁ ତପ କରି ହେଲି ସନ୍ନିହିତେ ମଗ୍ନ ।
ତେଣୁ ତୁ ଅପେକ୍ଷା ମୋତେ କଲୁ ବହୁକାଳ
ମୁହିଁ ଭୂତ ସ୍ରଷ୍ଟାବୋଲି ମନେ ମନେ ଭାଳ ।
ତୁମ୍ଭେ ମନେମନେ ବୋଲ ମୋ ଅପେକ୍ଷା କେହି
ଅଗ୍ରଜନ୍ମା ପୁରୁଷ ଯେ ଜଣେ ଆଉ ନାହିଁ ।
ଏ ସ୍ଥାଣୁ ବିବଶ ହେଲେ ମଗ୍ନ ହୋଇ ଜଳେ
ତୁମ୍ଭେ ଆମ୍ଭ ଉପକାର କଲ ଏତେ କାଳେ ।
ଦକ୍ଷଆଦି ପ୍ରଜାପତି କଲେ ଭୂତସୃଷ୍ଟି
ଚତୁର୍ବିଧ ଭୂତସୃଷ୍ଟି ହେଲା ପରମେଷ୍ଠୀ ।
ସର୍ଜିବା ମାତ୍ରକେ ପ୍ରଜା ହୋଇଲେ କ୍ଷୁଧିତ
ତାହାଙ୍କୁ ସେ ଖାଇବାକୁ ହୁଅନ୍ତେ ଉଦ୍ୟତ ।
ଭୟେ ବେଗେ ପଳାଇଲେ ପ୍ରଜାପତି ଗଣ
ତୁମ୍ଭ ନିକଟରେ ଯାଇଁ କହିଲେ ଏସନ ।
ବୃତ୍ତିର ବିଧାନ କର ଏବେ ପ୍ରଜାଙ୍କର
ଶୁଣି ଅନ୍ନଦାନ କଲ ଆହେ ବେଦବର ।
ସ୍ଥାବରଙ୍କ ଭକ୍ଷ୍ୟ ପାଇଁ କଲ ମହୌଷଧ
ଜଙ୍ଗମ ଦୁର୍ବଳ ପ୍ରାଣୀ ବଳବନ୍ତ ଖାଦ୍ୟ ।
ଏହି ରୂପେ ଅନ୍ନପାଇ ତହୁଁ ପ୍ରଜାଗଲେ
ପରସ୍ପର ପ୍ରୀତି କରି ବର୍ଦ୍ଧିତ ହୋଇଲେ ।
ବୃଦ୍ଧି ଦେଖି ସୁପ୍ରସନ୍ନ ହେଲ ଲୋକଗୁରୁ
ପ୍ରଜାଙ୍କୁ ଦେଖିଲି ମୁହିଁ ଉଠି ସେ ଜଳରୁ ।
ମୋର ତେଜେ ବଢ଼ିବାର ଦେଖି ମୁହିଁ କୋପେ
ଲିଙ୍ଗକୁ ଉପାଡ଼ି ନେଇ ପକାଇଲି ଆପେ ।
ଏହି ସରୋବରେ ପଡ଼ି ଉର୍ଦ୍ଧ୍ୱମୁଖେ ରହି
ସେଦିନୁ ସଂସାରେ ସ୍ଥାଣୁନାମେ ଖ୍ୟାତ ସେହି
ବାରେ ସ୍ଥାଣୁ ଦରଶନେ ପାପ ନ ରହିବ
ପୁନରପି ଜନମ ସେ ସଂସାରେ ନୋହିବ ।
କୃଷ୍ଣ ଅଷ୍ଟମୀରେ କରେ ଯେ ଏ ତୀର୍ଥେ ଦାସ
ଅଗମ୍ୟାଗମନ ପାପ ଯାଇ ତାର ବାସ ।
ଏହାକହି ଭବୁ ତହୁଁ ଅନ୍ତର୍ଦ୍ଧାନେ ଗଲେ
ବ୍ରହ୍ମା ପାପୁ ମୁକ୍ତ ହୋଇ ଲିଙ୍ଗ ପୂଜା କଲେ ।
ସରୋବରେ ଚତୁର୍ମୁଖ ଲିଙ୍ଗ ସୃଷ୍ଟି କରି
ପ୍ରଥମ ଯେ ବ୍ରହ୍ମଶର ପବିତ୍ର ତା ବାରି ।
ହରଙ୍କର ପାର୍ଶ୍ୱେ ନେଇ ଏହାଙ୍କୁ ସ୍ଥାପିଲେ
ବ୍ରହ୍ମ ସଦନ ଯେ ନାମ ଦ୍ୱିତୀୟର ଦେଲେ ।

ସ୍ୱକୀୟ ଆଶ୍ରମେ ନେଇ କଲେ ତା ସ୍ଥାପନ
ତାର ପୂର୍ବଦିଗେ କଲେ ଲିଙ୍ଗେକ ପୂଜନ ।
ଚତୁର୍ଥ ଲିଙ୍ଗକୁ ସ୍ଥାପି ସରସ୍ୱତୀ ତୀରେ
ପରମ ପବିତ୍ର ତୀର୍ଥ ଅଟେ ଏ ସଂସାରେ ।
ନିରାହାରେ ରହି ଯେହୁ କରଇ ଦର୍ଶନ
ନିଶ୍ଚୟ ପରମ ଗତି ଲଭଇ ସେ ଜନ ।
ସତ୍ୟଯୁଗେ ହରି ପାର୍ଶ୍ୱ ଲିଙ୍ଗ ମହାତୀର୍ଥ
ତ୍ରେତାଯୁଗେ ବ୍ରହ୍ମାଶ୍ରମ ଲିଙ୍ଗ ଶ୍ରେଷ୍ଠ ତୀର୍ଥ ।
ତାର ପୂର୍ବଦିଗେ ଲିଙ୍ଗ ଶ୍ରେଷ୍ଠ ହିଁ ଦ୍ୱାପରେ
ସରସ୍ୱତୀ ତୀର ଲିଙ୍ଗ ଶ୍ରେଷ୍ଠ ଏ କଳିରେ ।
ଭକ୍ତିରେ ଯେ ଲିଙ୍ଗ ପୂଜି କରଇ ଦର୍ଶନ
ପାପୁଁ ମୁକ୍ତ ହୋଇଯାଏ ସେ ପରମ ସ୍ଥାନ ।
ସୃଷ୍ଟିକାଳେ ଚତୁର୍ମୁଖ ଲିଙ୍ଗ ସ୍ଥାପି ବିହି
ଜିତେନ୍ଦ୍ରିୟ ଉପବାସୀ ହୋଇ ଯେବେ କେହି ।
ଚତୁର୍ମୁଖ ଲିଙ୍ଗ ପୂଜା କରେ ଯତନରେ
ଅଗମ୍ୟ ଗମନ ପାପ ନ ରହେ ଶରୀରେ ।
ତ୍ରେତାଯୁଗେ ସ୍ଥାଣୁ ପାଖ ଲିଙ୍ଗକୁ ପୂଜିବ
ଅଶେଷ କଲୁଷ ତାର ଦେହେ ନ ରହିବ ।
ଲୀଳା ଶଙ୍କର ସମ୍ଭୂତ ଯେ ଭାନୁଶଙ୍କର
ତାହାଙ୍କୁ ପୂଜିଲେ ଏହି ଫଳ ପାଏ ନର ।
ଦ୍ୱାପରେ ଯେ ବ୍ରହ୍ମାଶ୍ରମ ଶଙ୍କର ପୂଜିବ
ବର୍ଣ୍ଣ ଶଙ୍କର ସମ୍ଭୂତ ପାପ ନ ରହିବ ।
କୃଷ୍ଣ ଚତୁର୍ଦ୍ଦଶୀରେଯେ ପୂଜେ ଅଭୋଜନେ
ସକଳ ପାତକ ନଷ୍ଟହୁଏ ତତ୍‌କ୍ଷଣେ ।
ବଶିଷ୍ଠ ଆଶ୍ରମେ ରହି କଳିକାଳେ ଜନ
ଚତୁର୍ମୁଖ ଲିଙ୍ଗ ସ୍ଥାପି କରିବ ପୂଜନ ।
ସକଳ ସିଦ୍ଧିକି ସେହି ଲଭିବ ଅବଶ୍ୟ
ତା ମଧ୍ୟେ ଯେ ତ୍ୟାଗ କରି ଆହାର ବିଶେଷ ।
ଜିତେନ୍ଦ୍ରିୟ ହୋଇ ଶ୍ରଦ୍ଧାଭରେ ପୂଜା କରେ
ପରମ ପଦକୁ ସେହି ପାଏ ଜନ୍ମାନ୍ତରେ ।
ସ୍ଥାଣୁ ତୀର୍ଥ ମହିମା ମୁଁ କହିଲି ବୁଝାଇ
ଏହାଶୁଣି ଲୋକେ ଯିବେ ପାପୁଁ ମୁକ୍ତ ହୋଇ ।

=%=

## କୁରୁକ୍ଷେତ୍ର ମାହାତ୍ମ୍ୟ

ଏଥୁଅନ୍ତେ କହିଲେକ ସନତ କୁମାର
କହିଲେ ଯେ ଦେବଦେବ ମହାଦେବ ହର ।
ଯେ ହେତୁ ଏକତ୍ୱ ହୋଇ କରୁଛ ଗମନ
ତେଣୁ ପୃଥ୍ୱୀ ମଧ୍ୟେ ହେବ ଏ ତୀର୍ଥ ପ୍ରଧାନ ।
ଆଜିଠାରୁ ଏ ତୀର୍ଥର ନାମ ପୃଥୁଦକ
ହେବ ସର୍ବବିଧ ପାପ ଭୟ ବିନାଶକ ।
ଆହେ ହେବେ ତୁମ୍ଭେ ଏହି ମହାତୀର୍ଥେ ଯାଇ
ଯେ ରୂପେ ମାଗିବ ତାହା କହୁଛି ବୁଝାଇ ।
ଯେ ସମୟେ ଚନ୍ଦ୍ର ସୂର୍ଯ୍ୟ ଗୁରୁ ବୃହସ୍ପତି
ମୃଗଶିରା ନକ୍ଷତ୍ରରେ କରିଥିବେ ସ୍ଥିତି ।
ସେ କାଳେ ସେ ତିଥି ନାମ ହୋଇବ ଅକ୍ଷୟା
ପୂର୍ବ ମୁଖୀ ସରସ୍ୱତୀ ହେବ ପୁଣ୍ୟତୋୟା ।
ସେ ସ୍ଥାନରେ ଶ୍ରାଦ୍ଧ କରି ପିତୃଙ୍କୁ ପୂଜିବ
ମୁରାରି ବଚନ ଶୁଣି ସୁରାଦି ବାସବ ।
କୁରୁକ୍ଷେତ୍ରେ ପୁଣ୍ୟତୀର୍ଥେ ପୃଥୁବକେ ଜଳେ
ତହିଁ ସ୍ନାନ କରି ଦେବଗୁରୁଙ୍କୁ କହିଲେ ।
ମୃଗଶିରା ନକ୍ଷତ୍ରରେ ଚନ୍ଦ୍ର ସୂର୍ଯ୍ୟ ଦୁଇ
ରହିଛନ୍ତି ଆହେ ଗୁରୁ ରହ ତୁମ୍ଭେ ଯାଇଁ ।
ଏ ତିଥିକି କର ତୁମ୍ଭେ ପାପ ବିନାଶିନୀ
ଦେବଗୁରୁ ଦେବଙ୍କର ଏ ବଚନ ଶୁଣି ।
ବୋଇଲେ ହେ ବୃନ୍ଦାରକବୃନ୍ଦ ଯେବେ
ବର୍ଷାଧିପ ହେବି ତେବେ ରହିପାରେ ତହିଁ ।
ହେବ ବୋଲି କହିଲେକ ଦେବତା ନିକର
ମୃଗଶିରା ନକ୍ଷତ୍ରକୁ ଗଲେ ସେ ସତ୍ୱର ।
ମୃଗଶିରା ନକ୍ଷତ୍ରରେ ଚନ୍ଦ୍ରକ୍ଷୟ ତିଥି
ଆଷାଢ଼ରେ ପଡ଼ିବାରୁ ତୋଷେ ସୁରପତି ।
ଭକ୍ତିଭରେ ହବିଷ୍ୟାନ୍ନ ଭୋଜି ହୋଇ ତହିଁ
ପିତୃଙ୍କ ଉଦ୍ଦେଶ୍ୟେ ମଧୁ ତିଳ ପିଣ୍ଡ ଦେଇ ।
ପିଣ୍ଡ ପାଇ ଅତି ପ୍ରୀତ ହୋଇ ପିତୃଗଣ
ଆପଣାର ତନୟାକୁ କଲେକ ପ୍ରଦାନ ।
ଦେବେ ସେ କନ୍ୟାକୁ ଦେଲେ ହିମାଳୟ ହସ୍ତେ
ହିମାଳୟ ବିହରିଲେ ସେ କନ୍ୟା ସହିତେ ।
ସେହି ପିତୃ କନ୍ୟାନାମ ଅଟଇ ଯେ ମେନା
ଜାତ କଲେ ସୁନ୍ଦରୀ ଯେ ତିନିଗୋଟି କନ୍ୟା ।
ସେହି ତିନି କନ୍ୟା ହେଲେ ଦେବଙ୍କ ରମଣୀ
ଦ୍ୱିଜ ଗୋପୀନାଥ ନିତ୍ୟ ଭଜେ ଶୂଳପାଣି ।

=%=

## ମନ୍ଦରଗିରି ପ୍ରବେଶ

ପୁଲସ୍ତ୍ୟ କହିଲେ ମେନାଗର୍ଭେ ତିନିକନ୍ୟା
ଜନମିବେ ସେହି ରୂପଗୁଣ ସୁସମ୍ପନ୍ନା ।
ସୁନାଭ ନାମରେ ଏକ ପୁତ୍ର ହେଲା ଜାତ
ଜଗତ ମଧ୍ୟରେ ହେଲା ସେ ପୁତ୍ର ବିଖ୍ୟାତ ।
ମେନା ଜ୍ୟେଷ୍ଠା କନ୍ୟା ନାମ ଅଟଇ ରାଗିଣୀ
ରକ୍ତବର୍ଣ୍ଣ ଅଙ୍ଗ ତାର ବସ୍ତ୍ର ଚକ୍ଷୁ ବେନି ।
ଦ୍ୱିତୀୟା କନ୍ୟାର ନାମ ହୋଇଲା କୁଟିଳା
ଅଙ୍ଗ ସୁସୌଷ୍ଠବ ପଦ୍ମପ୍ରାୟ ନେତ୍ରଡୋଳା ।
କେଶପାଶ ସୁକୁଞ୍ଚିତ ଅତି ନୀଳବର୍ଣ୍ଣ
ତାହାର ଯେ ମାଲ୍ୟବସ୍ତ୍ର ଅଟେ ଶ୍ୱେତବର୍ଣ୍ଣ ।
ମେନାର କନିଷ୍ଠା କନ୍ୟା ନାମ ଅଟେ କାଳୀ
ନୀଳାଞ୍ଜନଚୟନିର୍ଭା ଅଟଇ ସେ ବାଳୀ ।
ନୀଳ ଇନ୍ଦୀବରନେତ୍ରା ରୂପେ ନିରୁପମା
ଆହେ ମୁନି ସେହି କନ୍ୟା ତ୍ରୟ ମନୋରମା ।
ବର୍ଷ ପୂର୍ଣ୍ଣ ନୋହୁ ସେହି ଗଲେ ତପଅର୍ଥେ
ପଡ଼ିଲେ ସେ ବୃନ୍ଦାରକବୃନ୍ଦ ଦୃଷ୍ଟି ପଥେ ।
ଆଦିତ୍ୟଗଣ ଆବର ବସୁଗଣ ଆସି
ଶଶିକରସନ୍ନିଭା ଯେ କୁଟିଳା ତାପସୀ ।
ତାହାକୁ ଘେନିଣ ତହୁଁ ଗଲେ ବ୍ରହ୍ମଲୋକେ
ବ୍ରହ୍ମା ଆଗେ ନିବେଦନ କଲେ ବୃନ୍ଦାରକେ ।
ଏହିକି ମହିଷହନ୍ତା ପୁତ୍ର ପ୍ରସବିବ
ପିତାମହ ବୋଇଲେକ ଶୁଣ ହେ ବାସବ ।
ଏ ତାପସୀ ଶମ୍ଭୁତେଜ ନ ପାରିବ ଧରି
ଛାଡ଼ିଦିଅ ବାରାକୀକି ଯାଉ ତପ କରି ।
ହେ ନାରଦ ସେ କୁଟିଳା ଅତିକ୍ରୁଦ୍ଧାହୋଇ
ବୋଇଲେକ ବ୍ରହ୍ମାଙ୍କର ମୁଖକୁ ଅନାଇ ।
ଶମ୍ଭୁର ଦୁର୍ଦ୍ଧର ତେଜ ଧରିବି ଯେମନ୍ତେ
କରିବଇଁ ସେ ବିଷୟେ ଯତ୍ନ ବିଧିମତେ ।
ସତ୍ୟ ସତ୍ୟ କହୁଅଛି ଆହେ ପିତାମହ
ଶୈବ ମସ୍ତକକୁ ନତ କରିବି ନିଶ୍ଚୟ ।
ପୁଲସ୍ତ୍ୟ କହିଲେ ଶୁଣ ଆହେ ମହାମୁନି
କ୍ରୋଧଭରେ କହିଲେକ ତାକୁ ପଦ୍ମ ଯୋନି ।
ଦାରୁଣ ପ୍ରକୃତି ତୋର ପାପିନୀ କୁଟିଳେ
ମୋର କଥା ନ ଘେନିଲୁ ତୁହି ମଉଭୋଳେ ।
ଏବେ ମୋର ଶାପେ ଜଳହୋଇ ଯାଅ ବହି
ହିମାଳୟ ନନ୍ଦିନୀ ଯେ ସେ କୁଟିଳା ତହିଁ ।
ଶାପ ପାଇ ବେଗବତୀଜଳମୟୀ ହେଲା
ନଦୀରୂପେ ସେହି ବ୍ରହ୍ମଲୋକେ ବହିଗଲା ।
ଉଦ୍ଧାମସଳିଳା ତାକୁ ଦେଖି ପଦ୍ମାସନ
ଦୃଢ଼େ କଲେ ବେଦରୂପ ରଜ୍ଜୁରେ ବନ୍ଧନ ।
ଏ ରୂପେ କୁଟିଳା ବନ୍ଦି ହେଲା ମୁନିବରେ
ପରମ ନିର୍ମଳ ଜଳମୟ କଳେବରେ ।
ବ୍ରହ୍ମ ନିଳୟକୁ କଲା ଜଳେ ଆପ୍ଲାବିତ
ରାଗିଣୀକି ପୁଣି ଆସି ନେଲେ ଦେବବ୍ରାତ ।
ସ୍ୱର୍ଗେ ନେଇ ପିତାମହ ଆଗେ ଜଣାଇଲେ
ବ୍ରହ୍ମା ମଧ୍ୟ ପୂର୍ବପ୍ରାୟ ତାହାକୁ କହିଲେ ।
ଶୁଣି ସେ ରାଗିଣୀ କ୍ରୋଧେ ବୋଇଲା ଏମନ୍ତ
ଯେମନ୍ତେ ମହିଷହନ୍ତା ପୁତ୍ର ହେବ ଜାତ ।
ତଦ୍ରୂପ କଠୋର ତପ କରିବଇଁ ମୁହିଁ
ବ୍ରହ୍ମା ପୁଣି ଶାପ ଦେଲେ ତା ମୁଖକୁ ଚାହିଁ ।
ମୋ ବାକ୍ୟ ଲଙ୍ଘନ କଲୁ ହୁଅ ସଂଧ୍ୟାରାଗ
ଶାପେ ସନ୍ଧ୍ୟାରାଗ ହେଲା ମୁନି ମହାଭାଗ ।
ସେ ଦୁଇ କନ୍ୟାଙ୍କ କଥା ମେନା ଜାଣିପାରି
କନିଷ୍ଠାକୁ କହିଲେକ ଉମା ଭୟ କରି ।
ଉମା ଶବଦର ଅର୍ଥ ତପ ନିବାରଣ
ସେଦିନୁ ସେ କନ୍ୟା ନାମ ହେଲା ଉମା ଜାଣ ।
ମାତା କଥା ନମାନି ସେ କଲା ଘୋର ତପ
ବୃଷଧ୍ୱଜ ଶୂଳପାଣି ମନ୍ତ୍ରକଲା ଜପ ।
ତାହା ଦେଖି ପିତାମହ କହିଲେ ଦେବଙ୍କୁ
ଆଣ ତପସ୍ୱିନୀ ହିମାଳୟ ଦୁହିତାକୁ ।
ପିତାମହ ବାକ୍ୟେ ତହୁଁ ଦେବଗଣ ଗଲେ
ହିମାଳୟ ନନ୍ଦିନୀକୁ ନୟନେ ଦେଖିଲେ ।
ତାର ତେଜେ ତା ପାଶକୁ ନ ପାରିଲେ ଯାଇ
ଇନ୍ଦ୍ରଆଦି ଦେବଗଣ ମହାଭୟ ପାଇ ।
କହିଲେ ସେ କଥା ସବୁ ବ୍ରହ୍ମାଙ୍କ ଆଗରେ
ଶଙ୍କର ବଲ୍ଲଭା ସେହି ହେବ ଜାଣ ସୁରେ ।
ଯେ ହେତୁ ତା ତେଜେ କେହି ନ ପାରିଲୁ ସହି
ମହିଷ ତାରକା ଆଦି ନ ରହିଲେ କେହି ।
ନିଶ୍ଚୟ ମରିବ ତୁମ୍ଭେ ସନ୍ତାପ ନ କର
ନିଶ୍ଚିନ୍ତେ ସ୍ୱଗୃହେ ରହ ଅମର ନିକର ।

ପିତାମହ ମୁଖୁ ଶୁଣି ଏମନ୍ତ ବଚନ
ବିଗତ ସନ୍ତାପ ହୋଇଗଲେ ଦେବଗଣ ।
ଉମା ତପ କରୁଥାନ୍ତି ଅରଣ୍ୟରେ ରହି
ହିମାଳୟ ମେନା ଦୁହେଁ ମିଳିଲେକ ତହିଁ ।
ବୋଇଲେ ଗୋ ମାତ ତୁହି ତପସ୍ୟା ନକର
ଏବେ ଚାଲ ଉମା ଯିବା ଗୃହକୁ ଆମ୍ଭର ।
ପିତାମାତା କଥା ଭାଙ୍ଗି ନ ପାରି ସେ କାଳୀ
ତାଙ୍କ ସଙ୍ଗତରେ ଗଲେ ସ୍ୱଗୃହକୁ ଚଳି ।
ନିରାଶେ ଶଙ୍କର ଏଣେ ରୌଦ୍ର ବ୍ରତ ଧରି ।
ବୁଲୁଛନ୍ତି ମେରୁ ଆଦି ମହା ମହା ଗିରି ।
ହିମାଳୟ ପର୍ବତରେ ପ୍ରବେଶିଲେ ଯାଇଁ
ଶ୍ରଦ୍ଧାରେ ପର୍ବତପତି ଗନ୍ଧପୁଷ୍ପ ଦେଇ ।
ପୂଜନ୍ତେ ଶଙ୍କର ତହିଁ ରାତିଏ ରହିଲେ
ହିମାଳୟ ପରଦିନ ଯାଇଁ ଜଣାଇଲେ ।
ତପସ୍ୟାକରନ୍ତୁ ପ୍ରଭୁ ରହି ଏହିସ୍ଥାନେ
ବ୍ରତ ତ୍ୟାଗ କଲେ ହର ତାହାଙ୍କ ବଚନେ ।
ଆଶ୍ରମ ନିର୍ମାଣ କରି କଲେ ତହିଁ ବାସ
ଗିରିରାଜସୁତା କାଳୀମିଳି ତାଙ୍କ ପାଶ ।
ନିଜପ୍ରିୟା ସତୀ ଦେବୀ ପୁଣି ହୋଇ ଜାତ
ଉପଗତ ହେବା ଦେଖି ପ୍ରଭୁ ଶୂଳହସ୍ତ ।
କୁଶଳ ପଚାରି ତାଙ୍କୁ ଯୋଗ ଚର୍ଚ୍ଚାକଲେ
କୃତାଞ୍ଜଳି ହୋଇ କାଳୀ ସଖୀଗଣ ତୁଲେ ।
ବନ୍ଦିଲେ ସେ ପ୍ରଭୁଙ୍କର ଚରଣ ଯୁଗଳ
ଏହି ରୂପେ ବହିଗଲା ପୁଣି ବହୁକାଳ ।
ଗିରିକନ୍ୟାକୁ ଯେ ଚାହିଁ କହିଲେ ଶଙ୍କର
ଏକ ପୂଜା ଅବିହିତ ଅଟଇ ତୁମ୍ଭର ।
କହି ପ୍ରମଥଙ୍କୁ ଘେନି ଗଲେ ଅନ୍ତର୍ଦ୍ଧାନେ
ଗିରିସୁତା ଶିବଙ୍କର ଭୀଷଣ ବଚନେ ।
ଜ୍ଞାନ ପାଇ ଅତିଦୁଃଖେ କହିଲେ ପିତାଙ୍କୁ
ଆହେ ତାତ ଯାଉଛି ମୁଁ ଘୋର ଅରଣ୍ୟକୁ ।
କରିବି ମୁଁ ଘୋର ତପ ଶିବଙ୍କ ନିମନ୍ତେ
ହିମାଳୟ ବୋଇଲେକ ଯାଆ ଯା ଦୁହିତେ ।
ପିତା ଆଜ୍ଞା ପାଇ କା଼ଳୀ ଉଠିଲେ ତକ୍ଷଣ
କଲେ ପୁଣି ସେ ଲଳିତା ନାମକୁ ଧାରଣ ।
ସଖୀଏ ସମିଧ କୁଶ ଫଳ ମୂଳ ଆଣି
ଯୋଗାଇ ଦିଅନ୍ତି ଭକ୍ତିଚିତ୍ତେ ଠାକୁରାଣୀ ।

ମୃତ୍ତିକାରେ ଶିବ ଗଢ଼ି ବୋଇଲେ ଏମନ୍ତ
ଏହି ରୁଦ୍ର ମୋର ସ୍ୱାମୀ ହୋଇବେ ଯେମନ୍ତ ।
ଏମନ୍ତ କାମନା କରି ପୂଜିଲେ ଶଙ୍କର
ପୂଜାରେ ସନ୍ତୁଷ୍ଟ ହୋଇ ଦେବ ଦେବ ହର ।
ଧଇଲେକ ସେ ଅପୂର୍ବ ବ୍ରହ୍ମଚାରୀ ବେଶ
ମୃଗଛାଲ କରିଛନ୍ତି ପରିଧାନ ବାସ ।
କାନ୍ଧରେ ପଲାଶଦଣ୍ଡ ଯଜ୍ଞ ଉପବୀତ
କଟୀରେ ମେଖଳା ଶିରେ ତାଳ ପତ୍ର ଛତ୍ର ।
ଅଙ୍ଗୁଳିକି ବଟୁ ଶୋହେ କମଣ୍ଡଳୁ କରେ
ଭସ୍ମ ବିଲେପନ ରୁଧିରାକ୍ତ କଳେବରେ ।
ମିଳିଲେ ସେ ଦେବ ଆସି ବାଳୀର ଆଶ୍ରମେ
ହେ ନାରଦ ସଖୀ ଯାଇଁ କହିଲେ ଗୋ ଉମେ ।
ଉଭା ହୋଇଛନ୍ତି ଦ୍ୱାରେ ଏକ ବ୍ରହ୍ମଚାରୀ
ତତ୍‌କ୍ଷଣେ କାଳୀ ଆସି ତାଙ୍କୁ ଦେଖିକରି ।
ବିଧି ବିଧାନରେ ପୂଜା କଲେ ସେ ତାଙ୍କର
ବୋଇଲେ ହେ ଭିକ୍ଷୁ କହ କାହିଁ ତୁମ୍ଭଘର ।
କି ନିମନ୍ତେ ଆସିଅଛ ମୋର ଆଶ୍ରମକୁ
କପଟ ନ ରଖି କହ ବିସ୍ତାରି ଆମ୍ଭଙ୍କୁ ।
ଭିକ୍ଷୁ କହିଲେ ଗୋ ବାଳେ ଅୟି ଶୁଚିବ୍ରତେ
ମୋହର ଆଶ୍ରମ ଗୋଟି ବାରାଣସୀ କ୍ଷେତ୍ରେ ।
କରୁଛି ମୁଁ ପୃଥୁଦକ ତୀର୍ଥକୁ ଗମନ
ଶୁଣି ଠାକୁରାଣୀ ତାଙ୍କୁ ବୋଇଲେ ଏସନ ।
କି କି ପୂଣ୍ୟ ଲାଭ ହୁଏ ଗଲେ ପୃଥୁଦକ
କେତେ ତୀର୍ଥେ ସ୍ନାନ କରିଅଛ ହେ ଭିକ୍ଷୁକ ।
କି କି ଫଳ ପାଇଅଛ ଆସୁ ଆସୁ ବାଟେ
ଏସବୁ ବୁଝାଇ କହ ମୋର ସନ୍ନିକଟେ ।
ଭିକ୍ଷୁକ ବୋଇଲେ ମୁହିଁ ପ୍ରଥମରେ ଗଲି
ମହାତୀର୍ଥ ପ୍ରୟାଗରେ ପଶି ସ୍ନାନ କଲି ।
ତଦନ୍ତେ କୁମ୍ଭାଗ୍ରତୀର୍ଥ ତଦନ୍ତେ ଜୟନ୍ତ
ତହୁଁ ଗଲି ମୁଁ ଚଣ୍ଡିକେଶ୍ୱର ନାମେ ତୀର୍ଥ ।
ତହୁଁ ବନ୍ଧୁବୃନ୍ଦ ତୀର୍ଥ କବନ୍ଧ ଆବର
ତହୁଁ ଗଲି କନଖଳ ନାମେ ତୀର୍ଥବର ।
ତହୁଁ ଯାଇଁ ସରସ୍ୱତୀ ତୀର୍ଥେ କଲି ସ୍ନାନ
ତହୁଁ ମୁଁ ଅଗ୍ନି କୁଣ୍ଡକୁ କଲଇଁ ଗମନ ।
ତହୁଁ ଭଦ୍ରାତୀର୍ଥେ ଗଲି ତ୍ରିପିଷ୍ଟପେ ଗଲି
କୌନଟ ଯେ କୋଟିତୀର୍ଥେ ଯାଇଁ ସ୍ନାନ କଲି ।

ନିଷ୍କାମେ ତକ୍ଷକ ତୀର୍ଥେ କଲି ଯାଇଁ ସ୍ନାନ
ତହୁଁ ତୋର ଆଶ୍ରମକୁ କଲଇଁ ଗମନ ।
ମୁହିଁ ଯାହା ପଚାରିବି ନ କରିବୁ କୋପ
ଆଗୋ କୃଶୋଦରି କିମ୍ପା ବାଲ୍ୟେ କରୁ ତପ ।
ଶରୀର ଶୋଷଣ କରୁ ହୋଇ ସୁସଜ୍ଜିତ
ଦ୍ୱିଜାତି ଗଣଙ୍କ ପକ୍ଷେ ଏ କଥା ବିହିତ ।
କି ଉଦ୍ଦେଶ୍ୟେ ଏ ବୟସେ ବନେ ତପ କରୁ
ଏ ସନ୍ଦେହ ନିବାରଣ କର ଆଗୋ ଭୀରୁ ।
ଆଗୋ ବିଳାସିନୀ ଏହି ବୟସରେ ନାରୀ
ସ୍ୱାମୀସଙ୍ଗେ ନାନା ବିଧ ସୁଖ ଭୋଗ କରି ।
ଆନନ୍ଦରେ ଥାଏ ଆଗୋ ପର୍ବତ ନନ୍ଦିନୀ
ଲୋକେ ଯେ କରନ୍ତି ତପ ଏହା ମନେ ଘେନି
ରୂପ ଅଇଶ୍ୱର୍ଯ୍ୟ ହେଉ କେମନ୍ତେ ଆମ୍ବର
ବହୁ ପରିମାଣେ ଅଛି ସେ ସକଳ ତୋର ।
ତୁ କିମ୍ପାଇଁ ଅଳଙ୍କାର ଅଙ୍ଗୁ ପରିହରି
ଜଟାଭାର ବହିଅଛୁ ଶିରେ ତପୀ ପରି ।
ସରୁଝୀନ ବସ୍ତ୍ର ତେଜି ପିନ୍ଧୁଛୁ ବକଳ
ପୁଲସ୍ତ୍ୟ କହିଲେ ଶୁଣ ଆହେ ତପଃଶୀଳ ।
ସୋମପ୍ରଭା ନାମେ ସଖୀ ଗିରିସୁତାଙ୍କର
ଭିକ୍ଷୁକ ମୁଖକୁ ଚାହିଁ ଦେଲେ ପ୍ରତ୍ୟୁତ୍ତର ।
ଏ ସଖୀ ପାର୍ବତୀ ଦେବୀ ତପର କାରଣ
କହୁଛନ୍ତି ଦ୍ୱିଜବର ମନ ଦେଇ ଶୁଣ ।
ଏହି ମହାକାଳୀଙ୍କର କାମନା ଏମନ୍ତ
କେମନ୍ତେ ଧରିବି ମୁହିଁ ମହାଦେବ ହସ୍ତ ।
ପୁଲସ୍ତ୍ୟ କହିଲେ ସେହି ଭିକ୍ଷୁ ରୂପୀ ହର
ସୋମପ୍ରଭା ମୁଖ ଚାହିଁ ଦେଲେ ପ୍ରତ୍ୟୁତ୍ତର ।
ଉଚ୍ଚସ୍ୱରେ ହସି ହସି ମୁଣ୍ଡକୁ ହଲାଇ
ବୋଇଲେ ପାର୍ବତୀ ତୋତେ ଏବୁଦ୍ଧି ଶିଖାଇ ।
କେ ଦେଲା ତା ମୋତେ କହପଚାରୁଛି ତୋତେ
ଜାଣିଲି ସେ ଅବିବେକ ଏକା ଏ ଜଗତେ ।
ଅତ୍ୟନ୍ତ କୋମଳ କରପଲ୍ଲବ ତୋହର
ସର୍ପବିଭୂଷିତ କର ମହାଦେବଙ୍କର ।
ଏହାର ମିଳନ କହ ହେବ ଗୋ କିପରି
ତୁହି ପୁଣି ପିନ୍ଧିଥିବୁ ସୂକ୍ଷ୍ମବସ୍ତ୍ର ଗୌରୀ ।
ସହ୍ୟ ବ୍ୟାଘ୍ରଚର୍ମ ପୁଣି ପିନ୍ଧିଥିବ ହର
ଚନ୍ଦନେ ଚର୍ଚ୍ଚିତ ହୋଇଥିବ ତୋ ଶରୀର ।
ହର କଳେବର ପୁଣି ଭସ୍ମେ ବିଭୂଷିତ
ଏ ଘଟନା ଦେଖି ଲୋକେ ହସିବେ ନିୟତ ।
ଏହି ଲୋକହସା କଥାକରିବୁ କେମନ୍ତେ
ରାଜାଝିଅ ତପ କରେ ଭିକାରୀ ନିମନ୍ତେ ।
ଆଜିଯାଏ ଦେଖା ଶୁଣା ନ ଥିଲା ଏ କଥା
ଜାଣୁ ଜାଣୁ ତୋ ଜନ୍ମକୁ କରୁ ତୁହି ବୃଥା ।
ପୁଲସ୍ତ୍ୟ କହିଲେ ଭିକ୍ଷୁ କହନ୍ତେ ଏମନ୍ତ
କ୍ରୋଧାନଳେ ଦଗ୍ଧ ହେଲା ପାର୍ବତୀଙ୍କ ଚିତ୍ତ ।
ବୋଇଲେ ଭୋ ଭିକ୍ଷୁ ତୁମ୍ଭେ କହିଲ କିକଥା
ଆଉ ବେଳେ ନ ଧରିବ ମୁଖରେ ଏ କଥା ।
ଦେବଙ୍କ ଉପରେ ଦେବ ଅଟନ୍ତି ଶଙ୍କର
ସବୁ ଗୁଣଗ୍ରାମେ ପୂର୍ଣ୍ଣ ତାଙ୍କ କଳେବର ।
ତିନି ଭୁବନର ଲୋକ ପୂଜନ୍ତି ତାହାଙ୍କୁ
ତୁମ୍ଭେ ପୁଣି ନିନ୍ଦା କରୁଅଛ ସେ ଦେବଙ୍କୁ ।
ପାପି ମଧ୍ୟେ ତୁମ୍ଭେ କିମ୍ପା ଗଣନା ନୋହିବ
କହୁଅଛି ଶୁଣ ମୋର ମନୋଗତ ଭାବ ।
ଶିବ ହେଉ ଭୀମ ହେଉ ସେହି ମହେଶ୍ୱର
ଜଗତରେ ସୁନ୍ଦର ବା ହେଉ ଅସୁନ୍ଦର ।
ଧନୀ ବା ନିଧନୀ ହେଉ ସେ ମୋହର ପତି
ତାଙ୍କ ପାଦପଦ୍ମ ସେବା କରୁଥିବି ନିତି ।
ଆଗୋ ସଖୀ ଏ ଭିକ୍ଷୁକୁ ନିବାରଣ କର
ଦେଖ ଗୋ ଏହାର ପୁଣି ଥରୁଛି ଅଧର ।
ଆଉ କିଛି କହିବାକୁ ବିଚାରୁଛି ମନେ
ଶଙ୍କର ନିନ୍ଦୁକ ଏହୁ ନ ରହୁ ଏ ସ୍ଥାନେ ।
ଏହା ମୁଖୁଁ ଶିବନିନ୍ଦା ଶୁଣିଲି ମୁଁ ଆଜ
ମୋର ମହାପାପ ହେଲା ଯିବି ତୀର୍ଥରାଜ ।
ପୁଲସ୍ତ୍ୟ କହିଲେ ଏହା କହି ସେ ପାର୍ବତୀ
ଉଠନ୍ତେ ତା ଜାଣି ଭିକ୍ଷୁ ରୂପୀ ପଶୁପତି ।
ନିଜ ରୂପେ ଉଭା ହୋଇବୋଇଲେ ଗୋ ପ୍ରିୟେ
ତପ ତେଜି ରହ ଯାଇଁ ପିତାର ଆଳୟେ ।
ତୋ ପାଇଁ ମୁଁ ପଠାଇବି ମହା ଋଷିଗଣ
ଏହା କହି ଅନ୍ତର୍ଦ୍ଧାନେ ଗଲେ ତ୍ରିଲୋଚନ ।
ପୂଜୁଥିଲେ ଦେବୀ ଯେଉଁ ମୂର୍ତ୍ତିକା ଶଙ୍କର
ସେ ଦିନୁ ସେ ମୂର୍ତ୍ତି ନାମ ହେଲା ଭଦ୍ରେଶ୍ୱର ।
ଦେବ ଦୈତ୍ୟ ଗନ୍ଧର୍ବ ଯେ ଯକ୍ଷ କିଂପୁରୁଷେ
ଉରଗ ମାନବ ତହିଁ ଶୁଭ ଅଭିଳାଷେ ।

ସେହି ମହାଦେବ ମୂର୍ତ୍ତି ପୂଜିଲେ ସତତ
ଗିରିରାଜସୁତା ତହୁଁ ସଖୀର ସହିତ ।
ପିତାଙ୍କର ଆଳୟକୁ ଶୂନ୍ୟମାର୍ଗେ ଗଲେ
ତହୁଁ ମହାଦେବ ପୃଥ୍ବୀବନରେ ମିଳିଲେ ।
ସ୍ନାନ କରି ପାପ ନାଶି ତ୍ରିପୁର ଅନ୍ତକ
ଗଗନ ମାର୍ଗରେ ଗଲେ ମନ୍ଦରାଦ୍ରି ଶିଖ ।
ଦିବ୍ୟ ଫଳ ମୂଳେ ଜଳେ ତହିଁ ପୂଜା ପାଇ
ହୃଷ୍ଟଚିତ୍ତ ହୋଇ ସୁଖେ ରହିଲେ ଗୋସାଇଁ ।

=+=

## ଗୌରୀବିବାହୋଦ୍‌ଯୋଗ

କହିଲେ ପୁଲସ୍ତ୍ୟ ଋଷି ରାଜା ହିମାଳୟ
ଶିବପୂଜା କଲେ ହୋଇ ଏକାନ୍ତ ହୃଦୟ ।
ତାହାଙ୍କ ପୂଜାରେ ଶିବ ହୋଇ ସୁପ୍ରସନ୍ନ
କଲେ ଅରୁନ୍ଧତୀ ସହ ସପ୍ତର୍ଷି ସ୍ମରଣ ।
ସୁନ୍ଦର କନ୍ଦରଯୁକ୍ତ ମନ୍ଦର ଭୂଧରେ
ସପ୍ତଋଷି ଅରୁନ୍ଧତୀ ମିଳିଲେ ସତ୍ୱରେ ।
ସେମାନଙ୍କୁ ଦେଖି ଉଠି ତ୍ରିପୁରନାଶନ
ସମାଦରେ ପୂଜା କରି ବୋଇଲେ ଏସନ ।
ଆଜି ଏ ମନ୍ଦରଗିରି ଆହେ ଋଷିମାନ୍ୟ
ଆପଣଙ୍କ ପାଦପଦ୍ମ ସଂସର୍ଗରେ ଧନ୍ୟ ।
ଶ୍ରେଷ୍ଠ ଆଉ ଶ୍ଳାଘନୀୟ ଦେବପୂଜ୍ୟ ହେଲା
ଯେତେକ ପାତକ ଥିଲା ଦୂର ହୋଇଗଲା ।
ଏ ପବିତ୍ର ଶିଳା ତଳ ସମାନ ସୁନ୍ଦର
କୋମଳ ଚିକ୍‌କଣ ପଦ୍ମବର୍ଣ୍ଣ ସୁବିସ୍ତାର ।
ଏ ସ୍ଥାନରେ ଅବସ୍ଥାନ କର ତୁମ୍ଭେ ମାନେ
କହିଲେ ପୁଲସ୍ତ୍ୟମୁନି ମହାଋଷି ଗଣେ ।
ଶିବବାକ୍ୟେ ରହିଲେ କ ଅରୁନ୍ଧତୀ ଘେନି
ଏଥୁ ଅନନ୍ତରେ ନନ୍ଦୀଗଣଙ୍କ ଅଗ୍ରଣୀ ।
ଅର୍ଘ୍ୟାଦିରେ ଅଭ୍ୟର୍ଥନା କଲେ ତାହାଙ୍କର
ଉଭାହୋଇ ରହିଲେ ସେ ଋଷିଙ୍କ ଛାମୁର ।
ସୁରପତି ମହାଦେବ ଆପଣା ହିତାର୍ଥେ
ବିନୟେ କହିଲେ ସପ୍ତଋଷିଙ୍କ ସାକ୍ଷାତେ ।
ହେ ପଶ୍ୟପ ଆହେ ଅତ୍ରି ଆହେ ବାରୁଣେୟ
ମହାଋଷି ଗୌତମ ହେ ଭୋ ମୁନି ଗାଧେୟ ।
ମୋ କଥା ଆପଣମାନେ କରନ୍ତୁ ଶ୍ରବଣ
ବୁଝାଇ କହିବି ଯାହା ଘଟିଛି କାରଣ ।

ପୂର୍ବ ପ୍ରିୟା ମୋର ଥିଲା ଦକ୍ଷସୁତା ସତୀ
ପିତା ଅପମାନେ କୋପ କରି ଦକ୍ଷପ୍ରତି ।
ଯୋଗମାର୍ଗେ ତ୍ୟାଗ କଲା ଆପଣାର ପ୍ରାଣ
ସଂପ୍ରତି ସେ ଜାତ ହୋଇ ମେନାଗର୍ଭେ ଜାଣ ।
ବଢ଼ିଲାକ ଉମା ନାମେ ଶୈଳରାଜ ଘରେ
ମୋ ପାଇଁ ପ୍ରାର୍ଥନାକର ତାଙ୍କୁ ଯାଇ ଥରେ ।
ପୁଲସ୍ତ୍ୟ କହିଲେ ସପ୍ତଋଷି ବ୍ରହ୍ମାଗଲେ
ନମଃ ଶଙ୍କରାୟ ଏହି ମନ୍ତ୍ର ଉଚ୍ଚାରିଲେ ।
ଅନୁନ୍ଧତୀ ମୁଖ ଚାହିଁ ବୋଇଲେ ଶଙ୍କର
ହେ ସୁନ୍ଦରି ତୁମ୍ଭେ ଯିବ ହିମାଳୟ ଘର ।
ପୁରନାରୀଙ୍କର ଧର୍ମ ପୁର ନାରୀ ଜାଣେ
ହେଉ କହି ଅରୁନ୍ଧତୀ ଉଠିଲେ ତକ୍ଷଣେ ।
ଆହେ ରୁଦ୍ର ତୁମ୍ଭଙ୍କୁ ଯେ ମୋର ନମସ୍କାର
ଏହା କହି ଅରୁନ୍ଧତୀ ପତିବ୍ରତା ବର ।
ସ୍ୱାମୀଙ୍କର ପଛେ ପଛେ ହିମାଳୟେ ଗଲେ
ଓଷଧିପ୍ରସ୍ଥ ନାମକ ଶିଖରେ ମିଳିଲେ ।
ପୁରନ୍ଦର ପୁରୀ ସମ ଦେଖି ସେ ନଗରୀ
ସପ୍ତଋଷି ଅରୁନ୍ଧତୀ ଦେଖି ପୁରନାରୀ ।
ସୁନାଭ ପ୍ରଭୃତି ଯେତେ ଅନୁଚରଗଣ
ନିଶ୍ଚଳ ଚିତ୍ତରେ କଲେ ତାହାଙ୍କ ଅର୍ଚ୍ଚନ ।
ଏଥୁଅନ୍ତେ ଅରୁନ୍ଧତୀ ସହ ସପ୍ତମୁନି
ଗନ୍ଧର୍ବ କିନ୍ନର ଯକ୍ଷଗଣ ସଙ୍ଗେ ଘେନି ।
ହିମାଳୟର ଯେ ଅତି ସୁନ୍ଦର ଆଳୟ
ସ୍ୱର୍ଣ୍ଣପ୍ରାୟ ସମୁଜ୍ଜ୍ୱଳ ସବୁ ରତ୍ନମୟ ।
ସମସ୍ତେ ମହାତ୍ମା ତପୋବଳେ ପାପଶୂନ୍ୟ
ସେ ଭବନ ଦ୍ୱାରପାଖେ ମିଳି ଋଷିଗଣ ।
ଦ୍ୱାରୀକି ଅପେକ୍ଷା କରି ରହିଲେକ ତହିଁ
ଦ୍ୱାର ରକ୍ଷାକାରୀ ଗନ୍ଧମାଦନ ଅଟଇ ।
ତାଙ୍କୁ ଦେଖି ଦ୍ୱାରକୁ ସେ ଅଇଲା ଝଟତି
ଦଣ୍ଡ ଏକ ହସ୍ତେ ଅଛି ସ୍ଥୂଳ ଦୀର୍ଘ ଅତି ।
ତାହାକୁ କହିଲେ ସପ୍ତଋଷିଏ ଏମନ୍ତ
ତୁମ୍ଭେ ଯାଇ କହ ତୁମ୍ଭ ରାଜାର ଅଗ୍ରତ ।
ମହତ କାର୍ଯ୍ୟରେ ଆସିଅଛୁଁ ଆମ୍ଭେମାନେ
ଶୁଣିଲା ମାତ୍ରକେ ଗନ୍ଧମାଦନ ତତ୍‌କ୍ଷଣେ ।
ହିମାଳୟ ନିକଟରେ ଜଣାଇଲେ ଯାଇଁ
ଦେଖିଲେ ପର୍ବତ ମଧ୍ୟେ ନଗେନ୍ଦ୍ର ଅଛଇ ।

ଜାନୁକୁ ଭୂମିରେ ପାତି ଶିରେ ଦେଇ କର
କହିଲେ ହେ ଗିରିରାଜ ଶୁଣ ମୋ ଉତ୍ତର ।
ସପ୍ତଋଷି ଆସିଛନ୍ତି ଅରୁନ୍ଧତୀ ଘେନି
ପ୍ରାଙ୍ଗଣର ଦ୍ୱାରଦେଶେ ଅଛନ୍ତି ସେ ମୁନି ।
କି ନିମନ୍ତେ ଆସିଛନ୍ତି ତାହା ମୁଁ ନ ଜାଣେ
ଆପଣଙ୍କ ଅଗ୍ରତରେ କହିବେ ସେମାନେ ।
ପୁଲସ୍ତ୍ୟ କହିଲେ ଦ୍ୱାରୀମୁଖୁଁ ଏହା ଶୁଣି
ହିମାଳୟ ନିଜ କରେ ଅର୍ଘ୍ୟଥାଳୀ ଘେନି ।
ଦ୍ୱାରଦେଶେ ପାଦ୍ୟ ଅର୍ଘ୍ୟ ଦେଇ ପୂଜାକଲେ
ସମାଦରେ ସଭାମଧ୍ୟେ ନେଇ ବସାଇଲେ ।
କରଯୋଡ଼ି ହିମାଳୟ ବୋଇଲେ ଏମନ୍ତ
ଆପଣଙ୍କ ଆଗମନ ଅତ୍ୟନ୍ତ ଅଦ୍ଭୁତ ।
ବିନା ମେଘେ ଜଳବୃଷ୍ଟି ହେବା ଯେଉଁ ପରି
କୁସୁମବିହୀନେ ଫଳ ଫଳିବା ଯେପରି ।
ତଥା ତୁମ୍ଭ ଆଗମନ ଚିନ୍ତାର ଅତୀତ
ଆଜିଠାରୁ ଧନ୍ୟ ହେଲା ମୋର ଏ ଜୀବନ ।
ଆଜିଠାରୁ ସାର୍ଥହେଲା ଶୈଳରାଜ ପଦ
ଆଜିଠାରୁ ମୋର ଦେହ ହୋଇଲା ବିଶୁଦ୍ଧ ।
ଯେଣୁ ତୁମ୍ଭେ ପଦାର୍ପଣ କଲ ମୋର ପୁରେ
ଗୃହ ସବୁ ତୀର୍ଥ ସମ ହେଲା ଏ ନଗରେ ।
ତୁମ୍ଭର ଦୃଷ୍ଟିରେ ହେଲା ମଳିନତା ଶୂନ୍ୟ
ଅସତ ସଂସର୍ଗ ଯାଇ ବଢ଼ିଲାକ ପୁଣ୍ୟ ।
ହେ ବ୍ରାହ୍ମଣଗଣ ମୁହିଁ ତୁମ୍ଭ ପାଦ ଦାସ
କୃତପୁଣ୍ୟ ହେଲି ମୁହିଁ ହେଲା ମୋର ବାସ
କି ନିମନ୍ତେ ଆସିଛନ୍ତି କହନ୍ତୁ ତା ବେଗେ
ମୁହିଁ ଆଉ ଭୃତ୍ୟ ପୁତ୍ର କଳତ୍ରାଦି ବର୍ଗେ ।
ଆପଣଙ୍କ ଆଜ୍ଞାକାରୀ କିଙ୍କର ସ୍ୱରୂପ
ଆଜ୍ଞା ଅବଜ୍ଞା ନ ହେବ ଏ କଥା ସ୍ୱରୂପ ।
ପୁଲସ୍ତ୍ୟ କହିଲେ ଗିରିରାଜ କଥା ଶୁଣି
ସପ୍ତଋଷି ଅଙ୍ଗିରାଙ୍କୁ କହିଲେକ ପୁଣି ।
ତୁମ୍ଭେ ସବୁ କଥା କହ ରାଜାର ଅଗ୍ରତେ
ଅଙ୍ଗିରା ପ୍ରବେଶ ହେଲେ ରାଜାର ପୁରତେ ।
ବୋଇଲେ ଭୋ ଗିରିରାଜ ଶୁଣ ସାବଧାନେ
ଯହିଁ ପାଇଁ ଆସିଅଛୁଁ ତୁମ୍ଭରି ସଦନେ ।
ଯେ ମହାତ୍ମା ଯେ ସର୍ବାତ୍ମା ଯେ ପୁଣି ଶଙ୍କର
ଦକ୍ଷ ଯଜ୍ଞେ ଭୟ ଜାତକାରୀ ଶୂଳଧର ।
ସର୍ବ ତ୍ରିନେତ୍ର ଯେ ପୁଣି ବୃକ୍ଷଭବାହନ
ଜୀମୂତକେତୁ ଯେ ଯଜ୍ଞଭୋକ୍ତା ଶତ୍ରୁଘନ ।
ସ୍ୱୟଂ ପ୍ରଭୁ ଯାହାକୁଟି ବୋଲନ୍ତି ଈଶ୍ୱର
ଯାହାଙ୍କୁ ବୋଲନ୍ତି ଶିବ ସ୍ଥାଣୁବର ହର ।
ଯେଉଁ ମହାଦେବ ଭୀମ ଉଗ୍ର ମହେଶାନ
ପଶୁପତି ନାମେ ପୁଣି ଖ୍ୟାତ ତ୍ରିଭୁବନ ।
ହେ ଗିରୀଶ ସେ ଗିରିଶ ପଠାଇଅଛନ୍ତି
ତୋ ଦୁହିତା ସର୍ବଲୋକେ ସୁନ୍ଦରୀ ବୋଲନ୍ତି ।
ଯାର ନାମ କାଳୀ ତାକୁ ମାଗନ୍ତି ସେ ହର
ତୁମ୍ଭେ ସେ କନ୍ୟାକୁ ତାଙ୍କ କରେ ଦାନକର ।
ଯାର କନ୍ୟା ଅଭିଯାତ ସମ୍ପଦ ସହିତ
ରୂପ ସଉଭାଗ୍ୟଯୁକ୍ତ ପତି ହୁଏ ପ୍ରାପ୍ତ ।
ତାର ପିତା ଧନ୍ୟ ଜାଣ ହେ ଗିରିସତ୍ତମ
ହେ ଗିରୀନ୍ଦ୍ର ଚତୁର୍ବିଧ ଏହି ଭୂତଗ୍ରାମ ।
ଏହି ଦେବୀ କାଳୀ ତାଙ୍କ ଜନନୀ ହୋଇବ
ତେଣୁ ଏହି ପ୍ରାଣୀଙ୍କର ପିତା ମହାଦେବ ।
ଶିବଙ୍କୁ ପ୍ରଣାମ କରି ନିତ୍ୟ ଦେବଗଣ
ବନ୍ଦିଲେ ଏ କାଳୀଙ୍କରକମଳ ଚରଣ ।
ଦେବଙ୍କ ମସ୍ତକ ତୁମ୍ଭେ ଆହେ ଗିରିଈଶ
ଭସ୍ମପରିପ୍ଳୁତ ପାନ କରିବ ବିନ୍ୟାସ ।
ଆମ୍ଭେ ଏ ବିଷୟେ ପ୍ରାର୍ଥୀ ମହାଦେବ ବର
ଜଗତ ଜନନୀ ଉମା କନ୍ୟା ରତ୍ନ ସାର ।
ତୁମ୍ଭଙ୍କୁ ଯେ ଭଲ ହୁଏ କର ତୁମ୍ଭେ ତାହା
ବିଚାରିଣ କାର୍ଯ୍ୟ କର ଆହେ ଗିରିନାହା ।
ପୁଲସ୍ତ୍ୟ କହିଲେ ଶୁଣି ଅଙ୍ଗିରା ବଚନ
ଲଜ୍ଜାଭରେ କାଳୀ କଲେ ତଳକୁ ବଦନ ।
ହର୍ଷ ଜାତହେଲା ତାଙ୍କ ହୃଦୟ ମଧ୍ୟରେ
ଶୈଳପତି ହିମାଳୟ ଏଥୁ ଅନନ୍ତରେ ।
ଗନ୍ଧମାଦନକୁ ଚାହିଁ ବୋଇଲେ ଏମନ୍ତ
ନିମନ୍ତ୍ରଣ କରି ଆଣ ସକଳ ପର୍ବତ ।
ଆଦେଶାନୁସାରେ ଗନ୍ଧମାଦନ ଚଳିଲେ
ମେରୁ ଆଦି ପର୍ବତଙ୍କୁ ନିମନ୍ତ୍ରି ଆଣିଲେ ।
ଗିରିରାଜ ଭବନରେ ମିଳିଲେ ସେ ଆସି
ସୁବର୍ଣ୍ଣ ନିର୍ମିତ ଦିବ୍ୟ ଆସନରେ ବସି ।
ଏହପରି ହେମକୂଟ ଉଦୟ ରମ୍ୟକ
ମନ୍ଦର ବାରୁଣ ଆଉ ଗିରି ଉଦ୍ଦାଳକ ।

ବରାହ ଗରୁଡ଼ାସନ ଗିରି ଶୁକ୍ତିମାନ
ବେଗସାନୁ ଦୃଢ଼ଶୃଙ୍ଗ ଗିରିଶୃଙ୍ଗବାନ ।
ଚିତ୍ରକୂଟ ତ୍ରିକୂଟ ଏ ଆଦି କ୍ଷୁଦ୍ର ଗିରି
ସପ୍ତଋଷିଙ୍କର ପାଦେ ନମସ୍କାର କରି ।
ସଭାରେ ବସନ୍ତେ ଆସି ତହୁଁ ଗିରିସାଇଁ
ନିଜ ପତ୍ନୀ ମେନାକୁ ଯେ ଆଣିଲେ ଡକାଇ ।
ବୋଇଲେ କଲ୍ୟାଣ ତୁମ୍ଭେ ପୁତ୍ରୀ ସହ ଆସ
ତପସ୍ୱିନୀ ମେନା ପାଇ ସ୍ୱାମୀର ଆଦେଶ ।
ଋଷିଙ୍କ ଚରଣ ବନ୍ଦି ଜ୍ଞାତିଙ୍କି ଆଭାଷି
କନ୍ୟା ସହ ଉପସ୍ଥିତ ହେଲେ ତହିଁ ଆସି ।
ଉପସ୍ଥିତ ହେଲେ ଯହୁଁ ସକଳ ପର୍ବତ
ମହାଶୈଳ ହିମାଳୟ ଦେଖିଣ ତ୍ୱରିତ ।
ଉଠି ସମ୍ଭାଷଣ କରି ସୁସ୍ୱରେ କହିଲେ
ଏହି ସପ୍ତଋଷି ମୋର ଗୃହରେ ମିଳିଲେ ।
ମାଗନ୍ତି ମୋ ଦୁହିତାକୁ ମହାଦେବ ପାଇଁ
ତୁମ୍ଭ ମନକୁ ଏ କଥା  କେମନ୍ତ ଆସଇ ।
କେ କାରଣୁ ତୁମ୍ଭେମାନେ ଅଟ ମୋର ଜ୍ଞାତି
ଯେ ନୀତି ସଙ୍ଗତ ତାହା କହନ୍ତୁ ସଂପ୍ରତି ।
ତୁମ୍ଭ ଅବିଚାରେ କନ୍ୟା ନ ପାରଇ ଦେଇ
କହ କି କଲେ ସକଳ ଦିଗୁ ରକ୍ଷାପାଇ ।
ପୁଲସ୍ତ୍ୟ କହିଲେ ଶୁଣି ହିମାଳୟ ବାଣୀ ।
କହିଲେକ ମେରୁ ଆଦି ଧରାଧର ଶ୍ରେଣୀ ।
ପ୍ରାର୍ଥନା କରନ୍ତି ଆସି ସପ୍ତଋଷିଗଣ
ଜୁଆଇଁ ହୋଇବେ ପୁଣି ଦେବ ତ୍ରିଲୋଚନ ।
ଏଥିରେ କି ବିଚାରୁଛ ଆହେ ଗିରିପତି
ଦୁହିତାକୁ ସଂପ୍ରଦାନ କରନ୍ତୁ ଝଟତି ।
ସ୍ୱାମୀଙ୍କି କହିଲେ ମେନା ଶୁଣ ମୋ ବଚନ
ମହାଦେବ ପାଇଁ କନ୍ୟା ଦେଲେ ପିତୃଗଣ ।
ଏହା ଗର୍ଭେ ଶିବ ଯେଉଁ ପୁତ୍ର ସମ୍ଭାଦିବେ
ମହିଷ ତାରକ ଆଦି ତା ହସ୍ତେ ମରିବେ ।
ମେନା ବାକ୍ୟେ ଶୈଳରାଜ କହିଲେ କାଳିଙ୍କୁ
ବତ୍ସେ ମୁଁ ଦେବଇଁ ତୋତେ ନିଶ୍ଚୟ ଶିବଙ୍କୁ ।
ଋଷିଙ୍କି କହିଲେ ଆହେ ତପୋଧନ ବର୍ଗ
ମୋ ନନ୍ଦିନୀ କାଳୀ ବରହେବେ ଦେବ ଭର୍ଗ
କରୁଛି ସେ ଆପଣଙ୍କ ପାଦରେ ପ୍ରଣତି
ତତକ୍ଷଣେ ଉଠି କରେ ଧରି ଅରୁନ୍ଧତୀ ।
ଲଜ୍ଜାନ୍ୱିତା କାଳୀକି ଯେ କୋଳରେବସାଇ
ଆଶ୍ୱାସନା କଲେ ମହାଦେବ ନାମ ଗାଇ ।
ବୋଇଲେ ସପ୍ତର୍ଷିଗଣ ହିମାଳୟ ଶୁଣ
ଯେ ତିଥି ଜାମିତ୍ର ଗୁଣ ସଂଯୁକ୍ତି ସେ ପୂର୍ଣ୍ୟ ।
ପରମ ମଙ୍ଗଳ ଦାନ ସେ ତିଥି କରଇ
ତୃତୀୟ ଦିବସେ ଜାଣ ସେ ଯୋଗ ହୁଅଇ ।
ଉତ୍ତରାଫାଲ୍‌ଗୁନୀ ଯୁକ୍ତ ହୋଇଲେ ସେଦିନ
ଯେ ଯୋଗ ମୁହୂର୍ତ୍ତ ନାମ ମୈତ୍ର ହେ ରାଜନ ।
ସେ ତିଥିରେ ମହାଦେବ କାଳୀ ବିଭାଘର
ବେଦମନ୍ତ୍ର କନ୍ୟା ଦାନ କର ଶୈଳବର ।
ଏବେ ଅନୁମତି ଦିଅ ଯାଉଁ ଆମ୍ଭେମାନେ
ଶୈଳରାଜ ହିମାଳୟ ଫଳମୂଳ ଦାନେ ।
ଋଷିଙ୍କ ସନ୍ତୋଷେ ଦେଲେ ତାହାଙ୍କୁ ବିଦାୟ
ସେମାନେ ଆକାଶେ ବେଗେ ଉଠି ପୁନରାୟ ।
ମନ୍ଦର ଭୂଧରେ ମିଳି ପ୍ରଣମି ଶିବଙ୍କୁ
କହିଲେ ଦୁହିତା ଦେବ ନିଶ୍ଚେ ସେ ତୁମ୍ଭଙ୍କୁ ।
ବ୍ରହ୍ମାଦି ତ୍ରୈଲୋକ ଘନ ବାହନ ଦେଖିବେ
ପରମ ସନ୍ତୁଷ୍ଟ ହୋଇ ମହେଶ୍ୱର ଜବେ ।
ପୂଜା କଲେ ଅରୁନ୍ଧତୀ ସହ ଋଷିଗଣ
ପୂଜା ପାଇ ଦେବତାଙ୍କୁ କଲେ ନିମନ୍ତ୍ରଣ ।
ବ୍ରହ୍ମା ବିଷ୍ଣୁ ଇନ୍ଦ୍ର ସୂର୍ଯ୍ୟ ମିଳିଲେକ ଆସି
ମହେଶ୍ୱର ସମ୍ମୁଖୀନ ହେଲେ ହେ ମହର୍ଷି ।
ତାହାଙ୍କୁ ପ୍ରଣମି ଗଲେ ତାହାଙ୍କ ଭବନେ
ଏ ସମୟେ ମହାଦେବ ବସିଲେକ ଧ୍ୟାନେ ।
ସୁମରନ୍ତେ ନନ୍ଦୀ ଆଦି ସବୁ ଶିବଗଣ
ପ୍ରବେଶିଣ ତହିଁ ବନ୍ଦି ଶିବଙ୍କ ଚରଣ ।
ବସିଲେକ ଶିବଙ୍କର ଚାରିଦିଗ ବେଢ଼ି
ଦେବଗଣ ଅଛନ୍ତି ଯେ ଶିବ ଜଟା ଝାଡ଼ି ।
ମଧ୍ୟରେ ବସନ୍ତେ ଶୋଭା ଦିଶିଲା ଏ ରୂପ
ବନ ଅଭ୍ୟନ୍ତରେ ଯଥା ସରଜ ପାଦପ ।
ତା ସମୂହ ମଧ୍ୟେ ଶୋଭାପାଏ ବନସ୍ପତି
ସେ ଶିବ ଚରଣେ ରହୁ ଗୋପୀନାଥ ମତି ।

=+=

## ଗୌରୀ ବିବାହ

ପୁଲସ୍ତ୍ୟ କହିଲେ ନନ୍ଦୀ ଦେଖି ଦେବଗଣ
ବୋଇଲେ ଭୋ ଦେବ କରିଛନ୍ତି ଆଗମନ ।
ହରିଙ୍କି ସେ କୋଳ କଲେ ଉଠି ତତ୍‌କ୍ଷଣେ
କରେ କର ନିପୀଡ଼ନ କରି ଶିବ ପ୍ରେମେ ।
ବ୍ରହ୍ମାଙ୍କୁ ପ୍ରଣମି ଇନ୍ଦ୍ରେ କଲେ ସମ୍ଭାଷଣ
ଅନ୍ୟାନ୍ୟ ଦେବଙ୍କୁ କଲେ ସ୍ନେହାବଲୋକନ ।
ଯେତେକ ପ୍ରମଥଗଣ ବୀର ଭଦ୍ର ଆଦି
ଯେତେ ଶିବଗଣ ଥିଲେ ପାଶୁପତ ଆଦି ।
ସମସ୍ତେ ଶିବଙ୍କ ଜୟ ମୁଖରେ ଉଚ୍ଚାରି
ନିବେଶିଲେ ସେ ସୁନ୍ଦର ମନ୍ଦର ଶିଖରୀ ।
ଏଥୁଅନ୍ତେ ମହାଦେବ ବିବାହ ନିମନ୍ତେ
କଇଳାସେ ପ୍ରବେଶିଲେ ଦେବଙ୍କ ସହିତେ ।
ଦେବମାତା ଅଦିତି ଯେ ସୁରଭି ସୁରମା
ସଙ୍ଗତରେ ଘେନି ଅନ୍ୟ ଅନ୍ୟ ସୁରବାମା ।
ବିବାହ ସାମଗ୍ରୀ ସବୁ ଦେଲେକ ସଜାଇ
ମହାଦେବ ଅସ୍ଥିମାଳା ଗଳାରେ ଲମ୍ବାଇ ।
ସୁନ୍ଦର କପାଳେ ଘେନି ରୋଚନା ତିଳକ
ସିଂହଚର୍ମ ପିନ୍ଧିଲେକ ତୈଲୋକ୍ୟ ନାୟକ ।
କର୍ଣ୍ଣରେ ଘେନିଲେ ନୀଳ ଭୁଜଙ୍ଗ କୁଣ୍ଡଳ
ମହା ସର୍ପେ କଲେ ହସ୍ତେ କେୟୁର ଯୁଗଳ ।
ସର୍ପର ଯେ ହାର ପୁଣି ସର୍ପର ନୁପୂର
ଶିରରେ ବାନ୍ଧିଲେ ସମୁନ୍ନତ ଜଟାଭାର ।
ଏହି ରୂପେ ବିଜେ କଲେ ବୃଷଭ ପୃଷ୍ଠରେ
ତ୍ରିଜଗତ ମୋହିଲେ ସେ ପରମ ଶୋଭାରେ
ଗଣ ସବୁ ନିଜ ନିଜ ବାହନ ଆରୋହି
ତାଙ୍କ ଅଗ୍ରଗାମୀ ହେଲେ ଡମ୍ବରୁ ବଜାଇ ।
ତାହାଙ୍କର ପଛେ ପଛେ ଗଲେ ଦେବଗଣ
ଗରୁଡ଼ରେ ବିଜେ କଲେ ଲକ୍ଷ୍ମୀନାରାୟଣ ।
ବ୍ରହ୍ମା ହଂସ ଚଢ଼ି ତାଙ୍କ ପାଖେ ପାଖେ ଗଲେ
ଶଚୀ ଇନ୍ଦ୍ର ଐରାବତ ଗଜ ଆରୋହିଲେ ।
ଶିବ ଅନୁଗାମୀ ହେଲେ ଶୁକ୍ଳ ଛତ୍ର ଧରି
ଶ୍ୱେତ ବ୍ୟଜନେକ ଧରି ଯମୁନା ସୁନ୍ଦରୀ ।
କଚ୍ଛପ ଚଢ଼ିଣ ତାଙ୍କ ପଛେ ପଛେ ଗଲେ
ସରସ୍ୱତୀ ନଦୀ ଗଜ ପୃଷ୍ଠେ ଆରୋହିଲେ ।
ବାଳବ୍ୟଜନେକ ହସ୍ତେ ଅଛନ୍ତି ସେ ଧରି
ଦିଶେ ସେ ବ୍ୟଜନ ହଂସ କୁନ୍ଦ ଇନ୍ଦୁପରି ।
ପଞ୍ଚବର୍ଣ୍ଣର ସୁରଭି ପୁଷ୍ପ ଗୁଚ୍ଛେ ଗୁଚ୍ଛେ
ଘେନି ଷଡ଼ଋତୁ ଗଲେ ତାଙ୍କ ପଛେ ପଛେ ।
ଐରାବତ ସମ ଗଜ ଚଢ଼ି ପୃଥୁବକ
ଗଲେ ବେଗେ ଧରି ଅନୁଲେପ ପାତ୍ର ଏକ ।
ତୁମ୍ବୁରୁ ସହିତ ଯେତେ ଗନ୍ଧର୍ବ ନିକର
ଗାଇ ଗାଇ ଗଲେ ଧରି ସୁମଧୁର ସ୍ୱର ।
ବାଦ୍ୟ ବଜାଇଣ ଗଲେ ସକଳ କିନ୍ନର
ନୃତ୍ୟ କରି କରି ଗଲେ ଅପ୍‌ସରା ନିକର ।
ଶିବସ୍ତବ ପଢ଼ି ପଢ଼ି ଗଲେ ମୁନିଗଣ
ରୁଦ୍ରଗଣ ଏକାଦଶ କୋଟି ସଂଖ୍ୟା ଜାଣ ।
ଆଦିତ୍ୟ ଦ୍ୱାଦଶକୋଟି ବସୁ ଆଠକୋଟି
ଅଟନ୍ତି ପ୍ରମଥଗଣ ସତଷଠି କୋଟି ।
ଚଉବିଂଶ କୋଟି ଜାଣ ଊର୍ଦ୍ଧ୍ୱରେତା ଋଷି
ଅସଂଖ୍ୟ ରାକ୍ଷସ ଯକ୍ଷ କିନ୍ନର ମହର୍ଷି ।
କ୍ଷଣ ମଧ୍ୟେ ମହାଦେବ ହିମାଳୟ ତଳେ
ଦେଖି ହସ୍ତୀ ଚଢ଼ି ଆସି ସକଳ ଅଚଳେ ।
ପ୍ରଣମିଲେ ହିମାଳୟ ପାଦେ ତ୍ରିଲୋଚନ
ବନ୍ଦିଲେ ଅଚଳେ ସବୁ ଶିବଙ୍କ ଚରଣ ।
ଅତିମାତ୍ର ଆହ୍ଲାଦିତ ହେଲେ ହିମାଳୟ
ଶିବଙ୍କୁ ଘେନିଣ ଗଲେ ଆପଣା ଆଳୟ ।
ସୁବିଶାଳ ପୁରୀମଧ୍ୟେ ରହିଲେ ସମସ୍ତେ
ଶୁଣି ପୁରନାରୀବର ଦେଖିବାନିମନ୍ତେ ।
ନିଜ ନିଜ କର୍ମ ତେଜି ଅଇଲେକ ଧାଇଁ
କେ ରମଣୀ କରେ ମାଳା ଧରିଣ ଅଛଇ ।
ଆରହସ୍ତେ କେଶପାଶ କରିଛି ଧାରଣ
ଶିବଙ୍କ ଆଗରେଯାଇଁ ମିଳିଲା ବହନ ।
କେଉଁନାରୀ ଏକପାଦେ ଘେନିଛି ଅଳତା
ଦେଖିବା ମାନସେ ଧାଇଁ ଅଇଲା ବନିତା ।
ଶିବଙ୍କ ଆସିବା ଶୁଣି କେବଣ କାମିନୀ
ଏକ ନୟନରେ ସରୁକଳା ଅଛି ଘେନି ।
ଅଞ୍ଜନଶଳାକା ହସ୍ତେ ଧାଇଁ ଆସେ ବେଗେ
ବେଶ ହେଉ ଥିଲା କେଉଁ ସୁନ୍ଦରୀ ସରାଗେ ।
ଶୁଣିଲା ମାତ୍ରକେ ତାର ରସନା ସହିତ
କଟୀରୁ ବସନ ଖସି ହେଲା ଭୂମିଗତ ।

ଧାଇଁଲା ଉଲଗ୍ନ ହୋଇ ଉନମତ୍ତା ପରି
ସ୍ତନଭରେ ସୁଶୋଭନା କେଉଁ କୃଶୋଦରୀ
ମନ୍ଥର ଗାମିନୀ ବେଗେ ଆସି ନ ପାରଇ
ନିଜସ୍ତନ ଯୌବନକୁ ରାଗେ ସେ ନିନ୍ଦଇ ।
ପୁର ରମଣୀଙ୍କି ଏହି ଦଶା ଦେଖି ହର
ଧୀରେ ଧୀରେ ଚାଲିଗଲେ ଶ୍ୱଶୁର ମନ୍ଦିର ।
ଶିବଙ୍କୁ ଦର୍ଶନ କରି କାମିନୀ କଦମ୍ବ
କଥା ବାର୍ତ୍ତା ହେଲେ ଧନ୍ୟ ଧନ୍ୟ ମାଗୋଅମ୍ବା ।
ତପସ୍ୟାର ବଳେ ସିନା ପାଇଲୁ ଏ ବର
ଏହି ଶମ୍ଭୁ ସାକ୍ଷାତରେ ମହାଦେବ ହର ।
କୁସୁମାୟୁଧକୁ ଏହି କଲେ ଗୋ ଅନଙ୍ଗ
ଏହି କ୍ରୋଧ କଲେ ଦକ୍ଷ ମହାଯଜ୍ଞ ଭଙ୍ଗ ।
ଦକ୍ଷର ବିନାଶକାରୀ ଅଟଇ ଗୋ ଏହି
ଭଗଦେବତାର ଏହି ଦୃଷ୍ଟିହନ୍ତା ସହି ।
କରିଛନ୍ତି ଏ ତ୍ରିଶୂଳ ପିନାକ ଧାରଣ
ହେ ଶଙ୍କର ବନ୍ଦୁଅଛୁ ତୁମ୍ଭର ଚରଣ ।
ତୁମ୍ଭଙ୍କୁ ହେ ଶୂଳପାଣି କରୁ ନମସ୍କାର
ହେ ମୃଗାରି ଚର୍ମାମ୍ବର ବାରେ ଦୟାକର ।
ଆହେ କାଳଶତ୍ରୁ ଆମ୍ଭ ନମସ୍କାର ଘେନ
ମହାହି କୁଣ୍ଡଳ କରୁ ଚରଣ ବନ୍ଦନ ।
ତୁ ପାର୍ବତୀ ବଲ୍ଲଭ ତୋ ପାଦେ ନମସ୍କାର
ଏରୂପେ ଅନଙ୍ଗାଗଣ ସ୍ତୁତି ଶୁଣି ହର ।
ବିବାହ ବେଦୀରେ ଯାଇ ବସିଲେ ସତ୍ୱର
ରୂପ ଗୁଣେ ମୋହୁଛନ୍ତି ପ୍ରଭୁ ତିନିପୁର ।
ପରମ ମଙ୍ଗଳମୟ ଅଗ୍ନି ସଙ୍ଗେ ସଙ୍ଗେ
ସିଦ୍ଧଗଣ ସ୍ତୁତିପାଠ କରନ୍ତି ସରାଗେ ।
ଭସ୍ମ ବିଭୂଷିତ ଅଙ୍ଗ ଭୁଜଙ୍ଗ ବଳୟ
ଶିରେ ଚନ୍ଦ୍ର ଧରିଛନ୍ତି ବଳେ ସୁରରାୟ ।
ଆନନ୍ଦ ହୃଦୟେ ବ୍ରହ୍ମା ହେଲେ ଅଗ୍ରସର
ହର୍ଷେ ବିଷ୍ଣୁ ଅନୁଗାମୀ ହେଲେ ତାହାଙ୍କର ।
ବେଢ଼ିଛନ୍ତି ସପ୍ତଋଷି ସହଚର ଗଣ
ଅତିବ୍ୟଗ୍ର ହୋଇ ଗିରିରାଜ ପୁରଜନ ।
କନ୍ୟା ସଜ କଲେ ବସି ଅତି ଯତ୍ନ କରି
ସକଳ ଅଚଳ ବ୍ୟସ୍ତ ହେଲେ ଚର୍ଚ୍ଚା ସାରି ।
କନ୍ୟାକୁ ନାରୀଏ ମିଳି କରାଇଲେ ବେଶ
ପିନ୍ଧାଇଲେ ଅତି ଯତ୍ନେ ଶୁକ୍ଳ ସୂକ୍ଷ୍ମବାସ ।
ଶିବଙ୍କର ସନ୍ନିଧିରେ ବସାଇଲେ ନେଇ
କନ୍ୟା ଭ୍ରାତା ସୁନାଭ ଯେ ଉତ୍ସବ କରାଇ ।
ହିରଣ୍ମୟ ହର୍ମ୍ୟତଳ ପରମ ଶୋଭନ
ସେ ସ୍ଥାନରେ ଅଧିଷ୍ଠାନ କଲେ ସୁରଗଣ ।
ଶିବ କାଳୀ ବିଚେଷ୍ଟିତ ଦେଖନ୍ତି ସମସ୍ତେ
ଏହି ଲୋକାଚାରେ ହର କାଳୀର ସହିତେ ।
ପ୍ରବର୍ତ୍ତି ଅଛନ୍ତି ଲୋକେ କରନ୍ତି ଦର୍ଶନ
ତହିଁ କ୍ରୀଡ଼ାରତ କୁସୁମିତ ତରୁଗଣ ।
ଶିବ ପାର୍ବତୀଙ୍କ ଅଙ୍ଗେ କୁସୁମ ପରାଗ
ବରଷି ବର୍ଦ୍ଧିତ କଲେ ତାଙ୍କ ଅନୁରାଗ ।
ବେଦୀରେ ବସିଲେ ହର ପାର୍ବତୀ ଏ ଦୁହେଁ
ଶୁଚି ହୋଇଶୁକ୍ଳବସ୍ତ୍ର ପିନ୍ଧି ଗିରିରାୟେ ।
ଆସିଲେକ କୁଶ ହସ୍ତେ ମଧୁପର୍କ ଘେନି
ଦକ୍ଷିଣରେ ବିଜେ କଲେ ଦେବ ଶୂଳପାଣି ।
କହିଲେକ କୃତାଞ୍ଜଳି ପୁଟେ ଗିରିରାଜ
ଏହି ମୋର ପୁତ୍ରୀ ଅଟେ ଆହେ ଦେବରାଜ ।
ପୁଲହାଗ୍ରଜର ଏହି ଅଟଇ ଯେ ପୌତ୍ରୀ
ପିତୃଗଣଙ୍କର ଏହି ଅଟଇ ଦୌହିତ୍ରୀ ।
ଏହା ନାମ କାଳୀ ତୁମ୍ଭେ ପ୍ରତିଗ୍ରହ କର
ସଂପ୍ରଦାନ କରୁଅଛି ଆହେ ଦେବ ହର ।
ପ୍ରତିଗ୍ରହ କର କହି ପୁଣି ଉଚ୍ଚସ୍ୱରେ
କାଳୀ କର ଦେଲେ ନେଇ ଶିବଙ୍କର କରେ ।
ମହାଦେବ କହିଲେକ ମୋର ନାହିଁ ପିତା
ଜ୍ଞାତି ବାନ୍ଧବାଦି ନାହିଁ ନାହିଁ ମୋର ମାତା ।
ସର୍ବଦା ମୁଁ ନିରାଶ୍ରୟ ଗିରିଶୃଙ୍ଗ ଘର
ପ୍ରତିଗ୍ରହ କଲି ତବ ପୁତ୍ରୀ ଗିରିସ୍ୱର ।
ଏହା କହି ମହାଦେବ ଆପଣାର କରେ
ପ୍ରପୀଡ଼ନ କଲେ କାଳୀ କର ଧୀରେ ଧୀରେ ।
ପରମ ଆନନ୍ଦ ଜାତ ହେଲା କାଳୀ ଚିତ୍ତେ
ଏଥୁଅନ୍ତେ ମହାଦେବ କାଳୀଙ୍କ ସହିତେ ।
ବେଦୀ ଆରୋହଣ କରି ମଧୁପର୍କ ଖାଇ
ବେଦୀ ପରେ ସ୍ୱହସ୍ତରେ ବିଞ୍ଚିଦେଇ ଖଇ ।
ପିତାମହ କହିଲେ କ ଆହେ ଦେବୀ କାଳୀ
ଶଶାଙ୍କ ସନ୍ନିଭ ଚାରୁ ବଦନ ମଣ୍ଡଳି ।
ମହାଦେବଙ୍କୁ ହେ ଦେଖ ତୁମ୍ଭେ ହୋଇ ସ୍ଥିର
ସମାନ ଦୃଷ୍ଟିରେ ଅଗ୍ନି ପ୍ରଦକ୍ଷିଣ କର ।

ବ୍ରହ୍ମା ବାକ୍ୟେ କାଳୀ ହର ମୁଖକୁ ଚାହିଁଲେ
ରବି- କର ତପ୍ତା- ପୃଥ୍ୱୀ ବୃଷ୍ଟିକି ପାଇଲେ ।
ତଥା କାଳୀ ଅନୁଭବ କଲେ ଶୀତଳତା
ପୁଣି ବ୍ରହ୍ମା ବୋଇଲେ ଗୋ ଗିରିରାଜ ସୁତା ।
ମହାଦେବ ମୁଖ ପୁଣି କର ନିରୀକ୍ଷଣ
ଲଜ୍ଜାରେ କହିଲେ କାଳୀ କରିଛି ଦର୍ଶନ ।
ଗିରିନନ୍ଦିନୀକି ଘେନି ଦେବମହେଶ୍ୱର
ଅନଳକୁ ପ୍ରଦକ୍ଷିଣ କଲେ ତିନିଥର ।
ଲାଜା ହୋମ ଶେଷ କରି ଆସିବା ସମୟେ
ମାଳିନୀ ଓଗାଳେ ବାଟ ଧରି ଶିବପାୟେ ।
ମାଳିନୀ ଅଟଇ ଦେବୀ ଅମ୍ବିକାର ସଖୀ
ଶିବ ସ୍ଥିର ହେଲେ ପାଦ ଧରିବାର ଦେଖି ।
ବୋଇଲେ ଗୋ ଛାଡ଼ଛାଡ଼ ମାଗ ଇଚ୍ଛା ଯାହା
ଅବଶ୍ୟ ଦେବଇଁ ସତ୍ୟ କରୁଛି ସ୍ୱଦେହା ।
ମାଳିନୀ ବୋଇଲେ ଯେବେ ହେଲେ ସୁପ୍ରସନ୍ନ
ସ୍ୱଗୋତ୍ର ସୌଭାଗ୍ୟ କର ମୋ ସଖୀକିଦାନ ।
ଶଙ୍କର ବୋଇଲେ ତାହା ଦେଲି ଗୋମାଳିନୀ
ଏବେ ପାଦ ଛାଡ଼ିଦେ ତୁ ଯାଉଁ ଆମ୍ଭେ ବେନି ।
ଯାହା କି ଦେଲଇଁ ତାହା ମନ ଦେଇଶୁଣ
ଶଙ୍ଖ ଚକ୍ର କରିଛନ୍ତି ହସ୍ତେ ଯେ ଧାରଣ ।
ଯେ ମଧୁସୂଦନ ଜାଣ ପୀତାମ୍ବର ଧାରୀ
ଏହାଙ୍କ ସୌଭାଗ୍ୟ ଦେଲି ଆଗୋ ସହଚରୀ
ନିଜଗୋତ୍ର ପ୍ରଦାନ ମୁଁ କଲଇଁ ଆବର
ମାଳିନୀ ଯେ ବୃଷଧ୍ୱଜଠାରୁ ପାଇ ବର ।
ଛାଡ଼ି ଦେଲା ଶିବଙ୍କର ଚରଣ ଯୁଗଳ
ବ୍ରହ୍ମା ଦେଖି କାଳୀଙ୍କର ବଦନ ମଣ୍ଡଳ ।
ସୌନ୍ଦର୍ଯ୍ୟରେ ପୂର୍ଣ୍ଣଚନ୍ଦ୍ର ଛବିକି ନିନ୍ଦଇ
କାମାତୁରେ ତାଙ୍କ ରେତ ସ୍ଖଳନ ହୁଅଇ ।
ବାଲିରେ ପୋତିରେ ନେଇ ସେ ଶୁକ୍ର କୁଡ଼ରେ
ଶିବ ଏ ଘଟନା ଦେଖି କହିଲେ ସଧୀରେ ।
ଆହେ ବ୍ରହ୍ମା ଦ୍ୱିଜଗଣ ବଧ ତୁ ନକର
ସାକ୍ଷାତରେ ଦେଖ ଏହି ମହର୍ଷି ପ୍ରବର ।
ସର୍ବଲୋକ ବରଣୀୟ ହୋଇବେ ଏ ଋଷି
ଶିବ ବାକ୍ୟେ ଅଠାଅଶୀ ସହସ୍ର ତପସ୍ୱୀ ।
ଜାତ ହେଲେ ତାଙ୍କ ନାମ ବାଳଖିଲ୍ୟହେଲା
ଶିବଙ୍କର ବିଭାଘର ଏଠାରୁ ସରିଲା ।
କୌତୁକ ମନ୍ଦିରେ ଯାଇ ପ୍ରବେଶିଲେ ହର
ଉମାର ସହିତେ କଲେ ସେ ରାତ୍ରି ବିହାର ।
ପ୍ରଭାତରେ ଗିରିରାଜ ଠାରୁ ପୂଜା ପାଇ
ପାର୍ବତୀଙ୍କୁ ଘେନି ନିଜ ମନ୍ଦିରକୁ ଯାଇ ।
ବ୍ରହ୍ମା ବିଷ୍ଣୁ ଇନ୍ଦ୍ର ଆଦି ଦେବଗଣ ଯେତେ
ଆଦରେ ବିଦାୟ ଦେଲେ ତାହାଙ୍କୁ ସୁଚିତ୍ତେ ।
ମନ୍ଦର ପର୍ବତେ ବାସ କଲେ ଗଣ ଘେନି
ଦୀନ ଗୋପୀନାଥ ଚିନ୍ତେ ତାଙ୍କ ପାଦ ବେନି ।

=✢=

## ବିନାୟକୋତ୍ପତ୍ତି

ପୁଲସ୍ତ୍ୟ କହିଲେ ଶୁଣ ଆହେ ମହାମୁନି
ମନ୍ଦର ପର୍ବତେ ଥିଲେ ଶିବ ଉମା ବେନି ।
ବିଶ୍ୱକର୍ମା ରାଇ ଆଜ୍ଞା ଦେଲେ କର ଘର
ଆଜ୍ଞା ମାତ୍ରେ ବିଶ୍ୱକର୍ମା ଗଢ଼ିଲା ମନ୍ଦିର ।
ନିର୍ମାଣିଲା ଗୃହ ସବୁ ସ୍ୱସ୍ତିକ ଲକ୍ଷଣ
ଆୟତନ ଚଉଷଠି ଯୋଜନ ପ୍ରମାଣ ।
ସ୍ୱର୍ଣ୍ଣମୟ ଗୃହ ହସ୍ତୀଦନ୍ତର ତୋରଣ
ମୁକ୍ତାଜାଳଖଞ୍ଜା ଗୃହ ଅଭ୍ୟନ୍ତର ଜାଣ ।
ସକଳ ସୋପାନ ଶୁଦ୍ଧ ସ୍ଫଟିକେ ନିର୍ମିତ
ବୈଦୁର୍ଯ୍ୟ ପିଡୁଳାମାନ କାନ୍ଥରେ ଖଚିତ ।
ସାତଗୋଟି କକ୍ଷା ତାର ଅତ୍ୟନ୍ତ ବିସ୍ତାର
ସକଳ ଗୁଣରେପୂର୍ଣ୍ଣ ସେ ଦେବ ମନ୍ଦିର ।
ପଞ୍ଚଯଜ୍ଞ କରିଲେ ସେ ଗୃହେ ପଶୁପତି
ପୂର୍ବାଚାର ପଥ ଅନୁସରିଲେ ହେ ଯତି ।
ଏମନ୍ତେ ଯେ ବହୁକାଳ ହୋଇଲା ଅତୀତ
ବିହାର କରନ୍ତି ପ୍ରଭୁ ଦେବୀଙ୍କ ସହିତ ।
ଏକଦିନେ ପାର୍ବତୀଙ୍କି ବୋଇଲେ ସେ କାଳୀ
ପାର୍ବତୀ ବୋଇଲେ ଶୋକେ ଆହେ ଦେବଶୂଳି ।
କୁଠାରେ ବା ବାଣେଯେବେ ଛିଡ଼ିଯାଏ ଡାଳ
ପୁନରପି କଅଁଳଇ ତା ମୂଳୁ ପ୍ରବାଳ ।
ଦୁର୍ବାକ୍ୟ ସାୟକୁ ମୁକ୍ତ ହୋଇବା କଠିନ
ଏଣୁ ମୁହିଁ ତପ ଅର୍ଥେ କରୁଛି ଗମନ ।
ଯହିଁରେ କି ଆଉ ତୁମ୍ଭେ କାଳୀ ନ କହିବ
ଏହା କହି ପ୍ରଣମନ୍ତେ ତାଙ୍କୁ ସଦାଶିବ ।
ଅନୁମତି ଦେଲେ ଦେବୀ ଗଲେ ହିମାଳୟେ
ପ୍ରବେଶ ହୋଇଲେ ଯାଇଁ ପିତାର ଆଳୟେ ।

ଜୟନ୍ତୀ ବିଜୟା ଜୟା ଅପରାଜିତାକୁ
ସ୍ମରଣ କରନ୍ତେ ସର୍ବେ ଆସିଲେ ପାଖକୁ ।
ଦେବୀଙ୍କର ସେବା କଲେ ଆଜ୍ଞା ଅନୁସାରେ
ତପ ଆଚରିଲେଦେବୀ ଅରଣ୍ୟ ମଧ୍ୟରେ ।
ଦଂଷ୍ଟ୍ରା ନଖାୟୁଧଧାରୀ ବ୍ୟାଘ୍ରେକ ଅଇଲା
ଏକପଦେ ରହିଥିବା ଦେବୀଙ୍କି ଦେଖିଲା ।
ମନରେ ଭାଳିଲା ଯେବେ ପଡ଼ିଯିବେ ଏହି
ଏହାଙ୍କର ମଙ୍ଗଳ ମୁଁ କରିବି ଯେ ରହି ।
ଏହା ଭାଳି ପାର୍ବତୀଙ୍କ ବଦନକୁ ଚାହିଁ
ରହିଲା ସେ ବ୍ୟାଘ୍ର ଏକ ଦୃଷ୍ଟିରେ ଅନାଇ ।
ପାର୍ବତୀ ଯେ ଏକଶତ ବର୍ଷ କଲେ ତପ
ଦୃଢ଼ଚିତ୍ତେ କରୁଛନ୍ତି ବ୍ରହ୍ମମନ୍ତ୍ର ଜପ ।
ତ୍ରିଭୁବନ ଈଶ ବ୍ରହ୍ମା ମିଳିଲେକ ଆସି
ବୋଇଲେ ପ୍ରସନ୍ନ ହେଲି ଆଗୋ ଶୁଭ୍ରକେଶୀ ।
ତପୋବଳେ ତୋର ସବୁ ପାପ ଗଲା ନାଶ
ନିଶ୍ଚେ ପୂର୍ଣ୍ଣହେବ ଏବେ ତୋରଅଭିଳାଷ ।
ପାର୍ବତୀ ବୋଇଲେ ଆହେ କମଳ ଉଦ୍ଭବ
ଏ ବ୍ୟାଘ୍ର ଗୋଟିକି ଆଗ ତୁମ୍ଭେ ବରଦେବ ।
ତତ୍‌କ୍ଷଣେ ପଦ୍ମଯୋନି ସେ ବ୍ୟାଘ୍ରକୁ ଚାହିଁ
ଶିବଭକ୍ତ ଗଣପତ ହେବୁ ବ୍ୟାଘ୍ର ତୁହି ।
ଅଜେୟ ଧାର୍ମିକ ତୁହି ହେବୁ ଏ ସଂସାରେ
ଏରୂପେ ବ୍ୟାଘ୍ରକୁ ବର ଦେଇ ପୁନର୍ବାରେ ।
ଶିବକାନ୍ତା ପାର୍ବତୀଙ୍କି କହିଲେ ଗୋ ଅମ୍ବ
ଏବେ ତୁମ୍ଭେ ବର ମାଗ ମନ କରି ଦମ୍ଭ ।
ଗିରିସୁତା ବୋଇଲେକ ଆହେ ପଦ୍ମାସନ
ଯେମନ୍ତେ ମୋ ବର୍ଣ୍ଣ ହେବ କନକ ସମାନ ।
ହେଉକହି ବ୍ରହ୍ମା ତହୁଁ ଗଲେ ନିଜ ପୁରେ
ପାର୍ବତୀ ଯେ କୃଷ୍ଣବେଶ ତେଜିଲେ ସତ୍ୱରେ ।
ଦେଖାଗଲେ ଦେବୀ ପଦ୍ମ ପରାଗ ପ୍ରତିମ
ଭୋ ମୁନି ସେ ହେଲେ ପୁଣି କେଶରୁ ଜନମ ।
ତାହାଙ୍କର ନାମ ପୁଣି ହେଲା କାତ୍ୟାୟନୀ
ଇନ୍ଦ୍ର ଆସି ବୋଇଲେ ଗୋ ଗିରିନ୍ଦ୍ର ନନ୍ଦିନୀ ।
ଆପଣଙ୍କ ଭଗିନୀ ଏ କୌଶିକୀକି ମୋତେ
ପ୍ରଦାନ କରନ୍ତୁ ଦୟା କରିଣ ସୁଚିତ୍ତେ ।
କେଶରୁ ଜନମ ହେଲା କୌଶିକୀୟା ନାମ
ଶୁଣି ବୋଇଲେକ ଦେବୀ ଆହେ ସୁରୋତ୍ତମ ।
ସୌନ୍ଦର୍ଯ୍ୟଶାଳିନୀ ଏହି କୌଶିକୀକି ନିଅ
ତାକୁ ଘେନି ବିନ୍ଧ୍ୟାଚଳେ ଗଲେ ଦେବରାୟ ।
କୌଶିକୀଙ୍କୁ କହିଲେ ଗୋ ରହ ଏ ପର୍ବତେ
ଆପଣଙ୍କୁ ପୂଜିଲେ ଯେ ଦେବଗଣ ନିତ୍ୟେ ।
ବିନ୍ଧ୍ୟ ବିଳାସିନୀ ନାମ ବହିବ ଆପଣ
ଦେବୀଙ୍କ ସ୍ଥାପନ କରି ସହସ୍ର ଲୋଚନ ।
ବାହନ ନିମନ୍ତେ ଦେଲେ ସିଂହ ଏକ ଆଣି
ହୁଅ ତୁମ୍ଭେ ସୁରଶତ୍ରୁ ବିନାଶକାରିଣୀ ।
ଏହା କହି ସ୍ୱର୍ଗପୁରେ ଗଲେ ସୁରାଶ୍ୱର
ପାର୍ବତୀ ଯେ ପିତାମହଠାରୁ ପାଇ ବର ।
ନିଜ ମନ୍ଦିରକୁ ଯାଇ ଶିବଙ୍କ ଚରଣେ
ପ୍ରଣମି ରହିଲେ ଶୁଭେ ଆପଣା ଭବନେ ।
ଏଥୁଅନ୍ତେ ସୁରଗୁରୁ ଅବିନାଶି ହର
ମହାମୋଦେ ଛନ୍ନ ହେଲେ ସହସ୍ର ବତ୍ସର ।
ତେଣୁ ଟଳ ଟଳ ହେଲା ଚଉଦ ଭୁବନ
ସପତ ସାଗର ଜଳ କ୍ଷୁବ୍‌ଧ ଦିନୁ ଦିନ ।
ଭୟେ ସୁରଗଣ ଗଲେ ବ୍ରହ୍ମାଙ୍କ ସଦନେ
କହିଲେ ପ୍ରଣାମ କରି ତାହାଙ୍କ ଚରଣେ ।
କି ନିମନ୍ତେ ଟଳଟଳ ହୁଅଇ ସଂସାର
ବ୍ରହ୍ମା ବୋଇଲେ, ହେ ମହାମୋହ ବଶ ହର ।
ତେଣୁ ଏ ବ୍ରହ୍ମାଣ୍ଡ ଯାକ ହୁଏ କମ୍ପମାନ
ଏହା କହି ତୁନି ହେଲେ କମଳ ଆସନ ।
ଦେବେ କହିଲେକ ଯାଇଁ ହରିଙ୍କ ଆଗରେ
ହରି ବୋଇଲେ ହେ ଇନ୍ଦ୍ର ଯାଅ ତୁମ୍ଭେ ପୁରେ ।
ଯେମନ୍ତେ ସେ ମହାଦେବ ମୋହ ଯିବନାଶ
ଚାଲ ମୁହିଁ ଯାଉଅଛି ଆହେ ସୁରଈଶ ।
ଯଦ୍ୟପି ଶିବଙ୍କ ମୋହ ବିନାଶ ନୋହିବ
ଅବିନାଶି ବାଳକ ଯେ ଉପ୍ନ ହୋଇବ ।
ସେ ନିଶ୍ଚୟ ଇନ୍ଦ୍ରପଦ କରିବ ହରଣ
ଅଜ୍ଞାନ ହୋଇଲେ ଏହା ଶୁଣି ଦେବଗଣ ।
ସୁର ସହ ଇନ୍ଦ୍ର ଗଲେ ମନ୍ଦର ଭୂଧରେ
ପଶି ନ ପାରିଲେମହାଦେବଙ୍କ ମନ୍ଦିରେ ।
ବହୁକ୍ଷଣ ଚିନ୍ତା କରି ପେଷିଲେ ଅନଳ
ଅଗ୍ନି ଦେଖିଲେ ଯେ ଦ୍ୱାରେ ନନ୍ଦୀଦ୍ୱାରପାଳ ।
ତାହାକୁ ଦର୍ଶନ କରି ହୋଇଲେ ଚିନ୍ତିତ
ଚିନ୍ତାର୍ଣ୍ଣବେ ମଗ୍ନ ହୋଇ ଦେଖିଲେ ଏମନ୍ତ ।

ପୁର ମଧ୍ୟୁଁ ହଂସପନ୍ତି ବାହାରି ଆସନ୍ତି
ତତକ୍ଷଣେ ହୁତାଶନ ଧରି ହଂସମୂର୍ତ୍ତି ।
ହଂସଙ୍କ ସଙ୍ଗତେ ଗଲେ ଦ୍ୱାରୀକି ପ୍ରତାରି
ପୁରରେ ପ୍ରବେଶି ପୁଣି ସୂକ୍ଷ୍ମ ରୂପ ଧରି ।
କପର୍ଦ୍ଦିଙ୍କ ଶିରୋଭାଗ କରିଣ ଆଶ୍ରୟ
ଉଚ୍ଚହାସ୍ୟେ ବୋଇଲେକ ଦ୍ୱାରେ ସୁରଚୟ ।
ହେ ନାରଦ ମହାଦେବ ଶୁଣି ଏ ବଚନ
ଗିରିନନ୍ଦିନୀକି ତେଜି ଉଠି ତତ୍‌କ୍ଷଣ ।
ଅଗ୍ନିସଙ୍ଗେ ପୁରମଧ୍ୟୁ ହୋଇଲେ ବାହାର
ଦେଖି ସୁରପତି ପାଦେ କଲେ ନମସ୍କାର ।
ଚନ୍ଦ୍ର ସୂର୍ଯ୍ୟ ଆଦି ଦେବେ ପଡ଼ିଲେ ଚରଣେ
ମହାଦେବ କହିଲେକ ଆହେ ଦେବଗଣେ ।
କି ନିମନ୍ତେ ଆସିଅଛ କହ ତା ସତ୍ୱର
ଦେବେ ବୋଇଲେ ଭୋଦେବଯେବେଦ୍ଦବବର ।
ମହାମଇଥୁନ ତ୍ୟାଗ କରନ୍ତୁ ଆପଣ
ଈଶ୍ୱର ବୋଇଲେ ଶୁଣ ସୁରୋତ୍ତମ ଗଣ ।
ହେଉ ମୁହିଁ ଆଜିଠାରୁ ତ୍ୟାଗ କରି ତାହା
ମୋ ଉଦିତ ତେଜ କେହି ଧରୁ ସୁରନାହା ।
ପୁଲସ୍ତ୍ୟ କହିଲେ ଇନ୍ଦ୍ର ଚନ୍ଦ୍ର ଦିବାକର
ଯେତେକ ଅମରବୃନ୍ଦ ଥିଲେକ ଆବର ।
ଶୁଣିଲା ମାତ୍ରକେ ଧୈର୍ଯ୍ୟ ନ ପାରିଲେ ଧରି
ହେଲେ ପଙ୍କମଗ୍ନ ବୃନ୍ଦାରକ ବୃନ୍ଦ ପରି ।
ହୁତାଶନ ବୋଇଲେକ ହେ ପ୍ରଭୁ ଶଙ୍କର
ଧରିବି ମୁଁ ଆପଣଙ୍କ ତେଜ ମୁକ୍ତ କର ।
ଭବତେଜ ଛାଡ଼ନ୍ତେ ତା ଧରି ହୁତାଶନ
ତୃଷାତୁର ଜଳ ପରି କଲେ ତାହା ପାନ ।
ମୁଗ୍‌ଧ ହୋଇ ଶିବପାଦ ବନ୍ଦି ସୁରଗଣ
ଆନନ୍ଦରେ ଚଳିଗଲେ ଅମର ଭୁବନ ।
ଆପଣାର ମନ୍ଦିରକୁ ଗଲେ ମହେଶ୍ୱର
ପାର୍ବତୀଙ୍କି କହିଲେ ଯେ ଆସି ସୁରେଶ୍ୱର ।
ଅଗ୍ନିକି ପଠାଇ କଲେ ତୁମ୍ଭ ଗର୍ଭନାଶ
ସ୍ୱାମୀ କଥା ଶୁଣି ଦେବୀ ମନେ ବହି ରୋଷ ।
ରକ୍ତାକ୍ତ ଲୋଚନେ ଦେଲେ ଦେବତାଙ୍କୁ ଶାପ
ଅପୁତ୍ରିକ ହେବ ତୁମ୍ଭେ ଅମର କଳାପ ।
ତୁମ୍ଭର ପ୍ରକୃତି ମନ୍ଦ ନାଶିଲ ମୋ ସୁତ
ପତ୍ନୀଠାରେ ତୁମ୍ଭର ଯେ ନୋହୁ ପୁତ୍ର ଜାତ ।
ଦେବୀ ଶାପ ଦେଇଗଲେ ଶଉଚ ମନ୍ଦିରେ
ମାଳିନୀକି ଡାକିଲେ ସେ ମିଳିଲା ପାଶରେ ।
ବୋଇଲେ ମୁଁ ଏହିକ୍ଷଣି କରିବଇଁ ସ୍ନାନ
ମାଳିନୀ ସୁଗନ୍ଧଦ୍ରବ୍ୟ ଆଣିଲା ବହନ ।
ଦେବୀଙ୍କ ଅଙ୍ଗରେ ତାହା ଦେଲାକ ଲଗାଇ
ସ୍ନାନଅର୍ଥେ ଗୃହ ମଧ୍ୟେ ପ୍ରବେଶିଲେ ଯାଇଁ ।
ଦେହମଳୁଁ ଜାତକଲେ ଗୋଟିଏ ନନ୍ଦନ
ସର୍ବ ସୁଲକ୍ଷଣେ ସେହି ବାଳକ ସମ୍ପନ୍ନ ।
ବକ୍ଷ ତାର ବିଶାଳ ଯେ ଭୁଜ ତାର ଚାରି
ଭୂମିରେ ସେ କୁମରକୁ ପକାଇ ଗଉରୀ ।
ବସିଲେକ ପୁନରପି ଯାଇଁ ଭଦ୍ରାସନେ
ହସି ହସି ମାଳିନୀ ସେ ପୁତ୍ର ଦରଶନେ ।
ଦେବୀଙ୍କର ଶିରେ ନେଇ ଢ଼ାଳି ଦେଲା ଜଳ
ହେ ନାରଦ ଜଳେ ଧୋଇ ଶିରସ୍ଥିତ ମଳ ।
ଈସଧାସମୁଖୀ ଦେଖି ଦେବୀ ମାଳିନୀକି
ଆଗୋ ଭୀରୁ ଧୀରେ ଧୀରେ ହସୁଡୁ କାହିଁକି ।
ମାଳିନୀ କହିଲା ପୁତ୍ର ହୋଇବ ତୁମ୍ଭର
ନନ୍ଦୀଆଗେ କହୁଥିଲେ ଦେବ ମହେଶ୍ୱର ।
ସେଥିପାଇଁ ଆଗୋ ମୋତେ ମାଡୁଅଛି ହସ
ଦେବଗଣ କଲେ ତୁମ୍ଭ ପୁତ୍ରୋତ୍ପତ୍ତି ନାଶ ।
ଏହାଶୁଣି ଦେବୀ କଲେ ବିଧିମତେ ସ୍ନାନ
ତଦନ୍ତେ ଭକ୍ତିରେ କଲେ ଶିବଙ୍କ ଅର୍ଚ୍ଚନ ।
ଗୃହମଧ୍ୟେ ପ୍ରବେଶନ୍ତେ ମିଳିଲେ ଶଙ୍କର
ସେହି ଭଦ୍ରାସନେ ବସି ସ୍ନାନକଲେ ହର ।
ପାର୍ବତୀର ମଳୁଜାତ ପୁତ୍ର ଅଛି ତହିଁ
ମହାଦେବ ସ୍ୱେଦଜଳ ଗଲା ବହି ବହି ।
ସେ ଜଳ ଲାଗନ୍ତେ ପୁତ୍ର କଲା ଫୁଙ୍ଫୁକାର
ଆପଣାର ପୁତ୍ର ଜାଣି ଦେବ ମହେଶ୍ୱର ।
ପ୍ରୀତହୋଇ ସେ ପୁତ୍ରକୁ ହସ୍ତରେ ଧଇଲେ
ଏ ମୋହର ପୁତ୍ରବୋଲି ନନ୍ଦୀକି କହିଲେ ।
ସ୍ନାନ ପିତୃଦେବ ଅଗ୍ନିପୂଜା ସାରି ହର
ଜପିଲେ ସହସ୍ର ନାମ ଶଏ ଆଠଥର ।
ଉମାପାଶେ କହିଲେକ ସହାସ୍ୟ ବଦନେ
ତବ ନନ୍ଦନକୁ ଦେଖ ପ୍ରଫୁଲ୍ଲ ନୟନେ ।
ଗୁଣଗ୍ରାମ ବିଭୂଷିତ ଦିବ୍ୟାକୃତି କର
ତୁମ୍ଭ ଅଙ୍ଗମଳୁ ଜାତ ଗଜମୁଖ ତାର ।

ପାର୍ବତୀ ଏକଥା ଶୁଣି ନିକଟକୁ ଯାଇ
ଗାଢ଼େ ଆଲିଙ୍ଗନ କଲେ ପୁତ୍ରମୁଖ ଚାହିଁ ।
ସ୍ନେହ କଲେ ସେ ପୁତ୍ରର ମସ୍ତକ ଆଘ୍ରାଣ
କହିଲେକ ଶମ୍ଭୁ ତୁମ୍ଭ ନାୟକ ମୁଁ ଜାଣ ।
ନାୟକ ବିନା ଏ ପୁତ୍ର ହୋଇଲା ଉତ୍ପତ୍ତି
ବିନାୟକ ନାମ ହେଉ ଜଗତରେ ଖ୍ୟାତି ।
ତିନିଭୁବନରେ ବିଘ୍ନ କରିବ ଏ ନାଶ
ସମସ୍ତେ ଏହାର ପୂଜା କରିବେ ଅବଶ୍ୟ ।
ଏହାକହି ସେ ପୁତ୍ରକୁ ଦେଲେ ଉମାକରେ
ଦେବ ଦେବ ମହାଦେବ ଏଥୁ ଅନନ୍ତରେ ।
ଗଣମଧ୍ୟେ ଶ୍ରେଷ୍ଠ ତାର ନାମ ଘଟୋଦର
ପୁତ୍ରର ସହାୟ ପାଇଁ ଦେଲେ ତାକୁ ହର ।
ମାତୃଗଣ ଭୂତଗଣ ବିଘ୍ନ କାରିଗଣ
ଦେବୀ ପ୍ରୀତିଅର୍ଥେ କଲେ ସାହାଯ୍ୟ ପ୍ରଦାନ
ପୁତ୍ରର ସୁନ୍ଦର ରୂପ ଦେଖିଣ ପାର୍ବତୀ
ଅତିପ୍ରୀତି ଯୁକ୍ତ ହେଲା ତାହାଙ୍କର ମତି ।
ସୁନ୍ଦର କନ୍ଦର ଯୁକ୍ତ ମନ୍ଦର ଭୂଧରେ
ବିହରିଲେ ପୁରରିପୁ ହରଙ୍କ ସଙ୍ଗରେ ।
ଏହି ରୂପେ କାତ୍ୟାୟନୀ ଦେବୀ ହେଲେ ଜାତ
ଶୁମ୍ଭ ନିଶୁମ୍ଭଙ୍କୁ କଲେ ସମରେ ନିହତ ।
ହିମାଳୟୁ ଜାତ ହେଲେ ଯେ ରୂପେ ମୃଡ଼ାନୀ
ସେ ଆଖ୍ୟାନ କହିଲି ମୁଁ ଆହେ ମହାମୁନି ।
ଏ ଆଖ୍ୟାନ ଶ୍ରବଣରେ ସ୍ୱର୍ଗ ଲାଭ ହୁଏ
ଯଶ ମିଳେ ପାପମାତ୍ର ନରହଇ କାୟେ ।
ପରମ ତେଜସ୍ୱୀ ହୁଏ ନିଶ୍ଚୟ ସେ ଜନ
ଦୀନ ଗୋପୀନାଥ ଭଜେ ସେ ଦେବୀ ଚରଣ ।

=+=

## ଚଣ୍ଡମୁଣ୍ଡ ବଧ

ପୁଲସ୍ତ୍ୟ କହିଲେ ଶୁଣ ଆହେ ଦ୍ୱିଜବର
ଦନୁନାମେ ଭାର୍ଯ୍ୟା ଥିଲା କଶ୍ୟପ ଋଷିର ।
ତାହାର ଗର୍ଭରେ ତିନିପୁତ୍ର ହେଲେ ଜାତ
ଇନ୍ଦ୍ରଠାରୁ ସେ ଅଧିକ ହେଲେ ବଳବନ୍ତ ।
ତା ମଧ୍ୟରେ ଜ୍ୟେଷ୍ଠପୁତ୍ର ନାମ ଅଟେ ଶୁମ୍ଭ
ମଧ୍ୟମ ପୁତ୍ରର ନାମ ଅଟଇ ନିଶୁମ୍ଭ ।
କନିଷ୍ଠ ପୁତ୍ରର ନାମ ନମୁଚି ଅଟଇ
ଏହି ମହାବଳବନ୍ତ ଦେଖି ସୁରସାଇଁ ।
ଏହାକୁ ମାରିବି ବୋଲି ସଂକଳପ କଲା
ମହାଅସ୍ତ୍ର ବଜ୍ରକୁ ସେ ହସ୍ତରେ ଧଇଲା ।
ଇନ୍ଦ୍ର ଆସିବାର ଦେଖି ନମୁଚି ଭୟରେ
ଲୁଚି ରହିଲା ସେ ଯାଇଁ ସୂର୍ଯ୍ୟଙ୍କ ରଥରେ ।
ବଧ କରି ନ ପାରିଲେ ବାସବ ତାହାକୁ
ସୁପ୍ରସନ୍ନେ ନମୁଚିକି ଡାକିଲେ ପାଖକୁ ।
ଅସ୍ତ୍ରଶସ୍ତ୍ର ଅବଧ ତୁ ହେବୁ ଦେଲି ବର
ହେ ନାରଦ ବର ପାଇ ବଳିଷ୍ଠ ଅସୁର ।
ସୂର୍ଯ୍ୟ ରଥ ତେଜି କଲା ପାତାଳେ ଗମନ
ସମୁଦ୍ର ସଲିଳ ମଧ୍ୟେ ହେଲା ନିମଗନ ।
ବହୁତର ଫେନରାଶି ଦେଖି ତାହା ଧରି
ବୋଲେ କହିଅଛି ଯାହା ମୋତେ ବଜ୍ରଧାରୀ ।
ତାହା ସିଦ୍ଧ ହେଉ ସ୍ପର୍ଶ କରୁ ମୋତେ ଫେନ
ଏହାକହି ଫେନ ଧରି ଆପଣା ବଦନ ।
ନାସା କର୍ଣ୍ଣ ଚକ୍ଷୁ ଆଦି ସର୍ବାଙ୍ଗରେ ଭରି
ଇନ୍ଦ୍ର ସେ ଫେନକୁ ଦେଲେ ବଜ୍ରପ୍ରାୟ କରି ।
ଶ୍ୱାସରୁଦ୍ଧ ହୁଅନ୍ତେ ସେ ନମୁଚି ଦାନବ
ପଡ଼ି ମଲା ବ୍ରହ୍ମହତ୍ୟା ଲଭିଲେ ବାସବ ।
ପାପୁ ମୁକ୍ତ ହେଲେ ଇନ୍ଦ୍ର ତୀର୍ଥଯାତ୍ରାକରି
ଶୁମ୍ଭ ନିଶୁମ୍ଭ ଏ ବେନି କ୍ରୋଧେ ଅସ୍ତ୍ର ଧରି ।
ଦେବଙ୍କୁ ମାରିବା ପାଇଁ ଗଲେ ସୁର ପୁରେ
ତା ଦେଖି ଇନ୍ଦ୍ରଙ୍କୁ ଘେନି ସକଳ ଅମରେ ।
ଅଗ୍ରସର ହେବା ଦେଖି ସେ ଅସୁର ବେନି
ଆକ୍ରମଣ କଲେ ତାକୁ ନିଜ ବଳ ଘେନି ।
ବଳେ ଇନ୍ଦ୍ର ଐରାବତ ଯମର ମହିଷ
ବରୁଣର ମଣି ଛତ୍ର ସୂର୍ଯ୍ୟଙ୍କର ତ୍ରାସ ।
ମାଧବଙ୍କ ହସ୍ତୁ ଗଦା ଆଣିଲେ ଛଡ଼ାଇ
ଦାନବେ ଯେ ଘରେ ଘରେ ପଶିଲେ ଝସାଇ ।
ଶଙ୍ଖ ପଦ୍ମ ଆଦି ନିଧି ଆଣିଲେକ ହରି
ହେ ନାରଦ ହେଲେ ତିନିଲୋକ ଅଧିକାରୀ ।
ସ୍ୱର୍ଗପୁରୁ ଆସିଲେ ସେ ଭୂତଳକୁ ପୁଣି
ମହାସୁର ରକ୍ତବୀର୍ଯ୍ୟ ଦେଖି ଭାଇ ବେନି ।
ବୋଇଲେ ତୁ କିଏ ଦିଅ ତୋର ପରିଚୟ
ରକ୍ତବୀର୍ଯ୍ୟ ବୋଲେ ମୁହିଁ ଦିତିର ତନୟ ।
ମୋର ପ୍ରଭୁ ମହିଷ ମୁଁ ସଚୀବ ତାହାର
ମହାବୀର୍ଯ୍ୟ ରକ୍ତବୀର୍ଯ୍ୟ ନାମ ଯେ ମୋହର ।

ମହିଷାସୁରର ଥିଲେ ମନ୍ତ୍ରୀ ଆଉ ଦୁଇ
ତାହାଙ୍କର ନାମ ଚଣ୍ଡମୁଣ୍ଡ ଯେ ଅଟଇ ।
ମହାବଳ ପରାକ୍ରାନ୍ତ ସେ ଦୁଇ ଅସୁର
ଦେବୀ ଭୟେ ଲୁଚିଛନ୍ତି ଜଳେ ଦୁଇ ବୀର ।
ଆମ୍ଭର ଯେ ପ୍ରଭୁ ଥିଲେ ଦାନବ ମହିଷ
ବିନ୍ଧ୍ୟ ପରବତେ ତାଙ୍କୁ ଦେବୀ କଲେ ନାଶ ।
ତୁମ୍ଭେ ଦୁହେଁ କାହା ପୁତ୍ର କି ନାମ ତୁମ୍ଭର
କିପରି ପ୍ରଭାବ ବୀର୍ଯ୍ୟ କହ ମୋ ଆଗର ।
ଶୁମ୍ଭ କହିଲା ମୁଁ ଦନୁ ପୁତ୍ର ନାମ ଶୁମ୍ଭ
ଏହି ମୋର ସାନଭାଇ ନାମ ଯେ ନିଶୁମ୍ଭ ।
ଏହି ଭାଇଗୋଟି ମୋର ଇନ୍ଦ୍ର ଦର୍ପହାରୀ
ଜିଣିଛି ଏ ଦେବସହ ରୁଦ୍ର ଚକ୍ରଧାରୀ ।
ମହିଷ ନିହତ କଥା କହ ତୁ ଏକ୍ଷଣି
ତାହାଙ୍କୁ ମାରିବୁ ଆମ୍ଭେ ଦୁହେଁ ସୈନ୍ୟଘେନି
ଭୋ ମୁନି ନର୍ମଦା ତଟେ ଅଛନ୍ତି ସେ ରହି
ଜଳୁ ବାହାରିଲେ ଚଣ୍ଡ ମୁଣ୍ଡ ଦୁଇ ଭାଇ ।
ବୋଇଲେ ମଧୁରେ ରକ୍ତ ବୀଜକୁ ଅନାଇ
ତୁମ୍ଭ ଅଗ୍ରଭାଗେ କିଏ ଅଛି ଉଭା ହୋଇ ।
ରକ୍ତବୀଜ ବୋଇଲା ମୁଁ ସୁରହନ୍ତା ଶୁମ୍ଭ
ଏହାର କନିଷ୍ଠ ଭାଇ ବଳିଷ୍ଠ ନିଶୁମ୍ଭ ।
ଆମ୍ଭେମାନେ ଏ ଦୁହିଁଙ୍କ ଆଶ୍ରୟରେ ରହି
ମହିଷାଘାତିନୀ ରତ୍ନରୂପା ଅଟେ ଯେହି ।
ତାହାକୁ ହୋଇବା ବିଭା ନାହିଁଟି ସନ୍ଦେହ
ଚଣ୍ଡ କହେ ଏ ଅନୀତି କଥା କିମ୍ପା କହ ।
ରତ୍ନ ପାଇବାର ଯୋଗ୍ୟ ହୋଇନାହଁ ତୁମ୍ଭେ
ଯେ ହୁଅଇ ପ୍ରଭୁ ସେହି ସିନା ରତ୍ନଲଭେ ।
ସେ ସ୍ତ୍ରୀରତ୍ନ କର ଏହି ଶୁମ୍ଭକୁ ପ୍ରଦାନ
କୌଶିକୀର ରୂପ କଲେ ସେଠାରେ ବର୍ଣ୍ଣନ ।
ପୁନରପି ଜନ୍ମିଅଛି ସେହି ରୂପବତୀ
ଶୁଣି ଶୁମ୍ଭ ସୁଗ୍ରୀବକୁ ଡ଼କାଇଲା କତି ।
ବୋଇଲା ତୁ ମୋର ଦୂତ ଦୈତ୍ୟଶିରୋମଣି
ବିନ୍ଧ୍ୟ ନିବାସିନୀ ପାଶେ ଯିବୁ ଏହିକ୍ଷଣି ।
ବିନ୍ଧ୍ୟ ପର୍ବତକୁ ଗଲା ସୁଗ୍ରୀବ ଅସୁର
ଦେବୀଙ୍କର କଥା ଶୁଣି ଅଇଲା ସତ୍ୱର ।
ରୋଷେ ଶୁମ୍ଭ ନିଶୁମ୍ଭଙ୍କୁ କହିଲା ସେ ଆସି
ହେ ଦୈତ୍ୟନାୟକ ଦୁହେଁ ଶୁଣ ତାହା ବସି ।
ତୁମ୍ଭ କଥା ଅନୁସାରେ ଆଜି ମୁହିଁ ଗଲି
ସମସ୍ତ ବୁଝାଇ ଦେବୀ ଆଗରେ କହିଲି ।
ଆଗୋ ମହାଭାଗେ ଶୁମ୍ଭ ଜଗତେ ବିଖ୍ୟାତ
ତ୍ରିଭୁବନ ପତି ପୁଣି ଦାନବଙ୍କ ନାଥ ।
ସେ ତୁମ୍ଭଙ୍କୁ କହିଛି ଯା ଶୁଣ ଗୋ ସୁନ୍ଦରୀ
ସ୍ୱର୍ଗ ମର୍ତ୍ତ୍ୟ ପାତାଳେ ଯେ ରତ୍ନ ଥିଲା ପୂରି ।
ସେ ସମସ୍ତ ରତ୍ନ ଶ୍ରେଷ୍ଠ ଅଛି ମୋର ଘରେ
ଚଣ୍ଡମୁଣ୍ଡ କହିଲେକ ଆସି ମୋ ଆଗରେ ।
ସାକ୍ଷାତରେ ରତ୍ନରୂପା ତୁ ଗୋ କୃଶୋଦରୀ
ମୋତେ ଅବା ମୋ ଭାଇକି ଭଜ ଗୋସୁନ୍ଦରୀ ।
ଶୁଣି ହସି ହସି ଦେବୀ ବୋଇଲେ ସୁଗ୍ରୀବ
ଶୁଣ ମୁଁ କହୁଛି ମୋର ମନୋଗତ ଭାବ ।
ସତ୍ୟ ସତ୍ୟ ଶୁମ୍ଭ ଅଟେ ତ୍ରିଭୁବନ ପତି
ସ୍ତ୍ରୀରତ୍ନର ଯୋଗ୍ୟପୁତ୍ର ମୁଁ ଉଦ୍ଧତା ଅତି ।
ଯୁଦ୍ଧରେ ଜିଣିବି ଯେଉଁ ମହାବୀର ମୋତେ
ସେ ମୋହର ସ୍ୱାମୀ ହେବ କହିଲି ମୁଁ ତୋତେ ।
ମୁଁ ବୋଇଲି ଗର୍ବ କରୁ ତୁ କାହା ଆଗରେ
ସୁରାସୁର ଲୋକ ଯାକୁ ଡରନ୍ତି ସମରେ ।
କରିଛି ସେ ସଂଗ୍ରାମରେ ତିନିପୁର ଜୟ
ଯାହାକୁଟି ବ୍ରହ୍ମା ବିଷ୍ଣୁ ରୁଦ୍ର କରେ ଭୟ ।
ତୋତେ କି ସେ ସଂଗ୍ରାମରେ ନପାରିବେ ଜିଣି
ଗର୍ବମାନ ତେଜି ଏବେ ଉଠ ଗୋ ଭାମିନୀ ।
ଦେବୀ ବୋଇଲେ ମୁଁ ଯାହା କରିଅଛି ସତ୍ୟ
ତୁ ଯାଇ ଶୁମ୍ଭଙ୍କୁ କହ ଏ କଥା ସମସ୍ତ ।
ଦେବୀର ଏକଥା ଶୁଣି ଅଇଲି ମୁଁ ଫେରି
କୋଟି କୋଟି ଅଗ୍ନିତାକୁ ନୋହିବେ ଯେସରି ।
ବିଚାରିଣ କାର୍ଯ୍ୟ କର ହେ ଦୈତ୍ୟ ରାଜନ
ସୁଗ୍ରୀବ ମୁଖରୁ ଶୁଣି ଏମନ୍ତ ବଚନ ।
ଶୁମ୍ଭ ପୁଣି କହିଲାକ ଧୂମ୍ର ଲୋଚନକୁ
ହେ ଧୂମ୍ରାକ୍ଷ ତୁହି ଯାଇ ସେ ନାରୀ ଦୁଷ୍ଟାକୁ ।
ସାପରାଧା ଦାସୀ ପରି ଆଣ କେଶଧରି
ଏହାର ସପକ୍ଷ ଯେବେ ହେବ କୁଶଧାରୀ ।
ବିଚାର ନ କରି ତାର ଘେନିବୁ ଜୀବନ
ଏମନ୍ତ ଆଦେଶ ପାଇ ସେ ଧୂମ୍ରଲୋଚନ ।
ଅକ୍ଷୌହିଣୀ ସୈନ୍ୟ ଘେନି ମହାତେଜେଗଲା
ବିନ୍ଧ୍ୟ ପରବତେ ଦେବୀଦୁର୍ଗାଙ୍କୁ ଦେଖିଲା ।

କହିଲାକ ଭ୍ରାନ୍ତ ଚିତ୍ତେ ମୂଢ଼ା କଉଶିକୀ
ଏଥିଯାଇ ଶୁମ୍ଭଙ୍କୁ ତୁ ନ ଭଜୁ କାହିଁକି ।
ଭଲଗତି ଅଛି ଯେବେ ମୋର ସଙ୍ଗେ ଆସ
ନୋହିଲେ ମୁଁ ବଳାତ୍କାରେ ଧରିବି ତୋ କେଶ ।
ଶୁମ୍ଭ ପାଶେ ଘେନିଯିବି ନ ରଖିବେ କେହି
ଦେବୀ କହିଲେକ ଅଟୁ ବଳବନ୍ତ ତୁହି ।
ଧରି ନେବାପାଇଁ ଶୁମ୍ଭ ପଠାଇଛି ତୋତେ
ମୁହିଁତ ଅବଳା ମୋର ବଳ ଅବା କେତେ ।
ତୋର ଯାହାଇଚ୍ଛା ବାବୁ କର ତୁହି ତାହା
ବଳେ ସେହୁ ଧରିନେବ ସେ ମୋହର ନାହା ।
ଏହା ଶୁଣି ମହାବଳ ସେ ଧୂମ୍ରଲୋଚନ
ଦେବୀଙ୍କର କେଶ ବଳେ କଲା ଆକର୍ଷଣ ।
ଉଠିଲେ ହୁଙ୍କାର ନାଦ କରି ଦେବୀ ରୋଷେ
ପ୍ରଚଣ୍ଡ ଅନଳ ଜାତ ହେଲା ଚଉପାଶେ ।
ସେ ଅନଳେ ପୋଡ଼ିଗଲା ଧୂମ୍ରାକ୍ଷ ଅସୁର
ଅକ୍ଷୌହିଣୀ ବଳ ପୋଡ଼ି ହୋଇଲେ ଅଙ୍ଗାର ।
ଜଳିଯାନ୍ତେ ହାହାକାର ପଡ଼ିଲା ଜଗତେ
ସେ ତୁମୂଳ ଧ୍ୱନି ଶୁଣି ଶୁମ୍ଭ କୋପଚିତ୍ତେ ।
ମହାବଳ ମହାସୁର ଚଣ୍ଡ ମୁଣ୍ଡ ଦୁଇ
ବଳବନ୍ତଙ୍କୁ ଯେ ତାଙ୍କ ସଙ୍ଗତରେ ଦେଇ ।
ବୋଇଲା ଦୁଷ୍ଟାଙ୍କୁ ବେଗେ ଆଣ ଯାଇଁ ଧରି
ଗଲେ ଚଣ୍ଡମୁଣ୍ଡ ଦୁଇ ସୈନ୍ୟ ସଜକରି ।
ତାହାଙ୍କର ରଥଗଜ ବଳ ଅକଳିତ
ବେଢ଼ିଲେ ଅସୁରବଳ ବିନ୍ଧ୍ୟ ପରବତ ।
ଅକଳିତ ରିପୁବଳ କରି ବିଲୋକନ
ମହାବଳ କେଶରୀ ଯେ ଦେବୀଙ୍କ ବାହନ ।
କେଶର କମ୍ପାଇ କୋପେ ପଶିଲା ସମରେ
ଅସୁରଙ୍କୁ ବିଦାରିଲା ନଖ ଆୟୁଧରେ ।
କାହାକୁ ବା ଚିରିଦିଏ କୋପେ ଦନ୍ତମାରି
ନଖମାରି କାହାଛାତି ପକାଏ ବିଦାରି ।
ଦେବୀଙ୍କର ଅନୁଚର ଭୂତଗଣ ଉଠି
ମାଇଲେ ଅସୁର ବଳ ମାରି ବିଧା ମୁଷ୍ଟି ।
ଭୟେ ଦୈତ୍ୟ ନେଲେ ଚଣ୍ଡ ମୁଣ୍ଡର ଆଶ୍ରୟ
ସୈନ୍ୟଙ୍କର ଆର୍ତ୍ତନାଦ ଦେଖି ବୀର ଦ୍ୱୟ ।
ଅନଳ ପତଙ୍ଗ ପରି ଦେବୀ ନିକଟକୁ
ଧାଇଁଗଲେ ଦେବୀ ଦେଖି ସେ ଦୁଇ ବୀରଙ୍କୁ ।
ତତକ୍ଷଣେ କ୍ରୋଧେ କଲେ ଭ୍ରୁକୁଟି କୁଟିଳ
ଦେବୀଙ୍କର ଶ୍ରମଜ୍ୟାଳେ କଣ୍ଟିଲା କପାଳ ।
ତହିଁରୁ ଉତ୍ପନ୍ନ ହେଲେ କରାଳ ବଦନା
କାଳୀ ଯୋଗିନୀ ସେ ସର୍ବମଣ୍ଡଳ ସମ୍ପନ୍ନା ।
ତାଙ୍କ ହସ୍ତେ ଭୟଙ୍କର ଖଟ୍ୱାଙ୍ଗ ଅଛଇ
କାଳ ପ୍ରାୟ ଉଗ୍ରଚଣ୍ଡୀ ଖଡ୍‌ଗ ବିରାଜଇ ।
ରୁଧିର ରାଶିରେ ପୂର୍ଣ୍ଣ ଶୁଷ୍କ କଳେବର
ଗଳଦେଶେ ମୁଣ୍ଡମାଳ ଲମ୍ବଇ ତାଙ୍କର ।
ଜାତହୋଇ ଖଡ଼ଗେକଲେ ତାହାଙ୍କୁ ଛେଦନ
ଖଟ୍ୱାଙ୍ଗରେ କଲେ କାହା ଉର ବିଦାରଣ ।
କ୍ରୋଧଭରେ ରଥଗଜ ଅଶ୍ୱ ରିପୁବଳ
କ୍ଷଣକ ମାତ୍ରକେ କଲେ ସକଳ ନିର୍ମୂଳ ।
ଚର୍ମଧନୁ ଘଣ୍ଟା ଯନ୍ତ୍ର ଅଙ୍କୁଶ ମୁଦଗର
ବହୁବିଧ ଶସ୍ତ୍ରମାନ ଧରି ବେନିକର ।
ଅମ୍ବିକ ପ୍ରହାର କଲେ ଗଜଙ୍କ ବଦନେ
ଗଜଙ୍କୁ ସେ ପଠାଇଲେ ଶମନସଦନେ ।
କୁବେର ସହିତ ରଥ ଚକ କଲେ ଚୂନା
ସାରଥି ସହିତ ଅଶ୍ୱ ଥିଲେ ଯେତେ ସେନା ।
ଦାନ୍ତରେ ଚୋବାଇ ତାଙ୍କୁ ଗର୍ଭେ ଦେଲେ ଭରି
କାହା କେଶ ଧରି ଗ୍ରୀବାଦେଶକୁ ବିଦାରି ।
କାହାକୁ କରନ୍ତି ଅବା ପାଦେ ମରଦନ
ଗଣାଧିପ ଘେନି ଦେବୀ ଭକ୍ଷିଲେ ସଇନ ।
ଦେଖି ରୁରୁଦୈତ୍ୟ ମହାକ୍ରୋଧରେ ଧାଇଁଲା
ଚଣ୍ଡ ଏ ବ୍ୟାପାର ଦେଖି ତାଟକା ହୋଇଲା ।
ଦେବୀ ରୁରୁ ଶିରେକଲେ ଖଟ୍ୱାଙ୍ଗ ପ୍ରହାର
ଛିନ୍ନ ମୂଳ ଦ୍ରୁମ ପ୍ରାୟ ପଡ଼ିଲା ଅସୁର ।
ଦେବୀ ତା ଦେହରୁ ଚର୍ମ ନେଲେକ ଉତାରି
ବାନ୍ଧିଲେ ବିମଳ ଜଟାଭାରେ ତାହା ଧରି ।
କେରାଏ ଜଟାକୁ ଯହୁଁ ନ ଆଣ୍ଟିଲା ସେହି
ଉପାଡ଼ି ସେ ଜଟା ଦେଲେ ଭୂମିରେ ପକାଇ ।
ସେ ଜଟା ହୋଇଲା ଅତି ଭୟଙ୍କର ମୂର୍ତ୍ତି
ତଇଳରେପୂର୍ଣ୍ଣ କେଶ କୃଷ୍ଣବର୍ଣ୍ଣ ଜ୍ୟୋତି ।
ଅଧେ କୃଷ୍ଣ ଅଧେ ଶୁକ୍ଳ ତାର କଳେବର
ଜନ୍ମ ହୋଇ ବୋଇଲା ସେ ଦେବୀଙ୍କ ଆଗର ।
ପ୍ରଧାନ ଅସୁର ଜଣେ ଦିଅ ମୁଁ ମାରିବି
ଚଣ୍ଡମାରୀ ନାମ ତାକୁ ଦେଲେ ପୁଣି ଦେବୀ ।

ବୋଇଲେ ଲୋ ଚଣ୍ଡମାରୀ ଯିବୁ ଏହିକ୍ଷଣି
ଚଣ୍ଡମୁଣ୍ଡ ଅସୁରକୁ ଧରିଦେବୁ ଆଣି ।
ସ୍ୱହସ୍ତେ କରିବି ମୁହିଁ ତାହାଙ୍କୁ ସଂହାର
ଆଜ୍ଞମାତ୍ରେ ଚଣ୍ଡମାରୀ ଧାଇଁଲା ସତ୍ୱର ।
ଚଣ୍ଡମୁଣ୍ଡ ତାକୁ ଦେଖି ଭୟେ ପଳାଇଲେ ।
ପଳାଇ ଦକ୍ଷିଣ ଦିଗ ଆଶ୍ରୟେ ରହିଲେ ।
ଗରୂଡ଼ ସମାନ ଏକ ଗର୍ଦ୍ଦଭଆରୋହି
ଚଣ୍ଡମାରୀ ଦେବୀ ଅଙ୍ଗୁ ବସ୍ତ୍ର ଫେଇଦେଇ ।
ସେ ଦୁହିଁଙ୍କ ପଛେ ପଛେ ଧାଇଁଲେ ସେ ବେଗେ
ପଳାନ୍ତି ଅସୁରଦ୍ୱଇ ତାଙ୍କ ଆଗେ ଆଗେ ।
ଚଣ୍ଡମାରୀ ଯାଉଁ ଯାଉଁ ଦେଖିଲେ ବାଟରେ
ମହିଷ ଗୋଟିଏ ଯାଉ ଅଛଇ ଆଗରେ ।
ତାର ନାମ ପୌଣ୍ଡ୍ର ସେହି ଯମର ବାହନ
ଭୁଜଗ ଆକାର ଶିଙ୍ଘ ମହା ବଳବାନ ।
ଉପାଡ଼ିଲେ ଚଣ୍ଡମାରୀ ତାର ଶିଙ୍ଘ ଦୁଇ
ତାହାଘେନି ଦୈତ୍ୟପଛେ ବେଗେଗଲେ ଧାଇଁ
ଡରେ ପୃଥିବୀକି ଛାଡ଼ି ସେ ଦୁଇ ଅସୁର
ଆକାଶ ମାର୍ଗରେ ଗଲେ ହୋଇ ଖରତର ।
ଗଧଚଢ଼ି ଆକାଶକୁ ଗଲେ ଚଣ୍ଡମାରୀ
ଯାଉଁ ଯାଉଁ ଭେଟିଲେ ସେ ପନ୍ନଗ ବଇରୀ ।
ଗରୁଡ଼ କର୍କଟ ଦୁହେଁ ଯାଉଛନ୍ତି ଆଗେ
ଲୋମକୁ ଫୁଲାଇ ଦେଲେ ଚଣ୍ଡମାରୀ ରାଗେ
ଦେଖିଣ ଗରୁଡ଼ ମନେ ପାଇ ମହାଭୟ
ପକ୍ଷ ଝାଡ଼ିଦେଇ ହେଲା ମାଂସ ପିଣ୍ଡ ମୟ ।
ଭୟଙ୍କର ପକ୍ଷ ତାର ପଡ଼ିଲାକ ଝଡ଼ି
ତାକୁ ନେଲେ ଚଣ୍ଡମାରୀ ଗରୁଡ଼କୁ ଛାଡ଼ି ।
କର୍କୋଟକ ହସ୍ତେ ଧରି ଧାଇଁଲେ ସତ୍ୱର
ବାଟରେ ଭେଟିଲେ ଯାଉଁ ଦୁର୍ଦ୍ଦାନ୍ତ ଅସୁର ।
କର୍କୋଟକ ନାଗଫାଶେ ବିନ୍ଧିଲେ ଦୁହିଁଙ୍କି
ବିନ୍ଧ୍ୟ ପରବତେ ଯହିଁ ଅଛନ୍ତି କୌଶିକୀ ।
ତାହାଙ୍କ ଛାମୁରେ ଦେଇ କଲେ ନିବେଦନ
କରିଛନ୍ତି ଭୟଙ୍କର କେଶକୁ ଧାରଣ ।
ଗରୁଡ଼ ପକ୍ଷରେ ଗୁନ୍ଥି ଅସୁରଙ୍କ ମୁଣ୍ଡ
ମାଳାକରି ଚଣ୍ଡମାରୀ ଘେନି ଚଣ୍ଡମୁଣ୍ଡ ।
ଘର୍ଘରା ଗୋଟିଏ ପୁଣି ମୃଗେନ୍ଦ୍ର ଚର୍ମର
ସମର୍ପିଲେ କଉଶିକୀ ଦେବୀଙ୍କ ଆଗର ।
ଗରୁଡ଼ ପକ୍ଷର ମାଳା ଆପେ ବାନ୍ଧି ଶିରେ
ଦାନବ ରୁଧିରପାନ କଲେ ଧୀରେ ଧୀରେ ।
ଦୁର୍ଗାଦେବୀ ଚଣ୍ଡମୁଣ୍ଡ ଅସୁରଙ୍କୁ ଧରି
ମୁଣ୍ଡକାଟି ପକାଇଲେ କୋପେ ଅସ୍ତ୍ରମାରି ।
ସେ ଦୁହିଁଙ୍କ ମୁଣ୍ଡେ କଲେ ଶେଖର ରଚନା
ଶର୍ବାଙ୍କୁ ସଙ୍ଗରେ ଘେନି ଗଲେ ସୁଲୋଚନା ।
କୌଶିକୀଙ୍କ ସନ୍ନିଧିରେ ପ୍ରବେଶିଲେ ଯାଇ
ସେଠାରେ ସକଳଦେବୀ ସମବେତ ହୋଇ ।
ବୋଇଲେ ଶେଖରୋତ୍ତମ କରନ୍ତୁ ଗ୍ରହଣ
ସର୍ପରେ ଗୁନ୍ଥିଛୁ ମୁଣ୍ଡ କରିଣ ଯତନ ।
ଚାମୁଣ୍ଡା ସେ ଶେଖରକୁ ମୁଣ୍ଡରେ ବାନ୍ଧିଲେ
କଉଶିକୀ ଦେବୀ ତାଙ୍କୁ ଏମନ୍ତ କହିଲେ ।
ଚଣ୍ଡମୁଣ୍ଡ ମସ୍ତକର ଶେଖର ଧାରଣ
କଲୁଯେଣୁ ଚାମୁଣ୍ଡା ତୋ ନାମ ହେଲା ଜାଣ ।
ତ୍ରିନେତ୍ରାକୁ ଏହା କହି ପୁଣି ପ୍ରୀତିଭରେ
ଦିଗ୍‌ବସ୍ତ୍ରାକୁ କହିଲେ ତୁ ଯାଇ ଗୋ ସତ୍ୱାରେ ।
ରିପୁବଳ ମାରି ଆସ ଗୋଟିଏ ନ ଛାଡ଼
ଆଜ୍ଞାମାତ୍ରେ ଧାଇଁଲେ ସେ ଘେନି ଯମଦାଢ଼ ।
ରିପୁବଳ ସଂହାରିଲେ ନ ଛାଡ଼ିଲେ ଜଣେ
ତାଙ୍କ ପେଟ ପୂରିଗଲା ଅସୁର ଭକ୍ଷଣେ ।
କୋଟି କୋଟି ବାଣେ କଲେ ଅସୁର ନିଧନ
ସେ ଦେବୀଙ୍କ ପାଦେ ରହୁ ଗୋପୀନାଥ ମନ ।

= ✢ =

## ଶୁମ୍ଭ ନିଶୁମ୍ଭ ବଧ

ପୁଲସ୍ତ୍ୟ କହିଲେ ଚଣ୍ଡମୁଣ୍ଡ ମଲେରଣେ
ଭଙ୍ଗଦେଇ ପଳାଇଲେ ସୈନ୍ୟ ଏଣେତେଣେ ।
ଦେଖି ମହାସୁର ଶୁମ୍ଭ କ୍ରୋଧରେ ଅଧୀର
ରକ୍ତ ବୀଜ ଦାନବକୁ ଡ଼କାଇ ସତ୍ୱର ।
ତ୍ରିଂଶକୋଟି ଅକ୍ଷୌହିଣୀ ସେନ୍ୟଘେନି ସଙ୍ଗେ
ସେହି ଦୁଷ୍ଟା ରମଣୀକି ମାର ଯାଇଁ ବେଗେ ।
ସୈନ୍ୟ ଘେନି ରକ୍ତବୀଜ ହୋଇଲା ବାହାର
ଅସୁର ବେଢ଼ିଲେ ଯାଇ ବିନ୍ଧ୍ୟ ଗିରିବର ।
ଦେଖିଲେ ଚଣ୍ଡିକା ଦେବୀ ଆସେ ରକ୍ତବୀଜ
ପୃଥ୍ୱୀ ନ ଦିଶଇ ପୂରି ଅଛନ୍ତି ଦନୁଜ ।
କଳୀ ସହ କ୍ରୋଧଭରେ ସିଂହନାଦ କଲେ
ସେ ସମୟେ ବଦନରୁ ବ୍ରାହ୍ମଣୀ ଜନ୍ମିଲେ ।

ଅକ୍ଷସୂତ୍ର କମଣ୍ଡଳୁ ହସ୍ତରେ ତାଙ୍କର
ଚଢ଼ିଛନ୍ତି ହଂସଯୁକ୍ତ ବିମାନ ଆବର ।
ତା ପଛରେ ମାହେଶ୍ୱରୀ ଜନମିଲେ ପୁଣି
କୁଣ୍ଡଳିନୀ ତ୍ରିନୟନୀ ତ୍ରିଶୂଳ ଧାରିଣୀ ।
ବୃଷ ଆରୋହିଣୀ ଘୋର ପ୍ରକୃତି ଶାଳିନୀ
ଆବର ସେ ମହା ଅହି-ବଳୟ- ଶୋଭିନୀ ।
ତାହାଙ୍କର ପଛେ ପଛେ ଜନ୍ମିଲେ କୌମାରୀ
ମୟୂରପୁଚ୍ଛ ଶୋଭିନୀ ଶକ୍ତି ହସ୍ତେ ଧରି ।
ମୟୂର ପୃଷ୍ଠରେ କରିଛନ୍ତି ଆରୋହଣ
ତାଙ୍କ ପଛେ ଜନମିଲେ ବଇଷ୍ଣବୀ ଜାଣ ।
ତାଙ୍କ ବାହୁ ଯୁଗଳରେ ଶୋହେ ଧନୁଶର
ଧରିଛନ୍ତି ଶଙ୍ଖ ଚକ୍ର ଗଦାକୁ ଆବର ।
ଗରୁଡ଼ ପୃଷ୍ଠରେ ବିଜେ ଅତି ରୂପ ବତୀ
ତଦନ୍ତେ ବାରାହୀ ଦେବୀ ହେଲେ ଉତପତ୍ତି ।
ଦଂଷ୍ଟ୍ରାଗ୍ରରେ ଭୂତଳକୁ କରିଣ ବିଦୀର୍ଣ୍ଣ
ମହାଉଗ୍ର ମୂଷଳକୁ ହସ୍ତରେ ଧରିଣ ।
ଶେଷନାଗ ବାହନ ଯେ ଭୀଷଣ ପ୍ରକୃତି
ହୃଦୟରୁ ନାରସିଂହୀ ହେଲେ ଉତପତ୍ତି ।
ଦାରୁଣ ପ୍ରକୃତି ତାଙ୍କ ନଖର ପ୍ରଖର
ଇତସ୍ତତ କରି ଗ୍ରହ ନକ୍ଷତ୍ର ଆବର ।
କେଶର ଫୁଲାଇ ଦୈତ୍ୟ ନିଧନେ ପ୍ରବୃତ୍ତ
ପୁନରପି ସେ ଚଣ୍ଡିକା ହୋଇ କ୍ରୋଧାନ୍ୱିତ ।
ହୁଙ୍କାର ଶବଦେ ପୂର୍ଣ୍ଣ କଲେ ତ୍ରିଭୁବନ
ସେ ଭୀଷଣ ଶବ୍ଦ ଶୁଣି ଦେବ ତ୍ରିଲୋଚନ ।
ସେ ସ୍ଥାନକୁ ଆସି କଲେ ଆମ୍ବିକାର ସ୍ତୁତି
ବୋଇଲେ ଗୋ ଦୁର୍ଗେ ମୁହିଁ ଆସିଛି ତୋକତି ।
ତୋର ଆଜ୍ଞାକାରୀ ମୁହିଁ ତୋହାର କିଙ୍କର
ଯାହା ତୁ କହିବୁ ତାହା କରିବି ନିକର ।
ଏପରି ଅନେକ ସ୍ତୁତି କରନ୍ତେ ଈଶାନ
ଏ ସମୟେ ଦେବୀ ଦେହୁଁ ଶିବା ହେଲେ ଜନ୍ମ ।
ସେ ଶିବା କହିଲେ ଦେବ ଶଙ୍କରଙ୍କୁ ଚାହିଁ
ହେ ଶଙ୍କର ଯାଅ ତୁମ୍ଭେ ମୋର ଦୂତହୋଇ ।
କହିବ ନିଶୁମ୍ଭ ଶୁମ୍ଭ ଅସୁର ଦୁହିଙ୍କୁ
ଯେବେ ତାହାଙ୍କର ଇଚ୍ଛା ଅଛି ବଞ୍ଚିବାକୁ ।
ସପତମ ପାତାଳକୁ କରନ୍ତୁ ଗମନ
ସ୍ୱର୍ଗପୁର ଭୋଗକରୁ ସହସ୍ର ଲୋଚନ ।
ଦେବତାଏ ସୁସ୍ଥହୋଇ ରହନ୍ତୁ ସ୍ୱସ୍ଥାନେ
ଯାଗ ଯଜ୍ଞ ଅନୁଷ୍ଠାନ କରନ୍ତୁ ବ୍ରାହ୍ମଣେ ।
ବଳ ଗର୍ବ ବହି ଯେବେ କରିବ ସମର
ନିଶ୍ଚୟ ମୋହର ହସ୍ତେ ଯିବ ଯମଘର ।
ହେ ନାରଦ ଶିବଙ୍କୁ ସେ କଲେ ଯହୁଁ ଦୂତ
ଶିବଦୂତୀ ନାମ ତାଙ୍କୁ ଦେଲେ ଜଗନ୍ମାତ ।
ଶିବ ବାକ୍ୟେ ଶୁଣଦୈତ୍ୟେ ମନେ ଗର୍ବବହି
ହୁଙ୍କାର ଶବଦ କରି ଗଲେ ସର୍ବେ ଧାଇଁ ।
ଯହିଁ ଛନ୍ତି କାତ୍ୟାୟନୀ ସେ ସ୍ଥାନେ ମିଳିଲେ
କୋଟି କୋଟି ଶର ଶକ୍ତି ଦେବୀଙ୍କି ମାଇଲେ ।
ଭୂଷଣ୍ଡି ପଟ୍ଟିଶ ଶୂଳ ମୂଷଳ ଆବର
ପରଶ୍ୱଧ ପଟ୍ଟୀଶ ଯେ ଅସି ଗଦାବର ।
ତାହା ଦେଖି ଦେବୀ ହସ୍ତେ ଧରି ଶରାସନ
ବାଣେ କଲେ ଅସୁରଙ୍କ ବାହୁକୁ ଛେଦନ ।
ରଣଚଣ୍ଡୀ ବିକ୍ରମା ସେ ମହାଦେବୀ ବାଣେ
ବଡ଼ ବଡ଼ ଅସୁରଙ୍କୁ ବଧ କଲେ ରଣେ ।
କୌଶିକୀ ଖଟାଙ୍ଗ ଧରି ମାଇଲେ ଅସୁର
ପ୍ରଭାବ ହରିଲେ ବ୍ରାହ୍ମୀ ମାରି ମହାବୀର ।
ମାହେଶ୍ୱରୀ ଶୂଳମାରି ବିଦାରିଲା ଛାତି
ବଇଷ୍ଣବୀ ଚକ୍ରେ ତାଙ୍କୁ ଦଗଧ କରନ୍ତି ।
ତା ଦେଖି କୌମାରୀ କଲେ ଶକତି ପ୍ରହାର
ଚଣ୍ଡୀ ବଜ୍ର ମାରି କଲେ ଅସୁର ସଂହାର ।
ବାରାହୀ ଦଶନ ଅଗ୍ରେ କଲେ ଖଣ୍ଡ ଖଣ୍ଡ
ନାରସିଂହୀ ନଖଅଗ୍ରେ କଲେ ଲଣ୍ଡ ଭଣ୍ଡ ।
ଶିବଦୂତୀ ଅଟ୍ଟହାସ୍ୟେ ନିପାତିଲେ ଦୈତ୍ୟ
ରୁଦ୍ର ତ୍ରିଶୂଳରେ କଲେ ଅସୁର ନିପାତ ।
ବିନାୟକ ପରଶ୍ୱଧ ମାରି କୋପ ଭରେ
ଅସୁରଙ୍କୁ ପଠାଇଲେ ଶମନ ମନ୍ଦିରେ ।
ଅସୁରଙ୍କୁ ଦେବୀ ଗଣ କରନ୍ତି ଭକ୍ଷଣ
ଭୟେ ଦୈତ୍ୟେନେଲେ ରକ୍ତବୀର୍ଯ୍ୟରଶରଣ ।
କେ ଦାନବ ପଳାଉଛି ହୋଇଣ ଲଙ୍ଗଳା
କେହି ପଳାଉଛି କେଶ କରିଣ ମୁକୁଳା ।
କେଉଁ ଦାନବର ମନ ଭୟେ ଛନ୍ନ ଛନ୍ନ
ରକ୍ତବୀର୍ଯ୍ୟ ଅସୁରକୁ କରି ବିଲୋକନ ।
କ୍ରୋଧରେ ଅଧୀର ହୋଇ ବରଅସ୍ତ୍ର ଧରି
ଭୂତଗଣଙ୍କୁ ସେ ବାଣେ ଇତସ୍ତତ କରି ।

ପ୍ରଭାତ ଅନ୍ତରେ ମାତୃମଣ୍ଡଳେ ମିଳିଲା
ତାହାଙ୍କ ଉପରେ ତୀକ୍ଷ୍ଣବାଣ ବରଷିଲା ।
ରକ୍ତବୀର୍ଯ୍ୟ ଦାନବଙ୍କୁ ଦେଖି ଦେବୀଗଣ
ତାହାର ଉପରେ କଲେ ବାଣ ବରଷଣ ।
ତା ଶରୀରୁ ରକ୍ତବିନ୍ଦୁ ପୃଥିବୀରେ ଯେତେ
ପଡ଼େ ରକ୍ତବୀଜ ଜାତ ହୁଅନ୍ତିଟି ତେତେ ।
ତାହାର ସମାନ ବଳ ଆକୃତି ତାଙ୍କର
ବିକ୍ରମ ତାଦୃଶ ତଥା କରନ୍ତି ସମର ।
ରକ୍ତବୀଜ ଦାନବରେ ପୂର୍ଣ୍ଣ ହେଲା ମହୀ
ଦେଖି ଦେବୀଗଣ ମାନେ ମହାଭୟ ପାଇ ।
ଅମ୍ବିକାଙ୍କ ନିକଟରେ କଲେ ନିବେଦନ
ନୋହିବ ଏ ରକ୍ତବୀଜ ଦାନବ ନିଧନ ।
ଅମ୍ବିକା ବୋଇଲେ ଆଲୋ ଚଣ୍ଡୀ ତୁହିଯାଇ
ଦାନବର ରକ୍ତବିନ୍ଦୁ ଦିଅ ବେଗେ ପିଇ ।
ବଡ଼ବା ଅନଳ ସମ ବଦନ ବିସ୍ତାରି
ରକ୍ତଚାଟି ଦେ ତୁ ଜିହ୍ୱା ଲହ ଲହ କରି ।
ଅମ୍ବିକା ବଚନେ ଚଣ୍ଡି ବିସ୍ତାରିଲେ ତୁଣ୍ଡ
ଅତି ବିକଟାଳ ତୁଣ୍ଡ ଅତ୍ୟନ୍ତ ପ୍ରଚଣ୍ଡ ।
ତା ଦେଖି ଚାମୁଣ୍ଡାକଲା ବଦନ ବିସ୍ତାର
ଘୋଟିଲା ଆକାଶପୃଥ୍ୱୀ ତା ମୁଖ କୁହର ।
ଅମ୍ବିକା ସେ ରକ୍ତବୀଜ କେଶ ବଳେ ଧରି
ଓଟାରି ବିହ୍ୱଳକରି ମୁଖେ ଦେଲେ ଭରି ।
ଶୂଳମାରି ବିଦାରିଲେ ତାର ବକ୍ଷସ୍ଥଳ
ସେ କ୍ଷେତରୁ ଜାତ ହେଲା ଯେ ରକ୍ତ ସକଳ ।
ଅନ୍ୟ ଦୈତ୍ୟ ବଦନରେ ନିହୁଡ଼ିଲେ ତାହା
ରକ୍ତଶୂନ୍ୟ ହୋଇବାରୁ ସେ ଅସୁର ନାହା ।
ହୀନବଳ ହେଲା ରକ୍ତ ହୋଇବାରୁ କ୍ଷୟ
ରକ୍ତବୀଜ ହୀନବୀର୍ଯ୍ୟ ଜାଣି ଦେବୀ ଚୟ ।
ଯେତେ ରକ୍ତ ବୀଜ ଦୈତ୍ୟ ପୃଥିବୀରେ ଥିଲେ
ସମସ୍ତଙ୍କୁ ମାରି ତାଙ୍କ ରକ୍ତପାନ କଲେ ।
ଚାମୀକର ବିଭୂଷିତ ଚକ୍ରକରେ ଧରି
ରକ୍ତବୀଜକୁ ସେ ଦେବୀ ଶତଖଣ୍ଡ କରି ।
ଆନନ୍ଦରେ ନୃତ୍ୟକଲେ ଗଣଙ୍କ ସହିତ
ଦାନବଙ୍କ ଆର୍ତ୍ତନାଦେ ପୂରିଲା ଜଗତ ।
ହାହାକାର ଶବଦରେ ପୂର୍ଣ୍ଣ ହେଲା ମହୀ
କେ ବୋଲଇ କେଣେ ଗଲ ମୋତେ ଛାଡ଼ିଭାଇ ।
କେବୋଲେ ଭୋତାତଆସବେଗେପଳାଇବା
କେ ବୋଲଇ ଭାଇ ଏଥେ କ୍ଷଣେ ନ ରହିବା ।
ମୃଡ଼ାନୀ ଅସୁର ବଳ କରନ୍ତି ନିପାତ
ପୃଥିବୀରେ କେଶପାଶ ହୁଏ ବିଲୁଳିତ ।
ଆବରଣ ଆଭରଣ ଦେହରୁ ଯିବାରୁ
ପଡ଼ନ୍ତି ଉଲଗ୍ନ ହୋଇ ଯଥା ଛିନ୍ନ ଦାରୁ ।
ଦେଖି ଡରେ ପଳାଇଲେ ଅପର ଅସୁରେ
ଭୟେ ଧରି ନ ପାରନ୍ତି ଆୟୁଧକୁ କରେ ।
ଛିଡ଼ି ଇତସ୍ତତ ହୋଇ ପଡ଼ଇ ଭୂଷଣ
ସୈନ୍ୟଙ୍କର ଏ ଦୁର୍ଦ୍ଦଶା କରି ବିଲୋକନ ।
ଦାନବେନ୍ଦ୍ର ନିଶୁମ୍ଭ ଯେ କ୍ରୋଧରେ ଅଧୀର
ମୃଡ଼ାନୀଙ୍କ ଆଗେ ନେଇ କଲା ରଥବର ।
ପ୍ରଦୀପ୍ତ ଖଡ଼ଗ ଚର୍ମ ଧନୁ ଅଛି କରେ
ଦେବୀଙ୍କ ସୁନ୍ଦର ରୂପଦେଖି କାମଜ୍ୱରେ ।
ପୀଡ଼ା ପାଇ ଚିତ୍ରଲେଖା ପରାୟ ଚଳିଲା
ହସ୍ତପଦ ଆଦି ତାର କିଛି ନରହିଲା ।
ତାହାର ଏମନ୍ତ କର୍ମ ଦେଖି ଦେବୀ ହସି
ବୋଇଲେ ତୁ ଯେଉଁ ବୀର୍ଯ୍ୟେ ସ୍ୱର୍ଗପୁରନାଶି ।
ଜିଣିଲୁ ଅମର ଗଣ ଆବର ତୁ ମୋତେ
ପ୍ରାର୍ଥନା କରୁଛ ଭାର୍ଯ୍ୟା ହେବାର ନିମନ୍ତେ ।
ସେହିବଳ ବୀର୍ଯ୍ୟ ତୋରଗଲା ଏବେକେଣେ
ଚିତ୍ରରେଖା ପ୍ରାୟ କିମ୍ପା ରହୁ ଆସି ରଣେ ।
କଉଶିକୀ କଥା ଶୁଣି ନିଶୁମ୍ଭ ଅସୁର
ବୋଲେ ଭୀରୁ ସୁକୋମଳ ତୋର କଳେବର ।
ଶତେଖଣ୍ଡ ହେବ ପାଇ ମୋର ବାଣାଘାତ
ଜଳରାଶି ସଂସର୍ଗରେ ଯଥା ଆମ ପାତ୍ର ।
ଏହା ଭାଳି ନ ମାରଇ ତୋତେ ଗୋସୁନ୍ଦରୀ
ଆୟତ୍ତ ଲୋଚନେ ମୋତେ ଭଜ କୃପାକରି ।
ବାସବ ମୋ ବଜ୍ରାଘାତ ନ ପାରଇ ସହି
ଯୁଦ୍ଧ ମତି ତେଜି ମୋର ଭାର୍ଯ୍ୟା ହୁଅ ତୁହି ।
ନିଶୁମ୍ଭ ମୁଖରୁ ଏହା ଶୁଣି ଯୋଗେଶ୍ୱରୀ
କହିଲେ ଗମ୍ଭୀର ଭାବେ ଉଚ୍ଚ ହାସ୍ୟ କରି ।
ଆହେ ବୀର ଯୁଦ୍ଧେମୋତେ ଯେ ପାରିବ ଜିଣି
ସେହି ମୋର ସ୍ୱାମୀ ମୁହିଁ ତାହାର ଘରଣୀ ।
ତୁ ଯେବେ ପ୍ରାର୍ଥନା କରୁ ଭାର୍ଯ୍ୟାହେବା ପାଇଁ
ତେବେ ଯୁଦ୍ଧେ ଜୟ ମୋତେ କର ଦୈତ୍ୟ ସାଇଁ ।

ମୃଡ଼ାନୀବଚନେ ଖଡ଼୍‌ଗ ବୁଲାଇ ଅସୁର
ମାରନ୍ତେ ତା ଜାଣି ଦେବୀ ଧରି ଧନୁଶର ।
ମୟୂର ପଙ୍ଖାରେ ଯେଉଁ ଶର ବିଭୂଷିତ
ତେଣେ କଲେ ଖଡ଼୍‌ଗ ଚର୍ମ ସହିତ ନିହତ ।
ତା ଦେଖି ଆଶ୍ଚର୍ଯ୍ୟ ହୋଇ ନିଶୁମ୍ଭ ଅସୁର
ବେଗେ ତୋଳି ଧଇଲା ସେ କରେ ଗଦାବର ।
ଗଦା ଧରି ଗତି କଲା ବାୟୁର ସମାନ
ଧାଇଁ ଆସନ୍ତେ ସେ କଉଶିକୀ ସନ୍ନିଧାନ ।
ଏ ସମୟେ ଦେବୀ କଲେ କ୍ଷୁରପ୍ର ପ୍ରହାର
ଗଦା ସହିତରେ ଛେଦି ତାର ବେନି କର ।
ଶିର କାଟି ପକାଇଲେ ପଡ଼ିଲା ଦନୁଜ
କିଳିକିଳା ଧ୍ୱନି କଲେ ମାତୃକା ସମାଜ ।
ଇନ୍ଦ୍ର ଆଦି ଦେବଗଣ ରହି ଗଗନରେ
ଅମ୍ବିକାର ଜୟ ହେଉ ବୋଇଲେ ଉଚ୍ଚରେ ।
ଚଉଦିଗେ ତୂରୀବାଦ୍ୟ କଲେ ଭୂତଗଣ
ବେଗେ କଲେ ଦେବୀ ଶିରେ ପୁଷ୍ପବରଷଣ ।
ନିଶୁମ୍ଭ ମରିବା ଦେଖି ଶୁମ୍ଭ କ୍ରୋଧଭରେ
ଆରୋହିଲା ମହାଗଜ ପ୍ରାସ ଧରି କରେ ।
ଗଜାରୋହୀ ଶୁମ୍ଭକୁ ଯେ ଦେଖି କାତ୍ୟାୟନୀ ।
ଚାରିଗୋଟି ଅର୍ଦ୍ଧଚନ୍ଦ୍ରାକାର ବାଣ ଘେନି ।
କ୍ଷୁରପ୍ର ଯୁଗଳ ପୁଣି ତା ସଙ୍ଗେ ଧରିଲେ
ଏକାବେଳେ ହସ୍ତୀ ପାଦ ମାନଙ୍କୁ କାଟିଲେ ।
କ୍ଷୁରପ୍ର ମାଇଲେ ହସି ହସି କୁମ୍ଭସ୍ଥଳେ
ଶକ୍ର ବଜ୍ରାଘାତେ ଯଥା ଗିରିରାଜା ଟଳେ ।
ପଡ଼ନ୍ତେ ସେ ମହାଗଜ ଶୁମ୍ଭ ଡେଇଁଯାନ୍ତେ
କୁଣ୍ଡଳ ମଣ୍ଡିତ ମୁଣ୍ଡ ଶିବା କାଟିଦ୍ୟନ୍ତେ ।
ଗଜ ସହିତରେ ଦୈତ୍ୟ ପଡ଼ିଲା ଭୂତଳେ
ଦୈତ୍ୟ ହତ ହେବା ଶୁଣି ଦଶ ଦିଗପାଳେ
ଦେବଗଣ ସହିତରେ ବିନ୍ଧ୍ୟ ଗିରିବରେ
ଶ୍ରୁତି- ସୁଖକର ସ୍ତୁତି କଲେ ବିନୟରେ ।
ମାଗୋ ଭଗବତି ତୁହି ପାପବିନାଶିନୀ
ତୁମ୍ଭ ପାଦେ ନମସ୍କାର କରୁ ସୁର ମୁନି ।
ତୁହି ମା ତ୍ରିଦଶଗଣ ରିପୁ କଷ୍ଟକ୍ଷୟ
ତୋର ପାଦେ ନମସ୍କାର କରୁ ସୁରଚୟ ।
ଶତକ୍ରତୁ ଇନ୍ଦ୍ର ତୋର ପାଦ ପୂଜା କରେ
ନମସ୍କାର କରୁ ଆମ୍ଭେ ତୋ ପାଦପଦ୍ମରେ ।
ତୁ ମାତ ମହିଷାସୁର ବିନାଶ କାରିଣୀ
ତୋ ଚରଣେ ନମସ୍କାର କରୁଁ ସୁରଶ୍ରେଣୀ ।
ପଢ଼ନ୍ତି ତୋ ସ୍ତବ ହରି ହର ଦିବାକର
ତୋର ପାଦପଦ୍ମେ ଆମ୍ଭେ କରୁ ନମସ୍କାର ।
ଅଷ୍ଟାଦଶଭୁଜା ମାଗୋ ନମସ୍କାର ତୋତେ
ଶୁମ୍ଭ ନିଶୁମ୍ଭ ନାଶିନୀନମସ୍ତେ ନମସ୍ତେ ।
ଆରତ ନାଶିନୀ ମାଗୋ ତ୍ରିଶୂଳ ଧାରିଣୀ
ନମୋ ଚକ୍ରଧାରିଣୀ ମା ନମୋ ନାରାୟଣୀ ।
ତୁହି ମା ସର୍ବଦା ଧରାଧାରିଣୀ ବାରାହୀ
ତୋର ପାଦେ ନମସ୍କାର ତୁ ଗୋନାରସିଂହୀ ।
ଗଜଧ୍ୱଜ ଶାଳିନୀ ମା ତୁ ବଜ୍ରଧାରିଣୀ
ତୋତେ ନମସ୍କାର ମାଗୋ ମୟୂର ବାହିନୀ ।
ନମସ୍ତେ ନମସ୍ତେ ହଂସବାହିନୀ ବ୍ରାହ୍ମଣୀ
ନମୋ ମାଳା ବିକଟା ଗୋନମୋସୁକେଶିନୀ ।
ନମସ୍ତେ ରାସଭ ପୃଷ୍ଠବାହିନୀ ଗୋ ମାତ
ନମୋ ନମୋ ଜଗନ୍ମୟି ନମୋଲୋକମାତ ।
ନମୋ ବିଶ୍ୱେଶ୍ୱରୀ ବିଶ୍ୱପାଳିନୀ ନମସ୍ତେ
ସର୍ବମୟି ତ୍ରିଲୋଚନି ନମସ୍କାର ତୋତେ ।
ନମୋ ଦେବ ଦ୍ୱିଜଗଣ ଶତ୍ରୁ ବିନାଶିନୀ
ନମସ୍ତେ ବରଦେ ହୁଅ ପ୍ରସନ୍ନ ବ୍ରାହ୍ମଣୀ ।
ତୁ ମୃଡ଼ାନୀ ଶକ୍ତି ହସ୍ତା ତୁହି ମା କୁମାରୀ
ଶିଖିବର ବାହନ ତୁ ଆରୋହଣ କରି ।
ତୁ ବାରାହୀ ତୁ ବୈଷ୍ଣବୀ ତୋତେ ନମସ୍କାର
ତୁହି ନାରସିଂହୀ ନାଦ କରୁ ଘର ଘର ।
ତୁ ବଜ୍ରଧାରିଣୀ ଐନ୍ଦ୍ରୀ ଚର୍ମଚଣ୍ଡା ମାର୍ରି
ତୁ ଶବବାହିନୀ ଯୋଗସିଦ୍ଧା ଭୟଙ୍କରୀ ।
ଯୋଗିନୀ ତୁ ତ୍ରିନେତ୍ରା ତୁ ଭଗବତୀ ତୁହି
ପ୍ରତିଦିନ ସାଷ୍ଟାଙ୍ଗରେ ପ୍ରଣମଇ ଯେହି ।
ସର୍ବଦା ତୋ ପାଦ ଆଶ୍ରା କରି ସ୍ତୁତି କରେ
ଅଶୁଭ ନ ଭୋଗି ସୁଖେ ରହଇସଂସାରେ ।
ସୁପ୍ରସନ୍ନେ କାତ୍ୟାୟିନୀ ସହାସ୍ୟ ବଦନେ
କହିଲେ ହେ ସୁରସିଦ୍ଧ ମହାଋଷିମାନେ ।
ସୁରଶତ୍ରୁ ଜୟ କଲି ତୁମ୍ଭ ପରସାଦେ
ଯେଉଁ ଜନ ଦୃଢ଼େ ଚିତ୍ତ ରଖି ମୋର ପାଦେ ।
ଭକତିରେ ଏହି ସ୍ତବ କୀର୍ତ୍ତନ କରିବ
ତାହାର ଦୁଃସ୍ୱପ୍ନ ନାଶ ନିଶ୍ଚୟ ହୋଇବ ।

କହିଲେ ଅମର ଗଣ ଯେହେତୁ ଆପଣ
ଗୋ ବ୍ରାହ୍ମଣ ଦେବ ଶାନ୍ତି ହିତପରାୟଣ ।
ଦେବତାଙ୍କୁ ବର ଯେବେ ଦେବୁ ସୁପ୍ରସନ୍ନେ
ହୁତାଶନ ତୁଲ୍ୟ ଦେହ ଧରି ସୁଲୋଚନେ ।
ଦେବଶତ୍ରୁ ମାନଙ୍କୁ ତୁ କରିବୁ ସଂହାର
ଦେବୀ କହିଲେ ମୁ ନନ୍ଦ ଘରେ ପୁନର୍ବାର ।
ଯଶୋଦା ଦେବୀର ଗର୍ଭ ମଧ୍ୟୁ ଅବତରି
ସୁରଶତ୍ରୁ ସଂହାରିବି ମୁଁ ନିର୍ମୂଳ କରି ।
ପୁଣି ଏହି ରୂପ ଧରି ମାରିବି ଲବ୍ଣ
ଦଶନ ପ୍ରହାରି ଶୁମ୍ଭ ନିଶୁମ୍ଭକୁ ପୁଣ ।
ଲୋକଙ୍କୁ ମୁ ନିରଶ ନ ଦେଖି ତିଷ୍ୟ ଯୁଗେ
ନାରୀରୂପେ ଜାତ ହେବି ଇନ୍ଦ୍ର ଘରେ ରାଗେ ।
ଶାକ ଦେଇ ପ୍ରାଣୀଙ୍କ ମୁଁ କରିବି ପୋଷଣ
ଋଷିଙ୍କି ରଖିବି ପୁଣି ଆହେ ଦେବଗଣ ।
ଦୁର୍ବୃତ୍ତ ଦୈତ୍ୟଙ୍କୁ ନାଶି ରଖିବି ଅମର
ଜାତ ହେବ ଅରୁଣାକ୍ଷ ନାମେ ମହାସୁର ।
ଜଗତର ହିତେ ମୁହିଁ ପୁଣି ଅବତରି
ମହାଳି ରୂପରେ ସେହି ଅସୁରକୁ ମାରି ।
ପୁନରପି ସ୍ୱର୍ଗପୁରେ କରିବି ଗମନ
ପୁଲସ୍ତ୍ୟ କହିଲେ ଶୁଣ ଆହେ ତପୋଧନ ।
କାତ୍ୟାୟନୀ ଦେବତାଙ୍କୁ କହି ଏହିପରି
ଦ୍ୱିଜବରମାନଙ୍କୁ ଯେ ନମସ୍କାରକରି ।
ଭୂତଙ୍କୁ ବିଦାୟ ଦେଇ ସିଦ୍ଧଗଣ ଘେନି
ଉଠିଲେ ଗଗନମାର୍ଗେ ଦେବୀ କାତ୍ୟାୟନୀ ।
ପରମ ପବିତ୍ର ଏହି ବାମନ ପୁରାଣ
ଶୁଣିଲା ଲୋକର କରେ ମଙ୍ଗଳ ପ୍ରଦାନ ।
ପୂର୍ବେ ପୁଣି କହିଛନ୍ତି ସ୍ୱୟଂ ଭଗବାନ
ଶ୍ରଦ୍ଧାରେ ଶୁଣିବ ନରେ ବସି ଏ ଆଖ୍ୟାନ ।

=+=

## କାର୍ତ୍ତିକେୟ ଅଭିଷେକ

କହିଲେ ନାରଦ ମୁନି କହ ହେ ସୁବ୍ରତ
କେଉଁପରି ଷଡ଼ାନନ ସଦାଶିବ ସୁତ ।
ଭେଦିଲେ ମହିଷ କ୍ରୌଞ୍ଚ ପର୍ବତ ଭୋ ମୁନି
ବିସ୍ତାରି କହନ୍ତୁ ମୋର ଆଗେ ବ୍ରହ୍ମଜ୍ଞାନୀ ।
କହିଲେ ପୁଲସ୍ତ୍ୟ ଋଷି ଶୁଣ ହେ ନାରଦ
କହିବି ମୁଁ ପୁରାତନ ସ୍କନ୍ଦଙ୍କ ସମ୍ବାଦ ।
ପବିତ୍ରକାରିଣୀ ଯଶୋବର୍ଦ୍ଧିନୀ ସେ କଥା
ଜନମିଲେ ଯେଉଁପରି ସେହି ଷଡ଼ ମଥା ।
ପିନାକୀ ସ୍ଖଳିତ ତେଜ ଅଗ୍ନି କଲେ ପାନ
ଦିନୁ ଦିନୁ ହତତେଜା ହେଲେ ହୁତାଶନ ।
ଦେବଙ୍କ ପାଖକୁ ଯାଇ ସେ ଅମର ଦ୍ୟୁତି
ବୋଇଲେ ମୁଁ ହତଚେତା ହେଲି ଶଚିପତି ।
ସେ ବୋଇଲେ ବ୍ରହ୍ମଲୋକେ ଚଳ ହୁତାଶନ
କୁଟିଳାକୁ ଭେଟିଲେ ସେ କରନ୍ତେ ଗମନ ।
ବୋଇଲେ କୁଟିଳେ ହରତେଜ ସୁଦୁର୍ଦ୍ଧର
ଦଗ୍‌ଧ କରିପାରେ ଏହି ସକଳ ସଂସାର ।
ମୁଁ ଧରି ନ ପାରେ ତୁହି ପ୍ରତିଗ୍ରହ କର
ତ୍ରିଭୁବନ ପୁଜ୍ୟ ପୁତ୍ର ହୋଇବ ତୋହର ।
କୁଟିଳା କହିଲା ଦିଅ ମୋ ଜଳେ ପକାଇ
ଅଗ୍ନି ଜଳେ ପକାଇଲେ ସେ ତେଜକୁ ନେଇ ।
କୁଟିଳା ଦେବୀ ତା କଲେ ଧାରଣ ପୋଷଣ
ତହୁଁ ଏଣେ ତେଣେ କଲେ ଅନଳ ଭ୍ରମଣ ।
ଅଗ୍ନି ଧଇଲେ ଯେ ପଞ୍ଚ ସହସ୍ର ବରଷ
ତେଣେ ହୋଇଥିଲା ତାର ଅସ୍ଥି ମଜ୍ଜାମାଂସ ।
ରକ୍ତ ମେଦ ଆଦି ନିଶ ଚକ୍ଷୁ କେଶ ରୋମ
ହିରଣ୍ମୟ ହୋଇବାରୁ ଲୋକେ ତାର ନାମ ।
ଦେଲେ ଯେ ହିରଣ୍ୟରେତା ଆହେ ମୁନିବର
କୁଟିଳା ଧଇଲା ପଞ୍ଚ ସହସ୍ର ବତ୍ସର ।
କଲା ସେ ଜ୍ୱଳନୋପମ ଗର୍ଭକୁ ଧାରଣ
ଏକଦିନେ ଗଲା ସେହି ବ୍ରହ୍ମା ସନ୍ନିଧାନ ।
କୁଟିଳାକୁ ଗର୍ଭବତୀ ଦେଖି ପଦ୍ମଯୋନି
ବୋଇଲା କେ କଲା ଗର୍ଭ କହଲୋ ମାନିନି ।
କୁଟିଳା କହିଲା ଶିବ ତେଜ ହୁତାଶନ
ଦେବଙ୍କ ନିମନ୍ତେ ପୂର୍ବେ କରିଥିଲେ ପାନ ।
ଅଶକ୍ତି ହୋଇ ତା ଫିଙ୍ଗିଦେଲେ ମୋର ଜଳେ
ଗର୍ଭରେ ଧାରଣ କରି ମୁହିଁ ପ୍ରତିପାଳେ ।
ଆହେ ପିତାମହ ପଞ୍ଚସହସ୍ର ବତ୍ସର
ଧଇଲି ମୁଁ ଗର୍ଭକାଳ ଉପସ୍ଥିତ ମୋର ।
କଦାପି ଗର୍ଭରୁ ମୋର ନ ପଡ଼ଇ ଖସି
ଏହା ଶୁଣି ପିତାମହ ବୋଇଲେ ସୁକେଶି ।
ଉଦୟ ପର୍ବତେ ଏବେ କର ତୁ ଗମନ
ତହିଁ ଅଛି ଭୟଙ୍କର ଏକ ଶରବନ ।

ତାହାର ବିସ୍ତାର ଶତ ଯୋଜନ ଅଟଇ
ସେ ସ୍ଥାନେ ଏହାକୁ ନେଇ ଦିଅ ତୁ ପକାଇ ।
ବାଳକ ହେବ ଏ ଦଶସହସ୍ର ବର୍ଷାନ୍ତେ
ରୂପବତୀ ସେ କୁଟିଳା ଉଦୟ ପର୍ବତେ ।
ମୁଖବାଟେ ଗର୍ଭତ୍ୟାଗ କଲା ଶରବଣେ
ମିଳିଲା ବ୍ରହ୍ମାର ପାଶେ ଆସି ତତକ୍ଷଣେ ।
ମନ୍ତ୍ରବଳେ ଜଳମୟୀ ହୋଇଲା କୁଟିଳା
ଶମ୍ଭୁତେଜେ ଶରବଣ ସ୍ୱର୍ଣ୍ଣମୟ ହେଲା ।
ତହିଁ ଥିବା ବୃକ୍ଷ ମୃଗ ପକ୍ଷୀ ସ୍ୱର୍ଣ୍ଣମୟ
ଦଶଶତ ବତ୍ସରାନ୍ତେ ହେଲା ସେ ତନୟ ।
ତରୁଣ ଅରୁଣ ସମ ଦ୍ୟୁତି ଅଟେ ତାର
କମଳଲୋଚନ ଶିଶୁ ଅତ୍ୟନ୍ତ ସୁନ୍ଦର ।
ସକଳ ଐଶ୍ୱର୍ଯ୍ୟ ଅଛି ସେ ବାଳକଠାରେ
ପଡ଼ିଛି ଉତ୍ତାନଶାୟୀ ହୋଇ ଭୂତଳରେ ।
ମୁଖରେ ଅଙ୍ଗୁଳି ଭରି ଅଛି ଶରବନେ
ଘନରାଜି ସ୍ୱନ ପ୍ରାୟ ସୁଗଭୀର ସ୍ୱନେ ।
ରୋଦନ କରଇ ଶିଶୁ ଏହି ଅବସରେ
ତେଜ ରୂପବତୀ ଷଡ଼କୃତ୍ତିକା ସେଠାରେ ।
ଭ୍ରମି ଆସୁଁ ଦେଖିଲେ ସେ ବାଳକକୁ ତହିଁ
କୃପାକରି ଷଡ଼ଜଣ ଦୁଗ୍ଧ ଦେବାପାଇଁ ।
କଳି ଲଗାଇଲେ ଆଗ ମୁହିଁ ଦେବୀ କ୍ଷୀର
ଏହା ଦେଖି ଷଡ଼ ମୁଖ ହେଲା ବାଳକର ।
ଷଡ଼ମାତା ଷଡ଼ ମୁଖେ କ୍ଷୀରଦେଲେ ସ୍ନେହେ
ବଢ଼ିଲା ବାଳକ ଗୋଟି ମନୋହର ଦେହେ ।
ତେଣୁ ସେ ପୁତ୍ରର ନାମ ହେଲା କାର୍ତ୍ତିକେୟ
ବଳବନ୍ତ ଅଗ୍ରଗଣ୍ୟ ହେଲା ସେ ତନୟ ।
ଏ ସମୟେ ପଦ୍ମଯୋନି କହିଲେ ଅଗ୍ନିକୁ
ଏବେ ଆଜି ଦେଖ ଯାଇଁ ତୋ ପୁତ୍ରଗୃହକୁ ।
ହୁତାଶନ ପଚାରିଲେ ବିଧାତାଙ୍କୁ ପୁଣି
ମୋର ପୁତ୍ରଗୃହ କିଏ ମୁହିଁ ତା ନ ଜାଣି ।
ପ୍ରୀତ ହୋଇ ବ୍ରହ୍ମା ତାଙ୍କୁ କହିଲେ ଏସନ
ପୂର୍ବେ ତୁମ୍ଭେ ଶମ୍ଭୁତେଜ କରିଥିଲ ପାନ ।
ତ୍ରିଲୋକ ଈଶ୍ୱର ଶିଶୁ ତହିଁରୁ ଯେ ଜାତ
ଶରବନେ ରହିଅଛି ଦେଖ ଯା ତୁରିତ ।
ପିତାମହ କଥା ଶୁଣି ଅଗ୍ନିଗଲେ ବେଗେ
ମେଘ ଆରୋହଣ କରି ଯାଉଁ ଯାଉଁ ଆଗେ ।
କୁଟିଳାକୁ ଦେଖିଲେ ସେ ପଚାରିଲା ତାଙ୍କୁ
ବେଗେ ଯାଉଅଛ କେଣେ କହ ତା ଆମ୍ଭଙ୍କୁ ।
ଅଗ୍ନି କହିଲେ ମୁଁ ପୁତ୍ର ଦେଖିବା ମାନସେ
ଶରବନେ ଯାଉଅଛି ବ୍ରହ୍ମାଙ୍କ ଆଦେଶେ ।
କୁଟିଳା କହିଲା ସେହି ତନୟ ମୋହର
ଅଗ୍ନି କହିଲେ ସେ ମୋର ନୁହଇ ତୋହର ।
ଦୁହେଁ କଳି କରନ୍ତେ ତା ଦେଖି ଜନାର୍ଦ୍ଦନ
ବୋଇଲେ କିମ୍ପାଇ କଳି କର ବେନିଜନ ।
ତାଙ୍କ ଆଗେ ପୂର୍ବକଥା କହିଲେ ସେ ଦୁଇ
ଜନାର୍ଦ୍ଦନ କହିଲେକ ତୁମ୍ଭେ ଏଥିପାଇଁ ।
ତ୍ରିପୁର ନିହନ୍ତା ମହାଦେବଙ୍କୁ ପଚାର
ସେ ଯାହା କହିବେ ସେହିପରି ଦୁହେଁ କର ।
ବାସୁଦେବ ବଚନରେ କୁଟିଳା ଅନଳ
କହିଲେ ଶିବଙ୍କ ଆଗେ ବୁଝାଇ ସକଳ ।
ରୁଦ୍ର ତାହା ଶୁଣି ହର୍ଷ ନିର୍ଭୟ ମାନସେ
ପୁଲକିତ କଳେବରେ ଗଲେ ଶିବା ପାଶେ ।
ବୋଇଲେ କି ସଉଭାଗ୍ୟ ଆମ୍ଭର ଗଉରୀ
କାହାର ସେ ପୁତ୍ରଗୋଟି କହ ଗୋ ବିଚାରି ।
ଅମ୍ବିକା ବୋଇଲେ ଚାଲ ସେ ସ୍ଥାନକୁ ଯିବ
ଏ କଥାର ମୀମାଂସା ସେ ଶିଶୁକୁ ପୁଛିବ ।
ସେ ଯାର ଆଶ୍ରୟ ନେବ ସେ ତାର କୁମର
ହେଉ ବୋଲି ଉଠିଲେକ ତହୁଁ ମହେଶ୍ୱର ।
କୁଟିଳା ଅମ୍ବିକା ବସି ସଙ୍ଗେ ସଙ୍ଗେ ଗଲେ
ପ୍ରବେଶିଣ ଶରବଣେ ଶିଶୁକୁ ଦେଖିଲେ ।
କୃତ୍ତିକାଗଣଙ୍କ କୋଳେ କରିଛି ଶୟନ
ଏହାଙ୍କର ଅଭିପ୍ରାୟ ଜାଣି ସେ ନନ୍ଦନ ।
ମନମଧ୍ୟେ ବିବେଚନା କରି ଯୋଗବଳେ
ଚତୁମୂର୍ତ୍ତି ଷଡ଼ମୁଖ ହେଲେ ସେହି କାଳେ ।
ଶଙ୍କର ଆଶ୍ରୟ ନେଲେ କୁମାର ରୂପରେ
ଗିରିଜା ଆଶ୍ରୟ ନେଲେ ବିଶାଖ ରୂପରେ ।
ଶାଖ ରୂପଧରି ନେଲେ କୁଟିଳା ଆଶ୍ରୟ
ଅଗ୍ନି ଆଶ୍ରା କଲେ ଧରି ରୂପ ନୈଗମେୟ ।
ସମସ୍ତେ ସନ୍ତୁଷ୍ଟ ହୋଇ ହେଲେ ଆନନ୍ଦିତ
ବୋଇଲେ କୃତ୍ତିକାଗଣ ଆହେ ଉମାକାନ୍ତ
ଏହି ଷଡ଼ମୁଖ ଗୋଟି ପୁତ୍ର କି ତୁମ୍ଭର
ତାହା ଶୁଣି ସନ୍ତୋଷରେ ବୋଇଲେ ଈଶ୍ୱର ।

କୃତ୍ତିକା ତନୟ ହେତୁ ନାମ କାର୍ତ୍ତିକେୟ
କୁମାର ନାମରେ ହେଲା କୁଟିଳା ତନୟ ।
ସ୍କନ୍ଧ ନାମେ ଏ ବାଳକ ଗଉରୀ କୁମର
ଗୁହନାମେ ଏହି ଶିଶୁତନୟ ଆମ୍ଭର ।
ମହାସେନ ନାମେ ହେଉ ହୁତାଶନ ସୁତ
ଶରବଣ ପୁତ୍ର ହେଉ ନାମ ସାରସ୍ୱତ ।
ହୋଇବ ଏ ମହାଯୋଗୀ ଲଭିବ ସୁଖ୍ୟାତି
ଷଡ଼ମୁଖ ମହାବାହୁ ହେବ ସେନାପତି ।
ସୁମରିଲେ ବ୍ରହ୍ମା ଆଦି ଦେବଙ୍କୁ ଶଙ୍କର
ତୁରିତେ ମିଳିଲେ ଆସି ସକଳ ଅମର ।
ଉପସ୍ଥିତ ହେବା ମାତ୍ରେ ଅମର ବିହାରୀ
ଶିବପାର୍ବତୀଙ୍କ ପାଦେ ନମସ୍କାର କରି ।
କୁଟିଳା କୃତ୍ତିକା ଅଗ୍ନି ଚାହିଁ ପ୍ରୀତଭରେ
ସୂର୍ଯ୍ୟସମ ବାଳକକୁ ଦେଖିଲେ ସ୍ନେହରେ ।
ଅତି ଉଗ୍ର ଛଅଗୋଟି ବଦନ ତାହାର
ଚାହିଁ ନ ହୁଅଇ ତେଜୋବନ୍ତ ସେ କୁମର ।
କହିଲେକ ସୁରଗଣ ହୋଇ କଉତୁକ
ଦେବକାର୍ଯ୍ୟ ସମ୍ପାଦିଲ ତୁମ୍ଭେ ହୁତଭୁକ ।
ଏବେ ଉଠ ଆଜି ଆମ୍ଭେ କୁରୁକ୍ଷେତ୍ରେ ଯିବା
ସ୍ଥାଣୁ ଖର ଅଭିଷେକ ସେ ଜଳେ ଧରିବା ।
ଆମ୍ଭ ସୈନ୍ୟ ସେନାପତି ହେଉ ଏ କୁମାର
କରୁ ଏ ମହିଷାସୁର ତାରକ ସଂହାର ।
ମହାଦେବ ଏ କଥାରେ ହୋଇଲେ ସମ୍ମତ
ତହୁଁ ଗଲେ ସୁରଗଣ କୁମାର ସହିତ ।
କୁରୁକ୍ଷେତ୍ରେ ରୁଦ୍ର ଇନ୍ଦ୍ର ବ୍ରହ୍ମା ଜନାର୍ଦ୍ଦନ
ମୁନିଗଣ ମିଳି ହେଲେ କାର୍ଯ୍ୟେ ଯତ୍ନବାନ ।
ଶିବ ବିଷ୍ଣୁ ଆଦି ଦେବେ ସମୁଦ୍ର ସଲିଳ
ମହାଫଳ ଦାୟକ ଯେ ସରସ୍ୱତୀ ଜଳ ।
ମନ୍ତ୍ରପଢ଼ି କାର୍ତ୍ତିକେୟ ଶିରେ ଦେଲେ ଢାଳି
ସେନାନୀ ହୋଇଲେ ଯହୁଁ ସ୍କନ୍ଦ ମହାବଳୀ ।
ଗନ୍ଧର୍ବ ଆବର ଋଷିଗଣ କଲେ ଗାନ
ନୃତ୍ୟ ଆରମ୍ଭିଲେ ତହିଁ ଅପସରାଗଣେ ।
ଗିରିରାଜସୁତା ଦେଖି ପୁତ୍ର ଅଭିଷେକ
କୋଳେ ଧରି ବାରମ୍ବାର ଚୁମ୍ବିଲେ ମସ୍ତକ ।
ଶୋଭା ପାଇଲେ ସେ ଇନ୍ଦ୍ର ଅଦିତିର ପରି
ତାହାଦେଖି ଆନନ୍ଦିତ ହେଲେ ତ୍ରିପୁରାରି ।

ପାବକ କୃତ୍ତିକାଗଣ କୁଟିଳା ଏମାନେ
ଭାସିଲେ ଆନନ୍ଦ ଜଳେ ପୁତ୍ର ଦରଶନେ ।
ଇନ୍ଦ୍ରତୁଲ୍ୟ ପରାକ୍ରାନ୍ତ ଚାରୋଟି ପ୍ରମଥ
ଦେବସେନା ନାୟକଙ୍କୁ ଦେଲେ ଭୂତନାଥ ।
ତାଙ୍କନାମ ଲୋହିତାକ୍ଷ ବୀରଘଣ୍ଟାକର୍ଣ୍ଣ
ବଳିଷ୍ଠ କୁମୁଦମାଳି ଦକ୍ଷ ନନ୍ଦିଷେଣ ।
ହେ ନାରଦ ହରଦତ୍ତଗଣ ଚତୁଷ୍ଟୟ
ଦେଖି ବ୍ରହ୍ମାବିଷ୍ଣୁ ଆଦି ଅମର ନିଚୟ ।
ସ୍ୱ ସ୍ୱ ଗଣ ଦାନ କଲେ ତାଙ୍କ ନାମ ଶୁଣ
ବ୍ରହ୍ମାଙ୍କର ଗଣ ନାମ ସ୍ଥାଣୁ ଅଟେ ଜାଣ ।
ବିଷ୍ଣୁ ଦେଲେ ତିନିଗୋଟି ଶୁଣ ତାଙ୍କ ନାମ
ପରାକ୍ରମ ବିକ୍ରମ ଯେ ଆବର ସଂକ୍ରମ ।
ଉତ୍‌କ୍ରେଶ ପଙ୍କଜ ନାମେ ଇନ୍ଦ୍ର ଦେଲେ ଦୁଇ
ସୂର୍ଯ୍ୟଦଣ୍ଡ କପିଞ୍ଜଳ ନାମେ ଗଣ ଦେଇ ।
ମଣିବସୁମଣି ଦୁଇ ଦେଲେ ନିଶାକର
ବସ୍ତ ନନ୍ଦିଦୁଇ ଦେଲେ ଅଶ୍ୱିନୀକୁମାର ।
ଜ୍ୟୋତି ଜ୍ୱଳଜିହ୍ୱ ଦୁଇ ଦେଲେ ହୁତାଶନ
ମୁକୁନ୍ଦ କୁସୁମ କୁନ୍ଦ ଏହି ତିନି ଗଣ ।
କୁମାରସେବାରେ କଲେ ବିଧାତା ନିୟୋଗ
ତ୍ୱଷ୍ଟା କାର୍ତ୍ତିକେୟଠାରେ କରି ଅନୁରାଗ ।
ଚକ୍ର ଅନୁଚକ୍ର ନାମେ ଦେଲେ ଦୁଇଗଣ
ନିସ୍ଥିର ସ୍ୱସ୍ଥିର ନାମେ ବେଧା କଲେଦାନ ।
ପୂଷାଦେଲେ ପାଣିତ୍ୟଜ କାଳିକ ଏ ଦୁଇ
ମହାବଳ ପରାକ୍ରମୀଗଣ ଗଣ ସେହି ।
ସ୍ୱର୍ଣ୍ଣମାଳେ ଘନନାମେ ଗଣ ଯେ ପ୍ରଧାନ
ଗୁହଙ୍କୁ ପ୍ରଦାନ କଲେ ଗିରି ହିମବାନ ।
ଅତିକୃଷ୍ଣ ପାର୍ଷଦ ଏ ଦୁଇ ଗଣ ଆଣି
ଗୁହଙ୍କୁ ପ୍ରଦାନ କଲେ ବିନ୍ଧ୍ୟ ଶୈଳମଣି ।
ଅତିବର୍ଚ୍ଚା ସୁବର୍ଚ୍ଚାକୁ ଦେଲେକ ବରୁଣ
ଚାରିଗୋଟି ଗଣ ଆଣି ଦେଲେ ନାଗଗଣ ।
ସଂଗ୍ରହ ବିଗ୍ରହ ପୁଣି ଜୟ ପରାଜୟ
ଅମ୍ବିକା ପ୍ରଦାନ କଲେ ତାଙ୍କୁ ଗଣତ୍ରୟ ।
ଶଙ୍କୁକର୍ଣ୍ଣ ପୁଷ୍ପବନ୍ତ ଉନ୍ମାଦ ନାମରେ
ଘସ ଅତିଘସ ନାମେ ବେନି ଅନୁଚରେ ।
କୁମାରଙ୍କୁ ସମୀରଣ କଲେ ସମର୍ପଣ
ଅଂଶୁ ମାନକଲେ ପୁଣି ଗଣ ପଞ୍ଚଦାନ ।

ପରିଘ ଘଟକ ଭୀମ ବାହ ଏହି ନାମ
ତାହାଙ୍କ ମଧରେ ଅଭିଦହନ ପଞ୍ଚମ ।
ଯମ ଆଣିଦେଲେ ତାଙ୍କୁ ଛଅ ଗୋଟି ଗଣ
ତାହାଙ୍କର ନାମ ଏବେ କହୁଅଛି ଶୁଣ ।
ପ୍ରଥମ ଉନ୍ମଥ ମହାମୁଖ କାଳସେନ
ତାଳପତ୍ର କାଳଜଙ୍ଘ ନାମେ ଏ ପ୍ରଧାନ ।
ଧାତା ଦେଲେ ଗଣପଞ୍ଚ ତାଙ୍କ ନାମ ଶୁଣ
ସୁପ୍ରଭ ଯେ ଶୁଭ କର୍ମା ମିତ୍ର ତାଙ୍କ ଜାଣ ।
ସୁବ୍ରତ ଯେ ସତ୍ୟସନ୍ଧ ଏ ଦୁଇ ଆବର
ପଞ୍ଚଦଶଗଣ ଦେଲେ ଯକ୍ଷ ଯକ୍ଷେଶ୍ୱର ।
ଅନନ୍ତ ଯେ ଶଙ୍କୁପୀତ ନିକୁମ୍ଭ କୁନଟୀ
ଅମୁଜ ଏକାକ୍ଷ ଚକ୍ଷୁ କୁମୁଦ କିରୀଟୀ ।
ପ୍ରିୟକ କଳସୋଦର ଅଚ୍ୟୁତ ପ୍ରହା...
ସୂଚିବକ୍ତ୍ର କୋକନନ୍ଦ ଏହି ପଞ୍ଚଦଶ ।
କାଳିନ୍ଦୀ ଯେ ଦେଲେ କଳକନ୍ଦ ନାମେ ଗଣ
ରଣୋତ୍କଟକୁ ନର୍ମଦା କଲେ ସମର୍ପଣ ।
ସିଦ୍ଧପାତ୍ର ନାମେ ଗଣ ଦେଲେ ଗୋଦାବରୀ
ଅଦ୍ରିକମ୍ପକୁ ଯେ ଦେଲେ ତମ...ଧା ବିଚାରି ।
ସହସ୍ର ବାହୁକୁ କଲେ ସ...ତା ସମର୍ପଣ
ସ୍ନିତୋଦରକୁ ବଞ୍ଜୁଳା ...ଲେକ ପ୍ରଦାନ ।
ଗନ୍ଧ ନାମେ ଗଣ ଆଣି ଦେଲେ ମନ୍ଦାକିନୀ
ପ୍ରିୟଙ୍କର ନାମେ ଦେଲେ ବିପାଶା ତାଜାଣି ।
ଐରାବତ ହେଲେ ଚତୁର୍ଦ୍ଦଂଷ୍ଟ୍ରକୁ ତାଙ୍କର
ବିତସ୍ତା ଷୋଡ଼ଶ ନାମେ ଦେଲେ ଗଣସାର ।
କୌଶିକୀମାଜ୍ରି ନାମେ ଗଣ ଆଣିଦେଲେ
ଗଉତମୀ କ୍ରଥ କ୍ରୌଞ୍ଚ ଦୁଇ ସମର୍ପିଲେ ।
ବାହୁଦା ଦେଲେକ ଶତଶୀର୍ଷ ନାମେ ଗଣ
ଗୋବିନ୍ଦ ନନ୍ଦିକ ଦୁଇ ବାହା ଦେଲେ ଜାଣ
ଭୀମରଥୀ ଦେଲେ ଭୀମ ନାମେ ଗଣ ଆଣି
ବେଗାରିଗଣକୁ ଦେଲେ ସରଯୂତା ଜାଣି ।
କାଳୀ ଦେଲେ ଅଷ୍ଟବାହୁ ନାମେ ତାଙ୍କ ଗଣ
ଗଣ୍ଡକୀ ଯେ ସୁବାହୁକୁ କଲେ ସମର୍ପଣ ।
ମହାନଦୀ ଦେଲେ ଚିତ୍ରଦେବଙ୍କୁ ତାଙ୍କର
ଶିପ୍ରା ଦେଲେ ଚିତ୍ରରଥ ନାମେ ଗଣ ସାର ।
କୁହୁ ଦେଲେ କୁବଳୟ ନାମେ ଏକ ଗଣ
ମଧୁଦକକା ଦେଲେ ତାଙ୍କ ଗଣ ମଧୁବର୍ଣ୍ଣ ।

ଜମ୍ବୁକ ନାମରେ ଗଣ ଧୂତପାପା ଦେଲେ
ଶ୍ୱେତାନନ୍ଦ ନାମେ ଗଣ ବେତ୍ର ସମର୍ପିଲେ ।
ବେଣା ଦେଲେ ସ୍ତୁତି ଆଉ ପ୍ରଥମ ଏ ଦୁଇ
ସାଗର ବେଗିକି ରେବା ସମର୍ପିଲେ ନେଇ ।
ପ୍ରଭାବା ଯେ ଦେଲେ ଅର୍ଥ ସହ ନାମେ ଗଣ
କାଞ୍ଚନା କନକେକ୍ଷଣ କଲେ ସମର୍ପଣ ।
ଗୃଧ୍ରବକ୍ତ୍ର ନାମେ ଗଣ ଦେଲେକ ବିମଳା
ଚାରୁ ପତ୍ରକୁ ପ୍ରଦାନ କଲେ ମନୋହରା ।
ମହାରାବ ନାମେ ଗଣ ଧୂତପାପା ଦେଲେ
ବିଦ୍ରୁମ ସନ୍ନୀଭକୁ ଯେ କର୍ଣ୍ଣା ସମର୍ପିଲେ ।
ସୁପ୍ରସାଦ ସୁବେଣୁ ଯେ ବିଷ୍ଣୁ ଏହି ତିନି
ଗଣଙ୍କୁ ପ୍ରଦାନ କଲେ ମୋଘବତୀ ଆଣି ।
ଯଜ୍ଞ ବାହୁକୁ ବିଶାଳ କଲେ ସମର୍ପଣ
ସରସ୍ୱତୀ ଦେଲେ ଥିଲେ ତାଙ୍କର ଯେ ଗଣ ।
କୁଟିଳା ପ୍ରଦାନ କଲେ ଗଣ ଯେ ତିରିଶ
ବଳରେ ସେମାନେ ସର୍ବେ ବାସବ ସଦୃଶ ।
ସିତକେଶ କୃଷ୍ଣକେଶ କରାଳ ଆବର
ମେଘନାଦ ଚତୁର୍ଦ୍ଦଂଷ୍ଟ୍ର ବିଦ୍ୟୁଜିହ୍ୱ ସାର ।
ଦେବଯାନୀ ଦଶାନନ ସୋମ ଆଦ୍ୟାୟନ
ଆବର ଉଗ୍ରକୁ କଲେ ଜଟାଧରା ଦାନ ।
ହଂସାସ୍ୟ ଆବର କୁଣ୍ଡ ଜଠର ଏ ବେନି
ମୁଦ୍‌ଗ୍ରଗ୍ରୀବ ହୟାନନ କର୍ମଗ୍ରୀବ ତିନି ।
କୃତ୍ତିକାଦି ମାତା ଦେଲେ ଏହି ପାଞ୍ଚଗଣ
ଋଷିମାନେ ଦାନ କଲେ ଗଣ ପାଞ୍ଚଜଣ ।
ସ୍ଥାଣୁ ଜଙ୍ଘ କୁମ୍ଭବକ୍ତ୍ର ଲାଜହଂସ ତିନି
ପାଞ୍ଚଜଣ ମହାନନ ପିଣ୍ଡାରକ ଘେନି ।
ପୃଥୁଦକ ତୀର୍ଥ ଦେଲେ ଗଣ ଛଅ ଜଣ
କହୁଅଛୁ ତାହାଙ୍କର ନାମ ଏବେ ଶୁଣ ।
ନାଗଜିହ୍ୱ ଚନ୍ଦ୍ରଭାସ ନାମେ ଗଣବେନି
ପାଣିକୂର୍ମ ଅଶିକ୍ଷତ ଚାପବକ୍ତ୍ର ତିନି ।
ଆବର ଜମ୍ବୁକ ନାମେ ଦେଲେ ଏକ ଗଣ
କନଖଳ ଚକ୍ରତୀର୍ଥ ଦେଲେ ଚାରିଜଣ ।
ମକରାଖ୍ୟ ସୁଚକ୍ରାଖ୍ୟ ଗୟାଶିର ଶିବ
ତା ଦେଖି ପୁଷ୍କରତୀର୍ଥ ରଖି ସ୍ନେହ ଭାବ ।
ବନ୍ଧୁ ଦତ୍ତ ଆଜିଶିରା ବାହୁଶାଳ ତିନି
ଗଣକୁ ପ୍ରଦାନ କଲେ ମାନସ ତା ଜାଣି ।

ସର୍ବୌଜସ ମହିଷଙ୍କୁ ପିଙ୍ଗଳକୁ ଦେଲେ
ଔଶନସ ରୁଦ୍ରନାମେ ଗଣ ସମର୍ପିଲେ ।
ମାତୃକା ଅନ୍ୟାନ୍ୟ ଗଣ ସମର୍ପିଲେ ତାଙ୍କୁ
ସୋମତୀର୍ଥେ ବସୁଦାମ ଦେଲେ ସେ ଗୁହଙ୍କୁ
ପ୍ରଭାସ ନନ୍ଦିନୀ ନାମେ ଗଣ ଦେଲେ ଆଣି
ଇନ୍ଦ୍ରତୀର୍ଥ ବିଶୋକାକୁ ଦେଲେ ତାହାଜାଣି ।
ସପ୍ତସାରସ୍ୱତ ଦେଲେ ମାତୃ ଚତୁଷ୍ଟୟ
ଗୀତପ୍ରିୟା ତୀର୍ଥନେମ ନାମେ ମାତୃଦ୍ୱୟ ।
ଆବର ମାଧବୀ ସ୍ମିତାନନା ଏହି ଦୁଇ
ନାଗତୀର୍ଥ ଦେଲେ ଏକ ଚୂଡ଼ାକୁ ଯେ ନେଇ ।
କୁରୁକ୍ଷେତ୍ର ଫଳାଷଦ ନାମେ ଦେଲେ ଗଣ
ବ୍ରହ୍ମ ଯୋନି ଦେଲେ ଚଣ୍ଡ ସୀତାଙ୍କୁ ଆଣିଣ ।
ଭଦ୍ରକାଳୀ କଲେ ତ୍ରିପିଷ୍ଟକଙ୍କୁ ପ୍ରଦାନ
ତାହାଦେଖି ସ୍ନେହ ଭରେ ଦ୍ୱିରଦପାଦାନ ।
ଗୌଣ୍ଡୀସେଣ୍ଡୀ ପୋଷଭେଣ୍ଡୀ ଦେଲେ ସେ ଗୁହଙ୍କୁ
ମହାହ୍ରଦ ଗୋପଲୀଳା ସମର୍ପିଲେ ତାଙ୍କୁ ।
ଶାଳିକାକୁ ଦାନ କଲେ ମାନସରୋବର
ଶତାନନ୍ଦା ଦେଲେ ଶତଘଣ୍ଟାକୁ ଆବର ।
ଉଲୁଖଳ ମେଖଳାକୁ ଦେଲେ ପୁଣି ଆଣି
ବଦରିକାଶ୍ରମ ତାହା ଦେଖି ମନେ ଗୁଣି ।
ପଦ୍ମାବତୀ ମାଧବୀକୁ ଦେଲେ ସ୍ନେହଭରେ
ତା ଦେଖି କେଦାର ତୀର୍ଥ ଭାବିଣ ମନରେ ।
ଏକ ଚୂଡ଼ା ସୁସମାକୁ ସମର୍ପିଲେ ଆଣି
ଦେବୀ ଧମଧମାକୁ ଯେ ତାଙ୍କ ସଙ୍ଗେ ପୁଣି ।
ରୌଦ୍ର ମହାଳୟ ଦେଖି କଲୁଳାକୁ ଦେଲେ
ସୁନକ୍ଷତ୍ର ସୁପ୍ରଭାତ ଦୁଇ ସମର୍ପିଲେ ।
ସୁମଙ୍ଗଳ ଦେବମିତ୍ରା ଚିତ୍ରାସେନା ତିନି
ଏମାନଙ୍କୁ ଦେଲେ ପୁଣି ସ୍କନ୍ଦ ସ୍ନେହ ଘେନି
ତା ଦେଖି ପ୍ରୟାଗ ଦେଲେ ଆଣି ମାତୃଗଣ
ତାହାଙ୍କର ନାମ ଏବେ କହୁଅଛି ଶୁଣ ।
କୋଟରା ଯେ ଉର୍ଦ୍ଧ୍ୱ ବେଣୀ ଶ୍ରୀମତୀ ଏ ତିନି
ବହୁପୁତ୍ରିକା ପତିତା କାମାକ୍ଷୀକୁ ଘେନି ।
ଏହି ଷଟ୍ ମାତୃଗଣ ସମର୍ପନ୍ତେ ଦେଖି
ସର୍ବପାପ ବିମୋଚନ ତୀର୍ଥ ହୋଇ ସୁଖୀ ।
ମଧୁପିଙ୍ଗା ଦହଦହା କ୍ଷାନ୍ତି ଖେଟକରା
ଆବର ସୁଷମା ଆଣିଦେଲେ ହୋଇ ତ୍ୱରା ।
ଦେଖି ଶ୍ୱେତତୀର୍ଥ ସନ୍ତାନିକା ସମର୍ପିଲେ
ବିକଳା କ୍ରମୁକା ବରବାସିନୀକି ଦେଲେ ।
ଜଳେଶ୍ୱରୀ କର୍କୁଟିକା ଆବର ସୁଦମା
ବପୁଷ୍ମତୀ ଉଲୂକାକ୍ଷୀ ପୁଣି କୋକାନାମା ।
ରୌଦ୍ରା ଲୋକ ମେଖଳା ଯେ ତୁଣ୍ଡା ମହାସନୀ
ଏମାନଙ୍କୁ ସମର୍ପିଲେ ସ୍କନ୍ଧସ୍ନେହ ଘେନି ।
ମହାତ୍ମା ଗରୁଡ଼ ଦେଖି ଅତି ସ୍ନେହଭରେ
ନିଜ ପୁତ୍ର ମୟୂରକୁ ଦେଲେକ ସତ୍ୱରେ ।
ତା ଦେଖି ଅରୁଣ ଦେଲେ ଆପଣା ନନ୍ଦନ
ତାର ନାମ ତାମ୍ରଚୂଡ଼ ପକ୍ଷିଙ୍କ ପ୍ରଧାନ ।
ଶକ୍ତି ଦେଲେ ହୁତାଶନ ପାର୍ବତୀ ବସନ
ଗୁରୁଦେଲେ ଦଣ୍ଡ ସ୍କନ୍ଧ ସ୍କନ୍ଧରେ ବହନ ।
କମଣ୍ଡଳୁ ଆଣି ଦେଲେ ଜନନୀ କୁଟିଳା
ଶିବ ଦେଲେ ପତାକା ଯେ ହରିଦେଲେ ମାଳା ।
ଇନ୍ଦ୍ର ଦେଲେ କଣ୍ଠ ହାର ଘେନିଣ କୁମାର
ବେଢ଼ିଛନ୍ତି ବଳବନ୍ତ ଗଣ ଅନୁଚର ।
ମୟୂର ପୃଷ୍ଠରେ ବସି ଧରି ବର ଶକ୍ତି
ବିରାଜିଲେ ସୂର୍ଯ୍ୟପ୍ରାୟ ପ୍ରକାଶିଣ ଜ୍ୟୋତି ।

= + =

## କ୍ରୌଞ୍ଚ ଭେଦନ

କହିଲେ ପୁଲସ୍ତ୍ୟ ମୁନି ସେନାନୀ କୁମାର
ମହାଦେବ ପାଦପଦ୍ମେ କରି ନମସ୍କାର ।
ଉମା ଅଗ୍ନି ପାଦ ବନ୍ଦି କୃତ୍ତିକା କୁଟିଳା
ଚରଣେ ପ୍ରଣମି ବ୍ରହ୍ମା ପାଦେ ପଡ଼ିବଳା ।
ବୋଇଲା ପ୍ରଣମି ଭଗବତୀ ଦେବୀ ପାଦେ
ଆହେ ତପୋଧନଗଣ ମୁଁ ତୁମ୍ଭ ପ୍ରସାଦେ ।
ମହିଷ-ତାରକା ଜୟ କରିବି ନିଶ୍ଚୟ
ଶିଶୁ ମନେ ନ କରିବ ଆହେ ସୁରଚୟ ।
ବ୍ରହ୍ମା ସହିତରେ ମିଳି ଦିଅ ଅନୁମତି
ମହାତ୍ମା କୁମାର ବାକ୍ୟେ ଛାଡ଼ ସର୍ବଭୀତି ।
ତାହାଙ୍କର ବଚନକୁ କଲେ ନିରୀକ୍ଷଣ
ପୁତ୍ର ସ୍ନେହେ ମହାଦେବ ଉଠି ତତକ୍ଷଣ ।
ବ୍ରହ୍ମାଙ୍କ ଦକ୍ଷିଣ ହସ୍ତ ଧରି ଧୀରେ ଧୀରେ
ମିଳିଲେ ସେ ଦେବ ଯାଇଁ ସ୍କନ୍ଦ ସନ୍ନିଧିରେ
ଉମା କହିଲେ ରେ ପୁତ୍ର ଶତ୍ରୁହନ୍ତା ତୁହି
ବିଷ୍ଣୁଙ୍କର ପାଦ ପଦ୍ମ ଭଜୁ କି ନା ଯାଇ ।

ସର୍ବଦେବ ନମସ୍କୃତ ସେ ପାଦଯୁଗଳ
ଏହା ଶୁଣି ହାସ୍ୟ କରି କହଇ ସେ ବାଳ ।
ଆଗୋ ମାତ କିଏ ସେହି କହ ମୋର ଆଗେ
ଆଦର ସହିତ ମୁହିଁ ପ୍ରଣମିବି ବେଗେ ।
ଜନନୀ ବୋଇଲେ ତୋର ଦେବକାର୍ଯ୍ୟ ଶେଷେ
ବ୍ରହ୍ମା ତାଙ୍କ ପରିଚୟ ଦେବେ ଯେ ବିଶେଷେ ।
ତୋର ପିତା ମହାଦେବ କହିଛନ୍ତି ମୋତେ
ବିଷ୍ଣୁଠାରୁ ଶ୍ରେଷ୍ଠ କେହି ନାହିଁ ଏ ଜଗତେ ।
କୁମାର କଲେକ ଜନାର୍ଦ୍ଦନଙ୍କୁ ପ୍ରଣତି
କର ଯୋଡ଼ି ମାଗିଲେକ ତାଙ୍କୁ ଅନୁମତି ।
ସେ ଭୂତଭାବନ ଦେବଦେବ ଭଗବାନ
ସ୍ୱସ୍ତ୍ୟୟନ ଦେଇ କଲେ ଅନୁଜ୍ଞା ପ୍ରଦାନ ।
ନାରଦ କହିଲେ ଶିଖିଧ୍ୱଜଙ୍କୁ ସେକାଳେ
କି ସ୍ୱସ୍ତି ଗରୁଡ଼ଧ୍ୱଜ କହ ଦେଇଥିଲେ ।
କହିଲେ ପୁଲସ୍ତ୍ୟ ଋଷି ଭଗବାନ ହରି
ମହିଷ ଅସୁର ବଧ ନିମନ୍ତେ ଯେପରି ।
ସ୍ୱସ୍ତିବାକ୍ୟ କହିଥିଲେ କହୁଛି ତା ଶୁଣ
ପଦ୍ମଯୋନି ବ୍ରହ୍ମା ଦେହେ ଧରି ରଜୋଗୁଣ ।
ମଙ୍ଗଳ ବିଧାନ ରଣେ କରନ୍ତୁ ତାହାର
ମଙ୍ଗଳ କରନ୍ତୁ ତୋର ବିଷ୍ଣୁ ଚକ୍ରଧର ।
ମଙ୍ଗଳ କରନ୍ତୁ ଶିଖିବାହନ -ପାବକ
ମଙ୍ଗଳ କରନ୍ତୁ ତୋର ଦିବସ ଦାୟକ ।
ମଙ୍ଗଳ ସହିତ ଚନ୍ଦ୍ରବୁଧ ବୃହସ୍ପତି
ମଙ୍ଗଳ ବିଧାନ ତୋର କରନ୍ତୁ ସଂପ୍ରତି ।
ମଙ୍ଗଳ କରନ୍ତୁ ତୋର ଶୁକ୍ର ପ୍ରତିଦିନ
ଶନି ତୋର ସ୍ୱସ୍ତ୍ୟୟନ କରନ୍ତୁ ବିଧାନ ।
ମରୀଚି ଯେ ଅତ୍ରିମୁନି ପୁଲହ ଆବର
ପୁଲସ୍ତ୍ୟ ବଶିଷ୍ଠ କ୍ରତୁ ଭୃଗୁ ମୁନିବର ।
ଅଙ୍ଗିରା ଯେ ସୋମାତ୍ମଜ ସ୍ୱର୍ଗ ସପ୍ତଋଷି
ମଙ୍ଗଳ କରନ୍ତୁ ଏହି ତୋର ଦିବାନିଶି ।
ବିଶ୍ୱେଦେବଗଣ ଆଉ ଅଶ୍ୱିନୀକୁମାର
ସାଧଗଣ ମରୁଦ୍‌ଗଣ ଅନଳ ନିକର ।
ସକଳ ଆଦିତ୍ୟ ଆଉ ଦେବ ଶୂଳଧର
ମହେଶ୍ୱର ବର୍ଗ ଯକ୍ଷଗଣ ଯେ ଆବର ।
ଯେତେକ ପିଶାଚ ବସୁ କିନ୍ନର ସହିତେ
ମଙ୍ଗଳ ବିଧାନ ତୋର କରନ୍ତୁ ସମସ୍ତେ ।
ଯେତେକ ସୁବର୍ଣ୍ଣ ନାଗ ନଦୀ ସରୋବର
ଯେତେକ ପବିତ୍ର ତୀର୍ଥ ହ୍ରଦ ପାରାବାର ।
ମହାବଳ ଭୂତଗଣ ଗଣେନ୍ଦ୍ର ସହିତେ
ମଙ୍ଗଳ କରନ୍ତୁ ତୋର ଏ ଅନବରତେ ।
ଯେତେକ ଦ୍ୱିପଦ ଆଉ ଚତୁଷ୍ପଦ ଯେତେ
ମଙ୍ଗଳବିଧାନ ତୋର କରନ୍ତୁ ଏ ନିତ୍ୟେ ।
ବହୁ ପାଦ ଅପାଦ ଯେ କରନ୍ତୁ ମଙ୍ଗଳ
ତୋ ପୂର୍ବ ଦିଗକୁ ରଖୁ ବଜ୍ରୀ ଦିଗପାଳ ।
ଦକ୍ଷିଣ ଦିଗକୁ ତୋର ରଖୁ ଦଣ୍ଡଧର
ପଶ୍ଚିମ ଦିଗକୁ ତୋର ରଖୁ ପାଶଧର ।
ତୋ ଉତ୍ତରଦିଗ ରକ୍ଷା କରୁ ଯକ୍ଷପତି
ଅଗ୍ନିକୋଣ ରଖୁ ତୋର ଅଗ୍ନି ଦିବାରାତି ।
ନୈର୍ଋତକୋଣକୁ ତୋର ରଖନ୍ତୁ କୁବେର
ବାୟୁକୋଣ ରକ୍ଷା କରୁ ପବନ ତୋହର ।
ଈଶାନ କୋଣକୁ ତୋର ରଖନ୍ତୁ ଈଶାନ
ଉର୍ଦ୍ଧ୍ୱଭାଗ ଧ୍ରୁବ ତୋର ରଖୁ ପ୍ରତିଦିନ ।
ତୋର ଅଧୋଭାଗ ରକ୍ଷା କରୁ ଧରାଧର
ମୁଷଳୀ ଲାଙ୍ଗଳୀ ଆଉ ବଜ୍ରୀ ଧନୁର୍ଦ୍ଧର ।
ଏମାନେ କରନ୍ତୁ ତୋର ମଙ୍ଗଳ ବିଧାନ
ବାରାହ ଜଳରେ ତୋତେ ରଖୁ ପ୍ରତିଦିନ ।
ଦୁର୍ଗ ମଧ୍ୟେ ନରସିଂହ ରକ୍ଷା କରୁ ତୋତେ
ସମାବେଦ ତୋର ଧ୍ୱନି ରଖୁ ଅବିରତେ ।
ସାଧବ ସକଳ ଦିଗ ରଖନ୍ତୁ ତୋହର
କହିଲେ ପୁଲସ୍ତ୍ୟ ଋଷି ଆହେ ମୁନିବର ।
ଏରୂପେ ମାଧବ କଲେ ମଙ୍ଗଳ ବିଧାନ
ତହୁଁ ସ୍ୱରଗକୁ ବନ୍ଦି ବିଜେ ଷଡ଼ାନନ ।
ତାର ପଛେ ପଛେ ଗଲେ ସୁର ମୁନିଗଣ
ସମସ୍ତେତ କାମରୂପୀ ଦେଖି ମାତୃଗଣ ।
ଭୂତଳରୁ ଉଠିଯାଇ ମିଳିଲେ ଗଗନେ
ସାହାଯ୍ୟ ଦେବେ ଏ ସର୍ବେ କୁମାରଙ୍କୁରଣେ ।
ବହୁତ ବାଟରେ ଯାଇ ବୋଇଲେ କୁମାର
ଆହେ ମହାବୀର୍ଯ୍ୟ ତୁମ୍ଭେ ଏଠାରୁ ସତ୍ୱର ।
ଭୂମିତଳେ ରହ ଯାଇ ଶୁଣି ସେନାଗଣ
ମହାଭୟଙ୍କର ନାଦେ ପୃଥ୍ୱୀ କଲେ ପୂର୍ଣ୍ଣ ।
ଆକାଶ ପାତାଳ ପୂର୍ଣ୍ଣ ହେଲା ସେ ଶବଦେ
ସେ ଶବଦ ଚଳିଗଲା ସମୁଦ୍ରର ରନ୍ଧ୍ରେ ।

ପାତାଳ ତଳରେ ଥିଲା ଦାନବଙ୍କ ଘର
ସେ ଶବଦେ କମ୍ପମାନ ହେଲା ତାଙ୍କ ପୁର ।
ମହିଷ ତାରକ କୁମ୍ଭ ନିକୁମ୍ଭଙ୍କ କର୍ଣ୍ଣେ
ପ୍ରବେଶ କରନ୍ତେ ସେହି ମହାସୁରଗଣେ ।
ବଜ୍ରପାତ ସମୟେକ ଶବ୍ଦ ଘୋରତର
ବିଚାରି ସମସ୍ତେ ଗଲେ ଅନ୍ଧକଛାମୁର ।
ଅନ୍ଧକକୁ ସଙ୍ଗେ ଘେନି ବିଚାରିଲେ ବସି
ଏକାଳେ ପାତାଳକେତୁ ପାତାଳକୁ ଆସି ।
ସେଠାରେ ମିଳିଲା ତାର କମ୍ପେ କଳେବର
ବାଣାଘାତେ ସର୍ବାଙ୍ଗରୁ ଝରଇ ରୁଧିର ।
ଅନ୍ଧକ ଆଗରେ କହେ ମାସେ ହେଲା ମୁହିଁ
ଯାଇଁ ଗାଲବ ଆଶ୍ରମ ବିନାଶିବା ପାଇଁ ।
ଧଇଲି ଶୂକରରୂପ ମିଳିଲି ଆଶ୍ରମେ
କେମୋତେ ମାଇଲା ବାଣେ ମୋର ରୋମେରୋମେ ।
ଭେଦିବାରୁ ଭୟାତୁରେ ପଳାଇ ଆସଇ
ଅଦୃଶ୍ୟ ଭାବରେ ମୋର ପଛେ ସେ ଧାମଇ ।
ବିପୁଳ ତୁରଗଖୁର ଶବ୍ଦ ଶୁଣି କର୍ଣ୍ଣେ
ଦକ୍ଷିଣ ସାଗରେ ଭୟେ ମିଳିଲି ମୁଁ ତୂର୍ଣ୍ଣେ ।
ପଛେ ପଛେ ସେ ବୋଇଲେ ରହ ରହ ମତେ
ଜଳେ ଥାଇ ଦେଖିଲି ମୁଁ ମୋହର ପଶ୍ଚାତେ ।
ବିବିଧ ବେଶରେ ଆଉ ବିବିଧ ଆକାରେ
ଆସନ୍ତି ପୁରୁଷମାନେ ମୋହର ପଛରେ ।
ତା ମଧରେ ମେଘପ୍ରାୟ କରେ କି ଗର୍ଜନ
କେ ବୋଲେ ମହିଷାସୁର ହୋଇବ ନିଧନ ।
କେ ବୋଲେ ମାରିବି ମୁହିଁ ତାରକ ଅସୁର
ଏହା ଶୁଣି ତ୍ରାସ ପାଇ ହୋଇ ଭୟାତୁର ।
ମହାର୍ଣ୍ଣବ ତ୍ୟାଗ କରି ପଶିଲି ବିବରେ
ଦେଖିଲି ସେ ଜନ ଆସେ ମୋର ପଶ୍ଚାତରେ ।
ତା ଭୟେ ହିରଣ୍ୟପୁର କଲି ପରିତ୍ୟାଗ
ତବ ଶାପେ ଅଇଲି ମୁଁ ଆହେ ମହାଭାଗ ।
ଅନ୍ଧକ କହିଲା ମେଘ ଗମ୍ଭୀର ବଚନେ
ନିଶ୍ଚୟ ରଖିବି ରହ ମୋର ସନ୍ନିଧାନେ ।
ଏକଥା ଶ୍ରବଣ କରି ମହିଷ ତାରକ
ବଳିର ନନ୍ଦନବାଣ ଉଗ୍ରପ୍ରକୃତିକ ।
ଏ ଆଦି ଯେତେକ ବୀର ଅଙ୍ଗବଳ ଘେନି
ଯୁଦ୍ଧଯାତ୍ରା କଲେ କୋପେ ହୋଇ ଅଭିମାନୀ ।

ଅଣ୍ଡକଙ୍କୁ ନ ବିଚାରି ହୋଇଲେ ବାହାର
ମହୀତଳେ ମେଳ ହେଲେ ସକଳ ଅସୁର ।
ଗଲେ କାର୍ତ୍ତିକେୟଗଣ ଶବ୍ଦ ଅନୁସରି
ମିଳିଲେ ଗଣଙ୍କ ଆଗେ ଅସ୍ତ୍ର ଶସ୍ତ୍ର ଧରି ।
ପ୍ରଚଣ୍ଡ ପ୍ରକୃତି ସେହି ମାତୃକା ମଣ୍ଡଳ
ଧାଇଁଲେ ଆୟୁଧ ଧରି ଦେଖି ଦୈତ୍ୟବଳ ।
ତାହାଙ୍କ ମଧରୁ ସ୍ଥାଣୁ ହୋଇ ଆଗଭର
ପରିଘ ହସ୍ତରେ ଧରି ରୁଦ୍ର ପରକାର ।
ପଶୁତୁଲ୍ୟ ରିପୁବଳ ସଂହାରିଲା ରଣେ
ତା ଦେଖି କଳସୋଦରେ ଅସୁରମାରଣେ ।
ପ୍ରବୃତ୍ତି ହୋଇଲା କରେ ଧରିଣ କୁଠାର
ଭୟଙ୍କର ଜ୍ୱାଳାମୁଖ ହୋଇ ଅଗ୍ରସର ।
ଅଶ୍ୱ ଗଜ ରଥ ସହ ଅସୁରଙ୍କୁ ଧରି
ଗିଳିଦେଲା ଭୟଙ୍କର ବଦନ ବିସ୍ତାରି ।
ଅତି କ୍ରୁଦ୍ଧ ହୋଇ ଦଣ୍ଡକରେ ଘେନି ପ୍ରାସ
ବାହନ ସହିତ କରି ରାକ୍ଷସ ବିନାଶ ।
ପକାଇଲା ନେଇ ତାଙ୍କୁ ମହାର୍ଣ୍ଣବ ଜଳେ
ଶଙ୍କୁକର୍ଣ୍ଣ ଦାନବଙ୍କୁ ବିନାଶିଲା ବେଳେ ।
ମୁଷଳରେ ଚୂର୍ଣ୍ଣକଲା ମସ୍ତକ କାହାର
ପଉରୁଷ ହୀନ ନୃପ ମନ୍ତ୍ରୀ ପରକାର ।
ପୁଷ୍ପଦନ୍ତବୀର କରେ ଖଡ୍‌ଗଚର୍ମ ଧରି
ଦୈତ୍ୟ ଦାନବଙ୍କୁ ଖଣ୍ଡ ଖଣ୍ଡ କରି ମାରି ।
ଦଣ୍ଡମୁଣ୍ଡ ସହିତରେ ଧାଇଁଲା ପିଙ୍ଗଳ
ଗଦା ଗଦା କରି ଦେଲେ ମାରି ଦୈତ୍ୟବଳ ।
ସହସ୍ର ନୟନ ରଣେ ଶୂଳକୁ ବୁଲାଇ
ଅଶ୍ୱ ରଥ ଗଜ ସବୁ ମାଇଲା ନିଠାଇ ।
ଭୟଙ୍କର ଶିଳା ବୃଷ୍ଟି କରି ବୀର ଭୀମ
ଇନ୍ଦ୍ର ବଜ୍ର ପାତେ ଯେହ୍ନେ ହତ ନୃପୋତ୍ତମ ।
ତେସନ ନିପାତ କଲା ଦୈତ୍ୟ ସେନାପତି
ଚକ୍ରନାମେ ବଳବନ୍ତ ବିକଟ ପ୍ରକୃତି ।
ସକଳେ ମୁଦ୍‌ଗର ଏକ ବୁଲାଇ ବୁଲାଇ
ଦୈତ୍ୟ ପ୍ରାଣ ଦେଲା ଯମଘରକୁ ପଠାଇ ।
ଗିରିଭେଦୀ ଚାପୋଡ଼ରେ ମାଇଲା କୁଞ୍ଜର
ମହାବେଗ ନାମେ ଗଣ ଧାଇଁଲା ସତ୍ୱର ।
ରଥିସହ ରଥ ସବୁ ପୋଡ଼ିଲା ଅନଳେ
ମହାବଳ ନାଡ଼ିଜଙ୍ଘ ପଶି ଦୈତ୍ୟବଳେ ।

ବିଧା ଜାନୁ ବଜ୍ରକୀଳା ମାରି ଅସୁରଙ୍କୁ
ଶତ ଶତ ପଠାଇଲା ଯମ ସଦନକୁ ;
କୂର୍ମଗ୍ରୀବ ହୟଗ୍ରୀବ ମୁଣ୍ଡ ପାଦ ମାରି
ଦାନବଙ୍କୁ ପଠାଇଲେ ଶମନ ନଗରୀ ।
ପିଣ୍ଡାରକ ତୁଣ୍ଡେ କଲା ଦୈତ୍ୟ ଖଣ୍ଡ ଖଣ୍ଡ
କଳିପ୍ରିୟ ଶୃଙ୍ଗେ କଲା ତାଙ୍କୁ ଲଣ୍ଡଭଣ୍ଡ ।
ବଳ ହତ ହେବା ଦେଖି ମହିଷ ତାରକ
ଧାଇଁଲେ ହସ୍ତରେ ଧରି ଆୟୁଧ ସାୟକ ।
ମାରନ୍ତେ ପ୍ରଥମଗଣ ବେଢ଼ି ଚାରିଦିଗେ
ଯୁଦ୍ଧ କଲେ ଅସ୍ତ୍ର ଶସ୍ତ୍ର ଧରି ମହାରାଗେ ।
ମହିଷକୁ ମାଇଲା ଯେ ହଂସାସ୍ୟ ପଞ୍ଚାଶ
ପ୍ରହାରିଲା ଖୁରଧାର ଘନ ଶତଶୀର୍ଷ ।
ଷୋଡ଼ଶାକ୍ଷ୍ୟ ତା ଉପରେ ତ୍ରିଶୂଳ ମାଇଲା
ଶ୍ରୁତାୟୁଧ ଗଦାବର ଉପରେ ପିଟିଲା ।
ବିଶୋକ ମସ୍ତକେ ନେଇ ପିଟିଲା ମୁଷଳ
ତା ଉପରେ ବନ୍ଧୁଦତ୍ତ ପ୍ରହାରିଲା ଶୂଳ ।
ଆଉ ଯେତେ ପାରିଷଦଗଣ ଥିଲେ ତହିଁ
ଶୂଳଶକ୍ତି ରୁଷ୍ଟି ଆଦି ପ୍ରହାରିଲେ ନେଇ ।
ମୈନାକ ତୁଲ୍ୟ ନିଷ୍କମ୍ପ ଥିଲା ଦୈତ୍ୟସାଇଁ
ଅନେକ ଚୂଡ଼ାକୁ ଘେନି ବରାୟୁଧ ନେଇ ।
ପିଟିଲେ ତାରକଦେହେଁ ସେହି ମହାସୁର
ସହିଲା ଯେସନେ ରହେ ବିନ୍ଧ୍ୟଗିରି ବର ।
ସେ ଅସୁର ଦୁଇ ତିଳେ ନ ଘୁଞ୍ଚିଲେ ରଣେ
ଭୟେ ଇତସ୍ତତ ହେଲେ କାର୍ତ୍ତିକେୟଗଣେ ।
ମହିଷ ଗଦାରେ କଲା ପ୍ରମଥଙ୍କୁ ଜୟ
ଭୟରେ ପ୍ରମଥ ନେଲେ କୁମାର ଆଶ୍ରୟ ।
ସୁଚକ୍ରାକ୍ଷ ଓଗାଳିଲା ମହିଷକୁ ଆସି
ମହିଷ ପିଟନ୍ତେ ଗଦା ସୁଚକ୍ରାକ୍ଷ ହସି ।
ଆପଣାର ଚକ୍ରେ କଲା ସେ ଗଦା ଛେଦନ
ଧାଇଁଲା ସେ ଚକ୍ର ପୁଣି ଦୈତ୍ୟ ସନ୍ନିଧାନ ।
ତା ଦେଖି ଅସୁରଗଣ କଲେ ହାହାକର
ମଲା ଏ ମହିଷ ବୋଲି କଲେକ ଚିତ୍କାର ।
ବାଣ ଏହି ଶବ୍ଦ ଶୁଣି ପାଶ ଦେଲା ପାତି
ପଞ୍ଚମୁଷ୍ଟି ଶତେ ସେହି ଚକ୍ରକୁ ନିପାତି ।
ସୁଚକ୍ରାକ୍ଷକୁ ସେ ବାନ୍ଧି ପଞ୍ଚବାହୁ ଶତେ
ହତଚେତା ହେଲା ସେହି ବାଣାସୁର ହସ୍ତେ ।

ମହାବଳ ମକରାକ୍ଷ ଦେଖି ଗଦା ଧରି
ପ୍ରହାରିଲା ବାଣାସୁର ମସ୍ତକ ଉପରି ।
ଲାଜପାଇ ବାଣାସୁର କଲା ରଣ ତ୍ୟାଗ
ତା ଦେଖି ଅସୁରବଳ ରଣେ ଦେଲେ ଭଙ୍ଗ ।
ତାରକ ସ୍ୱବଳ-ଭଙ୍ଗ ଦେଖି ଖଡ୍‌ଗ ଧରି
ଗଣେଶ୍ୱର ନିକରଙ୍କୁ ପରାଜିତ କରି ।
ମାତୃକାଗଣଙ୍କ ଚିତ୍ତେ କଲା ଭୟ ଜାତ
ରଣ ଛାଡ଼ି ପଳାଇଲେ ମାତୃକା ସହିତ ।
ଗଣ ସମ୍ପ୍ରଦାୟ ନେଲେ କୁମାର ଆଶ୍ରୟ
ଦେଖି ଶକ୍ତି କରେ ଧରି ଆସି କାର୍ତ୍ତିକେୟ ।
ମହାସୁର ତାରକର ବିଦାରିଲେ ଛାତି
ଭୂମିରେ ପଡ଼ିଲା ପ୍ରାଣ ଛାଡ଼ି ଦୈତ୍ୟପତି ।
ଭାଇର ମରଣ ଦେଖି ଭଗ୍ନଦର୍ପ ହୋଇ
ମହିଷ ସଂଗ୍ରାମ ତେଜି ଭୟରେ ପଳାଇ ।
ହିମାଳୟ ପର୍ବତରେ ଲୁଚିଲା ସେ ବୀର
ମାଇଲେ ପ୍ରମଥଗଣ ସକଳ ଅସୁର ।
ବାଣାସୁର ଭୟ ପାଇ ଲୁଚିଲା ସାଗରେ
ଶିଖଣ୍ଡି ମଣ୍ଡିତ ବର ମୟୂର ଉପରେ ।
ଶକ୍ତି ଧରି ଆରୋହିଲେ କୁମାର ସବେଗେ
ମହିଷର ପଛେ ପଛେ ଗମନ୍ତେ ସେ ରାଗେ ।
ହିମାଳୟ ତେଜି ଭୟେ ମହିଷ ଅସୁର
ଆଶ୍ରୟ କଲା ସେ କ୍ରୌଞ୍ଚ ପର୍ବତ ଗହ୍ୱର ।
ତା ଦେଖି କୁମାର ହେଲେ ଚିନ୍ତାପରାୟଣ
ଏ ସମୟେ ବ୍ରହ୍ମା ଶିବ ଇନ୍ଦ୍ର ନାରାୟଣ ।
ସେଠାରେ ପ୍ରବେଶି ତାଙ୍କୁ କହିଲେ ଏମନ୍ତ
ଶକ୍ତି ମାରି କର ଶୈଳସହ ଦୈତ୍ୟ ହତ ।
ଏହା ଶୁଣି କାର୍ତ୍ତିକେୟ ସହାସ୍ୟବଦନେ
ମାତାମହ ନାତିକି ମୁଁ ମାରିବି କେସନେ ।
ଜନନୀର ଭ୍ରାତୃପୁତ୍ର ମୋହର ସେ ଭାଇ
ବେଦ କଥା ଅନ୍ୟଥା ବା କେ କରିପାରଇ ।
ବେଦମାର୍ଗେ ଗଲେ ପାପୀ ବସେ ସ୍ୱର୍ଗପୁରେ
କହୁଛି ସେ ବେଦବାଣୀ ଶୁଣ ହେ ଅମରେ ।
ଗୋରୁ ବିପ୍ର ବୃଦ୍ଧ ଆଢ୍ୟ ଶିଶୁ ବନ୍ଧୁଜନ
ସୁଦୃଷ୍ଟା ରମଣୀ ଗୁରୁ ଆଚାର୍ଯ୍ୟ ପ୍ରଧାନ ।
ଏମାନେ ଅବଧ୍ୟ ଆହେ ସୁରେଶ୍ୱର ବର୍ଗ
କେମନ୍ତେ କରିବି ଜାଣି ଶୁଣି ଧର୍ମ ତ୍ୟାଗ ।

ଯେତେବେଳେ ବାହାରିବେ ଗୁହାରୁ ଅସୁର
ଶକ୍ତିମାରି ତାହାଙ୍କୁ ମୁଁ କରିବି ସଂହାର ।
କହିଲେ ସେ କୁମାରକୁ ଦେବ ମଘବାନ
ଆମ୍ଭଠାରୁ ତୁହି ବେଶି ନୋହୁ ବୁଦ୍ଧିମାନ ।
ଏ କଥା କିମ୍ପାଇ କହୁ ପୂର୍ବେ ଦେବ ହରି
ଯାହା କହିଛନ୍ତି ତାହା ଶୁଣ ଶକ୍ତିଧାରୀ ।
ବହୁ ଜନ ନ ମାରିବ ଜଣକ ନିମନ୍ତେ
ଜଣକୁ ବଧିବ ବହୁଜନଙ୍କର ହିତେ ।
ଶାସ୍ତ୍ରର ମୀମାଂସା ଏହି ପାପନୋହେତେଣେ
ଆହେ ଅଗ୍ନିସୁତେ ପୂର୍ବେ ଏ ବାକ୍ୟ ଶ୍ରବଣେ ।
ସୋଦର ଅନୁଜ ସହ ନମୁଚି ଅସୁର
କରିଅଛି ମୁହିଁ ପୁଣି ସଂଗ୍ରାମେ ସଂହାର ।
ଏଣୁ ବହୁଜନ ହିତେ ପର୍ବତ ସହିତ
ଶକତି ପ୍ରହାରି କର ଅସୁର ନିହତ ।
ପୁରନ୍ଦର କଥା ଶୁଣି ସକ୍ରୋଧେ କୁମାର
ଆରକ୍ତ ଲୋଚନ କମ୍ପମାନ କଳେବର ।
ବୋଇଲେ ଜାଣିଲି ମୂଢ଼ ଅଟୁ ବୃତ୍ରହନ
ତୋ ମନରେ ମୁହିଁ ଏକା ଅଟେ ବୁଦ୍ଧିମାନ ।
ତୋର ଦେହେ ବାହୁରେ ବା ଅଛଇକିବଳ
ଯେଣେ ମୋତେ ଆକ୍ରୋଶ ତୁ କରୁଆଖଣ୍ଡଳ ।
ଇନ୍ଦ୍ର ବୋଇଲେ ମୁଁ ଗୁହ ସ୍ୱାଭାବିକ ବଳୀ
ଗୁହ କହିଲେ ତୁ ଯେବେ ଅଟୁ ବଳଶାଳୀ ।
ସଜ ହୋଇ ଆସ ମୋର ସଙ୍ଗେ ଯୁଦ୍ଧ କର
ବାସବ କହିଲେ ଆହେ କୃତ୍ତିକା କୁମର ।
ଆମ୍ଭ ଦୁହିଁଙ୍କର ମଧ୍ୟେ ଆଗ ଯେଉଁଜନ
ପ୍ରଦକ୍ଷିଣ କରିବ ଏ କ୍ରୌଞ୍ଚକୁ ସେ ଜାଣ ।
ବଳବନ୍ତ ଜନ ମଧ୍ୟେ ଗଣା ହେବ ସେହି
ଏହା ଶୁଣି ସ୍କନ୍ଦ ବେଗେ ପାଦଗାମୀ ହୋଇ ।
ଗିରିବର ପ୍ରଦକ୍ଷିଣ କରିବାକୁ ଗଲେ
ଇନ୍ଦ୍ର ପାଦଗାମୀ ହୋଇ ପ୍ରଦକ୍ଷିଣ କଲେ ।
ଯହୁଁ ଆରମ୍ଭିଲେ ତହିଁ ଉଭା ପୁରନ୍ଦର
ଗିରି ପ୍ରଦକ୍ଷିଣ କରି ଆସି ସେ କୁମର ।
କହିବେ ରେ ମୂଢ଼ ଛିଡ଼ା ହୋଇଛୁ କିପାଇଁ
କହିଲେ କପଟ କରି ତାଙ୍କୁ ସୁରସାଇଁ ।
ଗିରିବର ପ୍ରଦକ୍ଷିଣ କରିଛି ମୁଁ ଆଗ
ପଛେ ତୁହି ପ୍ରଦକ୍ଷିଣ କଲୁ କ୍ରୌଞ୍ଚନଗ ।

ଦୁଇଜଣ କଳି କଲେ ତହିଁ ପରସ୍ପରେ
ଉଭୟ ମିଳିଲେ ଯାଇଁ ବିଷ୍ଣୁର ଗୋଚରେ ।
ବିଷ୍ଣୁ କହିଲେ ହେ ସ୍କନ୍ଦ କ୍ରୌଞ୍ଚକୁ ପଚାର
ପର୍ବତକୁ ପଚାରିଲେ ତକ୍ଷଣେ କୁମାର ।
ଗିରି ବୋଲେ ଇନ୍ଦ୍ର ଆଗ କଲେ ପ୍ରଦକ୍ଷିଣ
କମ୍ପିତ ଅଧରେ କ୍ରୋଧେ କୁମାର ତକ୍ଷଣ ।
ଶକ୍ତି ମାରି ଦୈତ୍ୟସହ ବିଦାରିଲେ ଗିରି
ସ୍ୱର୍ଗକୁ ଚଳିଲେ ଇନ୍ଦ୍ର ବିଷ୍ଣୁ ତ୍ରିପୁରାରି ।
ବ୍ରହ୍ମାଦି ଅମର ଗଣ ଗଲେ ଆନନ୍ଦରେ
ସୁନାଭ ହିମାଦ୍ରି ସୁତ ମିଳିଲା ସେଠାରେ ।
ପୁତ୍ରର ନିଧନ ଦେଖି ହୋଇଲା ଦୁଃଖିତ
ଆପଣା ମାମୁଁଙ୍କୁ ଦେଖି କୁମାର ତ୍ୱରିତ ।
ଶକ୍ତିକି ଉପାଡ଼ି ଗଲେ ମାରିବାକୁ ଧାଇଁ
ଆଲିଙ୍ଗନ କଲେ ତାକୁ ବିଷ୍ଣୁ ବେଗେଯାଇଁ ।
ଛାଡ଼ ଛାଡ଼ ଗୁରୁହତ୍ୟା ନ କର କୁମାର
ଏ ସମୟେ ତହିଁ ମିଳି ହିମଗିରିବର ।
ସୁନାଭର କର ଧରି ଗଲେ ଚକ୍ରପାଣି
ସ୍କନ୍ଦକୁ ସ୍ୱର୍ଗକୁ ନେଲେ ଦେବ ଚକ୍ରପାଣି ।
କାର୍ତ୍ତିକେୟ କହିଲେ ହେ ସୁରେଶ୍ୱର ହରି
ମୋହବଶେ ମୋ ବିବେକ ମୁହିଁ ନଷ୍ଟକରି ।
ମାମୁଁ ପୁଅ ଭାଇକି ମୁଁ ବଧିଲି ସ୍ୱହସ୍ତେ
ଶରୀର ଶୋଷଣ ମୁହିଁ କରେ ଏ ନିମନ୍ତେ ।
ଶ୍ରୀହରି ବୋଇଲେ ସ୍କନ୍ଦ ମୋର ବୋଲକର
ପୃଥୁଦକ ତୀର୍ଥବର ଅଟେ ପାପହର ।
ତହିଁ ସ୍ନାନ କର ଓଘବତୀ ନଦୀନୀରେ
ଶିବଙ୍କ ଦର୍ଶନ କରି ଶ୍ରଦ୍ଧା ଭକତିରେ ।
ସୂର୍ଯ୍ୟସମ ପ୍ରଭାଶାଳୀ ହୋଇବୁ କୁମାର
ପୃଥୁଦକ ତୀର୍ଥେ ଗଲା କୃତ୍ତିକା କୁମର ।
ସ୍ନାନେ ଶିବ ଦରଶନ କରି ରବି ପରି
ତେଜୋବନ୍ତ ହୋଇଗଲା କଇଳାସ ପୁରୀ ।
ଏକାଳେ ସୁଚକ୍ର ନେତ୍ର ନାମେ ଗଣେଶ୍ୱର
ବାୟୁ ଭକ୍ଷି ଘୋର ତପେ ତୋଷିଲା ଶଙ୍କର ।
ପ୍ରସନ୍ନେ ବୋଇଲେ ହର ବର ମାଗି ଘେନ
ସୁଚକ୍ର ବୋଇଲା ଆହେ ପ୍ରଭୁ ତ୍ରିଲୋଚନ ।
କ୍ରୌଞ୍ଚ ଅନ୍ତକାରୀ ସ୍କନ୍ଦ ବାଣ ବାହୁଦନ
ଛେଦିବା ନିମନ୍ତେ କର ଆୟୁଧ ପ୍ରଦାନ ।

ଶିବ ବୋଇଲେ ତୁ ଯାହା ମାଗିବୁ ସୁଚକ୍ର
କାର୍ତ୍ତିକେୟ ହସ୍ତେ ଦେବି ବିରାୟୁଧ ଚକ୍ର ।
ଏଣେ ବାଣ ବାହୁବଳ କରିବ ଛେଦନ
ହର ବର ପାଇ ସେହି ଗଣଙ୍କ ପ୍ରଧାନ ।
କାର୍ତ୍ତିକେୟ ପାଦ ବନ୍ଦି କହିଲା ସକଳ
ଶୁଣିବା ଜନର ହୁଏ ପାତକ ନିର୍ମୂଳ ।
ପୁଣ୍ୟ ବଢ଼ିଯାଏ ତାର ଆହେ ମୁନିବର
ମହିମା ଏ ଆଖ୍ୟାନର ଏମନ୍ତ ପ୍ରକାର ।
ତାରକ ଅନ୍ତକ ସେହି କାର୍ତ୍ତିକେୟ ପାଦେ
ଦ୍ୱିଜ ଗୋପୀନାଥ ଚିତ୍ତ ରହୁ ଅପ୍ରମାଦେ ।

=+=

## ଅନ୍ଧକ ପରାଜୟ

କହିଲେ ନାରଦ ମୁନି କହ ତପୋଧନ
ପାତାଳକେତୁକୁ ବାଣେ କେ କଲା ତାଡ଼ନ ।
ସେ ଆସି ଅନ୍ଧକ ପାଦେ ପଶିଲା ଶରଣ
ବିସ୍ତାରି କହନ୍ତୁ ମୋର ଆଗେ ତା କାରଣ ।
ପୁଲସ୍ତ୍ୟ କହିଲେ ଶୁଣ ଆହେ ଦେବରଷି
ରିପୁଜିତ ନାମେ ରାଜା ଅଟେ ରଘୁବଂଶୀ ।
ତାହାର ପୁତ୍ରର ନାମ ଅଟେ ଋତୁଧ୍ୱଜ
ଶତ୍ରୁସୈନ୍ୟ ବିମର୍ଦ୍ଦନ କାରୀ ମହାରାଜ ।
ଗୁଣଗଣ ନିଧି ସେହି ମହାତ୍ମା ବଳିଷ୍ଠ
ବିପ୍ର ଦୀନ ଅନ୍ଧକ ସେ ନ ଦେଖଇ କଷ୍ଟ ।
ପ୍ରହୃଷ୍ଟ ସ୍ୱଭାବ ଶର ଦୁଃଖୀ ଦୁଃଖ ହର
ଗାଲବଙ୍କ ପାଇଁ ସେହି ଚଢ଼ି ଅଶ୍ୱବର ।
ଅର୍ଦ୍ଧଚନ୍ଦ୍ର ବାଣମାରି ପାତାଳ କେତୁର
ପୃଷ୍ଠଦେଶ ବିଦାରନ୍ତେ ଭୟରେ ଅସୁର ।
ଅନ୍ଧକ ଶରଣ ନେଲା ହେ ନାରଦ ମୁନି
ନାରଦ କହିଲେ କହ ଆହେ ମହାଜ୍ଞାନି ।
ଗାଲବଙ୍କ କାର୍ଯ୍ୟ ସେହି କଲେ କି ନିମନ୍ତେ
ଶରାଘାତେ ବିଦାରିଲେ ଦୈତ୍ୟକୁ ତ୍ୱରିତେ ।
ପୁଲସ୍ତ୍ୟ କହିଲେ ପୂର୍ବେ ମହର୍ଷି ଗାଲବ
ନିଜ ଆଶ୍ରମରେ ତପ କରନ୍ତେ ଦାନବ ।
ଅଜ୍ଞାନ ପାତାଳକେତୁ ଭାଙ୍ଗିଲା ସମାଧି
ଭସ୍ମ କରି ପାରନ୍ତେତ ତାକୁ ତପୋନିଧି ।
ତପଫଳ କ୍ଷୟ ଭୟେ ନ କରନ୍ତି ନାଶ
କେବଳ ଛାଡ଼ନ୍ତି ଉର୍ଦ୍ଧ୍ୱେ ସୁଦୀର୍ଘ ନିଃଶ୍ୱାସ ।

ଏ ସମୟେ ଆକାଶରୁ ଅଶ୍ୱେକ ପଡ଼ିଲା
ତାହା ସଙ୍ଗେ ସଙ୍ଗେ ପୁଣି ଶୂନ୍ୟବାଣୀ ହେଲା ।
ଏ ତୁରଙ୍ଗ ଦିନେ ଯାଏ ସହସ୍ର ଯୋଜନ
ସେହି ତୁରଙ୍ଗମ ଗୋଟି ଦେଲେ ତପୋଧନ ।
ସେ ତୁରଙ୍ଗ ଋତୁ ଧ୍ୱଜ ନୃପତିକି ଦେଲେ
ତପରକ୍ଷା କାର୍ଯ୍ୟେ ତାକୁ ନିୟୋଜିତ କଲେ ।
ତେଣୁ ସେ ଅସୁରଦେହେ ବିନ୍ଧିଦେଲେ ବାଣେ
ନାରଦ କହିଲେ ଆହେ ସୁବ୍ରତ ଗଗନେ ।
କେଉଁ ଜନ ଅଶ୍ୱ ଦେଲା କିମ୍ପାଇ ତା କହ
କାହୁଁ ଶୂନ୍ୟବାଣୀ ହେଲା ଏ ବଡ଼ ସନ୍ଦେହ ।
ନାରଦ କହିଲେ ଶୁଣ ଆହେ ମୁନିବର
ବିଶ୍ୱାବସୁ ନାମେ ଏକ ଗନ୍ଧର୍ବ ଅସୁର ।
ବଳବନ୍ତ ଯଶସ୍ୱୀ ସେ ଗାୟକ ପ୍ରଧାନ
ଋତୁଧ୍ୱଜକୁ ତା ସୁତା କରିବ ପ୍ରଦାନ ।
ଏହି ଅଭିଳାଷେ ଅଶ୍ୱ ପକାଇଲା ତଳେ
ଏହା ଶୁଣି ପୁନରପି ନାରଦ କହିଲେ ।
କି ଇଷ୍ଟ ସାଧନ ହେଲା ଗନ୍ଧର୍ବ ରାଜର
ଭୂମିକି ପକାଇ ଦେଇ ସେହି ଅଶ୍ୱବର ।
ପୁଲସ୍ତ୍ୟ କହିଲେ ଶୁଣ ଆହେ ତପୋଧନ
ଗନ୍ଧର୍ବରାଜର ହେଲା ଯେ ଇଷ୍ଟ ସାଧନ ।
ତାର ଦୁହିତାର ନାମ ଅଟେ ମଦାଳସା
ସାକ୍ଷାତରେ ଅଟଇ ସେ କନ୍ୟା ମଦାଳସା ।
ସୁଶୀଳା ସେ ଗୁଣବତୀ ଯେମନ୍ତ ଯୁବତୀ
ତେମନ୍ତ ସୁଭଗା ତିନିପୁରେ ରୂପବତୀ ।
ସାକ୍ଷାତେ ଲାବଣ୍ୟବତୀ ଶଶୀକାନ୍ତି ନିଭା
ନନ୍ଦନ ବନରେ କ୍ରୀଡ଼ା କରୁ ତାର ଶୋଭା ।
ଅସୁର ପାତାଳକେତୁ ଦରଶନ କରି
ଅତିବେଗେ ସେ ମନ୍ତ୍ରୀକି ଆଣିଲାକ ହରି ।
ତାହାର ଉଦ୍ଧାର ପାଇଁ ଗନ୍ଧର୍ବ ରାଜନ
ଏହି ଅଶ୍ୱବର କଲେ ମୁନିଙ୍କି ପ୍ରଦାନ ।
ମୁନିଦତ୍ତ ଅଶ୍ୱଚଢ଼ି ରାଜା ଋତୁଧ୍ୱଜ
ପାତାଳକେତୁକୁ ମାରି କରି ଦେବକାର୍ଯ୍ୟ ।
ସେ ବନରୁ ମଦାଳସା କନ୍ୟାକୁ ଉଦ୍ଧାରି
ବିଭା କରି ଦିଶିଲେ ସେ ଇନ୍ଦ୍ର ଶଚୀପରି ।
ନାରଦ କହିଲେ ମଲା ତାରକ ଅସୁର
ଅନ୍ଧକ ଯେ ହିରଣାକ୍ଷ ଦୈତ୍ୟର କୁମର ।

କି ବିଚାର କଲା ତାହା କହନ୍ତୁ ବିସ୍ତାରି
ପୁଲସ୍ତ୍ୟ କହିଲେ ଶୁଣ ଆହେ ତପଚାରୀ ।
ତାରକ ମହିଷ ବଧେ ଜାତ କ୍ରୋଧ ହୋଇ
ଦୁର୍ବୁଦ୍ଧି ଅନ୍ଧକ ସଙ୍ଗେ ଅଳ୍ପ ସୈନ୍ୟ ନେଇ ।
ହସ୍ତରେ ପରିଘ ଘେନି ପାତାଳୁ ଅଇଲା
ପାଦରେ ସେ ସସାଗରା ପୃଥିବୀ ଭ୍ରମିଲା ।
ସୁନ୍ଦର କନ୍ଦରଯୁକ୍ତ ମନ୍ଦର ଭୂଧରେ
ପ୍ରବେଶିଲା ସେ ଅନ୍ଧକ ସୈନ୍ୟ ସଙ୍ଗତରେ ।
ଗିରିନନ୍ଦିନୀକି ସଖୀ ମଧ୍ୟରେ ଦେଖିଲା
କାମ ପାରାବାରେ ତାର ଚିତ୍ତ ବୁଡ଼ିଗଲା ।
ମଦନ ଉନ୍ମାଦ ମଦମୋହେ ଅନ୍ଧହୋଇ
ଅସୁର ଯେ ମନମଧ୍ୟେ ବିଚାର କରଇ ।
ସର୍ବାଙ୍ଗ ସୁନ୍ଦରୀ ଏହି ଲଳନା କାହାର
କିମ୍ପାଇ ଏ ବନମଧ୍ୟେ କରଇ ବିହାର ।
ଏ କାମିନୀ ଯେବେ ମୋର ଘରଣୀ ନୋହିବ
ନିଷ୍ଫଳ ଜୀବନ ରଖି କି ଫଳ ପାଇବ ।
ନ ପାଇଲେ ଆଲିଙ୍ଗନ ଏ ତନୁମଧ୍ୟାର
ଧିକ୍ ମୋର ବଳବୀର୍ଯ୍ୟ ରୂପ ପରିବାର ।
ଏ ଅସିତକେଶୀ ମୃଗଲୋଚନାକୁ ଆଣି
ଯେ ଦେବ ସେ ମୋର ଭାଇ ବନ୍ଧୁମିତ୍ରଜାଣି ।
ଏହିରୂପେ ଭାଳନ୍ତେ ସେ ଦୈତ୍ୟେନ୍ଦ୍ର ଅନ୍ଧକ
ଦୈତ୍ୟବର ପ୍ରହ୍ଲାଦ ଯେ ଭକତ ତିଳକ ।
କାନେ ହାତ ଦେଇ କହେ ମସ୍ତକ କମ୍ପାଇଁ
ମୁଖରେ ନଧର ଏହା ଦୈତ୍ୟକୁଳ ସାଇଁ ।
ଜଗତର ଜନନୀ ଏ ଶଙ୍କର ଘରଣୀ
ଏ ଦୁର୍ବୁଦ୍ଧି ପରିତ୍ୟାଗ କର ଦୈତ୍ୟମଣି ।
ଏହା ଯୋଗୁ ବଂଶନାଶ ହୋଇବ କ୍ଷଣକେ
ଏ ତୁମ୍ଭର ପରଦାର ପଡ଼ିବ ନରକେ ।
ଅକାରଣେ ନିମଗ୍ନ ତୁ ନୁହ ରସାତଳେ
ପରଦାର ନିନ୍ଦନୀୟ ଯଥା ସାଧୁମେଳେ ।
ଅସାଧୁ ସମାଜେ ଜାଣ ତାଦୃଶ ନିନ୍ଦିତ
ଶତ୍ରୁଏ ତୁମ୍ଭର ତହିଁ ହୁଅନ୍ତୁ ପ୍ରବୃତ୍ତ ।
ଆହେ ଦୈତ୍ୟପତି ରାଜା ଗାଧି ଏ ବିଷୟେ
ଶ୍ଳୋକ ଏକ ପଢ଼ିଥିଲେ ସେ ଏକ ସମୟେ ।
ସେ ଶ୍ଳୋକ ଯଥାର୍ଥ ଗୁଣେ ଅଳଙ୍କୃତ ଯଥା
ଲୋକଙ୍କର ହିତକର ଅଟଇ ସେ ତଥା ।
ତାଦୃଶ ପରମଫଳ ଦାୟକ ଅଟଇ
ଶୁଣ ତାର ଅର୍ଥଭାବ ମୁଁ କହୁ ଅଛଇ ।
ବରଂ ପ୍ରାଣ ଯିବ ପରହିଂସା ନ କରିବ
ବରଂ ତୁନି ହେବ କେଭେ ମିଥ୍ୟା ନ କହିବ ।
ବରଂ କ୍ଲୀବ ହେବ ପର ନାରୀ ନ ହରିବ
ବରଂ ଭିକ୍ଷୁ ହେବ ପର ଧନ ନ ଆଣିବ ।
ଅନ୍ଧକ ପ୍ରହ୍ଲାଦ କଥା ଶୁଣି କାମାତୁର
କ୍ରୋଧେ ଅନ୍ଧହୋଇବୋଲେ ଏ ମାତା ଶତ୍ରୁର ।
ଏହାକହି ଧାଇଁଗଲା ଗଉରୀ ଉଦ୍ଦେଶ୍ୟେ
ଆଉ ଯେତେ ଦୈତ୍ୟଗଣ ଥିଲେ ତାରପାଶେ ।
ପଛେ ଗଲେ ଯନ୍ତ୍ର ମୁକ୍ତ ଉପଳ ପରାୟ
ଚକ୍ରଧରି ତଡ଼ିଦେଲେ ନନ୍ଦି ମହାଶୟ ।
ମୟ ତାର ଆଦି ଯେତେ ମହାସୁର ଗଣ
ସହ୍ୟ କରି ନ ପାରିଲେ ନନ୍ଦି ବଜ୍ରବାଣ ।
ବିଦ୍ରାବିତ ନିବାରିତ ଆଘାତ ଭୟରେ
ଦଶଦିଶେ ପଳାଇଲେ ସେଠାରୁ ସତ୍ୱରେ ।
ତା ଦେଖି ଅନ୍ଧକ କ୍ରୋଧେ ପରିଘ ପ୍ରହାରି
ନନ୍ଦିକି ପକାଇଦେଲା ଭୂମିର ଉପରି ।
ନନ୍ଦୀ ଅଚେତନ ହେବା ଦେଖିଣ ଗଉରୀ
ଶତରୂପା ହେଲେ ସେହି ଦୁରାତ୍ମାକୁ ଡରି ।
ଦେବୀଗଣ ମଧ୍ୟେ ରହି ଅନ୍ଧକ ଅସୁର
ଭ୍ରମନ୍ତେ ପାଇଲା ସେହି ଶୋଭା ଏ ପ୍ରକାର ।
କରେଣୁ ସମାଜେ ବନମଧ୍ୟରେ ଯେପରି
ଭ୍ରମମାଣ ମଦଲୋକ ଦୃଷ୍ଟି ମହାକରୀ ।
ତା ମଧ୍ୟେ କି ଗିରିସୁତା ନ ପାରିଲା ଜାଣି
କାହିଁକିନା ଏ ସଂସାରେ ଚାରିଜଣ ପୁଣି ।
ଦେଖି ନ ପାରନ୍ତି ତାହା କହୁଛି ବୁଝାଇ
ଯେ ଜନ୍ମାନ୍ଧ ସେହି କିଛି ଦେଖି ନ ପାରଇ ।
ରାଗାନ୍ଧ ମଦାନ୍ଧ ଆଉ ଲୋଭାନ୍ଧ ଏ ତିନି
କିଛି ଦେଖି ନ ପାରନ୍ତି ଆହେ ମହାମୁନି ।
ସେହି ଶତରୂପା ଦେବୀ ବର ଶସ୍ତ୍ରାଘାତେ
ପଡ଼ନ୍ତେ ଭୂତଳେ ଦୈତ୍ୟ ଦେଖି ଅନ୍ତର୍ହିତେ ।
ସେ ସ୍ଥାନୁ ଗମନ କଲେ ଗିରିନ୍ଦ୍ରନନ୍ଦିନୀ
ଦେଖି ଦୈତ୍ୟେଦାନବେ ଯେ ଅସ୍ତ୍ରଶସ୍ତ୍ର ଘେନି ।
ଯୁଝିବାକୁ ଧାଇଁଗଲେ ଘୋରନାଦ କରି
ଗଣପତି ଓଗାଳିଲେ ବଜ୍ରଧାରୀ ପରି ।

ମୟସହ ଦାନବଙ୍କୁ ରଣେ କଲେ ଭୟ
ପଳାଇଲେ ଦୈତ୍ୟଗଣ ପାଇ ମହାଭୟ ।
ଅମ୍ବିକାର ସନ୍ନିଧିରେ ମିଳି ଗଣେଶ୍ୱର
ପବିତ୍ର ଚରଣ ଯୁଗ ବନ୍ଦିଲେ ତାଙ୍କର ।
ଆପଣା ମୂର୍ତ୍ତିକି ଦେବୀ କହିଲେ ଏସନ
ଇଚ୍ଛା ଅନୁସାରେ ତୁମ୍ଭେ କର ଲୋ ଗମନ ।
ମାନବେ ତୁମ୍ଭର ପୂଜା କରିବେ ଭକ୍ତିରେ
ବିହାର କରିବ ତୁମ୍ଭେ ବନ ଉଦ୍ୟାନରେ ।
ତୁମ୍ଭେ ଲୋ ବିଗତଜ୍ୱର ହୋଇଥାଅ ନିତ୍ୟ
ଦେବୀଗଣ ଯଥାକ୍ରମେ କରି ପ୍ରଣିପାତ ।
ଇଚ୍ଛା ଅନୁସାରେ ଦିଗେ ଦିଗେ ଚଳିଗଲେ
ଭକ୍ତିରେ କିନ୍ନରଗଣ ତାଙ୍କୁ ସ୍ତବ କଲେ ।
ଅନ୍ଧକ ଚେତନା ପାଇ ଚାହେଁ ଏଣେ ତେଣେ
ପରାଜିତ ହୋଇଛନ୍ତି ନିଜ ସେନାଗଣେ ।
ଅଦ୍ରିନନ୍ଦିନୀଙ୍କି ଖୋଜି ନ ପାଇଲା ତହିଁ
ରହିଲା ପାତାଳେ ଯାଇ କାମାସକ୍ତ ହୋଇ ।
ଦିବସେ ଆହାର ରାତ୍ରେ ନିଦ୍ରା ନାହିଁ ତାର
ଗୌରୀ ଧ୍ୟାନ ଧାରଣାରେ ଥାଇ ନିରନ୍ତର ।
=✢=

## ବ୍ରହ୍ମ ସନତକୁମାର ସମ୍ବାଦ ଓ ମୁର ଦିଗ୍‌ବିଜୟ

ନାରଦ କହିଲେ କାହିଁ ଯାଇଥିଲେ ହର
ଅନୁଗ୍ରହ କରି କହ ଆଗରେ ମୋହର ।
ପୁଲସ୍ତ୍ୟ କହିଲେ ଶିବ ସହସ୍ର ବରଷ
ମହାମୋହେଥିବାରୁ ଯେ ବୀର୍ଯ୍ୟ ହେଲା ନାଶ ।
ଆପଣାକୁ ତେଜୋହୀନ ଦେଖିଣ ଶଙ୍କର
ସଂକଳପ କଲେ ତପ କରିବି ଏଥର ।
ଅମ୍ବିକାଙ୍କୁ ଆଶ୍ୱାସନା କରି ରଖି ତହିଁ
ନନ୍ଦୀକି ରକ୍ଷକ ରୂପେ ସ୍ଥାପି ଉମାସାଇଁ ।
ଗ୍ରୀବାଦେଶେ ମହାମୁଦ୍ରା କଲେକ ଅର୍ପଣ
କର୍ଣ୍ଣେ କଲେ ମହାସର୍ପ କୁଣ୍ଡଳ ଧାରଣ ।
କଟୀଦେଶେ ମହାଶଙ୍ଖ ମେଖଳା ପିନ୍ଧିଲେ
ଦକ୍ଷିଣ ହସ୍ତରେ ନେଇ କପାଳ ରଖିଲେ ।
ବାମକରେ କମଣ୍ଡଳୁ ଧଇଲେ ଯତନେ
ବୃକ୍ଷ ଗିରିସାନୁ ନୀଦକୂଳେ ଦିନେ ଦିନେ ।
ଆଶ୍ରୟ ହୋଇଲା ତିନି ଭୁବନ ତାଙ୍କର
ମୂଳ ଜଳବାୟୁ ହେଲା ତାହାଙ୍କ ଆହାର ।

କ୍ରମେ ନବଶତ ବର୍ଷ ଗଲା ଏହିପରି
ହିମାଳୟ ଗିରି ପୃଷ୍ଠେ ଶିଳାର ଉପରି ।
ମୁଖମଧ୍ୟେ ବୀଟାଳଦି କଲେ ଶ୍ୱାସ ରୋଧ
କପାଳ ବିଦାରି ବୀଟା ଦେଇ ଜଟାମଧ୍ୟ ।
ଧରାରେ ପଡ଼ିଲା ପ୍ରଭାଜ୍ୱାଳାକୁ ବିସ୍ତାରି
ସମତଳ ଭୂମି ହେଲା ଭାଙ୍ଗି ଯାଇ ଗିରି ।
କେଦାର ନାମରେ ହେଲା ସେ ତୀର୍ଥ ପ୍ରଧାନ
ବୃଷଧ୍ୱଜ ହର ତାକୁ କଲେ ବର ଦାନ ।
ତୋର ଜଳ ହେଉ ପାପ ବିନାଶନକାରୀ
ମୋକ୍ଷପ୍ରଦ ପୁଣ୍ୟମୟ ହେଉ ତୋର ବାରି ।
ମଧୁମାଂସ ବିବର୍ଜିତ ସଂଯତ ଯେ ହୋଇ
ବ୍ରହ୍ମଚାରୀବ୍ରତେ ରହ ତୋର ଜଳ ପିଇ ।
ଛଅମାସ ପରପାକେ ନ କରେ ଆହାର
ଲିଙ୍ଗ ରୂପେ ବିରାଜିତ ହୃତ୍ପଦ୍ମେ ତାହାର ।
ପାପେ ରତନ ହୋଇବ କଦାପି ସେ ଜନ
ଶ୍ରାଦ୍ଧରେ ଅକ୍ଷୟ ହେବେ ତାର ପିତୃଗଣ ।
ଏଥେଁ ମଲେ ତାର ଜନ୍ମ ନ ହେବ ସଂସାରେ
ସ୍ନାନ ଦାନ ତପ ଜପ ହୋମ ଏ ତୀର୍ଥରେ ।
କଲେ ଯେ ଅକ୍ଷୟ ଫଳ ଲାଭ ହେବ ତାର
ମହାଦେବ ନିକଟରୁ ପାଇ ଏହି ବର ।
ସେ କେଦାର ତୀର୍ଥ କଲା ଲୋକଙ୍କୁ ପବିତ୍ର
କେଦାରକୁ ବର ଦେଇ ସତ୍ୱର ତ୍ରିନେତ୍ର ।
ସର୍ବପାପ ବିନାଶନୀ ଭାସ୍କରନନ୍ଦିନୀ
ଯାର ନାମ ଯମୁନା ଯେ ଯମର ଭଗିନୀ ।
ତହିଁ ଅବତରି ମଗ୍ନ ଗଭୀର ସଲୀଳେ
ଦ୍ରୁପଦା ଗାୟତ୍ରୀ ଜପ କଲେ ରହି ଜଳେ ।
ଆହେ କଳିପ୍ରିୟ ମୁନି ଏ ରୂପେ ଶଙ୍କରେ
ଅନ୍ତର୍ଜଳେ ମଗ୍ନ ହେଲେ ସାର୍ଦ୍ଧ ସମ୍ବତ୍ସରେ ।
କମ୍ପିଲା ସାଗର ସହ ସକଳ ଭୁବନ
ତାରକା ନକ୍ଷତ୍ର ହେଲେ ଭୂମିରେ ପତନ ।
ଇନ୍ଦ୍ର ଆଦି ଦେବଙ୍କର ଆସନ ଟଳିଲା
ଋଷିଙ୍କର ହୃଦୟରେ ଭୟ ଜାତ ହେଲା ।
ଲୋକଙ୍କ ମଙ୍ଗଳପାଇଁ କଲେ ବସି ଜପ
ଭୟ କଲେ ଦେବଗଣେ ଦେଖି ଭୂମିକମ୍ପ ।
ବ୍ରହ୍ମାଙ୍କୁ ପୁଚ୍ଛିଲେ ଯାଇ ଏଥିର କାରଣ
ସେ ବୋଇଲେ ନ ଜାଣଇ ଯାଅ ଦେବଗଣ ।

ବିଷ୍ଣୁଙ୍କୁ ପଚାରି ସେହି ଜାଣିଥିବେ ଅବା
ପଚାରିଲେ ଦେବଗଣ ଚାଲ ଏଥୁ ଯିବା ।
ମୁରାରିଙ୍କ ସଦନରେ ପ୍ରବେଶିଲେ ଯାଇଁ
ପଚ୍ଛେ ସର୍ବ ଦେବତାଏ ଆଗେ ସୁରସାଇଁ ।
ନାରଦ କହିଲେ ଋଷି କିଏ ଏ ମୁରାରି
ହେବ ଯକ୍ଷ କିନ୍ନର କି କହ ତପଚାରୀ ।
କି ବା ସେ ରାକ୍ଷସ ଦୈତ୍ୟ ଅଥବା ମାନବ
ପୁଲସ୍ତ୍ୟ କହିଲେ ଶୁଣ ଆତ୍ମଭୂ- ସମ୍ଭବ ।
ସତ୍ୱ ରଜ ତମୋ ଗୁଣମୟ ଯେ ନିର୍ଗୁଣ
ସର୍ବଗତ ସର୍ବବ୍ୟାପୀ ସେ ମଧୁସୂଦନ ।
ମୁରାରି ନାମରେ ଖ୍ୟାତ ମୁରକୁ ସଂହାରି
ନାରଦ କହିଲେ ମୁର କିଏ ତପଚାରୀ ।
କାହା ପୁତ୍ର କି ରୂପେ ସେ ମଲା ସଂଗ୍ରାମରେ
ବିସ୍ତାର କରି ଏକଥା କହ ମୋ ଆଗରେ ।
ପୁଲସ୍ତ୍ୟ କହିଲେ ଶୁଣ ବିଚିତ୍ର ଆଖ୍ୟାନ
ପୁଣ୍ୟ ସଞ୍ଚୟନାକାରୀ ପାପ ବିନାଶନ ।
କଶ୍ୟପର ପୁତ୍ର ମୁର ଦନୁଗର୍ଭୁଁ ଜାତ
ଦେଖିଲା ଅଛନ୍ତି ଅତିକଷ୍ଟେ ଦିତିସୁତ ।
ଦେଖିଲେ ମାରନ୍ତି ତାଙ୍କୁ ଅଦିତିର ସୁତେ
ଡରେ ତପ କଲା ବହୁ ବରଷ ପର୍ଯ୍ୟନ୍ତେ ।
ବ୍ରହ୍ମାଙ୍କର ଆରାଧନା କଲା ସେ ଅସୁର
ତାର ତପେ ସୁପ୍ରସନ୍ନ ହୋଇ ବେଦବର ।
ବୋଇଲେ ରେ ବସ ବର ମାଗିଘେନ ତୁହି
ମୁର ବୋଲେ ସଂଗ୍ରାମେ ମୁଁ ହୋଇବି ବିଜୟୀ ।
ଛୁଇଁବି ମୁଁ କରତଳେ ଯାହାର ଶରୀର
ଅମର ହେଲେ ସେ ଯିବ ଶମନମନ୍ଦିର ।
ହେଉ କହି ବ୍ରହ୍ମା ଗଲେ ଆପଣାର ପୁରେ
ମହାତେଜା ମହାବଳ ବ୍ରହ୍ମାଙ୍କର ବରେ ।
ସୁରଗିରି ଶିଖରରେ ମିଳିଲା ସେ ମୁର
ତହିଁ ଥିଲେ ଦେବ ଯକ୍ଷ ଗନ୍ଧର୍ବ କିନ୍ନର ।
ତାହାଙ୍କୁ ଡାକିଲା କର ମୋର ସଙ୍ଗେ ରଣ
ହେ ନାରଦ ଭୟ ପାଇ ଦେବ ଯକ୍ଷଗଣ ।
ତାହାକୁ ବିନୟ କରି କହିଲେ ବହୁତ
ଯୁଝିବାକୁ ତୋର ସଙ୍ଗେ ନୋହିବୁ ସମର୍ଥ ।
ଅମରାବତୀକି କ୍ରୋଧେ ଗଲା ତହୁଁ ମୁର
ଇନ୍ଦ୍ରକୁ କହିଲା ଯୁଦ୍ଧ କର ପୁରନ୍ଦର ।
ଭୟ କଲେ ଅସୁରକୁ ସହସ୍ର ଲୋଚନ
କର ପ୍ରସାରିଣ କଲା ପୁରକୁ ଗମନ ।
କେହୁ ତାକୁ ନିବାରଣ କରି ନ ପାରିଲେ
ଶତ୍ରୁପୁରେ ମିଳି ସହସ୍ରାକ୍ଷକୁ ସେ ବୋଲେ ।
ମୋ ସଙ୍ଗେ ସମର କର ଆହେ ବୃତ୍ରହନ
ନୋହିଲେ ତୁ ତ୍ୟାଗକର ଏ ସ୍ୱର୍ଗଭୁବନ ।
ସ୍ୱର୍ଗ ତେଜି ଇନ୍ଦ୍ର ଯାଇ ରହିଲେ ଭୂତଳେ
ଐରାବତ ବଜ୍ର ମୁର ଘେନିଲାକ ବଳେ ।
ଇନ୍ଦ୍ର ପୁତ୍ର କଳତ୍ରାଦି ଦେବଙ୍କ ସହିତ
କାଳିନ୍ଦୀ ଦକ୍ଷିଣ କୂଳେ ମିଳିଲେ ତ୍ୱରିତ ।
ପୁରେକ ନିର୍ମାଣି ତହିଁ ରହିଲେ ବାସବ
ଘର କରି ରହିଲେକ ତହିଁ ପୂର୍ବଦେବ ।
ସ୍ୱର୍ଗପୁରେ ରହି ସୁଖଭୋଗ କଲା ମୁର
ମୟ ଆଦି ଯେତେ ଯେତେ ଦାନବ ଅସୁର ।
ମୁର ଆଶ୍ରା ନେଇ କଲେ ସ୍ୱର୍ଗ ସୁଖଭୋଗ
ସୁକୃତୀ ଜନର ଯଥା ନାହିଁ ଶୋକ ରୋଗ ।
ଦିନେ ମହାସୁର ମୁର ମିଳିଲା ଭୂତଳେ
କୁଞ୍ଜର ଆରୋହି ଏକା ସରଯୂର କୂଳେ ।
ଦେଖିଲା ସେ ସୂର୍ଯ୍ୟବଂଶ ବୀର ରଘୁରାଜା
ଯଜ୍ଞରେ ଦୀକ୍ଷିତ ହୋଇକରେ ଦେବପୂଜା ।
ମୁର ଯାଇ କହେ କର ମୋ ସଙ୍ଗେ ସମର
ନୋହିଲେ ତୁ ଯଜ୍ଞ ଦେବପୂଜା ତ୍ୟାଗକର ।
ମହାତେଜା ମହାବୁଦ୍ଧି ତପସ୍ୱୀପ୍ରଧାନ
ବଶିଷ୍ଠ ଋଷି ଯେ ମିତ୍ରାବରୁଣ ନନ୍ଦନ ।
ଦୈତ୍ୟ ନିକଟକୁ ଯାଇବୋଇଲେ ହେ ମୁର
ତୋହର ମାନବଗଣ ଭକ୍ଷ ନିରନ୍ତର ।
ତାହାଙ୍କୁ ଜିଣିଲେ ତୋର ହୋଇବ କି ଯଶ
ଯେ ଅଜେୟ ବୀର ତାଙ୍କୁ କର ଯାଇ ନାଶ ।
ଯଦି ଯୁଦ୍ଧ କରିବାକୁ ଇଚ୍ଛାଅଛି ତୋର
ମହାବୀର ଯମ ସଙ୍ଗେ ସମର ତୁ କର ।
ନ କରିବ କଦାପି ସେ ତୋ କଥା ପାଳନ
ତାଙ୍କୁ ଜୟ କଲେ ଜାଣ ଅସୁର ରାଜନ ।
ସଂସାର ତୋ କରଗତ ହେଲାଟି ନିଶ୍ଚୟ
ମୁନିର ବଚନ ଶୁଣି ଦନୁର ତନୟ ।
ତତକ୍ଷଣେ ଯାଇ ଯମଭୁବନେ ମିଳିଲା
ତାହା ଜାଣିପାରି ଯମ ମହିଷ ଚଢ଼ିଲା ।

କେଶବଙ୍କ ନିକଟରେ ମିଳିଲାକ ଯାଇଁ
ନମସ୍କାର କରି ସବୁ କହିଲା ବୁଝାଇ ।
ଶ୍ରୀହରି ବୋଇଲେ ବେଗେ ଯାଇ ହୋ ଶମନ
ଦୈତ୍ୟକୁ ପଠାଇ ଦିଅ ମୋର ସନ୍ନିଧାନ ।
ଧର୍ମରାଜ ବାସୁଦେବ ବଚନାନୁସାରେ
ତ୍ୱରାନ୍ୱିତ ହୋଇ ଆସେ ଏହି ଅବସରେ ।
ମୁର ତାର ନଗରୀକୁ କଲା ଆଗମନ
ଶମନ କହିଲେ ତାକୁ ହେ ମୁର ଚ ଜନ ।
ଯେଉଁ ଆଜ୍ଞା ଦେବ ତାହା କରିବି ଅବଶ୍ୟ
ଅସୁର କହିଲା ମୋର ଏହି ଅଭିଳାଷ ।
ପ୍ରାଣିଗଣ ସଂଯମନ କରୁଅଛୁ ତୁହି
ଆଜିଠାରୁ ନ କରିବୁ ମୋର ଆଜ୍ଞା ଏହି ।
ଏହା ତୁ ନ କଲେ ତୋର ଛେଦିବଇଁ ଶିର
ଧର୍ମରାଜ କହିଲେ ହେ ଶୁଣ ମହାବୀର ।
ତୁହି ଯେବେ ମୋତେ ରକ୍ଷା କରିପାରୁ ନିତ୍ୟ
ତେବେ ତୋର କଥା ରକ୍ଷା କରିବଇଁ ସତ୍ୟ ।
ଅସୁର କହିଲା କହ ତୋଠାରୁ କେ ବଡ଼
ତାର ମୁଣ୍ଡ ଛିଣ୍ଡାଇବି ମାରିଣ ଚାପୋଡ଼ ।
ଶମନ କହିଲେ ସେହି ଶ୍ୱେତଦ୍ୱୀପବାସୀ
ଶଙ୍ଖ ଚକ୍ର ଗଦା ପଦ୍ମଧାରୀ ଅବିନାଶୀ ।
ତାହାର ଆଜ୍ଞାରେ ମୁହିଁ କରେ ସଂଯମନ
ତେଣୁ ତାକୁ ଭଜନ କରେ ଅସୁର ରାଜନ ।
ତା ଭୟରୁ ଯେବେ ରକ୍ଷା କରିବୁ ତୁ ମୋତେ
ତୋର ଆଜ୍ଞାକ ରୀ ହୋଇ ଥିବି ମୁହିଁ ନିତ୍ୟେ ।
ଦାନବ ଶାର୍ଦ୍ଦୂଳ ମୁର କହିଲା ଯମକୁ
କାହିଁ ତାର ଘର କହ ମାରିବି ମୁଁ ତାକୁ ।
ଶମନ ବୋଇଲେ ଘର କ୍ଷୀରୋଦ ସାଗରେ
ଲୋକନାଥ ଜଗନ୍ମୟ ବିଷ୍ଣୁ ସେଠାବରେ ।
ନିର୍ଭୟେ ରହିଛି ନାହିଁ କାହକୁ ଯେ ଡର
ମୁର ବୋଲେ ଯାଉଛି ମୁଁ ଘରକୁ ତାହାର ।
ତା ମସ୍ତକ ଛେଦି ମୁହିଁ ଆସିବା ପର୍ଯ୍ୟନ୍ତ
ଧର୍ମବନ୍ତ ମାନବଦ୍ୱିଜ ନ କରିବୁ ହତ ।
ଏହା କହି ପଶିଲା ଯେ କ୍ଷୀରୋଦ ସାଗରେ
ଘତୁର୍ମୂର୍ତ୍ତି ଜନାର୍ଦ୍ଦନ ବିଷ୍ଣୁ ଯେଉଁଠାରେ ।
କରିଛନ୍ତି ମହାଶେଷ ପର୍ଯ୍ୟଙ୍କେ ଶୟନେ
ନାରଦ ବୋଇଲେ ପୁଣି କହ ତପୋଧନ ।
ବିଷ୍ଣୁ ଯେ ଅଟନ୍ତି ଏକ ତାହାଙ୍କୁ କିପାଇଁ
ଚତୁର୍ମୂର୍ତ୍ତି ବୋଲୁଛନ୍ତି କହନ୍ତୁ ବୁଝାଇ ।
ଅବ୍ୟକ୍ତ ସର୍ବଜ୍ଞ ସେହି ପ୍ରଭୁ ଜନାର୍ଦ୍ଦନ
କିରୂପେ ସେ ଚତୁର୍ମୂର୍ତ୍ତି ହେଲେ ତପୋଧନ ।
ପୁଲସ୍ତ୍ୟ କହିଲେ ଶୁଣ ଆହେ ମହାତ୍ମନ
ସର୍ବଜ୍ଞ ଅବ୍ୟକ୍ତ ଜଗନ୍ନାଥ ଜନାର୍ଦ୍ଦନ ।
ଏକ ହୋଇ ଯେମନ୍ତ ସେ ବୋଲେ ଚତୁର୍ମୂର୍ତ୍ତି
କହୁଅଛି ଶୁଣତାହା ଆହେମହାଯତି ।
ଅଟଇ ପରମ ପଦ ବାସୁଦେବ ନାମ
ଅନିର୍ଦ୍ଦେଶ ବପୁ ସେହି ଶାନ୍ତଗୁଣ ଧାମ ।
ଅପ୍ରତର୍କ୍ୟ ଶୁକ୍ଳ ଆଉ ଦ୍ୱାଦଶ ପତ୍ରକ
ଏହା ହିଁ ବୋଲନ୍ତି ପୁଣି କେତେ ଜ୍ଞାନୀ ଲୋକ ।
ଏହା ଶୁଣି ପୁନରପି ନାରଦ କହିଲେ
ଶୁକ୍ଳ ଶାନ୍ତ ଆନନ୍ଦିତ କିରୂପେ ହୋଇଲେ ।
କିରୂପେ ଦ୍ୱାଦଶପତ୍ର ହୋଇଲା ବାହାର
କେମନ୍ତେ ସେ ଅପ୍ରତର୍କ୍ୟ ହେଲେ ମୁନିବର ।
ପୁଲସ୍ତ୍ୟ କହିଲେ ଏହି ଗୋପନୀୟ କଥା
ଯେଉଁପରି କହିଥିଲେ ପୂର୍ବେ ଚଉମଥା ।
ଶୁଣିଥିଲେ ମହାମୁନି ସନତକୁମାର
ତାଙ୍କ ମୁଖୁଁ ଶୁଣିଥିଲି ମୁହିଁ ଯେ ପ୍ରକାର ।
ତାହା ମୁଁ କହୁଛି ଶୁଣ ହେ ନାରଦ ମୁନି
ନାରଦ କହିଲେ ପୁନରପି ତାହା ଶୁଣି ।
ସନତକୁମାର କିଏ କହନ୍ତୁ ଯେ ମୋତେ
ବ୍ରହ୍ମା ସ୍ୱୟଂ କହିଥିଲେ ଯାହାର ଅଗ୍ରତେ ।
ଆପଣଙ୍କ ଆଗେ ତାହା କଲେ ସେ କୀର୍ତ୍ତନ
ବୁଝାଇ ଏ ସବୁକଥା କହ ତପୋଧନ ।
ପୁଲସ୍ତ୍ୟ କହିଲେ ଶୁଣ ହେ ମୁନି ଗୋସାଇଁ
ଧର୍ମର ଭାରିଯା ନାମ ଅହିଂସ ଅଟଇ ।
ତାହାର ଗର୍ଭରୁ ଚାରିପୁତ୍ର ହେଲେ ଜାତ
ହେ ମୁନି ସାର୍ଦ୍ଦୂଳ ଏବେ ଯୋଗଶାସ୍ତ୍ରେ ରତ ।
ଏ ଚାରିଙ୍କ ମଧ୍ୟେ ଜ୍ୟେଷ୍ଠ ସନତକୁମାର
ସନାତନ ନାମ ଅଟେ ଦ୍ୱିତୀୟ ପୁତ୍ରର ।
ସନକ ଅଟଇ ତାର ତୃତୀୟ ନନ୍ଦନ
ଚତୁର୍ଥପୁତ୍ରର ନାମ ଅଟେ ସନନ୍ଦନ ।
ସାଂଖ୍ୟ ଯୋଗୀ ତପୋନିଧି ଅଟନ୍ତି କପିଳ
ଏ କାରଣୁ ଶ୍ରେଷ୍ଠ ତାଙ୍କୁ ବୋଲନ୍ତି ସକଳ ।

ସନତ କୁମାର ଜ୍ୟେଷ୍ଠ ହେଲେ ହେଁ ଆସନ
ଆଦରେ ସେ କନିଷ୍ଠଙ୍କୁ କରିଣ ପ୍ରଦାନ ।
ମୌନଗୁହ୍ୟ ମହାଯୋଗ ଉପଦେଶ ଦେଇ
ବ୍ରହ୍ମା ସମୀପକୁ ଗଲେ ଯୋଗଶିକ୍ଷା ପାଇଁ ।
ଯୋଗଜ୍ଞାନ ପଚାରନ୍ତେ ତାଙ୍କୁ ପ୍ରଜାପତି
କହିଲେ ହେ ଧର୍ମସୁତ ମୋ କଥା ସଂପ୍ରତି ।
ଯଦ୍ୟପି କହିବ ତେବେ ଦେବି ଉପଦେଶ
ଯେଣୁ ସାଂଖ୍ୟଶାସ୍ତ୍ରେ ଶ୍ରମ କରିଛ ବିଶେଷ ।
ଏହା ଶୁଣି କହିଲେ ସେ ସନତକୁମାର
ହେ ଦେବେଶ ମୁହିଁ ପୁତ୍ର ଅଟଇ ତୁମ୍ଭର ।
ଆହେ ବିଭୋ ଯେଣୁ ହେଲି ଆପଣଙ୍କ ଶିଷ୍ୟ
ଶିଷ୍ୟ ପୁତ୍ର ମଧ୍ୟେ କିଛି ନାହିଁ ତ ବିଶେଷ ।
ପଦ୍ମଯୋନି କହିଲେ ରେ ଧର୍ମ ସୁତ ଶୁଣ
ପୁନ୍ନାମ ନରକୁ ପୁତ୍ର କରେ ପରିତ୍ରାଣ ।
ସେ କାରଣୁ ତାର ନାମ ହୋଇ ଅଛି ପୁତ୍ର
ଶେଷ ପାପ ହରିବାର ଶିଷ୍ୟ ନାମେ ଖ୍ୟାତ ।
ଏ ରୂପେ ବୈଦିକ ଶ୍ରୁତି ଆସୁଅଛି ବଳି
ଶିଷ୍ୟ ପୁତ୍ର ଶବ୍ଦ ଅର୍ଥ ଭେଦ ଏହି ଭଳି ।
ଏହା ଶୁଣି ବୋଇଲେକ ସନତକୁମାର
ପୁତ୍ର ନାମ ନରକ ଯେ କହ କି ପ୍ରକାର ।
ଆହେ ଦେବ ଶେଷ ପାପ କାହାକୁ କହଇ
ବ୍ରହ୍ମା କହିଲେ ତୁ ଶୁଣ ସାବଧାନ ହୋଇ ।
କହୁଅଛି ଏ ଆଖ୍ୟାନ ପରମ ପ୍ରାଚୀନ
ପରମ ପବିତ୍ର ଉଗ୍ର ଭୟ ନିସୂଦନ ।
ସନତକୁମାର ପଦ୍ମଯୋନି ପଦ୍ମପାଦେ
ଦ୍ୱିଜ ଗୋପୀନାଥ ଚିତ୍ତ ରହୁ ଅପ୍ରମାଦେ ।

= + =

## ପୁନ୍ନାମ ନରକ ବର୍ଣ୍ଣନ ଓ ମୁରଦୈତ୍ୟ ବଧ

ଏଥୁଅନ୍ତେ କହୁଛନ୍ତି କମଳ ଆସନ
ପରଦାର ଗମନ ଯେ ପାପିର ସେବନ ।
ଆବର ଯେ ପୁରୁଷତା ଜାଣ ଏହି ତିନି
ପ୍ରଥମ ନରକ ଏହି ପ୍ରାଣିଙ୍କର ମୁନି ।
ଚୌର୍ଯ୍ୟ ବୃଥା ପର୍ଯ୍ୟଟନ ବୃକ୍ଷର ଛେଦନ
ଦ୍ୱିତୀୟ ନରକ ନାମେ ଏ ତିନି ବର୍ଣ୍ଣନ ।
ବର୍ଜ୍ୟ ଦ୍ରବ୍ୟ ପରିଗ୍ରହ ଅବଧ୍ୟର ବଧ
ବନ୍ଧୁ ଆଉ ବାନ୍ଧବଙ୍କ ସହିତ ବିବାଦ ।
ତୃତୀୟ ନରକ ଜାଣ ଏହାକୁ କହନ୍ତି
ଚତୁର୍ଥ ନରକ ନାମ ଶୁଣ ମହାମତି ।
ଶିବ ଅଇଶ୍ୱର୍ଯ୍ୟ ନାଶ ସ୍ୱଧର୍ମ ବିନାଶ
ଶିବ ସଦ୍ଭେ ଭୟ ଜାତ କରେ ଯେ ବିଶେଷ ।
ମିତ୍ରଠାରେ କୁଟିଳତା ଆବର ମାରଣ
ଲୁଚାଇ ଏକାକୀ କରେ ମିଷ୍ଟାନ୍ନ ଭକ୍ଷଣ ।
ମିଥ୍ୟା କଥନ ଏ ସବୁ ପଞ୍ଚମ ନରକ
କହୁଅଛୁ - ଶୁଣ ଏବେ ଯେ ଷଷ୍ଠ ନରକ ।
ଫଳ ଚୋରୀ ଫୁଲ ଚୋରୀ ଆବର ଯମନ
ଯାନ ଯୁଗ୍ମ ହରଣ ଯେ ଯୋଗ ବିନାଶନ ।
ଏମାନଙ୍କ ନାମ ଷଷ୍ଠ ନରକ ଅଟଇ
ମୋହ ବଶେ ରାଜଭୋଗ ଯେ ଜନ ହରଇ ।
ରାଜପତ୍ନୀ ହରଣ ଯେ ରାଜାର ଅହିତ
ସପ୍ତମ ନରକ ନାମ ଏ ସବୁ କଥିତ ।
ଲୁବ୍ଧ ଲୋଲୁପିତ ଲବ୍ଧ ଧର୍ମାର୍ଥ ନାଶନ
ଅଷ୍ଟମ ନରକ ନାମେ କଥିତ ଏମାନ ।
ବିପ୍ର ଚୋରୀ ବିପ୍ରନିନ୍ଦା ବନ୍ଧୁରେ ବିରୋଧ
ନବମ ନରକ ବୋଲି କହନ୍ତି ବିବୁଧ ।
ଦଶମ ନରକ ଅଟେ ଶିଷ୍ଟାଚାର ନାଶ
ଶାସ୍ତ୍ର ଧର୍ମ ଚୋରୀ ଶିଶୁହତ୍ୟା ଶିଷ୍ଟ ଦ୍ୱେଷ ।
ଷଡଗୁଣ ପ୍ରତିଷେଧ ଷଡ଼ଙ୍ଗ ନିଧନ
ଏକାଦଶ ନରକ ଏ ବୋଲନ୍ତି ସଜ୍ଜନ ।
ସାଧୁ ନିନ୍ଦା ଚୌର୍ଯ୍ୟ ବୃତ୍ତି ସଦା ଅନ୍ୟାଚାର
ପରିଚର୍ଯ୍ୟା ଅସତ୍‌କ୍ରିୟା ତ୍ୟାଗ ସଂସ୍କାରର ।
ଏହାକୁ କହନ୍ତି ନରେ ନରକ ଦ୍ୱାଦଶ
ଧର୍ମ ଅର୍ଥ କାମ ହାନି ଅପବର୍ଗ ନାଶ ।
ଏହା ନାମ ତ୍ରୟୋଦଶ ନରକ ଅଟଇ
ଚତୁର୍ଦ୍ଦଶ ନରକର ନାମ ଦେବା କହି ।
ଧର୍ମର ଯେ ହାନି ତ୍ୟାଗ ଅନଳ ପ୍ରୟୋଗ
ଅତି ନିନ୍ଦନୀୟ ଏହି ନରକର ଭୋଗ ।
ଅଜ୍ଞାନ ଅସୂୟା ପୁଣି ଅଶୌଚ ଅସତ୍ୟ
ଏହି ପଞ୍ଚାଦଶ ନର୍କ ନାମରେ କଥିତ ।
ଆତତାୟି ଆଳସ୍ୟ ଯେ ଗୃହଦାହ କ୍ରୋଧ
ଷୋଡ଼ଶ ନରକ ବୋଲି କହିଛନ୍ତି ବୁଧ ।
ପରଦାର ଈର୍ଷାଭାବ ଔଦ୍ଧତ୍ୟ ଆବର
ନରକର ହେତୁ ଏହି ଜାଣ ମୁନିବର ।

ଏହିସବୁ ପାପେ ମଗ୍ନ ହୁଅନ୍ତି ପୁରୁଷେ
ପୁତ୍ର ଜାତକଲେ ତାଙ୍କୁ ଜଗନ୍ନାଥ ତୋଷେ ।
ପୁନ୍ନାମ ନରକଭୋଗୁ କରନ୍ତି ରକ୍ଷଣ
ଏଣୁ ପୁତ୍ରନାମ ତାର ହେ ଧର୍ମନନ୍ଦନ ।
ଶେଷ ପାପ ଲକ୍ଷଣ ତୁ ଶୁଣ ମନଦେଇ
ଦେବରଷି ଭୂତନର ପିତୃଙ୍କୁ ଯା ଦେଇ ।
ସେ ଦ୍ରବ୍ୟରେ ଲୋଭ ଆଉ ଲିପ୍ସା ପରଧନେ
ଆବର ଏକତା ଯେବେ କରି ସର୍ବ ବର୍ଣ୍ଣେ ।
ଓଁକାରୁ ନିବୃତ୍ତି ପାପକାରିର ସ୍ମରଣ
ଗୁରୁଜନ ନିନ୍ଦା ପୁଣି ଅଗମ୍ୟଗମନ ।
ଚାଣ୍ଡାଳାଦି ପରିଗ୍ରହ ଘୃତାଦି ବିକ୍ରୟ
ଯାହା କହିଲେଟି ହୁଏ ଅଧର୍ମ ସଞ୍ଚୟ ।
ସ୍ୱଦୋଷ ଗୋପନ ପରଦୋଷ ପ୍ରକାଶନ
ମତ୍ସର ନିଷ୍ଠୁର କଟୁ ଦାରୁଣ ଏମାନ ।
ଏ ସମସ୍ତ ନରକର ହେତୁ ବୋଲି ଜାଣ
ଏଥୁକରି ପାରନ୍ତି ଯେ ହର ପରିତ୍ରାଣ ।
ତାହାଙ୍କ ସନ୍ତୋଷେ ହୋଏ ଶେଷପାପ ଜୟ
ଶେଷ ପାପ ଜୟେ ହୁଏ ଅନ୍ୟ ପାପ କ୍ଷୟ ।
ଶାରୀରିକ ବାଚନିକ ମାନସିକ କୃତ
ପିତୃ ମାତୃ କୃତ ପାପ ଭୃତ୍ୟ ଅନୁଷ୍ଠିତ ।
ବନ୍ଧୁକୃତ ପାପ ଇହଜନ୍ମ ପାପ ଯେତେ
ଶିଷ୍ୟ କଲେ କ୍ଷୟହୁଏ ଏ ହେତୁ ପଣ୍ଡିତେ ।
କରନ୍ତି ଯେ ପୁତ୍ର ଆଉ ଶିଷ୍ୟର ବିଧାନ
ଶିଷ୍ୟଠାରୁ ପୁତ୍ରଜାଣ ଅଟଇ ପ୍ରଧାନ ।
କହିଲେ ସେ ତପୋଧନ ସନତକୁମାର
ମୁଁ ତୁମ୍ଭର ଶିଷ୍ୟହେଲି ଆହେ ବେଦବର ।
କୃପାକରି ଯୋଗମୋତେ ଦିଅନ୍ତୁ ଶିଖାଇ
ପିତାମହ କହିଲେ ତୋ ପିତାମାତା ଦୁଇ ।
ଯେବେ ଆସି ତୋତେ ଦାନ କରିଦେବେ ମୋତେ
ତୁ ଦାୟାଦହେଲେ ଯୋଗ ଶିଖାଇବି ତୋତେ ।
ପୁନରପି ପଚାରିଲେ ସନତକୁମାର
ଦାୟାଦ ଶବ୍ଦର ଅର୍ଥ କହ ବେଦବର ।
ସହାସ୍ୟ ବଦନେ ବ୍ରହ୍ମାକହିଲେ ହେ ବତ୍ସ
କହେ ମନଦେଇ ଶୁଣ ପ୍ରଥମେ ଔରସ ।
ଦ୍ୱିତୀୟ କ୍ଷେତ୍ରଜ ଜାଣ ଦତ୍ତକ ତୃତୀୟ
କୃତ୍ରିମ ଯେ ଗୁଢ଼ୋତ୍ପନ୍ନ ଅପବିଧ ଛଅ ।

ଏମାନେ ଦାୟାଦ ନାମେ କଥିତ ସଂସାରେ
ଏହି ଷଡ଼ଗୋଟି ପୁତ୍ର ଯୋଗୁଁ ଜାଣ ନରେ ।
ଋଣୁ ମୁକ୍ତ ହୁଅନ୍ତି ଯେ ମଲେ ପିଣ୍ଡ ପାନ୍ତି
ଧନକ୍ରିୟା ଗୋତ୍ର ସାମ୍ୟ ପୁଣି କୁଳବୃତ୍ତି ।
ଶାଶ୍ୱତୀ ପ୍ରତିଷ୍ଠା ପୁଣି ହୁଏ ବ୍ୟବସ୍ଥିତ
ଏଥିରୁ ଭିନ୍ନ କାଳିନ ସହୋଢ଼ ଯେ କ୍ରୀତ ।
ପୌନର୍ଭବ ସ୍ୱୟଂଦତ୍ତ ପାରସବ ଏହି
ଛଅଗୋଟି ପୁତ୍ର ବୋଲି ଅଛନ୍ତିତ କହି ।
ଋଣ ପିଣ୍ଡାଦିରେ ଅଧିକାରୀ ଏ ନୁହନ୍ତି
ଗୋତ୍ରନାମଧାରୀ ମାତ୍ର ଏ ପୁତ୍ରେ ଅଟନ୍ତି ।
ପୁନରପି ବୋଇଲେ ସେ ସନତକୁମାର
ବୁଝାଇ ଦିଅନ୍ତୁ ଭଲରୂପେ ବେଦବର ।
ବ୍ରହ୍ମା କହିଲେରେ ବତ୍ସ କହୁଅଛି ଶୁଣ
ପୁତ୍ରଅଟେ ଆତ୍ମାର ଯେ ପ୍ରତିବିମ୍ବ ଜାଣ ।
ଆତ୍ମା ସ୍ୱଂୟ ପୁତ୍ରରୂପେ ହୁଅଇ ଉତ୍ପନ୍ନ
ଏହିଟି ଔରସପୁତ୍ର ହେ ଧର୍ମନନ୍ଦନ ।
ଉନ୍ମତ୍ତବ୍ୟସନୀ କ୍ଳୀବହୁଏ ଯେବେ ପତି
ତାହାର ଭାରିଯା ନେଇ ତାର ଅଣୁମତି ।
ଅପର ପୁରୁଷଠାରୁ ପୁତ୍ର ଉପୁଜାଇ
ସେହି ପୁତ୍ରଗୋଟି ଜାଣ କ୍ଷେତ୍ରଜ ବୋଲାଇ ।
ଯେ ପୁତ୍ରକୁ ମାତାପିତା କରନ୍ତି ପ୍ରଦାନ
ତା ନାମ ଦତ୍ତକପୁତ୍ର ଧର୍ମସୁତ ଜାଣ ।
ମିତ୍ରଦତ୍ତ ମିତ୍ରପୁତ୍ର କୃତ୍ତିମ ବୋଲାଇ
କାହାଠାରୁ ଗୃହେ ଜନ୍ମହେଲା ଜଣାନାହିଁ ।
ସେ ପୁତ୍ରକୁ ଗୂଢ଼ୋତ୍ପନ୍ନ ବୋଲନ୍ତି ସଂସାରେ
ବାହାରୁ ଆଣନ୍ତି ଯେଉଁ ପୁତ୍ରଟିକୁ ନରେ ।
ସେହି ଅପବିତ୍ର ପୁତ୍ର ହେ ଧର୍ମନନ୍ଦନ
କନ୍ୟାଗର୍ଭ ଜାତ ପୁତ୍ରନାମ ଯେ କାନୀନ ।
ସଗର୍ଭା ଉଢ଼ ପୁତ୍ରକୁ କହି ସହୋଢଜ
କିଣି ଆଣିବା ପୁତ୍ରର ନାମ କ୍ରୀତାତ୍ମଜ ।
ବିବାହିତା କନ୍ୟାକୁ ଯେ ଅନ୍ୟେକରେ ଦାନ
ପୌନର୍ଭବ ପୁତ୍ରେଜାଣ ସେ କନ୍ୟାନନ୍ଦନ ।
ଦୁର୍ଭିକ୍ଷ ବିପଦକାଳେ ଆସି ସ୍ୱଇଚ୍ଛାରେ
ସେ ଦତ୍ତପୁତ୍ର ଯେ ଆତ୍ମସମର୍ପଣ କରେ ।
ଶୁଦ୍ରାଗର୍ଭେ ବିପ୍ର ଯେଉଁ ପୁତ୍ର କରେ ଜାତ
ଆରେ ବତ୍ସ ତାରନାମ ପାରସବ ସୁତ ।

ଏଣୁ ଆତ୍ମସମର୍ପଣ କରି ନ ପାରିବୁ
ତୋର ପିତା ମାତାଙ୍କୁ ତୁ ଡାକିଆଣ ବାବୁ ।
ବ୍ରହ୍ମାର ବଚନେ ସେହି ସନତକୁମାର
ସୁମରଣା କଲେ ପିତା ମାତାଙ୍କୁ ତାଙ୍କର ।
ବ୍ରହ୍ମାଙ୍କୁ ଦେଖିବାପାଇଁ ଅଇଲେ ସେ ଦୁଇ
ନମସ୍କାର କରି ତାଙ୍କୁ ବୋଇଲେ ଗୋସାଇଁ ।
ଆମ୍ଭେ ଦୁହେଁ କି କରିବୁ ବେଗେ ଆଜ୍ଞାକର
ସେ ଦୁହିଁଙ୍କୁ ବୋଇଲେ ସେ ସନତକୁମାର ।
ବ୍ରହ୍ମାଙ୍କୁ ବୋଇଲେ ଯୋଗମାର୍ଗ ଶିଖା ମୋତେ
ସେ ବୋଇଲେ ତୋର ପିତାମାତା ମୋର ହାତେ ।
ପୁତ୍ରରୂପେ ସମର୍ପଣ କଲେ ଶିଖାଇବି
ପୁତ୍ର ବାକ୍ୟେ ଦୁହେଁ କିଛି ମନରେ ନ ଭାବି ।
ବ୍ରହ୍ମାଙ୍କୁ କହିଲେ ଏହି ସନତ କୁମାର
ଆଜିଠାରୁ ଜାଣ ପୁତ୍ର ହୋଇଲା ତୁମ୍ଭର ।
ଏହା କହି ଦୁହେଁ ଗଲେ ଆପଣା ଭବନେ
ସେ ସନତ କୁମାରକୁ ବ୍ରହ୍ମା ଶୁଭଦିନେ ।
ଦ୍ୱାଦଶ ପତ୍ରକ ଯୋଗମାର୍ଗ ଦେଲେ କହି
ଓଁ କାରର ଘରଶିଖା ସ୍ଥାନଟି ଅଟଇ ।
ସେହି ଓଁକାରର ଶିରେ ରହିଥାଇ ମେଷ
ଏହାର ପ୍ରଥମପୁତ୍ର ବଇଶାଖ ମାସ ।
ମୁଖଟି ଅଟଇ ଜାଣ ନକାରର ଘର
ସେ ବଦନେ ବୃଷ ରହିଥାଇ ନିରନ୍ତର ।
ତାହାର ଦ୍ୱିତୀୟପୁତ୍ର ଅଟେ ଜ୍ୟେଷ୍ଠମାସ
ଭୁଜଦ୍ୱୟେ ମୋକାର ଯେ କରିଥାଏ ବାସ ।
ମିଥୁନ ସେ ଭୁଜ ଦ୍ୱୟେ ନିତ୍ୟ ରହିଥାଇ
ଆଷାଢ଼ ତୃତୀୟପୁତ୍ର ତାହାର ଅଟଇ ।
ନେତ୍ର ଦୁଇ ଅଟଇ ଯେ ଭକାରର ଘର
କକଟକ ରହିଥାଇ ତାର ନିରନ୍ତର ।
ତାହାର ଚତୁର୍ଥପୁତ୍ର ମାସ ଯେ ଶ୍ରାବଣ
ହୃଦୟଟି ସକାରର ଘର ବୋଲି ଜାଣ ।
ସିଂହ ସେହି ହୃଦୟରେ ସର୍ବଦାହିଁ ଥାଇ
ତା ପଞ୍ଚମପୁତ୍ର ଭାଦ୍ରମାସ ଯେ ଅଟଇ ।
କବଚ ଅଟଇ ଜାଣ ବକାରର ଘର
ବୃଶ୍ଚିକ ସେ କବଚରେ ଥାଇ ନିରନ୍ତର ।
ତାହାର ଅଷ୍ଟମପୁତ୍ର ମାର୍ଗଶିର ମାସ
ତକାର ଜଘନ ସ୍ଥାନେ କରିଥାଇ ବାସ ।
ସେ ଜଘନେ ରହିଥାଇ ସଦା ଧନୁର୍ଦ୍ଧର
ଅଟଇ ନବମପୁତ୍ର ପୌଷମାସ ତାର ।
ପାଦ ଦ୍ୱୟ ଦେକାରର ଅଟେ ବାସସ୍ଥାନ
ତିମିର ସେ ପାଦଦ୍ୱୟେ କରି ଅଧିଷ୍ଠାନ ।
ତାହାର ଦଶମପୁତ୍ର ଅଟେ ମାଘମାସ
ଜାନୁଦ୍ୱୟ ଅଟଇ ଯେ ବାକାରର ବାସ ।
ସର୍ବଦା ସେ ଜାନୁଦ୍ୱୟ କୁମ୍ଭ ରହିଥାଇ
ଏକାଦଶ ପୁତ୍ର ତାର ଫାଲଗୁନ ଅଟଇ ।
ପାଦଦ୍ୱୟ ଅଟଇ ଯେ ଯକାରର ଘର
ମୀନ ତହିଁ ବାସ କରିଥାଇ ନିରନ୍ତର ।
ତାହାର ଦ୍ୱାଦଶପୁତ୍ର ଅଟେ ଚୈତ୍ରମାସ
ଚକ୍ରହିଁ ଦ୍ୱାଦଶ ତାର ଅରହିଁ ଦ୍ୱାଦଶ ।
ସ୍ୱୟଂ ସେହି ତ୍ରିବ୍ୟୂହାସେ ପୁଣି ଏକମୂର୍ତ୍ତି
ଦ୍ୱାଦଶ ପୁତ୍ରକରୂପୀ ସେହି ବିଶ୍ୱପତି ।
ଏହା ତୁ ପାରିଲେ ଚିହ୍ନି ଆହେ ମୁନିବର
ପୁନରପି ନ ଯିବୁ ତୁ କେଭେ ଯମଘର ।
ତାହାର ଦ୍ୱିତୀୟମୂର୍ତ୍ତି ସଦ୍ୱାଦ୍ୟ ଅଟଇ
ଚତୁର୍ବର୍ଗ ଚତୁର୍ମୁଖ ଚତୁର୍ବାହୁ ସେହି ।
ଶ୍ରୀବତ୍ସ ଚିହ୍ନରେ ସେହି ମୂର୍ତ୍ତି ସୁଶୋଭିତ
ଉଦାର ପ୍ରକୃତି ପୁଣି ଅବିନାଶୀ ନିତ୍ୟ ।
ଶେଷ ଯେ ତୃତୀୟ ମୂର୍ତ୍ତି ସେହି ତମୋମୟ
ସହସ୍ର ପ୍ରକାର ତାର ବିରାଜଇ କାୟ ।
ସହସ୍ର ବଦନେ ସେହି ମୂର୍ତ୍ତି ଶୋଭାପାଇ
ପରମ ଶ୍ରୀମାନ ସେହି ପ୍ରଳୟ କରଇ ।
ଚତୁର୍ଥ ଯେ ରାଜମୂର୍ତ୍ତି ରକ୍ତବର୍ଣ୍ଣ ଦେହୀ
ବନମାଳା ବିଭୂଷିତ ସୃଷ୍ଟିକର୍ତ୍ତା ସେହି ।
ସେହି ଆଦି ପୁରୁଷ ହେ ମହାଋଷି ଜାଣ
ବ୍ୟକ୍ତମୂର୍ତ୍ତି ତ୍ରୟଜାତ ଅବ୍ୟକ୍ତରୁ ପୁଣ ।
ମରୀଚି ପ୍ରଭୃତିଋଷି ଏହାଠାରୁ ଜାତ
ଯେତେକ ପୁରୁଷଗଣ ଏହାହିଁ ସମ୍ଭୁତ ।
ବିଷ୍ଣୁ ପୁରାତନରୂପ କହିଲି ହେ ମୁନି
ଦୁରାତ୍ମା ଅସୁର ମୁର ନିତାନ୍ତ ଅଜ୍ଞାନୀ ।
ତାଙ୍କ ନିକଟକୁ ଗଲା କୃତାନ୍ତ ବଚନେ
ଅନଳସମୀପେ ଧାଏଁ ପତଙ୍ଗ ଯେସନେ ।
ତା ଆସିବା ଜାଣିପାରି ଶ୍ରୀମଧୁସୂଦନ
କହିଲେ ଗଭୀର ସ୍ୱରେ ମୁରକୁ ଏସନ ।

ଆରେ ମୁର ଏ ସ୍ଥାନକୁ ଅଇଲୁ କିମ୍ପାଇଁ
ଏହା ଶୁଣି ମୁରାସୁର ତାହାକୁ କହଇ ।
ଆଜି ତୁମ୍ଭ ସଙ୍ଗତରେ କରିବି ମୁଁ ରଣ
ଏଥିପାଇଁ ଆସିଅଛି ଆହେ ନାରାୟଣ ।
ଅସୁରନିହନ୍ତା ହରି କହିଲେକ ପୁଣି
ଆସିଅଛୁ ଯୁଝିବାକୁ ଆହେ ଦୈତ୍ୟମଣି ।
ତାହା ହେଲେ କମ୍ପୁଛି ତୋ ହୃଦୟ କିପାଇଁ
ଜ୍ୱରାତୁର ଜନ ହୃଦ ଯେସନ କମ୍ପଇ ।
ଏଥୁଁ ଜଣାଯାଏ ତୁହି ହୋଇଛୁ କାତର
କାତର ସଙ୍ଗତେ ମୁହିଁ ନ କରେ ସମର ।
ଶ୍ରୀମଧୁସୂଦନ କଥା ଶୁଣି ମୁରାସୁର
ତକ୍ଷଣେ ଆପଣା ହୃଦେ ଦେଲା ନିଜ କର ।
କି କାରଣେ କମ୍ପୁଅଛି କାହିଁକି ମୋ ଛାତି
ଏହା କହି ହସ୍ତ ଦେବା ମାତ୍ରେ ଦୈତ୍ୟପତି ।
ବୁଦ୍ଧିଭ୍ରଷ୍ଟ ହୋଇ ଧରା ଉପରେ ପଡ଼ିଲା
କ୍ରମେ କ୍ରମେ ତାର ବଳବୀର୍ଯ୍ୟ କ୍ଷୟ ହେଲା ।
ଦେଖି ହରି ଚକ୍ରେ ତାର କାଟିଲେକ ଶିର
ଗତବ୍ୟଥା ହୋଇଲେକ ସକଳ ଅମର ।
ପ୍ରଶଂସିଲେ ଶୁଣି ପଦ୍ମନାଭଙ୍କୁ ବହୁତ
ଚକ୍ରେମୁର ବଧ କରି ସେ ପ୍ରଭୁ ଅଚ୍ୟୁତ ।
ନୃସିଂହ ମୁରାରି ନାମେ ବିଖ୍ୟାତ ସଂସାରେ
ଗୋପୀନାଥ ମନ ରହୁ ସେ ହରି ପୟରେ ।

=+=

## ମଙ୍କଣକ ଉପାଖ୍ୟାନ

କହିଲେ ପୁଲସ୍ତ ଋଷି ଏଥୁ ଅନନ୍ତରେ
ମୁରାରି ଭବନେ ମିଳି ସକଳ ଅମରେ ।
ନମସ୍କାର କରି ତାଙ୍କୁ କହିଲେ ଭୋ ନାଥ
କି କାରଣୁ କମ୍ପମାନ ହୁଅଇ ଜଗତ ।
ତାହା ଶୁଣି ମୁରରିପୁ ପ୍ରଭୁ ଭଗବାନ
ବୋଇଲେକ ଚାଲ ଯିବା ହରଙ୍କ ଭବନ ।
ଅବଶ୍ୟ ହିଁ ଜାଣିଥିବେ ସେହି ମହାଜ୍ଞାନୀ
ଯେ କାରଣୁ ଚରାଚର ବିଶ୍ୱ କମ୍ପେ ପୁଣି ।
ବାସୁଦେବ କଥା ଶୁଣି ଇନ୍ଦ୍ରାଦି ଅମରେ
ତାଙ୍କୁ ଆଗକରି ଗଲେ ମନ୍ଦର ଭୂଧରେ ।
ଅଜ୍ଞାନ ତିମିରାଛନ୍ନ ହେବାରୁ ସେ ତହିଁ
ଦେଖି ନ ପାରିଲେ ନନ୍ଦୀ ହର ଉମାଙ୍କୁହିଁ ।
ପର୍ବତକୁ ଶୂନ୍ୟ ଯହୁଁ ଦେଖିଲେ ଅମରେ
ସେମାନଙ୍କୁ ଜ୍ଞାନହୀନ ଦେଖି ବିଷ୍ଣୁ ଧୀରେ ।
ବୋଇଲେ ଯେ ମହାଦେବ ବିରାଜନ୍ତି ଆଗେ
ତୁମ୍ଭେ ଦେଖି ନ ପାରୁଛ କି ହେତୁ କିଯୋଗେ ।
ସେମାନେ ଉତ୍ତର କଲେ ନ ଦିଶନ୍ତି ହର
କିମ୍ପା ପ୍ରତିହତ ହେଲା ଦୃଷ୍ଟି ଯେ ଆମ୍ଭର ।
ଜାଣିପାରୁନାହୁଁ ଆମ୍ଭେ ତାହାର କାରଣ
କହିଲେ ଜଗତମୂର୍ତ୍ତି ପ୍ରଭୁ ନାରାୟଣ ।
ଆହେ ଦେବଗଣ ତୁମ୍ଭେ ହୋଇ ସ୍ୱାର୍ଥପର
ମୃଡ଼ାନୀଙ୍କ ଗର୍ଭନଷ୍ଟ କରି ପାପଭାର ।
ବହିବାରୁ ଅପରାଧୀ ହୋଇଅଛ ଯେଣୁ
ତୁମ୍ଭର ବିବେକ ଜ୍ଞାନ ହତ ସେ କାରଣୁ ।
ସମ୍ମୁଖରେ ବିରାଜନ୍ତି ନ ପାରୁଛ ଦେଖି
ତପ କୃଚ୍ଛ୍ର ବ୍ରତ କର ଶ୍ରଦ୍ଧାଭାବ ରଖି ।
କାୟାକୁ ଶୋଧନ କରି ଶୁଦ୍ଧ ହୁଅ ଆଗେ
ମହାଦେବଠାରୁ ଜ୍ଞାନ ଲାଭକର ବେଗେ ।
ଆଗ ସାଗ୍ର କୁମ୍ଭ ଶବ କ୍ଷୀରେ ହରି ସ୍ନାନ
ଚଉଷଠି କୁମ୍ଭ ଦଧି ନୀରେ କର ଦାନ ।
ଦ୍ୱାତ୍ରିଂଶତ କୁମ୍ଭ ଘୃତ ଦିଅ ହରି ଶିରେ
ଷୋଳକୁମ୍ଭ ପଞ୍ଚଗବ୍ୟ ଶୋଧି ପ୍ରଣବରେ ।
ହରଶିରେ ଢାଳ ପୁଣି ଆଠକୁମ୍ଭ ମହୁ
ଏସବୁ ଯେତେକ କୁମ୍ଭ ହେଲା ବଜ୍ରବାହୁ ।
ତାହାର ଦ୍ୱିଗୁଣ ଜଳକୁମ୍ଭ ଆଣି ଢାଳ
ଅଷ୍ଟୋତ୍ତର ଶତକୁମ୍ଭ ଗୋରଚନା ଜଳ ।
କୁଙ୍କୁମ ଚନ୍ଦନ ଘେନି ଶିବଙ୍କ ଅଙ୍ଗରେ
ଭକତିରେ ଲିପିଦିଅ ସକଳ ଅମରେ ।
ବିଲ୍ୱପତ୍ର ପଦ୍ମପୁଷ୍ପ ଅଗୁରୁ ଚନ୍ଦନ
କର୍ପୂର ସହିତ ଦେଇ କରିବ ଅର୍ଚ୍ଚନ ।
ପାରିଜାତ ଅତିମୁକ୍ତ ଆବର ମନ୍ଦାର
ଏ ଆଦି କୁସୁମେ ପୂଜା କରି ହରଙ୍କର ।
ଅଗୁରୁ ସହିତ କୃଷ୍ଣ ଚନ୍ଦନର ଧୂପ
ଦେଇ ପୁଣି ଦେଖାଇବ ଅଗ୍ରେ ଘୃତଦୀପ ।
ଋକଦେବୀ ଶତରୁଦ୍ର ମନ୍ତ୍ର ଜପ କରି
ସ୍ୱଚକ୍ଷୁରେ ଦରଶନ କର ତ୍ରିପୁରାରି ।
ଅନ୍ୟ ଉପାୟରେ ଦେଖି ନ ପାରିବ କେଭେ
ବାସୁଦେବ କଥା ଶୁଣି କହିଲେ ସେ ଦେବେ ।

ହେ ମଧୁସୂଦନ ତପ୍ତକୃଚ୍ଛ୍ରର ବିଧାନ
କହିଲେ କରିବୁଁ ଆମ୍ଭେ କାୟାକୁ ଶୋଧନ ।
ବାସୁଦେବ କହିଲେକ ଶୁଣ ସାବଧାନେ
ରହିବ ଯେ ତିନିଦିନ ଉଷ୍ଣଜଳ ପାନେ ।
ଉଷ୍ଣ ଦୁଗ୍ଧ ତିନିଦିନ ପିଇବ ତଦନ୍ତେ
ଉଷ୍ଣ ଘୃତ ତିନିଦିନ ପିଇ ଏଥୁଅନ୍ତେ ।
ତିନିଦିନ ବାୟୁ ଭକ୍ଷି ରହିବ ଉପାସେ
ଜଳର ପ୍ରମାଣ ବାରପଳ ହେ ତ୍ରିଦଶେ ।
ଆଠପଳ ଦୁଗ୍ଧ ପୁଣି ଷଟପଳ ଘୃତ
ଦିନେ ଦିନେ ପିଉଥିବ ଏହା ଶାସ୍ତ୍ରେ ଉକ୍ତ ।
କହିଲେ ପୁଲସ୍ତ୍ୟ ଋଷି ବାସୁଦେବ ଏହା
କହନ୍ତେ ଅମରଗଣ ଘେନି ଶଚୀନାହା ।
ତପ୍ତକୃଚ୍ଛ୍ର ବ୍ରତ କରି ନିଷ୍ପାପ ହୋଇଣ
ବୋଇଲେ ହେ ବାସୁଦେବ ଦେବନାରାୟଣ ।
ଦେବଦେବ ଜଗନ୍ନାଥ ହେ ପ୍ରଭୁ କେଶବ
କହ କାହିଁ ବିରାଜନ୍ତି ଦେବ ମହାଦେବ ।
କ୍ଷୀରାଦିରେ ଅଭିଷେକ କରିବୁଁ ତାଙ୍କର
ଦେବଙ୍କୁ କହିଲେ ଶଙ୍ଖ ଚକ୍ର ଗଦାଧର ।
ମହାଦେବ ବିରାଜନ୍ତି ଦେଖ ମୋର ଦେହେ
ଯୋଗବଳେ ରହିଛନ୍ତି ଦୃଶ୍ୟ କି ନ ହୁଏ ।
ଆମ୍ଭଙ୍କୁ ତ ଦିଶୁନାହିଁ ଆହେ ସୁରେଶାନ
ସତ୍ୟ କହନ୍ତୁ ଯେ କାହିଁ ଅଛନ୍ତି ଈଶାନ ।
ଏହା ଶୁଣି ସେ ଅବ୍ୟୟ ମୁର-ଅରି ହରି
ଆପଣା ହୃଦୟ - ପଦ୍ମଶାୟୀ ତ୍ରିପୁରାରି ।
ଶିବଙ୍କର ଲିଙ୍ଗରୂପ ଦେଖାଇଲେ ତାଙ୍କୁ
କ୍ରମରେ ଅମରଗଣ ଭକ୍ତିରେ ଶିବଙ୍କୁ ।
କ୍ଷୀରାଦିରେ ବିଧିମତେ କରାଇଲେ ସ୍ନାନ
ଲିପିଦେଲେ ଗୋରୋଚନା ସୁଗନ୍ଧ ଚନ୍ଦନ ।
ପଦ୍ମ ବିଲ୍ୱପତ୍ରେ ପୂଜି ଲିଙ୍ଗରୂପୀ ହର
ନିବେଦିଲେ ଧୂପ ଦୀପ ଓଷଧି ଆବର ।
ଅଷ୍ଟଶତ ନାମ ଜପି କଲେ ନମସ୍କାର
ନାରଦ କହିଲେ ଆହେ ଋଷିଙ୍କ ପ୍ରବର ।
ଧ୍ୟାନ ପରାୟଣ ହେଲେ ଏରୂପେ ଅମରେ
ସେହି ସତ୍ତ୍ୱ ତମୋଗୁଣ ବୃତ ହରିହରେ ।
କିରୂପେ ହୋଇଲେ ପୁଣି ଏକ କଳେବର
ପୁଲସ୍ତ୍ୟ କହିଲେ ଶୁଣ ଆହେ ମୁନିବର ।
ଦେବଙ୍କର ଚିନ୍ତା ଜାଣି ହେଲେ ବିଶ୍ୱମୂର୍ତ୍ତି
ସର୍ବ ମୂର୍ତ୍ତି ବରଙ୍କର ନାହିଁ କ୍ଷୟୋପ୍ତି ।
ସର୍ବ ଲକ୍ଷଣ ସମ୍ପନ୍ନ ସର୍ବାୟୁଧଧାରୀ
ସାର୍ଦ୍ଧ ଦ୍ୱିନୟନ ପଦ୍ମନେତ୍ର ଦୁହିଁଙ୍କରି ।
ଭୁଜଙ୍ଗ ମଣ୍ଡଳ ଜଟାଭରା ଗୁଡ଼ାକେଶ
ଗରୁଡ଼ ବୃଷଭ ପତ୍ର ହାର ମହାଶେଷ ।
ପୀତବସ୍ତ୍ର ଦ୍ୱିପୀଚର୍ମ ଶୋହେ କଟୀଦେଶେ
ହସ୍ତେ ଚକ୍ର ଆସି ହଳ ଶାର୍ଙ୍ଗ ମହାରକ୍ଷେ ।
ପିନାକ ଆବର ଧନୁ ଅଜଗବ ଶୂଳ
ଘଣ୍ଟା ଶଙ୍ଖ କପର୍ଦ୍ଦ ଯେ ଖଟ୍ୱାଙ୍ଗ କପାଳ ।
ଏମନ୍ତ ସେ ହରିହର ରୂପ ଦେଖି ସୁର
ଅବ୍ୟୟ ସର୍ବାଗ୍ର କହି କଲେ ନମସ୍କାର ।
ବ୍ରହ୍ମାଙ୍କ ସହିତ ତାଙ୍କୁ କଲେକ ପ୍ରଣତି
ଦେବଙ୍କ ଏକାଗ୍ର ଚିତ୍ତ ଦେଖିଣ ଶ୍ରୀପତି ।
ଦେବତାଙ୍କୁ ସଙ୍ଗେ ଘେନି ସେଠାରୁ ସତ୍ୱର
ପ୍ରବେଶିଲେ କୁରୁକ୍ଷେତ୍ରେ ଯହିଁ ତୀର୍ଥବର ।
ତହିଁ ଜଳମଧ୍ୟେ ଥିବା ସ୍ଥାଣୁରୂପୀ ହର
ନୟନଗୋଚର କରି କଲେ ନମସ୍କାର ।
କହିଲେକ ସୁରପତି ଆସ ଦିଅ ବର
ହେ ଜଗତନାଥ କ୍ଷୁବ୍ଧ ହେଉଛି ସଂସାର ।
ଉନ୍ମଗ୍ନ ହେଉନ୍ତୁ ଏଣୁ ହେ ଅତିଥି ପ୍ରିୟ
ମଧୁର ବଚନ ଶୁଣି ଦେବ କୃପାମୟ ।
ସର୍ବବ୍ୟାପୀ ନିରଞ୍ଜନ ହର ଉଠ ବେଗେ
କହିଲେ ସହାସ୍ୟ ଆସ୍ୟେ ଦେବଙ୍କୁ ସରାଗେ ।
ଦେବଦେବଗଣଙ୍କୁ ଯେ ପ୍ରଣାମ ମୋହର
ଆସନ୍ତେ ସେ ବୃଷଧ୍ୱଜ ଇନ୍ଦ୍ରାଦି ଅମର ।
ବିନୟ ସହିତ କଲେ ତାହାଙ୍କୁ ପ୍ରଣତି
ବୋଇଲେ ଏ ମହାବ୍ରତ ତ୍ୟଜ ପଶୁପତି ।
ତବ ତେଜେ ତ୍ରିଭୁବନ ହୁଏ କମ୍ପମାନ
ଦେବଙ୍କ ଏ କଥା ଶୁଣି ପ୍ରଭୁ ତ୍ରିଲୋଚନ ।
ବୋଇଲେ ମୁଁ ତ୍ୟାଗକଲି ଏହି ମହାବ୍ରତ
ଏହା ଶୁଣି ଦେବଗଣ ହେଲେ ଆନନ୍ଦିତ ।
ସ୍ୱର୍ଗକୁ ଗମନ କଲେ ପ୍ରୟତ ମାନସେ
କମ୍ପିଲା ପର୍ବତ ମହୀ ଆହେ ମହାରକ୍ଷେ ।
ତାହା ଦେଖି ଚିନ୍ତାକଲେ ପ୍ରଭୁ ତ୍ରିଲୋଚନ
କି କାରଣେ ଏ ପୃଥିବୀ ହେଲା କମ୍ପମାନ ।

ଏହା ଭାଳି କୁରୁକ୍ଷେତ୍ର କଲେ ପର୍ଯ୍ୟଟନ
ଓଘବତୀ ନଦୀତଟେ ଭୃଗୁ ତପୋଧନ ।
ତପ କରୁଥିବା ଦେଖି ବୋଇଲେ ଶଙ୍କର
କି କାରଣେ ତପକର କହ ତା ସତ୍ୱର ।
ତୋର ତପେ କମ୍ପମାନ ହୁଅଇ ଜଗତ
ଉଶନା କହିଲେ ତବ ଦର୍ଶନ ନିମିତ୍ତ ।
ତୁମ୍ଭଠାରୁ ସଂଜୀବନୀ ବିଦ୍ୟା ନେବି ମୁହିଁ
ସଞ୍ଜିବନୀ ବିଦ୍ୟା ଲାଭ କର ବିପ୍ର ତୁହି ।
ଅନ୍ୟଥା ନୋହିବ ବିପ୍ର କେଭେ ମୋର ବର
ସୁପ୍ରସନ୍ନ ହେଲି ଦେଖି ତପସ୍ୟା କଠୋର ।
ଶୁକ୍ରବର ଲାଭକରି ତ୍ୟାଗକଲେ ତପ
ତଥାପି ସାଗର ସହ ହେଲା ଭୂମିକମ୍ପ ।
ଦେଖି ସପ୍ତ ସାରସ୍ୱତ ତୀର୍ଥେ ଗଲେ ହର
ଦେଖିଲେକ ମଙ୍କଣଙ୍କ ନାମେ ଋଷିବର ।
ନୃତ୍ୟ କରୁଅଛି ତହିଁ ବାଳକ ପରାୟ
ଭାବଭରେ ପ୍ରସାରିତ କଲେ ବାହୁଦ୍ୱୟ ।
ବେଗେ ଡେଇଁ ଡେଇଁ ନୃତ୍ୟ କରୁଅଛି ସେହି
ତେଣୁ କମ୍ପମାନ ହୁଏ ସସାଗରା ମହୀ ।
ତାହାଦେଖି ମହାଦେବ ତାର କର ଧରି
କହିଲେ ସହାସ୍ୟ ଆସ୍ୟେ ଆହେ ତପଚାରୀ ।
କି କାରଣେ ନୃତ୍ୟକରୁ କହ ମୋ ଆଗରେ
ମଙ୍କଣକ କହିଲେକ ତାଙ୍କୁ ଧୀରେ ଧୀରେ ।
ତାହାର କାରଣ ଶୁଣ ଆହେ ଦ୍ୱିଜବର
କାୟ ବିଶୋଧନ ଅର୍ଥେ ତପସ୍ୟା ମୋହର ।
ତପ କରୁ କରୁ ଗଲା ବହୁତ ବରଷ
ଦେଖିଲି ହସ୍ତରୁ ମୋର ବହେ ଶାକରସ ।
ରୁଧିର ନ ବହି କ୍ଷତ ସ୍ଥାନରୁ ମୋହର
ତପୋବଳେ ଶାକରସ ବହେ ଦ୍ୱିଜବର ।
ତେଣୁ ମୁହିଁ ଆନନ୍ଦରେ କରୁଅଛି ନୃତ୍ୟ
ଶଙ୍କର ବୋଇଲେ ଦ୍ୱିଜ ଏ କିସ ଅଦ୍ଭୁତ ।
ମୋର କ୍ଷତ ସ୍ଥାନକୁ ତୁ ଦେଖକିନା ବାରେ
ଶୁକ୍ଳବର୍ଣ୍ଣ ଭସ୍ମରାଶି କେମନ୍ତେ ବାହାରେ ।
ତହିଁରେ ଆନନ୍ଦ ଜାତ ମୋହର ନୁହଇ
ଜାଣିଲି ପ୍ରମତ୍ତ ତୁମ୍ଭେ ହୋଇଛ ଗୋସାଇଁ ।
ଏହା ଶୁଣି ମଙ୍କଣଙ୍କ ନୃତ୍ୟ ତ୍ୟାଗ କରି
ବିନୟରେ ପଡ଼େ ତାଙ୍କ ପାଦ ଦୁଇ ଧରି ।
କହିଲେକ ସୁପ୍ରସନ୍ନ ହୋଇ ମହାଦେବ
ପୃଥିବୀରେ ପୃଥୁଦକ ପ୍ରଧାନ ହୋଇବ ।
ମହା ଫଳପ୍ରଦ ହେବ ଏହି ତୀର୍ଥବର
ସର୍ବଦା ଏ ସ୍ଥାନେ ଥିବେ ଗନ୍ଧର୍ବ କିନ୍ନର ।
ବିଦ୍ୟାଧର ଗଣଙ୍କର ହେବ ବାସସ୍ଥାନ
ଏହି ତୀର୍ଥବର ହେବ ଧର୍ମର ନିଧାନ ।
ପାପ ମଳକୁ ଏ ତୀର୍ଥ ହରଣ କରିବ
ସପ୍ତସାରସ୍ୱତ ତୀର୍ଥ ଏହାନାମ ହେବ ।
ସୁପ୍ରଭା ବିମଳୋଦକା ନଦୀ ଓଘବତୀ
ମହୋଦରା କାଞ୍ଚନାକ୍ଷୀ ପୁଣ୍ୟ ସରସ୍ୱତୀ ।
ବିଶାଳାକୁ ଘେନି ଏଥି ରହିଥିବେ ନିତ୍ୟ
ସୋମପାନଫଳପ୍ରଦ ହୋଇବ ସତତ ।
ପରମ ପବିତ୍ରକର ହେବ ଏହି ତୀର୍ଥ
ମୂର୍ତ୍ତି ସ୍ଥାପି ଦ୍ୱିଜ ଆଶ୍ରା କର ସ୍ୱର୍ଗପଥ ।
ପରମ ପବିତ୍ର ବ୍ରହ୍ମଲୋକେ କର ବାସ
ମହାଦେବ ବଚନରେ ମଙ୍କଣକ ତୋଷ ।
ମୂର୍ତ୍ତି ସ୍ଥାପି କଲେ ବ୍ରହ୍ମଲୋକକୁ ଗମନ
ପୃଥ୍ୱୀ ସ୍ଥିର ହେଲା ତହୁଁ ଗଲେ ତ୍ରିଲୋଚନ ।
ପ୍ରବେଶିଲେ ଯାଇଁ ପ୍ରଭୁ ମନ୍ଦର କନ୍ଦରେ
ସେ ଅନ୍ଧକ ଶୂନ୍ୟଗିରି ଦେଖେ ଯେ ହେତୁରେ ।
ତାହା ମୁଁ କହିଲି ତୁମ୍ଭ ଆଗେ ମୁନିବର
ଦୀନ ଗୋପୀନାଥ ହର ଉମାଙ୍କ କିଙ୍କର ।

= + =

## ବିଶ୍ୱକର୍ମା ପ୍ରତି ଶାପଦାନ

କହିଲେ ନାରଦ ମୁନି ଅନ୍ଧକ ଅସୁର
ପାତାଳ ପୁରକୁ ଯାଇ କଲାକ ବିଚାର ।
ମହାଦେବ ସେ ମନ୍ଦର ପର୍ବତରେ ରହି
ଶୁଣି କି ବିଚାର କଲେ କହ ଋଷି ତହିଁ ।
କହିଲେ ପୁଲସ୍ତ୍ୟ ଋଷି ଶୁଣ ହେ ନାରଦ
ଅନ୍ଧକ ପାତାଳେ ରହି ପାଇଲା ବିଷାଦ ।
କାମାନଳେ ଦଗ୍‌ଧ ପୁଣି ସନ୍ତାପିତ ହୋଇ
ପୁନରପି କହିଲା ସେ ଦାନବଙ୍କୁ ରାଇ ।
ଅଦ୍ରିନନ୍ଦିନୀକି ଆଣିଦେବ ଯେଉଁ ଜନ
ସେହି ମୋର ବନ୍ଧୁ ଭାଇ ଆତ୍ମୀୟ ସ୍ୱଜନ ।

ହେ ମଧୁସୂଦନ ତପ୍ତକୃଚ୍ଛ୍ର ବିଧାନ
କହିଲେ କରିବୁଁ ଆମ୍ଭେ କାୟାକୁ ଶୋଧନ ।
ବାସୁଦେବ କହିଲେକ ଶୁଣ ସାବଧାନେ
ରହିବ ଯେ ତିନିଦିନ ଉଷ୍ଣଜଳ ପାନେ ।
ଉଷ୍ଣ ଦୁଗ୍ଧ ତିନିଦିନ ପିଇବ ତଦନ୍ତେ
ଉଷ୍ଣ ଘୃତ ତିନିଦିନ ପିଇ ଏଥୁଅନ୍ତେ।
ତିନିଦିନ ବାୟୁ ଭକ୍ଷି ରହିବ ଉପାସେ
ଜଳର ପ୍ରମାଣ ବାରପଳ ହେ ତ୍ରିଦଶେ ।
ଆଠପଳ ଦୁଗ୍ଧ ପୁଣି ଷଟପଳ ଘୃତ
ଦିନେ ଦିନେ ପିଉଥିବ ଏହା ଶାସ୍ତ୍ରେ ଉକ୍ତ ।
କହିଲେ ପୁଲସ୍ତ୍ୟ ଋଷି ବାସୁଦେବ ଏହା
କହନ୍ତେ ଅମରଗଣ ଘେନି ଶଚୀନାହା ।
ତପ୍ତକୃଚ୍ଛ୍ର ବ୍ରତ କରି ନିଷ୍ପାପ ହୋଇଣ
ବୋଇଲେ ହେ ବାସୁଦେବ ଦେବନାରାୟଣ ।
ଦେବଦେବ ଜଗନ୍ନାଥ ହେ ପ୍ରଭୁ କେଶବ
କହ କାହିଁ ବିରାଜନ୍ତି ଦେବ ମହାଦେବ ।
କ୍ଷୀରାଦିରେ ଅଭିଷେକ କରିବୁଁ ତାଙ୍କର
ଦେବଙ୍କୁ କହିଲେ ଶଙ୍ଖ ଚକ୍ର ଗଦାଧର ।
ମହାଦେବ ବିରାଜନ୍ତି ଦେଖ ମୋର ଦେହେ
ଯୋଗବଳେ ରହିଛନ୍ତି ଦୃଶ୍ୟ କି ନ ହୁଏ ।
ଆମ୍ଭଙ୍କୁ ତ ଦିଶୁନାହିଁ ଆହେ ସୁରେଶାନ
ସତ୍ୟ କହନ୍ତୁ ଯେ କାହିଁ ଅଛନ୍ତି ଈଶାନ ।
ଏହା ଶୁଣି ସେ ଅବ୍ୟୟ ମୁର-ଅରି ହରି
ଆପଣା ହୃଦୟ - ପଦ୍ମଶାୟୀ ତ୍ରିପୁରାରି ।
ଶିବଙ୍କର ଲିଙ୍ଗରୂପ ଦେଖାଇଲେ ତାଙ୍କୁ
କ୍ରମରେ ଅମରଗଣ ଭକ୍ତିରେ ଶିବଙ୍କୁ ।
କ୍ଷୀରାଦିରେ ବିଧିମତେ କରାଇଲେ ସ୍ନାନ
ଲିପିଦେଲେ ଗୋରୋଚନା ସୁଗନ୍ଧ ଚନ୍ଦନ ।
ପଦ୍ମ ବିଲ୍ୱପତ୍ରେ ପୂଜି ଲିଙ୍ଗରୂପୀ ହର
ନିବେଦିଲେ ଧୂପ ଦୀପ ଓଷଧି ଆବର ।
ଅଷ୍ଟଶତ ନାମ ଜପି କଲେ ନମସ୍କାର
ନାରଦ କହିଲେ ଆହେ ଋଷିଙ୍କ ପ୍ରବର ।
ଧ୍ୟାନ ପରାୟଣ ହେଲେ ଏରୂପେ ଅମରେ
ସେହି ସତ୍ତ୍ୱ ତମୋଗୁଣ ବୃତ ହରିହରେ ।
କିରୂପେ ହୋଇଲେ ପୁଣି ଏକ କଳେବର
ପୁଲସ୍ତ୍ୟ କହିଲେ ଶୁଣ ଆହେ ମୁନିବର ।

ଦେବଙ୍କର ଚିନ୍ତା ଜାଣି ହେଲେ ବିଶ୍ୱମୂର୍ତ୍ତି
ସର୍ବ ମୂର୍ତ୍ତି ବରଙ୍କର ନାହିଁ କ୍ଷୟୋପ୍ତତି ।
ସର୍ବ ଲକ୍ଷଣ ସମ୍ପନ୍ନ ସର୍ବାୟୁଧଧାରୀ
ସାର୍ଦ୍ଧ ଦ୍ୱିନୟନ ପଦ୍ମନେତ୍ର ଦୁହିଁଙ୍କରି ।
ଭୁଜଙ୍ଗ ମଣ୍ଡଳ ଜଟାଭରା ଗୁଡ଼ାକେଶ
ଗରୁଡ଼ ବୃଷଭ ପତ୍ର ହାର ମହାଶେଷ ।
ପୀତବସ୍ତ୍ର ଦ୍ୱିପୀଚର୍ମ ଶୋହେ କଟୀଦେଶେ
ହସ୍ତେ ଚକ୍ର ଆସି ହଳ ଶାର୍ଙ୍ଗ ମହାରକ୍ଷେ ।
ପିନାକ ଆବର ଧନୁ ଅଜଗବ ଶୂଳ
ଘଣ୍ଟା ଶଙ୍ଖ କପର୍ଦ୍ଦ ଯେ ଖଟ୍ୱାଙ୍ଗ କପାଳ ।
ଏମନ୍ତ ସେ ହରିହର ରୂପ ଦେଖି ସୁର
ଅବ୍ୟୟ ସର୍ବାଗ୍ର କହି କଲେ ନମସ୍କାର ।
ବ୍ରହ୍ମାଙ୍କ ସହିତ ତାଙ୍କୁ କଲେକ ପ୍ରଣତି
ଦେବଙ୍କ ଏକାଗ୍ର ଚିତ୍ତ ଦେଖିଣ ଶ୍ରୀପତି ।
ଦେବତାଙ୍କୁ ସଙ୍ଗେ ଘେନି ସେଠାରୁ ସତ୍ୱର
ପ୍ରବେଶିଲେ କୁରୁକ୍ଷେତ୍ରେ ଯହିଁ ତୀର୍ଥବର ।
ତହିଁ ଜଳମଧ୍ୟେ ଥିବା ସ୍ଥାଣୁରୂପୀ ହର
ନୟନଗୋଚର କରି କଲେ ନମସ୍କାର ।
କହିଲେକ ସୁରପତି ଆସ ଦିଅ ବର
ହେ ଜଗତନାଥ କ୍ଷୁବ୍ଧ ହେଉଛି ସଂସାର ।
ଉନ୍ମଗ୍ନ ହେଉନ୍ତୁ ଏଣୁ ହେ ଅତିଥି ପ୍ରିୟ
ମଧୁର ବଚନ ଶୁଣି ଦେବ କୃପାମୟ ।
ସର୍ବବ୍ୟାପୀ ନିରଞ୍ଜନ ହର ଉଠ ବେଗେ
କହିଲେ ସହାସ୍ୟ ଆସ୍ୟେ ଦେବଙ୍କୁ ସରାଗେ ।
ଦେବଦେବଗଣଙ୍କୁ ଯେ ପ୍ରଣାମ ମୋହର
ଆସନ୍ତେ ସେ ବୃଷଧ୍ୱଜ ଇନ୍ଦ୍ରାଦି ଅମର ।
ବିନୟ ସହିତ କଲେ ତାହାଙ୍କୁ ପ୍ରଣତି
ବୋଇଲେ ଏ ମହାବ୍ରତ ତ୍ୟଜ ପଶୁପତି ।
ତବ ତେଜେ ତ୍ରିଭୁବନ ହୁଏ କମ୍ପମାନ
ଦେବଙ୍କ ଏ କଥା ଶୁଣି ପ୍ରଭୁ ତ୍ରିଲୋଚନ ।
ବୋଇଲେ ମୁଁ ତ୍ୟାଗକଲି ଏହି ମହାବ୍ରତ
ଏହା ଶୁଣି ଦେବଗଣ ହେଲେ ଆନନ୍ଦିତ ।
ସ୍ୱର୍ଗକୁ ଗମନ କଲେ ପ୍ରୟତ ମାନସେ
କମ୍ପିଲା ପର୍ବତ ମହୀ ଆହେ ମହାରକ୍ଷେ ।
ତାହା ଦେଖି ଚିନ୍ତାକଲେ ପ୍ରଭୁ ତ୍ରିଲୋଚନ
କି କାରଣେ ଏ ପୃଥିବୀ ହେଲା କମ୍ପମାନ ।

ଏହା ଭାଳି କୁରୁକ୍ଷେତ୍ର କଲେ ପର୍ଯ୍ୟଟନ
ଓଘବତୀ ନଦୀତଟେ ଭୃଗୁ ତପୋଧନ ।
ତପ କରୁଥିବା ଦେଖି ବୋଇଲେ ଶଙ୍କର
କି କାରଣେ ତପକର କହ ତା ସତ୍ୱର ।
ତୋର ତପେ କମ୍ପମାନ ହୁଅଇ ଜଗତ
ଉଶନା କହିଲେ ତବ ଦର୍ଶନ ନିମିତ୍ତ ।
ତୁମ୍ଭଠାରୁ ସଂଜୀବନୀ ବିଦ୍ୟା ନେବି ମୁହିଁ
ସଞ୍ଜିବନୀ ବିଦ୍ୟା ଲାଭ କର ବିପ୍ର ତୁହି ।
ଅନ୍ୟଥା ନୋହିବ ବିପ୍ର କେଭେ ମୋର ବର
ସୁପ୍ରସନ୍ନ ହେଲି ଦେଖି ତପସ୍ୟା କଠୋର ।
ଶୁକ୍ରବର ଲାଭକରି ତ୍ୟାଗକଲେ ତପ
ତଥାପି ସାଗର ସହ ହେଲା ଭୂମିକମ୍ପ ।
ଦେଖି ସପ୍ତ ସାରସ୍ୱତ ତୀର୍ଥେ ଗଲେ ହର
ଦେଖିଲେକ ମଙ୍କଣଙ୍କ ନାମେ ଋଷିବର ।
ନୃତ୍ୟ କରୁଅଛି ତହିଁ ବାଳକ ପରାୟ
ଭାବଭରେ ପ୍ରସାରିତ କଲେ ବାହୁଦ୍ୱୟ ।
ବେଗେ ଡେଇଁ ଡେଇଁ ନୃତ୍ୟ କରୁଅଛି ସେହି
ତେଣୁ କମ୍ପମାନ ହୁଏ ସସାଗରା ମହୀ ।
ତାହାଦେଖି ମହାଦେବ ତାର କର ଧରି
କହିଲେ ସହାସ୍ୟ ଆସ୍ୟେ ଆହେ ତପଚାରୀ ।
କି କାରଣେ ନୃତ୍ୟକରୁ କହ ମୋ ଆଗରେ
ମଙ୍କଣକ କହିଲେକ ତାଙ୍କୁ ଧୀରେ ଧୀରେ ।
ତାହାର କାରଣ ଶୁଣ ଆହେ ଦ୍ୱିଜବର
କାୟ ବିଶୋଧନ ଅର୍ଥେ ତପସ୍ୟା ମୋହର ।
ତପ କରୁ କରୁ ଗଲା ବହୁତ ବରଷ
ଦେଖିଲି ହସ୍ତରୁ ମୋର ବହେ ଶାକରସ ।
ରୁଧିର ନ ବହି କ୍ଷତ ସ୍ଥାନରୁ ମୋହର
ତପୋବଳେ ଶାକରସ ବହେ ଦ୍ୱିଜବର ।
ତେଣୁ ମୁହିଁ ଆନନ୍ଦରେ କରୁଅଛି ନୃତ୍ୟ
ଶଙ୍କର ବୋଇଲେ ଦ୍ୱିଜ ଏ କିସ ଅଦ୍ଭୁତ ।
ମୋର କ୍ଷତ ସ୍ଥାନକୁ ତୁ ଦେଖକିନା ବାରେ
ଶୁକ୍ଳବର୍ଣ୍ଣ ଭସ୍ମରାଶି କେମନ୍ତେ ବାହାରେ ।
ତହିଁରେ ଆନନ୍ଦ ଜାତ ମୋହର ନୁହଇ
ଜାଣିଲି ପ୍ରମତ୍ତ ତୁମ୍ଭେ ହୋଇଛ ଗୋସାଇଁ ।
ଏହା ଶୁଣି ମଙ୍କଣଙ୍କ ନୃତ୍ୟ ତ୍ୟାଗ କରି
ବିନୟରେ ପଡ଼େ ତାଙ୍କ ପାଦ ଦୁଇ ଧରି ।
କହିଲେକ ସୁପ୍ରସନ୍ନ ହୋଇ ମହାଦେବ
ପୃଥିବୀରେ ପୃଥୂଦକ ପ୍ରଧାନ ହୋଇବ ।
ମହା ଫଳପ୍ରଦ ହେବ ଏହି ତୀର୍ଥବର
ସର୍ବଦା ଏ ସ୍ଥାନେ ଥିବେ ଗନ୍ଧର୍ବ କିନ୍ନର ।
ବିଦ୍ୟାଧର ଗଣଙ୍କର ହେବ ବାସସ୍ଥାନ
ଏହି ତୀର୍ଥବର ହେବ ଧର୍ମର ନିଧାନ ।
ପାପ ମଳକୁ ଏ ତୀର୍ଥ ହରଣ କରିବ
ସପ୍ତସାରସ୍ୱତ ତୀର୍ଥ ଏହାନାମ ହେବ ।
ସୁପ୍ରଭା ବିମଳୋଦକା ନଦୀ ଓଘବତୀ
ମହୋଦରା କାଞ୍ଚନାକ୍ଷୀ ପୁଣ୍ୟ ସରସ୍ୱତୀ ।
ବିଶାଳାକୁ ଘେନି ଏଥି ରହିଥିବେ ନିତ୍ୟ
ସୋମପାନଫଳପ୍ରଦ ହୋଇବ ସତତ ।
ପରମ ପବିତ୍ରକର ହେବ ଏହି ତୀର୍ଥ
ମୂର୍ତ୍ତି ସ୍ଥାପି ଦ୍ୱିଜ ଆଶ୍ରା କର ସ୍ୱର୍ଗପଥ ।
ପରମ ପବିତ୍ର ବ୍ରହ୍ମଲୋକେ କର ବାସ
ମହାଦେବ ବଚନରେ ମଙ୍କଣକ ତୋଷ ।
ମୂର୍ତ୍ତି ସ୍ଥାପି କଲେ ବ୍ରହ୍ମଲୋକକୁ ଗମନ
ପୃଥ୍ୱୀ ସ୍ଥିର ହେଲା ତହୁଁ ଗଲେ ତ୍ରିଲୋଚନ ।
ପ୍ରବେଶିଲେ ଯାଇଁ ପ୍ରଭୁ ମନ୍ଦର କନ୍ଦରେ
ସେ ଅନ୍ଧକ ଶୂନ୍ୟଗିରି ଦେଖେ ଯେ ହେତୁରେ ।
ତାହା ମୁଁ କହିଲି ତୁମ୍ଭ ଆଗେ ମୁନିବର
ଦୀନ ଗୋପୀନାଥ ହର ଉମାଙ୍କ କିଙ୍କର ।

= + =

## ବିଶ୍ୱକର୍ମା ପ୍ରତି ଶାପଦାନ

କହିଲେ ନାରଦ ମୁନି ଅନ୍ଧକ ଅସୁର
ପାତାଳ ପୁରକୁ ଯାଇ କଲାକ ବିଚାର ।
ମହାଦେବ ସେ ମନ୍ଦର ପର୍ବତରେ ରହି
ଶୁଣି କି ବିଚାର କଲେ କହ ଋଷି ତହିଁ ।
କହିଲେ ପୁଲସ୍ତ୍ୟ ଋଷି ଶୁଣ ହେ ନାରଦ
ଅନ୍ଧକ ପାତାଳେ ରହି ପାଇଲା ବିଷାଦ ।
କାମାନଳେ ଦଗ୍ଧ ପୁଣି ସନ୍ତାପିତ ହୋଇ
ପୁନରପି କହିଲା ସେ ଦାନବଙ୍କୁ ରାଇ ।
ଅଦ୍ରିନନ୍ଦିନୀକି ଆଣିଦେବ ଯେଉଁ ଜନ
ସେହି ମୋର ବନ୍ଧୁ ଭାଇ ଆତ୍ମୀୟ ସ୍ୱଜନ ।

ପ୍ରହ୍ଲାଦ କହିଲା ମେଘ -ଗମ୍ଭୀର-ନିର୍ଘୋଷେ
ସେ ଗିରି ନନ୍ଦିନୀ କାହୁଁ ଆସିବ ତୋ ପାଶେ ।
ଆହେ ବୀର ସେହି ତୋର ଧର୍ମର ଜନନୀ
ପିତା ତୋର ତ୍ରିଲୋଚନ ନ ବୁଝୁ କି ଘେନି ।
କହୁଛି କାରଣ ଶୁଣ ହେ ଦାନବ ରାଜ
ତୋ ପିତାର ନ ହେବାରୁ କଦାପି ଆତ୍ମଜ ।
ଶିବ ଆରାଧନା କଲା ପୁତ୍ରକାମୀ ହୋଇ
ପ୍ରସନ୍ନେ ତାହାକୁ ପୁତ୍ର ଦେଲେ ଉମାସାଇଁ ।
ବୋଇଲେ ରେ ହିରଣ୍ୟାକ୍ଷ ମୁହିଁ ଥିଲି ଯୋଗେ
ପୁତ୍ରୀ ମୋର ତିନି ନେତ୍ର ଆଚ୍ଛାଦିଲା ବେଗେ ।
ତହିଁରୁ ଯେ ଅନ୍ଧତମ ହେଲା ଉତପନ୍ନ
ସେ ତମରୁ ଏହି ନୀଳବର୍ଣ୍ଣ ଘନସ୍ୱନ ।
ଯେ ପ୍ରାଣୀ ଉତ୍ପତ୍ତି ହେଲା ଆହେ ଦୈତ୍ୟରାଜ
ଏହି ଉପଯୁକ୍ତ ପ୍ରାଣୀ ତୋହର ଆତ୍ମଜ ।
ତୋର ଏହି ପୁତ୍ର ଯେବେ ହେବ ଲୋକଦ୍ୱେଷୀ
କିବା ହେବ ତ୍ରିଭୁବନ ମାତା ଅଭିଳାଷୀ ।
ଅଥବା ବ୍ରାହ୍ମଣ ଅବମାନନା କରିବ
ତାହାର ମୃତ୍ୟୁକୁ ସେହି ନିମନ୍ତ୍ରି ଆଣିବ ।
ମୁହିଁ ନିଜେ ଏହା କାୟ କରିବି ଶୋଷଣ
ଏହା କହି ଶମ୍ଭୁ ଗଲେ ଆପଣା ଭୁବନ ।
ତୋର ପିତା ତୋତେ ଘେନିଗଲା ରସାତଳେ
ଏ କାରଣୁ ଗିରିସୁତା ମାତା କାଳେ କାଳେ ।
ବିଶେଷେ ଜଗତ ପିତା ଗୁରୁ ତ୍ରିଲୋଚନ
ତୁମ୍ଭେ ଶାସ୍ତ୍ର ଜାଣ ପୁଣି ଗୁଣରେ ଭୂଷଣ ।
ଯୁକ୍ତି ଜାଣ ଜ୍ଞାନୀ ହୋଇ ଦିଅ ପାପେ ମତି
ସାକ୍ଷାତରେ ମହାଦେବ ତ୍ରିଲୋକର ପତି ।
ଅବ୍ୟକ୍ତ ସ୍ୱରୂପ ଲୋକାବନ୍ଦ୍ୟ ସେ ଅଜେୟ
ତାର ଭାର୍ଯ୍ୟା ଗିରିସୁତା ସୁର ବନ୍ଦନୀୟ ।
ତା କାମନା ନ କର ତୁ ଆହେ ଅମରାରି
କଲେ ତୁ ନିଶ୍ଚୟ ଯିବୁ ଶମନ ନଗରୀ ।
ଶିବଗଣ ସହିତରେ ଶଙ୍କରକୁ ଜିଣି
ତାର ଭାରିଯାକୁ କିଏ ଦେବ ତୋତେ ଆଣି ।
ବାହୁ ସହାୟେ ଯେ ଯିବ ସାତସିନ୍ଧୁ ତରି
ଆକାଶୁ ସୂର୍ଯ୍ୟଙ୍କୁ ଆଣିପାରିବ ଯେ ଧରି ।
ମେରୁ ଗିରିକି ଯେ ବଳେ ଉପାଡ଼ି ପାରିବ
ଶୂଳପାଣିକି ସେ ଜନ ସଂଗ୍ରାମେ ଜିଣିବ ।
ତୁହି ଏକା ଏହା କରି ପାରିବୁ ଏ ସତ
କିନ୍ତୁ ତୁମ୍ଭେ ଜାଣିନାହଁ ମହାଦେବ ତତ୍ତ୍ୱ ।
ଜାଣେ ମୁହିଁ ତିନିପୁରେ ତୁମ୍ଭେ ମହାବଳ
କିନ୍ତୁ ରୁଦ୍ରରୂପୀ କାଳ କରିବ କବଳ ।
ଯେଣୁ ପରନାରୀ ଠାରେ ବଳାଉଛୁ ମତି
ବଳବୀର୍ଯ୍ୟ କେଣେ ଯିବ ଆହେ ଦୈତ୍ୟପତି ।
ଶୁଣିନାହଁ ଦଣ୍ଡପତି ମହୀର ବୃତ୍ତାନ୍ତ
ପର ସ୍ତ୍ରୀ କାମନାବଶେ ଜ୍ଞାନ ହେଲା ହତ ।
ରାଜ୍ୟଭ୍ରଷ୍ଟ ଆପେ ନଷ୍ଟହେଲେ ସେ କାରଣେ
ସେ କଥା ମୁଁ କହୁଅଛି ଶୁଣ ସାବଧାନେ ।
ପୂର୍ବେ ଥିଲା ଦଣ୍ଡ ନାମେ ଏକ ମହୀପତି
ଅପ୍ରମିତ ବଳ ତାର ତେଜୋବନ୍ତ ଅତି ।
ବରିଆଣି ଶୁକ୍ରଙ୍କୁ ସେ କଲା ପୁରୋହିତ
ବିବିଧ ଯଜ୍ଞରେ ଅନୁଷ୍ଠାନେ ହେଲା ରତ ।
ଶୁକ୍ର ତାର ଯଜ୍ଞ ରକ୍ଷା କଲେ ବିଧିମତେ
ଋତ୍ୱିକମାନଙ୍କୁ ସେହି ଘେନିଣ ସଙ୍ଗତେ ।
ଅରଜା ନାମରେ କନ୍ୟା ଥିଲା ଶୁକ୍ରଙ୍କର
ସେ କନ୍ୟା ରତ୍ନରେ ଜାଣ ସର୍ବାଙ୍ଗ ସୁନ୍ଦର ।
ଶୁକ୍ର ଯାଇଥିଲେ ଦିନେ ବୃଷପର୍ବା ପାଶେ
ଆଦରେ ରଖିଲେ ତାଙ୍କୁ ଆପଣା ଆବାସେ ।
ରହୁ ରହୁ ରହିଗଲେ ବହୁତ ଦିବସ
ଏକାଳେ ଶୁକ୍ରଙ୍କ ଗୃହେ ଦଣ୍ଡ ନରଈଶ ।
ପ୍ରବେଶି କହିଲେ ଶୁକ୍ର ରହିଛନ୍ତି କାହିଁ
ପରିଚାରିକା ଯେ ଥିଲେ କହିଲେ ସେ ତହିଁ ।
ଶୁକ୍ରାଚାର୍ଯ୍ୟ ଅଛନ୍ତି ଯେ ବୃଷପର୍ବା ଘରେ
ନୃପତି ବୋଇଲେ ଏହି ଆଶ୍ରମ ଭିତରେ ।
କେବଣ ରମଣୀ ଅଛି କହ ମୋତେ ତାହା
ସେ ବୋଇଲେ ଗୁରୁପୁତ୍ରୀ ଆହେ ନର ନାହା ।
ଏହା ଶୁଣି ମହାବାହୁ ଇକ୍ଷ୍ୱାକୁ ନନ୍ଦନ
ଦେଖିବା ନିମନ୍ତେ କଲେ ଆଶ୍ରମ ଗମନ ।
ଅରଜାକୁ ଦେଖିଲେ ସେ ଭିତରକୁ ଯାଇଁ
ଅଗ୍ନି ସେବାକରି ଘରେ ଏକାକୀ ଅଛଇ ।
ଦେଖିଲା ମାତ୍ରକେ ହେଲା କାମବଶେ ମୋହ
ଯିବା ପାଇଁ ସେ ରାଜାର ପ୍ରାଣ ଯମଗୃହ ।
ତେଣୁ କାମେ ସନ୍ତାପିତ ହେଲା ନରପତି
ଏକାକୀ ହୋଇ ସେ ଗଲା ଅରଜାର କତି ।

ଭୃତ୍ୟ ଭାଇ ବନ୍ଧୁ ଛାଡ଼ି ସେହି ମହାବଳ
ଶୁକ୍ରାଚାର୍ଯ୍ୟ ଶିଷ୍ୟଙ୍କୁ ଯେ କରି ଅନାଦର ।
ଯଶସ୍ୱିନୀ ଶୁକ୍ରସୁତା ଅରଜା ସୁନ୍ଦରୀ
ଆସନରୁ ଉଠିଲା ସେ ଦେଖି ଦଣ୍ଡଧାରୀ ।
ଭ୍ରାତୃଜ୍ଞାନେ ପୂଜାକଲା ହରଷେ ତାଙ୍କର
ଦଣ୍ଡ ବୋଲେବାଳାମଣି ମୁଁ ତୋର କିଙ୍କର ।
ଦେଖ କାମାନଳ ମୋତେ କରୁଛି ଦହନ
ଲିଭିଯାଉ ଆଲିଙ୍ଗନ-ଜଳ କର ଦାନ ।
ଅରଜା ବିନୟେ କହେ ଆହେ ନୃପବର
ଜାଣିଅଛ ମହାକୋପି ମୋହର ପିଅର ।
ଦେବତାଙ୍କୁ ଦଗ୍ଧକରି ପାରେ କୋପାନଳେ
ଜାଣୁ ଜାଣୁ ପଡ଼ିବୁ କି କାଳର କବଳେ ।
ଆରେ ମୂଢ଼ବୁଦ୍ଧି ତୁହି ଧର୍ମଭାଇ ମୋର
ଯେ କାରଣୁ ଶିଷ୍ୟ ଅଟୁ ତୁହି ମୋ ପିତାର ।
ଦଣ୍ଡ କହିଲେ ଗୋ ଭୀରୁ ଶୁକ୍ର କେତେବେଳେ
ପୋଡ଼ି ପକାଇବେ ମୋରେ ସିନା କୋପାନଳେ ।
ଏକ୍ଷଣି କାମାଗ୍ନି ଦଗ୍ଧ କରୁଅଛି ମୋତେ
ଅରଜା କହିଲା ରାଜା ରହ ତୁ ମୁହୂର୍ତ୍ତେ ।
ଏକଥା ପ୍ରାର୍ଥନା କରେ ପିତାଙ୍କୁ ମୁଁ ଯାଇଁ
ସେ ମୋତେ ତୁମ୍ଭଙ୍କୁ ଦେବେ ସନ୍ଦେହ ଯେ ନାହିଁ ।
ଦଣ୍ଡ କହେ କୃଶାଙ୍ଗୀ ଗୋ ନ ରହଇ କ୍ଷଣେ
ମୋରଅଙ୍ଗ ପ୍ରପୀଡ଼ିତ ଦେଖ କାମବାଣେ ।
ବିଳମ୍ବରେ ବିଘ୍ନ ଘଟି ପାରେ ଗୋ ସୁନ୍ଦରୀ
ଅରଜା କହିଲା ନୃପ ପରାଧୀନା ନାରୀ ।
ମୁହିଁ କେଭେ ଆତ୍ମଦାନ କରି ନ ପାରିଇ
ତୁମ୍ଭଙ୍କୁ ଅଧିକ ଆଉ ମୁଁ କି କହିବଇଁ ।
ଶୁକ୍ରଶାପେ ଭୃତ୍ୟ ଜ୍ଞାତି ଘେନି ବନ୍ଧୁଜନ
ବିନଷ୍ଟ ହୋଇବ ଆହେ ପାର୍ଥିବ ନନ୍ଦନ ।
ଦଣ୍ଡ ବୋଲେ ସୁତନୁ ଗୋ ପୁରାତନ ବାଣୀ
ତୋ ଆଗେ କହୁଛି ଶୁଣ ଦେବଯୁଗେ ପୁଣି ।
ଚିତ୍ରାଙ୍ଗଦା ନାମେ ଥିଲା ବିଶ୍ୱକର୍ମା ସୁତା
ରୂପଗୁଣେ ସୁଲକ୍ଷଣୀ ସାଧ୍ୱୀ ପତିବ୍ରତା ।
ସୁକୁମାରୀ ଚିତ୍ରାଙ୍ଗଦା ଜାତିରେ ପଦ୍ମିନୀ
କମଳଲୋଚନା ଦିନେ ସଖୀଗଣ ଘେନି ।
ସ୍ନାନଅର୍ଥେ ଚଳିଗଲା ନଇମିଷ ବନେ
ସ୍ନାନଅର୍ଥେ ଆସିଥିଲା ସୁରଥ ସେଦିନେ ।

ସୁଦେବର ତନୟ ସେ ଧୀମନ୍ତ ନୃପତି
ସଖୀଙ୍କି ଅନାଇ କହେ ଚିତ୍ରାଙ୍ଗଦା ସତୀ ।
ଦେଖ ଏହି ରାଜସୁତ ମଦନେ ବ୍ୟଥିତ
ପରମ ସୁନ୍ଦରଯୁବା ପରମ ମଣ୍ଡିତ ।
ଆତ୍ମଦାନ କରିବାର ଯୁକତ ମୋହର
ତୁମ୍ଭ ବିଚାରକୁ ଏହା ଆସେକି ପ୍ରକାର ।
ସଖିଏ କହିଲେ ତାକୁ ଶୁଣ ଲୋ ସୁନ୍ଦରି
ତୋର ପିତା ମାତାଙ୍କୁ ତୁ ଏହା ନ ବିଚାରି ।
ତୁହି ବାଳା ଆତ୍ମଦାନ କରିବୁ କେମନ୍ତେ
ତାହାକୁ ବିଚାରି ପିତାଦେବ ସିନାତୋତେ ।
ଶାସ୍ତ୍ର-ବିଶାରଦ ସେହି ପରମ ଧାର୍ମିକ
ତାଙ୍କ ଅବିଚାରେ ଏହା କଲେ ତୋତେ ଲୋକ ।
ମନ୍ଦକର୍ମ କଲାବୋଲି କହିବେ ନିଶ୍ଚୟ
ଏମନ୍ତ ସମୟେ ସେହି ସୁଦେବ ତନୟ ।
କାମବାଣେ ପୀଡ଼ାପାଇ ସେ ସ୍ଥାନକୁ ଆସି
ଚିତ୍ରାଙ୍ଗଦା ମୁଖଚାହିଁ ଅଳ୍ପ ଅଳ୍ପ ହସି ।
ବୋଇଲା ମଦିରେ କ୍ଷଣି ମୁଗ୍ଧା ତୁମ୍ଭେ ଦେଖ
ତୁମ୍ଭ ଦୃଷ୍ଟି ଅଟଇ ଯେ କନ୍ଦର୍ପ ବିଶିଖ ।
ମୋର ଅଙ୍ଗେ ବାଜୀ ମୋତେ କରିଛି ମୋହିତ
ଅନୁଗ୍ରହ କରି ତୁମ୍ଭେ କରାଅ ଜୀବିତ ।
ବକ୍ଷୋଜ - ତଳପ ତୋର ଅତି ସୁକୋମଳ
ସେହି ବିଛଣାରେ ଥୋଇ ଢାଳ କୃପାଜଳ ।
ନୋହିଲେ ମୁଁ ପୋଡ଼ିଯିବି ନିଶ୍ଚେ କାମାନଳେ
ରାଜାର ଏକଥା ଯାଇ ପଶୁ କର୍ଣ୍ଣବିଳେ ।
ସର୍ବାଙ୍ଗସୁନ୍ଦରୀ ସେହି ରାଜୀବଲୋଚନା
ଦେହ ଦେଲା ନଘେନି ସେ ସଖିଗଣ ମନା ।
ଏରୂପେ କୃଶାଙ୍ଗୀ ପୂର୍ବେ ରଖିଲା ରାଜାକୁ
ଏକାରଣୁ ସୁଶ୍ରୋଣୀ ଗୋ କହୁଛି ତୁମ୍ଭଙ୍କୁ ।
କାମ ବିଶିଖରୁ ମୋତେ କର ପରିତ୍ରାଣ
ଅରଜା ବୋଇଲା ତୁମ୍ଭେ ଶୁଣ ନୃପରାଣ ।
ଚିତ୍ରାଙ୍ଗଦା ଶେଷକଥା ନଜାଣକି ତୁମ୍ଭେ
ମୁହିଁ କହୁଅଛି ଶୁଣ ନୃପବର ଏବେ ।
ସଖିଏ କହିଲେ ଯାଇ ତାର ପିତା ଆଗେ
ଦୁହିତାକୁ ଅଭିଶାପ ଦେଲା ସେହି ରାଗେ ।
ଧର୍ମ ପରିତ୍ୟାଗ କଲୁ ଆଲୋ ମନ୍ଦଗତି
ବିବାହିତା ନହୋଇ ତୁ ରହିଥାଅ କ୍ଷିତି ।

ସ୍ୱାମୀ ସୁଖଭୋଗ ତୋର ନୋହୁ ନୋହୁଥାଉ
ପତିର ତୁ ବିଷ ହୁଅ ସନ୍ତାନ ନ ହେଉ ।
ଅଭିଶାପ ଦେଲା ମାତ୍ରେ ନଦୀ ସରସ୍ୱତୀ
ପବଳ ବେଗରେ ସେହି ହେଲେ ସ୍ରୋତସ୍ୱତୀ ।
ନୃପତିକି ତହୁଁ ନେଲେ ଭସାଇ ଭସାଇ
ତେର ଯୋଜନର ଦୂରେ ପକାଇଲେ ନେଇ ।
ଚିତ୍ରାଙ୍ଗଦା ସୁନ୍ଦରୀ ଯେ ହୋଇଲା ମୋହିତା
ତାହା ଦେଖି ସଖୀମାନେ ପାଇ ବଡ଼ଚିନ୍ତା ।
ସରସ୍ୱତୀ ଜଳ ଆଣି ସିଞ୍ଚିଲେ ତା ଦେହେ
ଶୀତଳ ସଲିଳ ପାଇ ମୃତତୁଲ୍ୟ ରହେ ।
ତାହାଦେଖି ସଖୀଗଣ ଗଲେ ତହୁଁ ଖରେ
କେହି କାଠ ପାଇଁ ପଶେ ଅରଣ୍ୟ ମଧରେ ।
କେହି ଅଗ୍ନି ଆଣିବାକୁ ବ୍ୟାକୁଳେ ଖୋଜଇ
ଚାରୁଅଙ୍ଗି ଚିତ୍ରଙ୍ଗଦା ସଂଜ୍ଞାଲାଭ ପାଇ ।
ଦଶଦିଗେ ଚାହେଁ କାହିଁ ନାହିଁ ନରପତି
ଦେଖିଲାକ ସଖୀଜନେ ନାହାନ୍ତି ତ କତି ।
ତ୍ୱରିତ ଲୋଚନେ ପଡ଼େ ସରସ୍ୱତୀ ଜଳେ
ସେହି କାଞ୍ଚନାକ୍ଷୀନଦୀ ନେଇ ସ୍ରୋତ ବଳେ ।
ଗୋମତୀରେ ପକାନ୍ତେ ସେ କୁଟିଳ ତରଙ୍ଗେ
ଭସାଇ ଭସାଇ ନେଇ ମହା ବନ ଭାଗେ ।
ପକାଇଲା ନେଇ ତାକୁ ଆହେ ନରେଶ୍ୱର
ଏହିପରି ଶେଷ ଫଳ ହୋଇଲା ତାହାର ।
ଏକାରଣୁ ଆତ୍ମଦାନ କରି ନ ପାରଇ
ଶତ୍ରୁତୁଲ୍ୟ ବଳଶାଳୀ ଦଣ୍ଡ ନରସାଇଁ ।
କହିଲା ସହାସ୍ୟ ଆସ୍ୟେ ଅରଜାକୁ ପୁଣି
ଶୁଣ ଆଗୋ କୃଶୋଦରୀ ରାମ ଶିରୋମଣି ।
ଚିତ୍ରାଙ୍ଗଦା ତାର ପିତା ସୁରଥ ଆବର
କିଫଳ ପାଇଲେ ଶେଷେ କହ ତୋ ଆଗର ।
ଚିତ୍ରାଙ୍ଗଦା ପଡ଼ିଥିଲା ସେହି ମହାବନେ
ଏ ସମୟେ ଯାଉଥିଲା ଗୁହ୍ୟକ ଗଗନେ ।
ତାଦୃଷ୍ଟି ପଡ଼ିଲା ଚିତ୍ରାଙ୍ଗଦାର ଉପରେ
ଆସଗୋ ସୁଭଗେ ବୋଲି ଡ଼ାକିଲା ସତ୍ୱରେ ।
ସୁରଥ ପାଖକୁ ଘେନି ଯିବି ମୁହିଁ ତୋତେ
ମିଳିବୁ ଅସିତେ କ୍ଷଣି ନିଶ୍ଚେ ତା ସଙ୍ଗତେ ।
ଶ୍ରୀ କଣ୍ଠଙ୍କ ନିକଟକୁ ଯାଆତୁ ସତ୍ୱର
ଶୁଣିଲା ଗୁହ୍ୟକଠାରୁ ଯହୁଁ ଏ ପ୍ରକାର ।

ସୁଲୋଚନା ଚିତ୍ରାଙ୍ଗଦା ଗଲା ତହୁଁ ବେଗେ
କାଳିନ୍ଦୀ ଦକ୍ଷିଣୋତ୍ତରେ ଶ୍ରୀକଣ୍ଠଙ୍କ ଆଗେ ।
ଜଣାଇ ଆପଣା ଦୁଃଖ ଦରଶନ କରି
କାଳିନ୍ଦୀ ନଦୀରଜଳେ ଅଭିଷେକ ସାରି ।
ମଧ୍ୟାହ୍ନ ସମୟେ ବାଳା ରହିଅଛି ତହିଁ
ଏ ସମୟେ ଋତଧ୍ୱଜ ନାମେ ତପୀସାଇଁ ।
ସାମବେଦୀ ପାଶୁପତାଚାର୍ଯ୍ୟ ସେ ଅଟନ୍ତି
ବିରାଜେ ଶୁଭଲକ୍ଷଣେ ତାଙ୍କ ଅଙ୍ଗଜ୍ୟୋତି ।
ଚିତ୍ରାଙ୍ଗଦା ରହିଅଛି ଶୋକାନ୍ୱିତା ହୋଇ
ଋତଧ୍ୱଜ ବିଚାରିଲେ ଏଠାରେ କିପାଇଁ ।
ଏ ପ୍ରକାରେ ରହିଅଛି କାହାର ଭାବିନୀ
ଚିତ୍ରାଙ୍ଗଦା ତାହାଙ୍କର ବନ୍ଦି ପାଦ ବେନି ।
କୃତାଞ୍ଜଳି ପୁଟେ ଉଭା ହୁଅନ୍ତେ ଆଗରେ
ଋତଧ୍ୱଜ ପଚାରିଲେ ଦୟାର୍ଦ୍ର ଚିତ୍ତରେ ।
ଆଗୋ ବତ୍ସେ ସାକ୍ଷାତେ ତୁ ସୁରସୁତା-ପରି
କାହା କନ୍ୟା କିପାଁ ବନେ ରହିଛୁ ସୁନ୍ଦରୀ ।
କୃଶୋଦରୀ ଚିତ୍ରାଙ୍ଗଦା କହିଲା ସକଳ
ଶୁଣି ଋଷିଙ୍କର କ୍ରୋଧ ହୋଇଲା ପ୍ରବଳ ।
ବୋଇଲେ ରେ ବିଶ୍ୱକର୍ମା ଘେନମୋର ଶାପ
ଯେହେତୁ କନ୍ୟାକୁ ବିଭା ନ ଦେଲୁରେ ପାପ ।
ଏହି ଦୋଷେ ଜାତହୁଅ ବାନର ଯୋନିରେ
ଏହା କହି-ସ୍ନାନକଲେ ପୁଣି ନଦୀନୀରେ ।
ସନ୍ଧ୍ୟା ବନ୍ଦନାଦି ଶେଷେ ଶିବ ପୂଜାକରି
କହିଲେ ସୁଭଗେ ବେଗେ ଯାଅ ଗୋଦାବରୀ ।
ହଟକେଶ୍ୱରଙ୍କ ସେବା କରି ତହିଁ ରହି
ଭୋ ରମ୍ଭୋରୁ ଶୁଭ୍ର ଶୋକପରାୟଣା ତୁହି ।
ଦାନବ କନ୍ଦରମାଳୀ ପୁତ୍ରୀ ବେଦବତୀ
ସେ କଲ୍ୟାଣୀ ସତୀ ନିଶ୍ଚେ ଆସିବ ତୋ କତି ।
ଅଞ୍ଜନ ଗୁହ୍ୟକ ସୁତା ନାମ ନନ୍ଦୟନ୍ତୀ
ପର୍ଜନ୍ୟ ଦୁହିତା ନାମ ଅଟେ ଦେବବତୀ ।
ଏହି ତିନିଙ୍କର ସଙ୍ଗେ ହେବ ତୋର ଭେଟ
ସପ୍ତ ଗୋଦାବରୀ ଜଳେ ପାପ ହେବ ନଷ୍ଟ ।
ମୁନିବାକ୍ୟେ ଚିତ୍ରାଙ୍ଗଦା ଗଲା ତହୁଁ ଖରେ
ମିଳିଲା ସେ ଯାଇଁ ସପ୍ତ ଗୋଦାବରୀ ତୀରେ ।
ଶୌଚ ହୋଇ ସ୍ନାନକରି ଫଳ ମୂଳ ଖାଇ
ମହାଦେବ ସେବା କଲା ଏକ ମନ ହୋଇ ।

ଚିତ୍ରାଙ୍ଗଦା ପ୍ରିୟକାମୀ ହୋଇ ମୁନିବର
ଯେ ଶୋକ ରଚନା କଲେ ଅର୍ଥ ଶୁଣ ତାର ।
ଦେବତା ଅସୁର ଯକ୍ଷ ମନୁଷ୍ୟ ରାକ୍ଷସ
କେହି ହରି ନ ପାରିଲେ ଚିତ୍ରାଙ୍ଗଦା କ୍ଳେଶ ।
ଏହି ଶ୍ଳୋକ ଗୋଟିମହାଦେବ କାନ୍ଥେଲେଖି
ପୟୋଷ୍ଣୀ ତୀର୍ଥକୁ ଗଲେ ହୋଇ ମହାଦୁଃଖୀ ।
ମୁନି-ବୃନ୍ଦ-ବନ୍ଦିତ ସେ ଅଟେ ତୀର୍ଥବର
ଅଛନ୍ତି ପୁଷ୍କରନାଥ ସର୍ବବ୍ୟାପୀ ହର ।
ନ ଗଲା ତାହାଙ୍କ ମନୁ ଚିତ୍ରାଙ୍ଗଦା ଚିନ୍ତା
ଦୀନ ଗୋପୀନାଥ ଦୁଃଖ ହର ଉମାଭର୍ତ୍ତା ।

=+=

## ଜାବାଲି ବନ୍ଧନ ମୋଚନ

ଦଣ୍ଡ କହେ ଅରଜେ ଗୋ ଚିତ୍ରାଙ୍ଗଦା ସତୀ
ବୀରସୁରଥକୁ ଧ୍ୟାନ କରୁଥାଇ ନିତି ।
ଏହିପରି ସେହିସ୍ଥାନେ ବହୁକାଳ ଗଲା
ବିଶ୍ୱକର୍ମା ମୁନିଶାପେ ବାନର ହୋଇଲା ।
ମେରୁ ଶିଖରରୁ ଖସିପଡ଼ିଲା ଭୂମିରେ
ସୁନ୍ଦରୀ ସେ ଶଳୁକିନୀ ନଦୀ ପୁଳିନରେ ।
ଘୋରବନେ ଗିରିବରେ କଲା ଯାଇଁ ବାସ
ଫଳମୂଳ ଭକ୍ଷି ତହୁଁ ରହି ବହୁ ବର୍ଷ ।
ଏକଦିନେ ଦୈତ୍ୟବର କନ୍ଦରମାଳିନୀ
ସେଠାରେ ମିଳିଲା ସଙ୍ଗେ ଦୁହିତାକୁ ଘେନି ।
ତାର ନାମ ବେଦବତୀ ସ୍ୱର୍ଗରେ ସେ ଧନ୍ୟା
କପିରୂପୀ ବିଶ୍ୱକର୍ମା ଦେଖିଣ ସେ କନ୍ୟା ।
ବଳେଧରି ନିଅନ୍ତେ ତା ଦେଖିଲା ଦଇତ
ଖଡ଼୍‌ଗଧରି କ୍ରୁଧହୋଇ ଧାଇଁଲା ତ୍ୱରିତ ।
ଦଇତ୍ୟ ଧାଇଁବା ଦେଖି ବଳିଷ୍ଠ ବାନର
ବେଦବତୀ ଘେନିଗଲା ହିମାଦ୍ରି ଶିଖର ।
ଯମୁନା ତଟରେ କଲା ଶ୍ରୀକଣ୍ଠ ଦର୍ଶନ
ତା ନିକଟେ ଦେଖିଲା ସେ ଆଶ୍ରମ ଗହନ ।
ସେ ଆଶ୍ରମେ ଋଷିମୁନି ଗୋଟିଏ ନାହାନ୍ତି
ସେହି ମହାପୁଣ୍ୟ ସ୍ଥାନେ ରଖି ବେଦବତୀ ।
ଦୈତ୍ୟବର ସମକ୍ଷରେ କାଳିନ୍ଦୀର ନୀରେ
ବୁଡ଼ିଗଲା ତାହାଦେଖି କନ୍ଦର ବିଚାରେ ।
ଶାଖାମୃଗ ସହ ବୁଡ଼ିଗଲା ବେଦମତୀ
ଏହା ଭାଳି ପାତାଳକୁ ଗଲା ଦୈତ୍ୟପତି ।

ପାତାଳ ଭୁବନେ ସେହି ଅସୁରର ଘର
କାଳିନ୍ଦୀର ସ୍ରୋତେ ଭାସିଗଲା ସେ ବାନର ।
ଭାସିଯାଇ ଲାଗିଲା ସେ ଶିବନାମେ ପୁରେ
ପରମ ତେଜସ୍ୱୀ କପି ଉତୁରି ସତ୍ୱରେ ।
ବେଦବତୀ କି ସେ ରଖି ଆସିଅଛି ଯହିଁ
ତା ନାମ କପିଳାରଣ୍ୟ ଯିବାପାଇଁ ତହିଁ ।
ବିଚାରନ୍ତେ ଏ ସମୟେ କଲା ବିଲୋଚନ
ଦୁହିତାକୁ ଘେନି ଆସେ ଗୁହ୍ୟକ ଅଞ୍ଜନ ।
ତାର ନାମ ନନ୍ଦୟନ୍ତୀ ଅତି ରୂପବତୀ
କପି ଦେଖି ମନେକଲା ଏ ସେ ବେଦବତୀ ।
ଜଳମଗ୍ନ ପରିଶ୍ରମ ବୃଥା ହେଲା ମୋର
ସେହି ଶାଖାମୃଗ ଚିନ୍ତାକରି ଏ ପ୍ରକାର ।
ବେଗେ ଯାନ୍ତେ କପିଭୟେ ବାଳା ହରିଣ୍ୱତୀ
ନଦୀରେ ପଡ଼ିବା ଦେଖି ଗୁହ୍ୟକ ତା ଚିନ୍ତି ।
ଦୁଃଖେ ଶୋକେ ଗଲାତହୁଁ ଅଞ୍ଜନ ପର୍ବତେ
ଶୁଚି ହୋଇ ତପକଲା ରହି ମୌନବ୍ରତେ ।
ଏମନ୍ତେ ସେ ତପ କରୁ ବହୁକାଳ ଗଲା
ହିରଣ୍ୱତୀ ସେ କନ୍ୟାକୁ ଭସାଇଣ ନେଲା ।
କୋଶଳ ଦେଶରେ ଯାଇ ଲାଗିଲା ସେ ବାଳା
ଜଳରୁ ଉତୁରି ସେହି ସ୍ଥଳପଥେ ଗଲା ।
କାନ୍ଦି କାନ୍ଦି ଯାଉଁ ଯାଉଁ ଦେଖେ ବଟବୃକ୍ଷ
ସେହି ବାଟ ଜଟାଧର ମହେଶ୍ୱର ଲକ୍ଷ୍ୟ ।
ଓହଳରେ ପରିପୂର୍ଣ୍ଣ ତାର କଳେବର
ତାର ମୂଳେ ପଡ଼ିଅଛି ବୃହତ ପଥର ।
ବିପୁଳ ଛାୟାରେ ମୁଳେ ଖରା ନ ପଡ଼ଇ
ବସିଲା ସେ ବରାଙ୍ଗନା ପାଷାଣରେ ଯାଇଁ ।
ଏ ସମୟେ ଶୁଣିଲା ସେ ଏମନ୍ତ ବଚନ
ଏଠାରେ ତ ଏପରି ଯେ ନାହିଁ କେହିଜନ ।
ଯାଇଁ ତପୋଧନ ଋତୁଧ୍ୱଜକୁ କହିବ
ଏହି ବନ୍ଧନରୁ ମୋତେ ମୋଚନ କରିବ ।
ବୋଲିବ ଯେ ବଟବୃକ୍ଷେ ବନ୍ଧା ତୋର ସୁତ
ଏ ବଚନ ଶୁଣି ବାଳା ହୋଇଣ ଚକିତ ।
ଅଧଊର୍ଦ୍ଧ୍ୱ ଚଉଦିଗେ ବୁଲାଇଲା ଆଖି
ବୃକ୍ଷଶିଖେ ପାଞ୍ଚବର୍ଷ ଶିଶୁ ଏକା ଦେଖି ।
ଭାଳିଲା ପିଙ୍ଗଳବର୍ଣ୍ଣ ଜଟାଭରେ କିଏ
ବାନ୍ଧିଦେଲା ଏ ଶିଶୁକୁ ବୃକ୍ଷ ଶାଖାଦ୍ୱୟେ ।

ଅତ୍ୟନ୍ତ ଦୁଃଖିତା ହୋଇବୋଲେ ନନ୍ଦୟନ୍ତୀ
ଏରୂପେ ବାନ୍ଧିଲା ତୋତେ କେଉଁ ପାପମତି ।
ଏହା ଶୁଣି ଶିଶୁ ବୋଲେ ଶୁଣ ମହାଭାଗେ
ଏକଦୁଷ୍ଟ କପି ବଳେ ଧରିଆଣି ବେଗେ ।
ମୋ ଜଟାରେ ବୃକ୍ଷେ ମୋତେ ବାନ୍ଧି ଦେଇଗଲା
ତପୋବଳେ କେବଳ ମୋ ଜୀବନ ରହିଲା ।
ମନୁପୁରେ ପ୍ରତିଷ୍ଠିତ ଦେବ ମହେଶ୍ୱର
ସେହି ସ୍ଥାନେ ମୋର ପିତା ଋତଧ୍ୱଜ ଘର ।
ସାକ୍ଷାତେ ସେ ତପୋରାଶି କଲେ ଘୋରତପ
ସେହି ମହାତ୍ମାର ମହା ଯୋଗର ସ୍ୱରୂପ ।
ଜନମିଲି ସର୍ବଶାସ୍ତ୍ର- ବିଶାରଦ ହୋଇ
ଆଗୋ ଶୁଭାନନେ ମୋତେ ସେହି ତପସାଇଁ ।
ଜାବାଳି ଏ ଜାଣି ପୁଣି କଲେ ନମସ୍କାର
ବୋଇଲେ ତୁ ବାଲ୍ୟେ ପଞ୍ଚ ସହସ୍ର ବତ୍ସର ।
କୌମାରେ ତୋ ଯିବ ଦଶ ସହସ୍ର ବରଷ
ଯଉବନେ ଯିବ ବିଂଶ ସହସ୍ର ବରଷ ।
ବୃଦ୍ଧାବସ୍ଥା ଭୋଗ ଜାଣ ତାହାର ଦ୍ୱିଗୁଣ
ବାଲ୍ୟେ ପଞ୍ଚ ଶତ ବର୍ଷ ବନ୍ଧ ହେବୁ ଜାଣ ।
ଦଶ ଶତ ବର୍ଷ ପୁଣି ଏଥୁଅନନ୍ତରେ
କାୟ କ୍ଳେଶ ଅନୁଭବ କରିବୁ କୌମାରେ ।
ଯୌବନରେ ପୁଣି ଦୁଇ ସହସ୍ର ବତ୍ସର
ପରମ ସମ୍ଭୋଗେ ଦିନ କଟିବ ତୋହର ।
ବାର୍ଦ୍ଧକ୍ୟରେ ଚତ୍ୱାରିଂଶ ଶତ ସମ୍ବତ୍ସର
ଅତି କ୍ଳେଶ ପାଇବୁ ତୁ ଭୂମି ଶଯ୍ୟା ତୋର ।
କଦନ୍ନ ଭୋଜନେ ଜାଣ ସରିବ ତୋ ଦିନ
ଶୁଣି ମୁହିଁ ପିତାଙ୍କର ଏମନ୍ତ ବଚନ ।
ମହୀତଳେ ଚାଲୁ ଚାଲୁ ପାଞ୍ଚବରଷରେ
ହିରଣ୍ୱତୀକି ଅଇଲି ସ୍ନାନ କରିବାରେ ।
ସେ ସ୍ଥାନେ ଦେଖିଲି ମୁହିଁ ଏକ କପିବର
ବୋଇଲା ସେ ମୋତେ ମୂଢ଼ ଅଟୁ ତୁତ ଚୋର ।
ରଖିଥିଲି ବେଦବତୀ କନ୍ୟାକୁ ଆଶ୍ରମେ
ତୁହି ତାକୁ ଘେନିଗଲୁ କହ କେଉଁ ଗ୍ରାମେ :
ମୁଁ ତ ପାଞ୍ଚବରଷର ଶିଶୁ ଗୋ ସୁନ୍ଦରି
ସର୍ବାଙ୍ଗ କମ୍ପିଲା ଶୁଣି କପି ମୋତେ ଧରି ।
ଏହି ବଟ ଶିଖେ ମୋତେ ବାନ୍ଧିଲା ଗୋଭୀରୁ
ଦୁଷ୍ଟ କପି ଲତା ପୁଣି ଆଣିଲା ବନରୁ ।
ମନ୍ତ୍ର କରି ତା ମଧ୍ୟରେ ରଖିଗଲା ମୋତେ
ଚାରିପାଖେ ଲତା ପାଶ ଯିବି ମୁଁ କେମନ୍ତେ ।
ହଲ ଚଲ ହେବାକୁ ହେ ନାହିଁ ମୋର ସାଧ୍ୟ
ଆଗୋ ଭୀରୁ ସେ ବନ୍ଧନ ଭେଦହିଁ ଅସାଧ୍ୟ ।
ମୋତେ ବାନ୍ଧି କପି ଗଲା ଅମର ପର୍ବତେ
ତୁ କାହାର ଲଳନା ଗୋ ପଚାରୁଛୁ ମୋତେ ।
କିମ୍ପାଇଁ ପତିକି ଛାଡ଼ି ପଶିଲୁ ଅରଣ୍ୟେ
କହିଲେ ଜାଣିବି ସିନା ଆଗୋ ବରାନନେ ।
ସେ ବୋଇଲା ମୋର ପିତା ଗୁହ୍ୟକ ଅଞ୍ଜନ
ପ୍ରମ୍ଳୋଚା ମୋ ମାତା ନାମ ତା ଗର୍ଭୁ ଉତ୍ପନ୍ନ ।
ମୋର ନାମ ନନ୍ଦୟନ୍ତୀ ଜନ୍ମଦିନ ଆସି
କହିଥିଲେ ରାଣୀ ହେବୁ ମୁଦ୍‌ଗଲ ମହର୍ଷି ।
ସେ କାଳେ ବାଜିଲା ପୁଣି ସ୍ୱର୍ଗର ଦୁନ୍ଦୁଭି
ମଙ୍ଗଳ ନିର୍ଘୋଷ ଶୁଣି ଋଷି ପୁଣି ଭାବି ।
ନିଃସନ୍ଦେହ ମହାରାଣୀ ହେବ କନ୍ୟାକାଳେ
ବିପଦେ ପଡ଼ିବ ଏହା କହି ଋଷି ଗଲେ ।
ପିତା ମୋତେ ଘେନି ଯାଉଁ ହିରଣ୍ୱତୀ ତୀରେ
ବାନର ଅଇଲା ଧାଇଁ ଦେଖି ମୁହିଁ ଡରେ ।
ନଦୀଜଳେ ବୁଡ଼ିଗଲି ପିତା ତାହା ଦେଖି
ଭବନକୁ ଗଲେ ଶୋକ କରି ହୋଇଦୁଃଖୀ ।
ନଦୀସ୍ରୋତ ମୋତେନେଲା ସେଠାରୁ ଭସାଇ
ଏ ନିର୍ଜନ ଦେଶେ ଆଣି ଦେଲାକ ଲଗାଇ ।
ଜାବାଳି ଏ କଥା ଶୁଣି କହିଲେ ସୁନ୍ଦରି
ଶ୍ରୀକଣ୍ଠ ଯମୁନାତଟେ ଛନ୍ତି ବିଜେ କରି ।
ମଧ୍ୟାହ୍ନେ ମୋ ପିତାକରେ ତାହାଙ୍କ ଅର୍ଚ୍ଚନା
ତୁ ଏଠାରୁ ବେଗେ ଯାଅ ଆଗୋସୁଲୋଚନା ।
କହିଲେ ତାହାଙ୍କ ଆଗେ ହେବ ଶୁଭ ତୋର
ଏହା ଶୁଣି ନନ୍ଦୟନ୍ତୀ ହୋଇ ଖରତର ।
କନ୍ଦମୂଳ ଫଳ ଖାଇ ଅଳପ ସମୟେ
ଋତଧ୍ୱଜ ପ୍ରତିଷ୍ଠିତ ଶିବଙ୍କ ଆଳୟେ ।
ପ୍ରବେଶି ଦର୍ଶନ କଲା ଶ୍ରୀକଣ୍ଠ ମୂରତି
କାନ୍ଥେ ଲେଖାହୋଇଥିବା ଶ୍ଳୋକ ନନ୍ଦୟନ୍ତୀ ।
ପଢ଼ିବାରୁ ଅର୍ଥ ବୁଝି ସେ ଚାରୁହାସିନୀ
ଶ୍ଳୋକଏକ ଲେଖାଦେଲା ଭାବ ମନେଘେନି ।
ସେ ଶ୍ଳୋକର ଅର୍ଥ ଏହି କହୁଅଛି ଶୁଣ
କହିଥିଲେ ପୂର୍ବେ ମୋତେମୁଦ୍‌ଗଲ ବ୍ରାହ୍ମଣ ।

ରାଜପତ୍ନୀ ହେବୁ ତୁହି ମୁଁ ବିପଦେ ଏବେ
ପଡ଼ିଅଛି ଏଥୁ କି ଏ ଉଦ୍ଧାରିବ ଜବେ ।
ଶ୍ଳୋକ ଲେଖି ନନ୍ଦୟନ୍ତୀ ସ୍ନାନ ଅର୍ଥେ ଗଲା
ଯମୁନା ନଦୀର କୂଳେ ଆଶ୍ରମ ଦେଖିଲା ।
ତା ମଧ୍ୟରେ ହୁଏ ମତ୍ତ କୋକିଳର ନାଦ
ଶୁଣି ଚିନ୍ତାନ୍ୱିତ ହେଲା ନନ୍ଦୟନ୍ତୀ ହୃଦ ।
ବିଚାରଇ ଏ ଆଶ୍ରମ ଋତୁଧ୍ୱଜଙ୍କର
ଏମନ୍ତ ବିଚାରି ବାଳା ପଶିଲା ଭିତର ।
ପରମ କଲ୍ୟାଣୀ ବେଦବତୀକି ଦେଖିଲା
ବଦନ ମଣ୍ଡଳ ତାର ଦିଶୁଛି ଶୁଖିଲା ।
ଲୋଚନ ଯୁଗଳ ତାର ଅତ୍ୟନ୍ତ ଚଞ୍ଚଳ
କମଳିନୀ ମଳିନୀକି ଦେଖି ନିଶାକାଳ ।
ନନ୍ଦୟନ୍ତୀ ରୂପଦେଖି ବେଦମତୀ ଭାଳେ
ଏ ମୋହିନୀ କାହୁଁ ଆସି ରହିଛି ଏସ୍ଥଳେ ।
ଏହା ଭାଳି ଉଠି ସ୍ଥିର ହୋଇଣ ରହିଲା
ପରସ୍ପରେ ମିତ୍ରଭାବ ତହୁଁ ଉପୁଜିଲା ।
ଦୁହେଁ ଆଲିଙ୍ଗନ କଲେ ଦୁହିଁଙ୍କୁ ସ୍ନେହରେ
ଦୁଃଖ କୁହାକୁହି ହୋଇ ରହିଲେ ସତ୍ୱରେ ।
ମୁନିବର ଋତୁଧ୍ୱଜ ଏହି ଅବସରେ
ଶ୍ରୀକଣ୍ଠ ପୂଜିବାପାଇଁ ଅଇଲେ ସେଠାରେ ।
ପଢ଼ିଲେ କାନ୍ଥରେ ଲେଖା ହୋଇଥିବା ଶ୍ଳୋକ
ତାର ଅର୍ଥ ବୁଝିପାରି ତପସ୍ୱୀ ତିଳକ ।
ଧ୍ୟାନବଳେ ଜାଣିପାରି ଉଠିଲେ ତ୍ୱରିତ
ମହାଦେବ ପୂଜାସାରି ସେହି ମୁନିବ୍ରାତ ।
ଅଯୋଧ୍ୟାରେ ପ୍ରବେଶିଲେ ଇକ୍ଷ୍ୱାକୁ ନିକଟେ
କହିଲେ ହେ ନରଶ୍ରେଷ୍ଠ ଏହି ମହାବଟେ ।
ବାନ୍ଧିଛି ମର୍କଟରାଜ ପୁତ୍ରକୁ ମୋହର
ତୁମ୍ଭରାଜା ପ୍ରାନ୍ତେ ଅଛି ସେହି ତରୁବର ।
ତୁମ୍ଭ ପୁତ୍ର ତାଙ୍କୁ କରି ପାରିବ ମୋଚନ
ତା ବିନା କାହାର ସାଧ୍ୟ ନାହିଁ ହେ ରାଜନ ।
ଆପଣଙ୍କ ପୁତ୍ର ନାମ ଶକୁନି ଅଟଇ
ଏ ବିଷୟେ ପାରଗ ସେ ଜାଣ ନରସାଇଁ ।
ମୋର ପିତା ଋଷି କଥା ଶୁଣି କୃଶୋଦରୀ
ପୁତ୍ର ଶକୁନିକ ଦେଲେ କିଛି ନ ବିଚାରି ।
ମହାବାହୁ ଶକୁନି ଯେ ମୋର ସହୋଦର
ଋତୁଧ୍ୱଜ ସଙ୍ଗେ ଗଲେ ଅରଣ୍ୟ ଭିତର ।
ଦେଖିଲେ ସେ ଅତି ଉଚ୍ଚ ବଟ ତରୁବର
ଓହଳରେ ଶ୍ୱେତବର୍ଣ୍ଣ ତାର କଳେବର ।
ତାର ଶିଖେ ଋଷିପୁତ୍ର ପଡ଼ିଛି ବନ୍ଧନେ
ଦେଖିଣ ଶକୁନି ବାଣଯୋଚି ଶରାସନେ ।
ଲତା ପାଶ ଛିଣ୍ଡାଇଲା ଦେଖି ଋତଧ୍ୱଜ
ବଟବୃକ୍ଷେ ଚଢ଼ି ଯାଇଁ ଦେଖିଲେ ଆତ୍ମଜା ।
ପଞ୍ଚବର୍ଷ ଶତକାଳ ହେଲାଣି ଅତୀତ
ଜଟାପାଶେ ବନ୍ଧାହୋଇଅଛି ତାର ହସ୍ତ ।
ତଥାପି ପିତାଙ୍କୁ ଦେଖି ପ୍ରଣମି ମସ୍ତକେ
ମୁନି ଗାଢ଼େ ଆଲିଙ୍ଗନ କଲେ ସ୍ନେହାଧିକ୍ୟେ ।
ମସ୍ତକ ଆଘ୍ରାଣ କରି ମୋଚନ ନିମନ୍ତେ
ଯତ୍ନକରି ନ ପାରିଲେ କଉଣସି ମତେ ।
ମହାବଳ ଶକୁନି ଯେ ଯୋଚି ଦିବ୍ୟବାଣ
ଅତି ଉଚ୍ଚ ବଟବୃକ୍ଷ କଲା ଆରୋହଣ ।
ଏମନ୍ତ ପ୍ରକାରେ ଦୃଢ଼େ ବାନ୍ଧିଛି ବାନର
କାଟି ନ ପାରିଲା ତାକୁ ଶକୁନିର ଶର ।
ଋତଧ୍ୱଜ ସହ ବୃକ୍ଷୁ ଅଇଲେ ଓହ୍ଲାଇ
ଅର୍ଦ୍ଧଚନ୍ଦ୍ର ବାଣକାଢ଼ି ଧନୁଗୁଣେ ଦେଇ ।
ବୃକ୍ଷ ଶାଖା ତିନିଖଣ୍ଡ କଲା ସେହି ଶରେ
ଜାବାଳି ଓହ୍ଲାଇ ଆସେଶାଖା ଘେନି ଶିରେ ।
ଲତାପାଶେ କାଟିଦେଲେ ବନ୍ଧନ ମୋଚନ
ହେବାରୁ ପିତାର ପାଦେ ବନ୍ଦିଲା ନନ୍ଦନ ।
ଶକୁନି ଆବର ପୁତ୍ର ଘେନି ମୁନିବର
ଯମୁନା ନଦୀକି ଗଲେ ସେଠାରୁ ସତ୍ୱର ।

= + =

## ଚିତ୍ରାଙ୍ଗଦା ପରିଣୟ

ଦଣ୍ଡ କହେ ବାଳି ଶୁଣ ଏହି ଅବସରେ
ନନ୍ଦୟନ୍ତୀ ବେଦବତୀ ସେଠାରୁ ସତ୍ୱରେ ।
ଶିବ ଆଉ ଋତଧ୍ୱଜ ଦରଶନ ଅର୍ଥେ
ଯାଇଁ ତହିଁ ବେନିବାଳା ଶିବଙ୍କୁ ଦେଖନ୍ତେ ।
ନିତାନ୍ତ ମଳିନ ଦେହ ଦିଶଇ ତାଙ୍କର
ଚାରିଦିଗେ ପଡ଼ିଅଛି ନିର୍ମାଲ୍ୟ ଆବର ।
ଲଳନା ଲଲାମ ଦୁଇ ବିଚାରିଲେ ବସି
ଜଣାଯାଏ ନ ଥିବାରୁ ଋତୁଧ୍ୱଜ ଋଷି ।
ଶ୍ରୀକଣ୍ଠ ଦେବଙ୍କ ଦଶା ଘଟିଛି ଏମନ୍ତ
ଆମ୍ଭେ ପୂଜୁଥିବା ତାଙ୍କ ଆସିବା ପର୍ଯ୍ୟନ୍ତ ।

ଏତେଭାଳି ସ୍ନାନ କରି ପୂଜିଲେ ଶଙ୍କର
ଗାଲବ ନାମରେ ଖ୍ୟାତ ଏକ ଋଷିବର ।
ଶ୍ରୀକଣ୍ଠ ଦର୍ଶନ ଅର୍ଥେ ମିଳିଲେ ସେ ଦିନେ
ସେ ଲଳନା - ଲଲାମଙ୍କୁ ଦେଖି ସେ କାନନେ ।
ବିଚାରିଲେ କନ୍ୟା ଦୁଇ ଅଟନ୍ତି କାହାର
ବିମଳ ଯମୁନା ଜଳେ ପଡ଼ି ମୁନିବର ।
ସ୍ନାନସାରି କଲେ ଯାଇଁ ଶ୍ରୀକଣ୍ଠ ଅର୍ଚ୍ଚନ
କନ୍ୟା ଦୁଇ ସୁମଧୁର ସ୍ୱରେ କଲେ ଗାନ ।
ମହର୍ଷି ଗାଲବ ଶୁଣି ସେ ମଧୁର ଗୀତ
ଗନ୍ଧର୍ବକନ୍ୟା ଏ ବୋଲିକଲେ ସେନିଶ୍ଚିତ ।
ମହର୍ଷି ଗାଲବ ଦେବପୂଜା ତପସାରି
ଆସିବା ସମୟେ ତାଙ୍କ ସେ ବେନି କୁମାରୀ ।
ଚରଣ ବନ୍ଦନ କରି ଆଗେ ହେଲେ ଉଭା
ମୁନିବର ଦେଖି ସେହି କନ୍ୟାଙ୍କର ଶୋଭା ।
ବୋଇଲେ ତ ତୁମ୍ଭେ ଦୁହେଁ ଅଟ ଭକ୍ତିମତୀ
ଦୁହେଁ କୁଳଭୁଆସୁଣୀ ଅପୂର୍ବ ମୂରତି ।
ତୁମ୍ଭର କେ ପିତା ମାତା କହ ମୋର ଆଗେ
କେମନ୍ତେ ରହିଲ ଆସି ଏହି ବନଭାଗେ ।
କହିଲେ ସେ ମୁନିଆଗେ ସକଳ ବୃତ୍ତାନ୍ତ
ସେ ଦିନ ରହିଲେ ତହିଁ ମୁନି ତପୋବନ୍ତ ।
ହର ପାର୍ବତୀଙ୍କ ପୂଜା ପ୍ରଭାତରୁ ସାରି
ସେ ବାଳା ଦୁହିଁଙ୍କି ଯାଇ କହିଲେ ଏପରି ।
ପୁଷ୍କରାରଣ୍ୟକୁ ମୁହିଁ ଯାଉଛି ଏକ୍ଷଣି
ସେ ବୋଇଲେ କାହିଁପାଇଁ ଯିବ ତପୀମଣି ।
ମହାତେଜା ଅହଂକାରୀ ଗାଲବ କହିଲେ
କାର୍ତ୍ତିକ ପୂର୍ଣ୍ଣମାଦିନ ପୁଷ୍କରେ ରହିଲେ ।
ମହାପୁଣ୍ୟ ହୁଏ ଏହା ଶୁଣି ବାଳା ବେନି
ଆମ୍ଭ ଦୁଇଜଣକୁ ହେ ନିଅ ମହାମୁନି ।
ହେଉ ବୋଲି ମହାମୁନି ପ୍ରଣମି ଈଶ୍ୱରେ
ସେହି ଦୁଇ ଲଳନାକୁ ଘେନି ସଙ୍ଗତରେ ।
ପୁଷ୍କରେ ଦେଖିଲେ ଯାଇ ମହର୍ଷି ମଣ୍ଡଳ
ଋତଧ୍ୱଜ ଋଷି ତହିଁ ନାହାନ୍ତି କେବଳ ।
କ୍ରମେ ଜନପଦ ବାସୀ ଅଇଲେ ସେ ସ୍ଥାନେ
କାର୍ତ୍ତିକ ପୂର୍ଣ୍ଣିମାଦିନ ଅଇଲେ ରାଜନେ ।
ନାଭାଗ ଇକ୍ଷ୍ୱାକୁଆଦି ନରପତିଗଣ
ସ୍ନାନ ଅର୍ଥେ ପୁଷ୍କରକୁ କଲେ ଆଗମନ ।

ମଧ୍ୟମ ପୁଷ୍କର ଜଳେ କନ୍ୟା ଦୁଇ ଘେନି
ସ୍ନାନ ଅର୍ଥେ ପଶନ୍ତେ ସେ ଗାଲବଯେମ୍ନି ।
ବୁଡ଼ନ୍ତେ ଦେଖିଲେ ଜଳମଧ୍ୟେ ମହାମୀନ
ଶୋଇଅଛି ବହୁସଂଖ୍ୟା ମତ୍ସ୍ୟ କନ୍ୟାଗଣ ।
ଆସନ୍ତି ସେ ତାର ପ୍ରୀତିଅର୍ଥେ ବାରମ୍ବାର
ତାହା ଦେଖି କହିଲା ଯେ ତାକୁ ମତ୍ସ୍ୟବର ।
ତୁମ୍ଭେମାନେ ହୋଇଅଛ ସ୍ୱଇଚ୍ଛା ଚାରିଣୀ
ଧର୍ମ କାହାକୁ ଯେ ବୋଲି ନପାରୁଛ ଜାଣି ।
ମୁହିଁ ଜନ ଅପବାଦ ନ ପାରିବି ସହି
ମତ୍ସ୍ୟ କନ୍ୟାଗଣ ତାଙ୍କୁ କହିଲେ କି ତୁହି ।
ନ ଦେଖୁଛୁ ଏ ତାପସ ଗାଲବ ଆଚାର
କନ୍ୟା ଦୁଇ ଘେନି କରେ ଯଥେଚ୍ଛା ବିହାର ।
ଏ ଋଷି ଧର୍ମାତ୍ମା ପୁଣି ଅଟେ ତପୋଧନ
ଲୋକାପବାଦକୁ ଭୟ ନ କରେ ଏ ଜନ ।
ଜଳଚର ହୋଇ କିମ୍ପା କରୁ ତୁହି ଭୟ
ମହାମୀନ କହେ ଶୁଣ ମତ୍ସକନ୍ୟା ଚୟ ।
ଏ ଗାଲବ ରାଗେ ଅନ୍ଧ ମୋହର ଆଚ୍ଛନ୍ନ
ଧର୍ମତତ୍ତ୍ୱ ନ ଜାଣଇ ତେଣୁ ଏ ଅଜ୍ଞାନ ।
ଲୋକ ଅପବାଦକୁ ଯେ ଭୟ ନ କରଇ
ଗାଲବ ମତ୍ସ୍ୟର କଥା ଶୁଣି ଲାଜପାଇ ।
ନ ଉଠି ରହିଲେ ସେହି ଜଳେ ମଗ୍ନ ହୋଇ
ସ୍ନାନ ସାରି କୂଳେ ରହିସେହି କନ୍ୟା ଦୁଇ ।
ଗାଲବଙ୍କ ଅପେକ୍ଷାରେ ରହିଲେ ସେ ସ୍ଥାନେ
ଯାତ୍ରା ଶେଷ ହେଲାଗଲେ ଯେ ଯାହା ଭୁବନେ ।
ସରୁମଧ୍ୟା ଚାରୁଅଙ୍ଗୀ ଅତି ସୁକୁମାରୀ
ଚିତ୍ରାଙ୍ଗଦା କନ୍ୟା ବିଶ୍ୱକର୍ମାର କୁମାରୀ ।
ଏକାକିନୀ ହୋଇ ବାଳା ଚାହେଁ ଚାରିଦିଗେ
ଗୋଟିଏ ନାହାନ୍ତି କେହି ତୀର୍ଥ ବନଭାଗେ ।
କନ୍ୟା ଦୁଇ ଛିଡ଼ା ହୋଇ ରହିଛନ୍ତି କୂଳେ
ଗାଲବ ଯେ ଲାଜେ ବୁଡ଼ି ରହିଛନ୍ତି ଜଳେ ।
ଦେବବତୀ ନାମେ ଏକ ଗନ୍ଧର୍ବ ଦୁହିତା
ପାର୍ଜନ ଗନ୍ଧର୍ବ ପିତା ଘୃତାଚୀ ତା ମାତା ।
ସ୍ନାନସାରି ସେ ମଧ୍ୟମ ପୁଷ୍କର ତୀର୍ଥରେ
ଦୁଇ କନ୍ୟା ରହିଛନ୍ତି ଦେଖେ ଦୂଇତୀରେ ।
ଚିତ୍ରାଙ୍ଗଦା ନିକଟକୁ ଯାଇ ସେ ସୁନ୍ଦରୀ
ଧୀରେ ଧୀରେ ପଚାରଇ କହ ସୁକୁମାରୀ ।

ତୁ କହା କୁମାରୀ ଏହି ନିର୍ଜନ କାନନେ
ଏକାକିନୀ ହୋଇ ରହିଅଛୁ ବରାନନେ ।
ଏହା ଶୁଣି ଚିତ୍ରାଙ୍ଗଦା କହେ ଗୋ ସୁନ୍ଦରି
ଚିତ୍ରଙ୍ଗଦା ମୁହିଁ ବିଶ୍ୱକର୍ମାର କୁମାରୀ ।
ଆଗୋ ଭଦ୍ରେ ଦିନେ ମୁହିଁ ସଖୀଗଣ ଘେନି
ମିଳିଲି ନୈମିଷ ବନେ ଯେ ଧର୍ମ ଜନନୀ ।
ଯାର ନାମ କାଞ୍ଚନାକ୍ଷୀ ପବିତ୍ର ଯା ନୀର
ସ୍ନାନ ଅର୍ଥେ ଗଲି ସେହି ସରସ୍ୱତୀ ତୀର ।
ବିଦର୍ଭବଂଶଜ ରାଜନନ୍ଦନ ସୁରଥ
ମୋତେ ଦେଖି ତାକୁ ପୀଡ଼ା ଦେଲା ମନମଥ ।
ତାର ଭୟେ ନେଲା ସେହି ଯୁବା ମୋ ଶରଣ
ବିଚାରିଲି କରିବି ମୁଁ ଆତ୍ମସମର୍ପଣ ।
ସଖୀଏ ନିଷେଧ କଲେ ତାହା ମୁଁ ନ ମାନି
ସୁରଥକୁ ଆତ୍ମଦାନ କଲି ସୁବଦନି ।
ଏହା ଜାଣିପିତା ମୋତେ କୋପେ ଦେଲେ ଶାପ
ଘଟିଲା ବିଚ୍ଛେଦ ଦଶା ହେଲି ମୃତ କଳ୍ପ ।
କୌଣସି ଗୁହ୍ୟକ ମୋତେ କହିଲେ ନ ମର
ଅବଶ୍ୟ ଭେଟିବୁ ଦିନେ ତୁ ରାଜକୁମାର ।
ତାଙ୍କ କଥା ମାନି ଗଲି ଶ୍ରୀକଣ୍ଠ ଦର୍ଶନେ
ଗୋଦାବରୀ ଜଳେ ସ୍ନାନ କରି ସେହି ବନେ ।
ଶ୍ରୀକଣ୍ଠଦର୍ଶନ କରି ଅଇଲି ଏ ତୀର୍ଥେ
ମୋ ହୃଦୟବଲ୍ଲଭଙ୍କୁ ନ ପାଇଲି ଏଥେ ।
ତୁମ୍ଭେ କିଏ ଆସିଅଛ ଏଥେ କି କାରଣେ
ସତ୍ୟ କରି ମୋ ନିକଟେ କହ ବରାନନେ ।
ଦେବବତୀ କହେ ଶୁଣ ଆଗୋ କୃଶୋଦରୀ
ମୁଁ ହତଭାଗିନୀ ଅଟେ ପର୍ଜନ୍ୟ କୁମାରୀ ।
ଘୃତାଚୀମୋହର ମାତା ନାମ ଦେବବତୀ
ଅରଣ୍ୟେ ବିହାର କରୁ ଏକ କପିପତି ।
ସେ ଆସି କହିଲା ମୋତେ ଆଲୋ ବେଦବତୀ
କେ ତୋତେ ଆଣିଲା ମେରୁ ଗିରିକି ସଂପ୍ରତି ।
ପୁଣ୍ୟ ଆଶ୍ରମରେ ତୋତେ ରଖିଥିଲି ମୁହିଁ
କେମନ୍ତେ ଆସିଲୁ କହ ମୋ ଆଗରେ ତୁହି ।
ମୁଁ ବୋଇଲି ମୋର ନାମ ନୁହେଁ ବେଦବତୀ
ମୁଁ ଗନ୍ଧର୍ବସୁତା ମୋର ନାମ ଦେବବତୀ ।
ଏହି ମେରୁ ପରବତ ମୋ ବିହାର ସ୍ଥାନ
ସେ ଦୁଷ୍ଟ ବାନର ଶୁଣି ମୋହର ବଚନ ।
ମୋତେ ଧରିବାକୁ ଧାଇଁ ଆସିଲା ସେବେଗେ
ମୁଁ ତହୁଁ ପଳାଇ ଗଲି ବନ୍ଧୁ ଜୀବ ନଗ୍ରେ ।
ସେ ପର୍ବତ ପାଦେ ଭାଙ୍ଗିପକାଇ ବାନର
ମୋ ପାଖକୁ ଆସନ୍ତେ ମୁଁ ଏକ ତରୁବର ।
ନିକଟେ ଥିବାର ଦେଖି ଚଢ଼ିଲି ବହନ
ତାର ଶାଖା ଦୃଢ଼ରୂପେ କଲି ଆଲିଙ୍ଗନ ।
ତାହା ଦେଖି କପିବର ସେ ବୃକ୍ଷ ଉପାଡ଼ି
ସାଗର ଜଳକୁ ଦେଲା କ୍ରୋଧରେ ଫୋପାଡ଼ି ।
ବୃକ୍ଷ ସହ ଜଳ ମଧ୍ୟେ ପଡ଼ିଲି ମୁଁ ଯାଇଁ
ହା ହା କାର ଶବଦରେ ପୂର୍ଣ୍ଣ ଶୂନ୍ୟ ଭୂଇଁ ।
ହାୟ ହାୟ ବୋଲିସିଦ୍ଧ ଗନ୍ଧର୍ବେ ବୋଇଲେ
ସ୍ୱୟଂ ବ୍ରହ୍ମା ଆସି ଦିନେ କହି ଯାଇଥିଲେ ।
ଇନ୍ଦ୍ରଦ୍ୟୁମ୍ନ ନୃପତିର ହେବ ଏ ମହିଷୀ
ସେ ମନୁର ପୁତ୍ର ବୀର୍ଯ୍ୟବନ୍ତ ରାଜରଷି ।
ମୁହିଁ ସେହି ଜଳେ ପଡ଼ି ହୋଇଲି ଅଜ୍ଞାନ
ଜାଣି ନ ପାରିଲି ବୃକ୍ଷ କେ କଲା ଛେଦନ ।
ଭାସି ଭାସି ଗଲି ମୁହିଁ ସମୀରଣ ଯୋଗେ
ଏ ପ୍ରଦେଶେ ଲାଗିଲି ମୁଁ ମୋର ପୂର୍ବଭାଗ୍ୟେ ।
ତୁମ୍ଭ ସହିତରେ ଭେଟ ହେଲା ଗୋ ସୁନ୍ଦରି
ଉଠି ଚାଲ ଏଥୁ ଆମ୍ଭେ ଯିବା ବେଗ କରି ।
ପୁଷ୍କର ଉତ୍ତର ତୀରେ କନ୍ୟା ଦୁଇ ଦେଖି
ବରାଙ୍ଗୀ ସେ ଚିତ୍ରାଙ୍ଗଦା ବୋଲେ ଚାଲ ସଖି ।
ପୁଷ୍କର ଉତ୍ତର ତୀରେ ଗଲେ ସେ ସୁତନୁ
ସାକ୍ଷାତେ ପଦ୍ମିନୀ କି ଆସି ପଦ୍ମବନୁ ।
ଉଭା ହୋଇଛନ୍ତି ଦେଖି ତାଙ୍କୁ ପଚାରିଲେ
ସେ ତାଙ୍କ ବୃତ୍ତାନ୍ତ ସବୁ ବିସ୍ତାରି କହିଲେ ।
ଦୁଃଖ କୁହାକୁହି ତହୁଁ ହେଲେ ପରସ୍ପରେ
ଚାରିଜଣ ମିଳି ସପ୍ତ ଗୋଦାବରୀ ନୀରେ ।
ସ୍ନାନ କରି ପୂଜାକଲେ ହାଟକେଶ୍ୱରଙ୍କୁ
ଏହିପରି ନିତ୍ୟ ତହିଁ ପୂଜନ୍ତି ତାହାଙ୍କୁ ।
ତାଙ୍କ ପାଇଁ ଋତଧ୍ୱଜ ଜାବାଳି ଶକୁନି
ବହୁ ବର୍ଷ ଭ୍ରମି ଭ୍ରମି କୋଶଳେ ସେ ତିନି ।
ପ୍ରବେଶି ଦେଖିଲେ ମନୁ ପୁତ୍ର ଇନ୍ଦ୍ରଦ୍ୟୁମ୍ନ
ରାଜ୍ୟେ ରାଜା ହୋଇ ପ୍ରଜା ପାଳେ ପୁତ୍ରସମ ।
ଆଦ୍ୟ ଅର୍ଘ୍ୟ ଦେଇ ତାଙ୍କୁ କଲା ସମାଦର
ନୃପତିର ସମାଦର ଦେଖି ମୁନିବର ।

ବୋଇଲେ ହେ ଇନ୍ଦ୍ରଦ୍ୟୁମ୍ନ କୋଶଳ ରାଜନ
ସମଗ୍ର ପୃଥିବୀ ଆମ୍ଭେ କଲୁ ପର୍ଯ୍ୟଟନ ।
ନନ୍ଦୟନ୍ତୀ ନାମେ ପୁତ୍ରୀ ନ ପାଇଲୁ କାହିଁ
ଏ ବିଷୟେ ସହାୟ କି ହେବ ନରସାଇଁ ।
ନୃପତି କହିଲେ ଶୁଣ ଆହେ ମୁନିବର
ତବ ସୁତା କେଣେ ଗଲା ମୋର ଅଗୋଚର ।
ତା ପାଇଁ ମୁଁ କରିଥିଲି ବହୁ ପରିଶ୍ରମ
କାହା ଆଗେ କହିବି ତା ମହର୍ଷି ସତ୍ତମ ।
ଶୈଳାକୃତି ତରୁବର ଗଗନୁ ପଡ଼ନ୍ତେ
ସିଦ୍ଧଗଣ କଥା ଶୁଣି ଧନୁଶର ହସ୍ତେ ।
ସବୁଖଣ୍ଡ ଖଣ୍ଡ କଲି ଦିବ୍ୟ ସର ମାରି
ସେହି ବ୍ରରୋହାକୁ ମୁଁ ଦେଲି ଭିନ୍ନ କରି ।
ତହୁଁ ସେ ଲଳନାବର ଗଲା ଚାଲି କେଣେ
ଚାଲ ତୁମ୍ଭ ସଙ୍ଗେ ଯିବି ତାର ଅନ୍ୱେଷଣେ ।
ଏହା କହି ରାଜା ତହୁଁ ଉଠିଲା ତ୍ୱରିତ
ଭ୍ରାତୃପୁତ୍ର ଶକୁନିକି ଦେଲେ ଦିବ୍ୟ ରଥ ।
ଋତଧ୍ୱଜ ଜାବାଳି ଯେ ବସିଲେ ସେ ରଥେ
ରଥେକ ଆରୋହି ନୃପଗଲେ ତାଙ୍କ ସାଥେ ।
ଅନ୍ୱେଷଣ କରିବାକୁ ଗଲେ ରଥ ବାହି
ବଦରିକା ଆଶ୍ରମରେ ମିଳିଲେ ସେ ଯାଇ ।
ଦେଖିଲେ ତପସ୍ୟା କରେ ବସି ଏକ ଜନ
ତପୋବଳେ ତାର ଦେହ କୃଶ ଅତି ଦୀନ ।
ମଳ ପଙ୍କେ ଲିପ୍ତ ଅଙ୍ଗ ଶିରେ ଜଟାଭାର
ସୁଦୀର୍ଘ ନିଃଶ୍ୱାସ ଛାଡ଼େ ସେହି ଯୁବାବର ।
ମହାବାହୁ ଇନ୍ଦ୍ରଦ୍ୟୁମ୍ନ ତା ପାଶକୁ ଯାଇ
କହିଲେ ଭୋ ତପୋଧନତୁମ୍ଭେ ଯୁବା ହୋଇ ।
ଏ କଠୋର ତପ କର କହ କି ନିମନ୍ତେ
ସେ ତପୀ କହିଲେ ତୁମ୍ଭେ କହ କି ଏ ମୋତେ ।
ମୁଁ ଅତି ଶୋକାର୍ତ୍ତ ପୁଣି ଅଟେ ଅତି ଦୀନ
ସେ କାରଣୁ ତପ କରେ ଆହେ ମହାତ୍ମନ ।
ଇନ୍ଦ୍ରଦ୍ୟୁମ୍ନ କହିଲେ ମୁଁ କୋଶଳ ନୃପତି
ଶାକଳ ନଗର ଅଟେ ମୋହର ବସତି ।
ମନୁର ନନ୍ଦନ ମୁହିଁ ଇକ୍ଷ୍ୱାକୁର ଭାଇ
କହିଲା ତାହାର ପୂର୍ବକଥା ତପୀସାଇଁ ।
ଇନ୍ଦ୍ରଦ୍ୟୁମ୍ନ କହିଲେ ତୁ ଭ୍ରାତୃ ପୁତ୍ର ମୋର
ପରିତ୍ୟାଗ ନ କରି ତୁ ଏକ କଳେବର ।
ଖୋଜିବା ସେ କୃଶାଙ୍ଗୀ କି ଆସମୋର ସଙ୍ଗେ
କୋଳକରି ବସାଇଲେ ନେଇରଥେବେଗେ ।
ଋତଧ୍ୱଜ ନିକଟରେ ପ୍ରବେଶିଲେ ଯାଇଁ
ସେ ପୃଥିବୀପତି କି ଯେ ଦେଖି ତପୀସାଇଁ ।
ବୋଇଲେ ରାଜନ ଆସ ଶୋଚନା ନ କର
ଚିତ୍ରାଙ୍ଗଦା ଅଛି ସପ୍ତ ଗୋଦାବରୀ ତୀର ।
ଯାହାକୁ ତୁ ପାଇଥିଲୁ ନୈମିଷ କାନନେ
ତାହାକୁ ମୁଁ ରଖିଅଛି ନେଇ ସେହିସ୍ଥାନେ ।
ସେଠାବରେ ତିନିକନ୍ୟା ଅଛନ୍ତି ଆବର
ଏହା କହି ଆଶ୍ୱାସନା କଲେ ମୁନିବର ।
ସୁରଥ ଶକୁନି ପୁତ୍ର ଇନ୍ଦ୍ରଦ୍ୟୁମ୍ନ ଘେନି
ରଥଚଢ଼ି ଗୋଦାବରୀ ତୀର୍ଥେ ଗଲେ ମୁନି ।
କୃଶାଙ୍ଗୀ ଘୃତାଚୀ ହୋଇ ଶୋକରେ କାତରା
ଆପଣାର ଦୁହିତାକୁ ଖୋଜନ୍ତି ସତ୍ୱରା ।
ଉଦୟ ପର୍ବତେ ହେଲା କପିର ସାକ୍ଷାତ
ଘୃତାଚୀ ବୋଇଲେ କପି କହ କରି ସତ୍ୟ ।
ଦେଖିଛ କି ମୋର ପୁତ୍ରୀ ରହିଅଛି କାହିଁ
ଏହା ଶୁଣି କପି ବୋଲେ ମିଥ୍ୟା କହୁନାହିଁ ।
ତୋ ପୁତ୍ରୀକି ରଖିଅଛି କାଳିନ୍ଦୀର ତୀରେ
ଶ୍ରୀକଣ୍ଠଙ୍କ ଆୟତନେ ପୁଣ୍ୟ ଆଶ୍ରମରେ ।
ତାର ନାମ ବେଦବତୀ ନୋହେ ଦେବବତୀ
ଘୃତାଚୀ ବୋଇଲା ଆସ ଯିବା କପିପତି ।
ଘୃତାଚୀ ବାନର ଦୁହେଁ ଗଲେ ଖରତରେ
ମହାପୁଣ୍ୟା କଉଶିକୀ ନଦୀ ତୀରେ ତୀରେ ।
ଦେଖିଲେ ଅଛଇ ତହିଁ ପାଞ୍ଚଗୋଟି ରଥ
ଜାବାଳି କପିକି ଦେଖି ବୋଲେ ଆହେ ତାତ ।
ବୃକ୍ଷେ ମୋତେ ବାନ୍ଧିଥିଲା ଏ ଦୁଷ୍ଟ ବାନର
ଶକୁନି ଏ କଥା ଶୁଣି ଧରି ଧନୁଶର ।
ବୋଇଲେ ହେ ମୁନିବର ଆଜ୍ଞାଦିଅ ମୋତେ
ଏ ଦୁଷ୍ଟ କପିକି ମୁହିଁ ମାରେ ବାଣାଘାତେ ।
ଋତଧ୍ୱଜ ଶକୁନି କି ବୋଇଲେ ହେ ତାତ
ବଧ ବନ୍ଧନ ଏ ଦୁଇ କର୍ମ ପୂର୍ବକୃତ ।
ଶକୁନି ବୋଇଲେ ତେବେ କି କରିବି କହ
ସଂପ୍ରତି ହୋଇଛି ମୁହିଁ ତବ ଆଜ୍ଞାବହ ।
କହିଲେ ସେ ମୁନି କପି ବଦନକୁ ଚାହିଁ
ମୋ ପୁତ୍ରକୁ ବଟବୃକ୍ଷେ ବାନ୍ଧିଥିଲୁ ତୁହି ।

କେହି କାଟି ନ ପାରିଲେ ତାର ଜଟାପାଶ
ବୃକ୍ଷ ଶାଖା ତିନିଖଣ୍ଡ କଲେ ଏ ନରେଶ ।
ଦେଖ ପୁତ୍ର ବୃକ୍ଷ ଶାଖା କରିଛି ବହନ
ସେ ଜଟା ପାଶକୁ ଏବେ କର ତୁ ମୋଚନ ।
ଦଶବର୍ଷ ହେଲା ଶାଖା ବହିଛି ଏ ଶିରେ
ଏମନ୍ତ ପୁରୁଷ କେହି ନାହିଁ ଏ ସଂସାରେ ।
ଦେବ ମୋର ପୁତ୍ର ଜଟା ପାଶକୁ ଫିଟାଇ
ଋତୁଧ୍ୱଜ ଋଷି ବାଣୀ ଶୁଣି କପିସାଇଁ ।
ଜାବାଳିର ଜଟାଭାର ଧୀରେ ଧୀରେ ଧରି
ମୁହୂର୍ତ୍ତକେ ଫିଟାଇଲା ଦେଖି ତପଚାରୀ ।
ପ୍ରସନ୍ନେ କହିଲେ କପି ମାଗି ଘେନ ବର
ଋତଧ୍ୱଜ କଥା ଶୁଣି କହଇ ବାନର ।
ମୁହିଁ ବିଶ୍ୱକର୍ମା ମୋତେ ଶାପ ଦେଲେ ମୁନି
ତେଣୁ ମୁହିଁ ପାଇଅଛି ଏ ବାନର ଯୋନି ।
ଆବର କରିଛି ମୁହିଁ ପାପ ବହୁତର
ଏ ସକଳ ଦୋଷ କ୍ଷୟ ଯାଉ ଯେ ମୋହର ।
ଋତୁଧ୍ୱଜ କହିଲେ ତୁ ଘୃତାଚୀ ଉଦରେ
ବଳବନ୍ତ ପୁତ୍ର ଜାତକର ଯା ସତ୍ୱରେ ।
ପୁତ୍ରମୁଖ ଦେଖି ଶାପୁଁ ହୋଇବୁ ମୁକତ
ବର ପାଇ କପିମଣି ହୋଇ ଆନନ୍ଦିତ ।
ମହାନଦୀ ଜଳେ ସ୍ନାନ କରିଣ ସତ୍ୱରେ
ଘୃତାଚୀର ଅନୁଗାମୀ ହେଲା କପିବରେ ।
ସର୍ବେ ସ୍ନାନ ତରପଣ ସାରି ଚଢ଼ି ରଥ
ଋଷି ପୁତ୍ର ଇନ୍ଦ୍ରଦ୍ୟୁମ୍ନ ଶକୁନି ସୁରଥ ।
ଏହି ପାଞ୍ଚଜଣ ଗଲେ ତହୁଁ ଆନନ୍ଦରେ
ଘୃତାଚୀ ଯେ ଡେଇଁଯାଇ ମିଳିଲା ସ୍ୱର୍ଗରେ ।
ତାର ପଛେ ପଛେ ଡ଼େଇଁଗଲା କପିବୀର
ସତ୍ୱରେ ଧଇଲା ଯାଇଁ ଘୃତାଚୀର କର ।
ଘୃତାଚୀକି ଘେନିଗଲା କୋଳାହଳ ଗିରି
ବିହାର କଲେ ଯେ ବହୁକାଳ ତା ଉପରି ।
ତହୁଁ ପୁଣି ରଥ ଚଢ଼ି ଗଲେ ପାଞ୍ଚଜଣ
ସପ୍ତ ଗୋଦାବରୀ ତୀର୍ଥ କରିଣ ଭ୍ରମଣ ।
ପରିଶ୍ରାନ୍ତ ତୃଷାତୁର ହୋଇ ସେହି ଜଳେ
ସ୍ନାନ ଜଳ ପାନକଲେ ରହିଣ ସକଳେ ।
ତୃପ୍ତ ହୋଇ ଗଲେ ତହୁଁ ଦେବାଳୟସ୍ଥାନେ
ଅଶ୍ୱ ଖୁରଧ୍ୱନି ଶୁଣି ବରାଙ୍ଗନାମାନେ ।
ଏ କି ଶବ୍ଦ କହି ପୁଣି ହୋଇଲେ ଚକିତ
ହାଟକେଶ୍ୱରଙ୍କ ପାଶେ ମିଳିଲେ ତ୍ୱରିତ ।
ବଡ଼ଭୀ ଉପରେ ଚଢ଼ି ଚଉଦିଗେ ଚାହିଁ
ଏହି ପାଞ୍ଚଜଣ ତାଙ୍କୁ ଦେଲେକ ଅନାଇଁ ।
ଜଟାଧାରୀ ସୁରଥକୁ ଦେଖି ଚିତ୍ରାଙ୍ଗଦା
ପୁଲକିତା ହୋଇଲା ସେ ବରାଙ୍ଗୀ ପ୍ରମଦା ।
ବୋଇଲା ସଖୀଙ୍କି ଚାହିଁ ସହାସ୍ୟ ବଦନେ
ଶ୍ୟାମଳ ଜଳଦନିଭ ଦେଖୁଛ ନୟନେ ।
ସେହି ମହାବାହୁ ଯୁବା ପୁରୁଷ ମୋ ପତି
ସେ ରାଜନନ୍ଦନ ରୂପ ମନୋହର ଅତି ।
ଯାହାଙ୍କର ବର୍ଣ୍ଣ ଦିଶେ ଜାମ୍ବୁନଦ କରି
ଶ୍ୱେତବର୍ଣ୍ଣ ଜଟାଭାର ଶୋହେ ଶିରୋପରି ।
ସେହି ମୁନି ଋତଧ୍ୱଜ ତପସ୍ୱୀ ପ୍ରବର
ନନ୍ଦୟନ୍ତୀ କନ୍ୟାର ଯେ ଫୁଲ୍ଲ କଳେବର ।
ସଖୀଙ୍କି କହଇ ତାଙ୍କ ପଛେ ଦେଖ ଆଳୀ
ଆସୁଅଛି ଋତୁଧ୍ୱଜ ନନ୍ଦନ ଜାବାଳି ।
ଏହାକହି ବଡ଼ଭୀରୁ ଅଇଲେ ଓହ୍ଲାଇ
ଶମ୍ଭୁଆଗେ ମନୋହର ଗୀତ ବସି ଗାଇ ।
ଆହେ ଶମ୍ଭୁ ଆହେ ସର୍ବ ଭୋ ପ୍ରଭୁ ତ୍ରିନେତ୍ର
ଉମାପତି ତ୍ରଇଲୋକ୍ୟନାଥ ଚାରୁ ଗାତ୍ର ।
ନମୋ ନମୋ ଦକ୍ଷଯଜ୍ଞ ବିଧ୍ୱଂସକାରକ
କାମାଙ୍ଗନାଶନ ଘୋରପାପ ବିନାଶକ ।
ମହାପୁରୁଷ ହେ ସର୍ବସତ୍ୱକ୍ଷୟକର
ମହାଉଗ୍ର ମୂର୍ତ୍ତି ଶୁଭଙ୍କର ଭୟଙ୍କର ।
ମୁରାରି ତ୍ରିଶୂଳଧର ଆହେ ଗୁହ୍ୟଧାମ
ମହାଶଙ୍ଖ ଶେଖର ହେ ତୁମ୍ଭଙ୍କୁ ପ୍ରଣାମ ।
ନମୋ ନମୋ ଦିଗମ୍ବର ନମୋ ଜଟାଧର
ନମସ୍ତେ କପାଳମାଳା - ଭୂଷିତ-ଶରୀର ।
ବାମଚକ୍ଷୁ କ୍ଷୁଭିତ ହେ ପ୍ରଜାଧକ୍ଷ ଦେବ
ଭଗଅକ୍ଷି କ୍ଷୟଙ୍କର ଭୀମସେନ ଶିବ ।
କାମାଙ୍ଗଦାହି ଭୋ ନାଥ ଦେବ ପଶୁପତି
ଚତ୍ୱରବାସୀ ହେ ମହାଦେବ ମହାଯତି ।
ଈଶାନ ଶଙ୍କର ଭୀମ ବୃଷଧ୍ୱଜ ଭବ
ପ୍ରୌଢ଼ ମହାନାଟ୍ୟେଶ୍ୱର ହେ ପ୍ରଭୁ କୈଟଭ ।
ଅବିମୁକ୍ତ ଭୂତିରତ ରୁଦ୍ର ରୁଦ୍ରେଶ୍ୱର
କାଳିନ୍ଦୀପ୍ରିୟ ହେ ସ୍ଥାଣୁ ରିପୁ ଭୟଙ୍କର ।

ଅଘୋର ଅପରାଜିତ ନମସ୍ତେ ଶ୍ରୀକଣ୍ଠ
ଏକଲିଙ୍ଗ ବାମଦେବ ପ୍ରଭୁ ନୀଳକଣ୍ଠ ।
ତପୁରୁଷ ମହାଘୋର ଅଘୋର ମୂରତି
ଶାନ୍ତ ସରସ୍ୱତୀ କାନ୍ତ ସହସ୍ର ମୂରତି ।
ମହୋଭବ କାଳାଗ୍ନି ହେ ରୁଦ୍ର ରୌଦ୍ରହର
ସର୍ବତୀର୍ଥାଧିବାସ ହେ ପ୍ରିୟ ମହୀଧର ।
ହେ ବିଭୁ ହେ ଅଧିପତି କାମେଶ୍ୱର ହଂସ
ହେ କେଦାର ମୁଚୁକୁନ୍ଦ ହେ ମଧୁ ନିବାସ ।
ଭୟଙ୍କର ବିଦ୍ୟାରାଜ ହେ କୃପାଣପାଣି
ସୋମରାଜ କାମରାଜ ନମୋ ବ୍ରହ୍ମଯୋନି ।
ମହୀଧରରାଜକନ୍ୟା - ହୃଦବ୍ଜ ବସତି
ହେ ସମୁଦ୍ରଶାୟି ତୋର ଚରଣେ ପ୍ରଣତି ।
ଗୋକର୍ଣ୍ଣ ହାଟକେଶ୍ୱର ପାଦେ ନମସ୍କାର
ସହସ୍ର ବକ୍ରାକ୍ଷି ପାଦ ଗୟାମୁଖ ହର ।
ଏ ସମୟେ ଉପସ୍ଥିତ ହେଲେ ପାଞ୍ଚଜଣ
ହାଟକେଶ୍ୱର ଶମ୍ଭୁଙ୍କ କରିଲେ ଦର୍ଶନ ।
ସ୍ନାନ ନିତ୍ୟକର୍ମ ସାରି ଦେଖିଲେ ସେଠାରେ
ଗୀତ ଗାଉଛନ୍ତି ଚାରି ଲଳନା ସୁସ୍ୱରେ ।
ସୁଦେବତନୟ ଦେଖି ଚିତ୍ରାଙ୍ଗଦା ମୁଖ
ହୃଷ୍ଟ ପୁଲକିତ ହେଲା ଗଲା ସର୍ବସୁଖ ।
ଦେଖି ଋତଧ୍ୱଜଙ୍କର ଆନନ୍ଦ ଅପାର
ସାରିଲେ ଶମ୍ଭୁଙ୍କ ପୂଜା ସ୍ତବ ନମସ୍କାର ।
ଏ ପାଞ୍ଚ ଜଣଙ୍କୁ ଦେଖି ଚିତ୍ରଙ୍ଗଦା ବାଳୀ
ଉଠି ନମସ୍କାର କଲା ଘେନି ସର୍ବଆଳି ।
ସେଠାରେ ବସିଲେ ହୃଷ୍ଟଚିତ୍ତେ ପାଞ୍ଚଜଣ
ଏ ସମୟେ ଘୃତାଚୀକି ଘେନି କପିଗଣ ।
ଶମ୍ଭୁ ଦରଶନ ଅର୍ଥେ ସେଠାରେ ମିଳିଲେ
ଗୋଦାବରୀ ତୀର୍ଥଜଳେ ପଶି ସ୍ନାନକଲେ ।
ମିଳିଲେ ହାଟକେଶ୍ୱର ପ୍ରଭୁ ସନ୍ନିଧାନେ
ଚିତ୍ରାଙ୍ଗଦା ଜନନୀକି ଦେଖି ହୃଷ୍ଟମନେ ।
ବନ୍ଦିଲା ଚରଣ ଦୁଇ ସଜଳନୟନା
ଦୁହିତାକୁ ଘୃତାଚୀ ହେ ଦେଖି ହୃଷ୍ଟମନା ।
ସବାଷ୍ପନୟନେ ସ୍ନେହେ କଲା ଆଲିଙ୍ଗନ
ମସ୍ତକକୁ ଆଘ୍ରାଣ ଯେ କଲା ପୁନଃ ପୁନଃ ।
କହିଲେକ ଋତଧ୍ୱଜ ଆହେ କପିସାଇଁ
ଅଞ୍ଜନପର୍ବତୁ ଆଣ ଗୁହ୍ୟକକୁ ଯାଇ ।
ପାତାଳକୁ ଆଣ ବୀର କନ୍ଦର ମାଳୀକି
ସ୍ୱର୍ଗରୁ ଆଣ ଗନ୍ଧର୍ବ ପର୍ଜନ୍ୟକୁ ଡାକି ।
ଦେବବତୀ କହିଲା ହେ କପିକୁଳମଣି
ଗାଲବ ମୁନିଙ୍କି ଡାକି ଆଣିବ ଯେ ପୁଣି ।
ଅମିତ ବିକ୍ରମ ସେହି କପୀନ୍ଦ୍ର ଶେଖର
ଅଞ୍ଜନ ପର୍ବତେ ଯାଇଁ ମିଳିଲା ସତ୍ୱର ।
ଗୁହ୍ୟକକୁ ନିମନ୍ତ୍ରଣ କରି ଗଲା ଶୂନ୍ୟେ
ପର୍ଜନ୍ୟକୁ ନିମନ୍ତି ସେ ଅମର ଭୁବନେ ।
ପାତାଳେ କନ୍ଦରମାଳୀ ଦନୁଜକୁ କହି
ତୁରିତେ ନିମନ୍ତି ଗଲା ଚରାଚର ମହୀ ।
ଗାଲବଙ୍କୁ ପାଇଲା ସେ ମାହିଷ୍ମତି ପୁରେ
ତାହାଙ୍କୁ ଘେନିଣ ମିଳେ ଗୋଦାବରୀ ତୀରେ ।
ତାର ଜଳେ ସ୍ନାନକରି ଅଇଲା ସତ୍ୱର
ପ୍ରବେଶିଲେ ଯହିଁ ବିଜେ ହାଟକଈଶ୍ୱର ।
ନନ୍ଦୟନ୍ତୀ ଦେବବତୀ ଦୁହେଁ ଉଠି ବେଗେ
ପ୍ରଣମିଲେ ସେ ଗାଲବ ମୁନି ପାଦଯୁଗେ ।
ଗାଲବଙ୍କୁ ପୂଜାକଲେ ନରପତି ଗଣ
ଗୁହ୍ୟକ ଗନ୍ଧର୍ବ ଦୈତ୍ୟ ପାଇ ନିମନ୍ତ୍ରଣ ।
ମିଳିଲେ ସେଠାରେ ଆସି ଏମନ୍ତ ସମୟେ
ପୃଥୁନେତ୍ରା ପୁତ୍ରୀତ୍ରୟ ଆନନ୍ଦ ହୃଦୟେ ।
ପିତୃଙ୍କ ଚରଣ ବନ୍ଦି ଉଭା ହେଲେ ଆଗେ
ତାହା ଦେଖି ଚିତ୍ରାଙ୍ଗଦା ବୋଲେ ମୋର ଭାଗେ ।
ନାହିଁ ଏହି ସୁଖ କାହିଁ ପାଇବି ଭାବିଲେ
ପିତାଙ୍କୁ ଦେଖିବି ଅବା ଏହି ଜନ୍ମ ଗଲେ ।
ଏମନ୍ତ ଭାଳି ସେ ବାଳୀ ସଜଳନୟନା
ଋତଧ୍ୱଜ କହିଲେକ ନୁହ ତୁ ବିମନା ।
ଏ ବାନର ତୋର ପିତା ଏହା ଶୁଣି ବାଳୀ
ଲାଜେ ଅଧୋବଦନରେ ମନ ମଧ୍ୟେ ଭାଳି ।
ବିଶ୍ୱକର୍ମା ପିତା ହେଲା କିରୂପେ ବାନର
ମୋର ମନ୍ଦକର୍ମେ ସିନା ହେଲା ଏ ପ୍ରକାର ।
ଏହି ପାପକଳେବର ରଖିବି କାହିଁକି
ପିତାକୁ ବାନର କରେ ଦୁହିତା ହୋଇକି ।
ଦୁହିତା କରଇ ସିନା ପିତାକୁ ଉଦ୍ଧାର
ଏ କାରଣୁ ତ୍ୟାଗଯୋଗ୍ୟ ଏ ଶାପ ଶରୀର ।
ଏହା ଭାଳି ଋତଧ୍ୱଜ ମୁନିଙ୍କି କହିଲା
ମହାପାପ ହେତୁ ମୋର ଚେତା ହତହେଲା ।

ଏ ଜୀବନ ନ ରଖିବି ମୁଁ ପିତୃଘାତିନୀ
ଅନୁମତି ଦିଅ ମୋତେ ଆହେ ମହାମୁନି ।
ମୁନି ବୋଇଲେ ତୁ କିମ୍ପା ତେଜିବୁ ପରାଣ
ପୂର୍ବଦେହ ପାଇବ ତୋ ପିତା ପୁଣି ଜାଣ ।
ବଳବନ୍ତ ପୁତ୍ର ଜାତ ଘୃତାଚୀ ଉଦରେ
କଲାମାତ୍ରେ ସ୍ୱର୍ଗେ ଯିବ ପୂର୍ବ କଳେବରେ ।
ଘୃତାଚୀ କହିଲା ଆସି ଚିତ୍ରାଙ୍ଗଦା ପାଶେ
ଶୋକ ନ କର ଗୋ ପୁତ୍ରୀ ମୋର ଦଶମାସେ ।
ପିତାତୁଲ୍ୟ ପୁତ୍ରଜାତ ହେବ ମୋ ଗର୍ଭରୁ
ଆନନ୍ଦିତ ହେଲା ଶୁଣି ଚିତ୍ରଙ୍ଗଦା ଭୀରୁ ।
ଇନ୍ଦ୍ରଙ୍କୁ ସ୍ମରଣ କଲେ ଘୃତାଚୀ ଏକାନ୍ତେ
ସ୍ମରଣ କରିବା ମାତ୍ରେ ଦେବ ଶଚୀକାନ୍ତେ ।
ଗନ୍ଧର୍ବ କିନ୍ନର ଦେବ ଅପସରାଗଣ
ଘେନିଣ ହାଟକତୀର୍ଥେ ବିଜେ ସୁରରାଣ ।
ଇନ୍ଦ୍ରଦ୍ୟୁମ୍ନ ଋତଧ୍ୱଜ ମୁନିଙ୍କି ଏମନ୍ତ
କହିଲେକ କରଯୋଡ଼ି ଆହେ ତପୋବନ୍ତ ।
ଜାବାଳୀକୁ ପୁତ୍ରୀ ଦେଉ ଏ କନ୍ଦରମାଳୀ
ଗୁହ୍ୟକର ନନ୍ଦିନୀ ଯେ ନନ୍ଦୟନ୍ତୀ ବାଳୀ ।
ଶକୁନିକି ଦେଉ ତାକୁ ଗୁହ୍ୟକ ଅଞ୍ଜନ
ମୋତେ ଦେବବତୀ କନ୍ୟା ଦେଉ ଏ ପର୍ଜନ୍ୟ ।
ବିଶ୍ୱକର୍ମା ସୁରଥକୁ କନ୍ୟା କରୁ ଦାନ
ହେଉ ବୋଇଲେ ସେ ଋତଧ୍ୱଜ ତପୋଧନ ।
ଏ କଥାଟି ସମସ୍ତଙ୍କ ମନକୁ ଅଇଲା
ମନ୍ତରେ ସେଠାରେ ଅଗ୍ନି ସ୍ଥାପିତ ହୋଇଲା ।
ହୋମ କଲେ ଗାଲବାଦି ଋତ୍ୱିକ ଯେତେକ
ଗାନ କରୁଥିଲେ ଯେତେ ଗନ୍ଧର୍ବ ଗାୟକ ।
ନୃତ୍ୟ କଲେ ଅପସରାଗଣ ମିଳି ତହିଁ
ପ୍ରଥମରେ ଦୈତ୍ୟ କନ୍ୟା ଜାବାଳିକି ଦେଇ ।
ଇନ୍ଦ୍ରଦ୍ୟୁମ୍ନ ଦେବବତୀ ବିଭା ତହୁଁଉାରେ
ନନ୍ଦୟନ୍ତୀ ଶକୁନିର ବିଭାଘର ପରେ ।
ଚିତ୍ରାଙ୍ଗଦା ପରିଣୟ ସୁରଥ ସହିତ
ଏହିରୂପେ ବିଭା ବିଧି ହେଲା ସମ୍ପାଦିତ ।
ଋତଧ୍ୱଜ କହିଲେକ ସମସ୍ତଙ୍କୁ ଚାହିଁ
ବୈଶାଖରେ ଏହି ତୀର୍ଥେ ସର୍ବେ ଥିବ ରହି ।
ହେଉ କହି ଇନ୍ଦ୍ର ଆଦି ଗଲେ ସ୍ୱର୍ଗପୁରେ
ଯେ ଯାହାର ଭବନକୁ ଗଲେ ଆନନ୍ଦରେ ।
ଚିତ୍ରାଙ୍ଗଦା ପୂର୍ବ କଥା କହିଲି ମୁଁ ତୋତେ
ପଦ୍ମନୟନା ତୁ ଏବେ ଭଜୁକିନା ମୋତେ ।
ଶ୍ରୀକଣ୍ଠ ହଟକେଶ୍ୱର ଦେବଙ୍କ ଚରଣେ
ଦ୍ୱିଜ ଗୋପୀନାଥ ମନ ଥାଉ ଅନୁକ୍ଷଣେ ।

=+=

## ଅନ୍ଧକ ସୈନ୍ୟ ସଜ୍ଜା

ଅରଜା କହିଲା ରାଜା ନ ଦେବି ମୁଁ ଦେହ
ପୂର୍ବ ପାପୁଁ ରକ୍ଷା ମୋତେ କରିବ କେ କହ ।
ତିନିପୁରେ ଏପରି ମୁଁ ଦେଖୁନାହିଁ ଜଣେ
ଆତ୍ମଦାନ ନ କରିବି ମୁହିଁ ଏ କାରଣେ ।
ପ୍ରହ୍ଲାଦ କହିଲେ ସେହି ଦୁର୍ବୁଦ୍ଧି ଦଣ୍ଡକ
ବଳାତ୍କାରେ ଅରଜାକୁ ସେ ପୃଥ୍ୱୀନାୟକ ।
ଧ୍ୱଂସକରି ଆଶ୍ରମରୁ ଚାଲିଗଲା ବେଗେ
କୃଶାଙ୍ଗୀ ଅରଜା ରଜୋବତୀ ହୋଇ ରାଗେ ।
ଆଶ୍ରମୁ ବାହାରି ଲାଜେ ହୋଇ ଅଧୋମୁଖୀ
ପିତାକୁ ସ୍ମରଣ କଲା ଶୋକେ ଚନ୍ଦ୍ରମୁଖୀ ।
ଗ୍ରହରୁଦ୍ଧ ଶଶୀପ୍ରିୟା ରୋହିଣୀ ସମାନ
ରହିଅଛି ସେ ଅରଜା ମୁଖ କରି ମ୍ଳାନ ।
ବହୁକାଳେ ଶୁକ୍ର କରି ଯଜ୍ଞ ସମାପତି
ଅଇଲେ ପାତାଳପୁରୁ ଆପଣା ବସତି ।
ଦେଖିଲେ ସେ ସନ୍ଧ୍ୟାକାଳ ମେଘରେଖାପରି
ରହିଛି ଆଶ୍ରମ ପ୍ରାନ୍ତେ ଅରଜା ସୁନ୍ଦରୀ ।
ଦେଖି ପଚାରିଲେ ପୁତ୍ରୀ କହ କିଏ ତୋତେ
ବଳାତ୍କାର କଲା ବେଗେ ମୋହର ଅଗ୍ରତେ ।
ବିଷଧାରୀ ସର୍ପ ସଙ୍ଗେ ଖେଳିଲା କେ ପୁଣି
କାହିଁ ଗଲା ସେ ପୁରୁଷ କହ ସୁଲକ୍ଷଣୀ ।
ବିଶୁଦ୍ଧ ସ୍ୱଭାବ ତୋର ଜାଣେ ଭଲକରି
ବିଧ୍ୱଂସିତା କଲା ତୋତେ କେଉଁ ଦୁରାଚାରୀ ।
କାନ୍ଦି ପିତାଆଗେ କହେ ଅରଜା ସଧୀରେ
ତୁମ୍ଭଶିଷ୍ୟ ଦଣ୍ଡ ଘରେ ପଶି ବଳାତ୍କାରେ ।
ଯେତେରୂପେ କହିଲି ମୁଁ ନ ମାନିଲା ସେହି
ଦୁହିତାର କଥା ଶୁଣି ଶୁକ୍ର ନେତ୍ର ଦୁଇ ।
ରୋଷବଶେ ଅତିଶୟ କଷାୟ ହୋଇଲା
ବାରମ୍ବାର ତାହାଙ୍କର ଅଧର କମ୍ପିଲା ।
ଶୁଚିହୋଇ ଜଳଚରୁ ଧଇଲେ ସେ କରେ
ବୋଇଲେ ଉଦ୍ଧତ ଦଣ୍ଡ ତୁହି ଅହଙ୍କାରେ ।

ମୋତେ ନ ଡରି ତୁ କଲୁ ଅରଜାକୁ ଭ୍ରଷ୍ଟ
ଏଣୁ ସୈନ୍ୟ ଭୃତ୍ୟ ଯାନ ସହ ହୁଅ ନଷ୍ଟ ।
ସପ୍ତରାତ୍ର ମଧ୍ୟେ ଯାଉ ରାଜ୍ୟ ତୋର ନାଶ
ସାତରାତ୍ର ବୃଷ୍ଟି ହେଉ ତୋରାଜ୍ୟେ ପାଉଁଶ ।
ଶାପଦେଇ ଅରଜାକୁ କହିଲେ ତୁ ଏଥେ
ତପକର ବସି ପାପ ବିମୋଚନ ଅର୍ଥେ ।
ତହୁଁ ଶୁକ୍ରାଚାର୍ଯ୍ୟ ଗଲେ ପାତାଳ ଭୁବନ
ସପ୍ତରାତ୍ରେ ଭସ୍ମଗଲା ଦଣ୍ଡ ରାଜ୍ୟ ଧନ ।
ସୈନ୍ୟ ଭୃତ୍ୟ ଯାନସହ ଆପେ ଗଲା ପୋଡ଼ି
ଏ କାରଣୁ ଦେବେ ଗଲେ ସେ ସ୍ଥାନକୁ ଛାଡ଼ି ।
ସେଦିନୁ ଦଣ୍ଡକାରଣ୍ୟ ହେଲା ତାର ନାମ
ଶମ୍ଭୁ ସେ ସ୍ଥାନକୁ କଲେ ରାକ୍ଷସଙ୍କ ଧାମ ।
ସାମାନ୍ୟ ରମଣୀ ଯୋଗୁ ମଲା ସେ ଦଣ୍ଡକ
ଏ କାରଣୁ ଏ ଦୁର୍ବୁଦ୍ଧି ଛାଡ଼ ହେ ଅନ୍ଧକ ।
ତାଙ୍କୁ ଜିଣି ନପାରିବେ ସୁରାସୁର ଗଣ
ଘୋର ତପେ ନ ମିଳଇ ଯାହାଙ୍କ ଦର୍ଶନ ।
ତାହାଙ୍କ ସହିତ ଯୁଦ୍ଧ ଜାଣ ଅସମ୍ଭବ
ପ୍ରହ୍ଲାଦ ବଚନ ଶୁଣି ଅନ୍ଧକ ଦାନବ ।
ରୋଷ କଶାୟିତ ନେତ୍ରେ ନିଃଶ୍ୱାସ ପକାଇ
ମହାତେଜେ ପ୍ରହ୍ଲାଦକୁ ଏମନ୍ତ କହଇ ।
କିଛିମାତ୍ର କର୍ମନାହିଁ ସେ ମହାଦେବର
ଚିତା ଭସ୍ମ ବିଲେପିତ ତାର କଳେବର ।
ସେ ଏକାକୀ ମୋର ସଙ୍ଗେ କିଯୁଦ୍ଧ କରିବ
ଯେ ଅନ୍ଧକ ନାମ ଶୁଣି ଡରଇ ବାସବ ।
ଦାନବ ମାନବ ଭୟ ନାହିଁ ପୁଣି ମୋତେ
ବୃଷଧ୍ୱଜ ଶିବକୁ ମୁଁ ଡରିବି କେମନ୍ତେ ।
ପୁଲସ୍ତ୍ୟ କହିଲେ ଶୁଣ ହେ ମୁନି ନାରଦ
ଏହି ଭୟଙ୍କର କଥା ଶୁଣିଣ ପ୍ରହ୍ଲାଦ ।
କହିଲେ ତୁ ଯାହା ବୋଲୁ ସେ ଧର୍ମବିରୁଦ୍ଧ
ଅନର୍ଥକ ନିନ୍ଦନୀୟ ଅସହ୍ୟ ନିର୍ବୋଧ ।
ଅଗ୍ନି ଆଉ ପତଙ୍ଗର ସିଂହ ଶୃଗାଳର
କରୀବର ମଶକର ସ୍ୱର୍ଣ୍ଣ ପାଷାଣର ।
ରେ ଅନ୍ଧକ ଏହାଙ୍କର ପ୍ରଭେଦ ଯାବତ
ମହାଦେବର ତୋହର ପ୍ରଭେଦ ତାବତ ।
ଏଣୁ ବାରମ୍ବାର ମନା କରୁଛି ହେ ବୀର
ଦେବ ଋଷି ଅସିତ ଯେ ମହାତ୍ମା ଆବର ।

ତାହାଙ୍କ ଚରିତ ଏବେ ଶୁଣ ସାବଧାନେ
ଯେ ବୁଡ଼ି ନଥିବ କାମ କ୍ରୋଧ ଅଭିମାନେ ।
ଧାର୍ମିକ ପଣ୍ଡିତ ଆଉ ବିନୟୀ ଯେ ଜନ
ଆପଣା ଭାରିଯାଠାରେ ସଦା ଥାଇ ମନ ।
ପରଦାର ଠାରେ ମନ ନ ଥାଇ ଯାହାର
ଜାତ ନ କରାଏ କ୍ଳେଶ ସନ୍ତାପ କାହାର ।
କିଛି ମାତ୍ର ଭୟ ନାହିଁ ତାର ଏ ସଂସାରେ
ଅଧାର୍ମିକ କଳିପ୍ରିୟ ଜନ ନିରନ୍ତରେ ।
ପରର ସନ୍ତାପକାରୀ ବେଦ ନ ଜାଣଇ
ଶାସ୍ତ୍ର ନ ଜାଣଇ ପରଦାରେ ରତ ଥାଇ ।
ପରଧନ ପ୍ରତି ଲୋଭ ଥାଏ ଯେ ଜନର
ଅବର୍ଣ୍ଣ ସହିତ ସଙ୍ଗ ଥାଇଟି ଯାହାର ।
ଇହଲୋକ ପରଲୋକ ସୁଖ ସେ ନ ଜାଣେ
ପ୍ରଭାକର ଧର୍ମାନ୍ୱିତ ହେଲେ ଏ କାରଣେ ।
ରୋଷତ୍ୟାଗ କରିଛନ୍ତି ମହର୍ଷି ବାରୁଣି
ଏଣୁ ସୂର୍ଯ୍ୟ ସୁତ ମନୁ ବିଦ୍ୟାବନ୍ତ ପୁଣି ।
ଏହେତୁ ଅଗସ୍ତ୍ୟ ନିଜ ପତ୍ନୀଠାରେ ରତ
ଏ ସବୁ ମହାତ୍ମାମାନେ କରି ପୁଣ୍ୟବ୍ରତ ।
ତେଜୋବନ୍ତ ହେଲେ ପୁଣି ନିଷ୍ପାପ ଶରୀର
ଶାପଦାନେ ବରଦାନେ ସକ୍ଷମ ଆବର ।
ଏଣୁ ସର୍ବପୂଜ୍ୟ ହେଲେ ସୁର ସିଦ୍ଧଗଣ
ଉଦ୍ ଗାମିତ ନିତ୍ୟ ହୋଇ ଅଧାର୍ମିକ ପଣ ।
ବିଭୁ ନିତ୍ୟ କଳହରେ ହୋଇ ଅଶକତ
ଦୁରାତ୍ମା ନମୁଚିପରି ସନ୍ତାପରେ ରତ ।
ନିତ୍ୟ ଅତି ଗର୍ବୀ ଥିଲା ନୃପତି ସନକ
ନିତ୍ୟପରଧନ ଲୋଭୀ ଦୈତ୍ୟ ହିରଣ୍ୟାକ୍ଷ ।
ତାହାର ଅନୁଜ ମୂର୍ଖ ଅତ୍ୟନ୍ତ ଦୁର୍ମତି
ସ୍ୱର୍ଣ୍ଣଚୋର ମହାତେଜା ଯଦୁ ନରପତି ।
ଏରୂପେ ଅନ୍ୟାୟ କରି ସର୍ବେ ଗଲେ କ୍ଷୟ
ଧର୍ମତ୍ୟାଗ କରିବାର ନୁହଇ ବିଧେୟ ।
ଧର୍ମହିଁ ପରମ ପତି ହେଲେ ଧର୍ମହୀନ
ମହାଭୈରବ ନରକେ କରଇ ଗମନ ।
ସ୍ୱର୍ଗେ ମର୍ତ୍ତ୍ୟେ ପୁରୁଷକୁ ଧର୍ମ ଉଦ୍ଧାରଇ
ଅଧର୍ମହିଁ ଦୁଇଲୋକେ ପତିତ କରାଇ ।
ପରଦାରେ ନ କରିବ ଧାର୍ମିକ ସନ୍ତତ
କାହିଁକି ନା ପରଦାର ନରକର ପଥ ।

ଏକବିଂଶ ନରକରେ ସେ ନେଇ ପକାଇ
ସବୃଧର୍ମେ ଏ ପବିତ୍ର ଧର୍ମହିଁ ବୋଲାଇ ।
ପରଧନ ପରଦାନ ହରଇ ଯେ ନର
ରୌରବ ନରକେ ପଡେ ବହୁତ ବସର ।
ଗରୁଡ଼ଅରୁଣ ଆଗେ ଦେବର୍ଷି ଅସିତ
କହିଥିଲେ ଏହି ଧର୍ମ ବ୍ୟବସ୍ଥା ସହିତ ।
ପରଦାର ନ କରିବ ବିଚକ୍ଷଣ ଜନ
ପରଦାର ପରାଭବ ଦିଏ ଅନୁକ୍ଷଣ ।
କହିଲେ ପୁଲସ୍ତ୍ୟ ଋଷି ପ୍ରହ୍ଲାଦ ବଚନେ
ଅନ୍ଧକ କହିଲା ତୁମ୍ଭେ ଧର୍ମ ଅନୁଷ୍ଠାନେ ।
ରହ ଏକା ଆମ୍ଭେମାନେ ନ ରହିବୁ କେହି
ତୁମ୍ଭେ ଏକା ଏ ସଂସାରେ ଧର୍ମବନ୍ତ ଦେହୀ ।
ଏହାକହି ସେ ଅନ୍ଧକ ବୋଇଲା ଶମ୍ବର
ଏହି କ୍ଷଣି ଯାଇଁ ତୁହି ଶୈଳେନ୍ଦ୍ର ମନ୍ଦର ।
ଶଙ୍କରକୁ କହ ଆରେ ଭିକ୍ଷୁତ୍ତ କିମ୍ପାଇ
ସ୍ୱର୍ଗତୁଲ୍ୟ ସକନ୍ଦର ମନ୍ଦେରର ଥାଇ ।
ମୋର ଆଜ୍ଞା ନ ପାଳୁ ତୁ କି ଗର୍ବ ତୋହର
ମୋର ଆଜ୍ଞା ଅନୁବର୍ତ୍ତି ଇନ୍ଦ୍ରାଦି ଅମର ।
ଯଦ୍ୟପି ରହିବୁ ତୁହି ମନ୍ଦର ପର୍ବତେ
ଯାହା ମୁଁ କହିବି ତାହା ଦେବୁ ଯେବେ ମୋତେ
ତେବେ ନିଶ୍ଚିନ୍ତରେ ରହ କରି ତହିଁ ଘର
ତୋର ଭାରିଯାକୁ ମୋତେ ଦିଅ ତୁ ସତ୍ୱର ।
ଶମ୍ବର ଅମ୍ବର ତୁଲ୍ୟ ମନ୍ଦର କନ୍ଦରେ
କହିଲା ଅନ୍ଧକ କଥା ଶଙ୍କର ଆଗରେ ।
ପାର୍ବତୀଙ୍କ ସମକ୍ଷରେ କହିଲେ ସେ ହର
ଦେଇଥିଲା ଏ ଅମ୍ବର ମୋତେ ପୁରନ୍ଦର ।
ତାକୁ ନ ପଚାରି ଏହା ଛାଡ଼ିବି କେମନ୍ତେ
ଆବର ସେ ଦୈତ୍ୟବରଅନ୍ଧକ ଯେ ମୋତେ
ଉମାକୁ ମାଗିଛି ନୋହେ ସେ ମୋର ଆୟତ୍ତ
ମୋତେ ସେ ଭଜିଛି ତାର ବଳିବାରୁ ଚିତ୍ତ ।
ତା ଇଚ୍ଛାରେ ଅସୁରକୁ ଭଜିବ ସେ ଯେବେ
ତାହାକୁ ବାରଣ ମୁହିଁ ନ କରିବି କେବେ ।
ଗିରିସୁତା ଶମ୍ବରକୁ କହିଲେ ହେ ହର
ତୁ ଯାଇ ସେ ଅନ୍ଧକକୁ କହ ମୋର ଗିର ।
ମୁଁ ହେଲି ପଦାତି ଯୁଦ୍ଧେ ପ୍ରାଣ ହେଲା ପଣ
ମହାଦେବ ଅନ୍ଧକ ଏ ଦୁହେଁ ମୋର ଘୋଷା ।
ଖେଳନ୍ତେ ଯେ ଜୟୀହେବ ସେମୋତେ ପାଇବ
କର୍ମ ଯାର ଥିବ ତାକୁ ଦେବ ଯେ ଦଇବ ।
ଶମ୍ବର କହିଲା ଆସି ଅନ୍ଧକ ଆଗରେ
ଶୁଣିଣ ଦାନବପତି ଅତି କ୍ରୋଧଭରେ ।
ପ୍ରଦୀପ୍ତ ଲୋଚନ ହୋଇ ଛାଡ଼ିଲା ନିଃଶ୍ୱାସ
ଦୁର୍ଯ୍ୟୋଧନକୁ ଯେ କହେ କରିଣ ବିଶ୍ୱାସ ।
ଆହେ ମହାବାହୁ ତୁହି ଯାଇଁ ଏହିକ୍ଷଣି
ଯୁଦ୍ଧ ସଜ୍ଜା କର ଦୈତ୍ୟବଳ ଧରି ଆଣି ।
ଦୁନ୍ଦୁଭି ଦୁଃଶୀଳା ନାରୀତାଡ଼ନା ପରାୟ
କରିବ ତାଡ଼ନା ବାବୁ ହୋଇଣ ନିର୍ଭୟ ।
ମହାବଳ ଦୁର୍ଯ୍ୟୋଧନ ଗଲା ତହୁଁ ଖରେ
ଉଚ୍ଚରେପିଟିଲା ଭେରି କାଠି ଧରି କରେ ।
ସେ ଭେରୀ ରାସଭୀ ପରି ଭଇରବ ରାବେ
ଅସୁରଙ୍କୁ ଉଚ୍ଚାଟନ କରାଇଲା ଯେବେ ।
କେ ବୋଇଲା କାହିଁ ପାଇଁ ବାଜୁଅଛି ଭେରୀ
ସମସ୍ତେ ଏ କଥା ଏବେ ଶୁଣ କର୍ଣ୍ଣଡେରି ।
ଦାଣ୍ଡେ ଦାଣ୍ଡେ କହି କହିଗଲା ଦୁର୍ଯ୍ୟୋଧନ
ସଭାରେପ୍ରବେଶି କଲାସକଳ ବର୍ଣ୍ଣନ ।
ମହାବଳ ମହାସୁର ଯୁଦ୍ଧେ ହେଲେ ସଜ
କେହି ବୀର ଆରୋହିଲା ମହାମତ୍ତଗଜ ।
କେହି ଅଶ୍ୱ କେହି ଓଟ କେ ଚଢ଼ିଲା ରଥ
ସକଳେ ମିଳିଲେ ଆସି ଅନ୍ଧକ ଅଗ୍ରତ ।
ପଞ୍ଚନଳ ପରିମିତ ରଥେକ ଆରୋହି
ଅନ୍ଧକ ଯୁଦ୍ଧକୁ ସଜହେଲା ଦେଖି ତହିଁ ।
ସଜହେଲେ ଜମ୍ଭ ଆଉ କୁଜମ୍ଭ ଅସୁର
ତୁଣ୍ଡ ଯେ ତୁହୁଣ୍ଡ ଦୁଇ ଆବର ଶମ୍ବର ।
ବାଣାସୁର କାର୍ତ୍ତସ୍ୱର ହସ୍ତୀ ସୂର୍ଯ୍ୟଶତ୍ରୁ
ମହୋଦର ଅୟଃଶଙ୍କୁ ଶିବୀ ଶାଲ୍ୱ ନେତ୍ରୁ ।
ବୃଷପର୍ବା ବିରୋଚନ ହୟଗ୍ରୀବ ବୀର
କାଳନେମି ବୃତ୍ରାସୁର ସଂହ୍ରାଦ ଅସୁର ।
ସରଭ ସବଳ କାଳନାଶନ ଦଇତ
ଦୁର୍ଯ୍ୟୋଧନ ବିପାକ ଯେ ପାକ ବଳବନ୍ତ ।
କାଳ ଯେ ବିକାଳ ଆଦି ମହାବଳ ମାନେ
ବିବିଧ ଆୟୁଧ ଧରି ଗଲେ ଚଢ଼ି ଯାନେ ।
ଦୁରାତ୍ମା ଅନ୍ଧକ କାଳ ମୁଖରେ ପତନ
ହେବାରୁ ସେ କଲା ଗିରି ମନ୍ଦରେ ଗମନ ।

=+=

## ସଦାଶିବ ଦର୍ଶନ

କହିଲେ ପୁଲସ୍ତ୍ୟ ମୁନି ଏହା ଦେଖି ହର
ନନ୍ଦୀକି କହିଲେ ଯେତେ ଆଜ୍ଞାବହ ତୋର ।
ତାହାଙ୍କୁ ତୁ ନିମନ୍ତ୍ରଣ କରି ଆଣ ରଣେ
ନନ୍ଦୀ ବେଗେ ଗଲା ହର ବଚନ ଶ୍ରବଣେ ।
ଜଳ ଛୁଇଁ ସୁମରିଲା ଗଣାଧିପ ଗଣ
ବନ୍ଦିଲେ ସେ ସବୁ ଆସି ଶିବଙ୍କ ଚରଣ ।
ନନ୍ଦୀ ଆସି ଜଣାଇଲା ଶଙ୍କରଙ୍କ ଆଗେ
ଜଟାଜୁଟ ବିରାଜଇ ଦେଖ ଶିରୋଭାଗେ ।
ପବିତ୍ର ସ୍ୱଭାବ ପୁଣି ସର୍ବେ ତ୍ରିନୟନ
ଏକାଦଶ କୋଟି ଏହି ଜାଣ ରୁଦ୍ରଗଣ ।
ଶାର୍ଦ୍ଦୁଳ ବିକ୍ରମ ପୁଣି ବାନର ବଦନ
ଏହି ଦ୍ୱାରପାଳଗଣ ଜାଣ ତ୍ରିଲୋଚନ ।
ଏ ସମସ୍ତେ ସଜ ହୋଇ ଆସିଛନ୍ତି ଦେଖ
ଶିଖୀଧ୍ୱଜ ଶକ୍ତି ହସ୍ତ ଏ ଯେ ଷଡ଼ମୁଖ ।
ଏ ସକଳ ସ୍କନ୍ଦଗଣ ସକଳେ କୁମାର
ଛଅଷଠି କୋଟି ସଂଖ୍ୟା ଜାଣ ଏହାଙ୍କର ।
ଶାଖ ନାମେ ଏହିଗଣ ବିଖ୍ୟାତ ସଂସାରେ
ଏ ମଧ୍ୟ ଛଷଠି କୋଟି ବରାୟୁଧ କରେ ।
ଆବର ବିଶାଖ ଗଣ ନୈଗମେୟ ଗଣ
ଏହି ଛଅଷଠି କୋଟି କରିବେ ଯେ ରଣ ।
ପ୍ରମଥଗଣର ସଂଖ୍ୟା ସାତ କୋଟି ପ୍ରଭୋ
ଏ ଯେତେ ମାତୃକାତେତେଜାଣ ମହାଶମ୍ଭୋ
ଶୂଳହସ୍ତ ତ୍ରିନୟନ ଭସ୍ମ ବିଲେପନ
ଶୈବ ନାମେ ବିଖ୍ୟାତ ଏ ଗଣଙ୍କ ପ୍ରଧାନ ।
ଭସ୍ମ ବିଲେପିତଗଣ ନାମ ପାଶୁପତ
ଏହାଙ୍କର ସଂଖ୍ୟା ନାହିଁ ଏ ଯେ ଅକଳିତ ।
କାଳମୁଖ ପିନାକୀ ଯେ ରୌଦ୍ରଗଣ ଆସି
ଚରଣ ବନ୍ଦନ୍ତି ଦେଖ କରେ ଧରି ଅସି ।
ମହାବ୍ରତୀ ନାମେ ଗଣ ଯୁଦ୍ଧାର୍ଥ ଆଗତ
ଏ ଖଟ୍ୱାଙ୍ଗ ଧାରୀ ରକ୍ତ ଚନ୍ଦନେ ଭୂଷିତ ।
ନିରାଶ୍ରୟ ନାମେ ଗଣ ଆସଛନ୍ତି ଦେଖ
ଦିଗମ୍ବର ଗଣଙ୍କର ଘଣ୍ଟାହିଁ ବିଶିଖ ।
ଆସିଛନ୍ତି ବୃଷଧ୍ୱଜ ଗଣ ଦେଖ ହର
ସର୍ବେ ସାର୍ଦ୍ଧତ୍ରିନୟନ ପଦ୍ମାକ୍ଷ ଆବର ।
ଶ୍ରୀବତ୍ସ ଅଙ୍କିତ ଦକ୍ଷ ସର୍ବେ ଖଗାସନ
ଏ ଅକ୍ଷୟ ଅବିନାଶୀ ଗଣଙ୍କ ପ୍ରଧାନ ।
ଯେ ବିଷ୍ଣୁ ସେ ଶିବ ଏଥେଁ କିଛି ଭେଦ ନାହିଁ
ଏଣୁ ତବ ଆରାଧନା କରୁଛନ୍ତି ରହି ।
ଆପଣଙ୍କ ରୋମୋଦ୍ଭବ ବୀରଭଦ୍ର ଗଣ
ସିଂହମୁଖୀ ଧରିଛନ୍ତି ଶୂଳ ଧନୁର୍ବାଣ ।
ଏହାଭିନ୍ନ ଆସିଛନ୍ତି ଆଉ ଗଣ ଯେତେ
ତାହା ମୁହିଁ ସଂଖ୍ୟା କରି କହିବଇଁ କେତେ ।
ଏହି ରୂପେ ନନ୍ଦୀ ତାଙ୍କୁ ଦିଅନ୍ତେ ଚିହ୍ନାଇ
ସର୍ବେ ବୃଷକେତନକୁ ପ୍ରଣମିଲେ ଯାଇଁ ।
ମହାଦେବ ସେମାନଙ୍କୁ କଲେ ସମାଦର
ପଶୁପତିଗଣଙ୍କୁ ସେ ଉଠାଇ ସତ୍ୱର ।
ତାଙ୍କ ସେନାନୀଙ୍କି କଲେ ଗାଢ଼େ ଆଲିଙ୍ଗନ
ସେ ସକଳ କଲେ ଶିବ ଚରଣ ବନ୍ଦନ ।
ଏହା ଦେଖି ସର୍ବେ ହେଲେ ନିତାନ୍ତ ବିସ୍ମିତ
କି କାରଣେ ପାଇଲେ ଏ ଆଦର ବହୁତ ।
ନନ୍ଦୀ ତାହା ଦେଖି ହସି ବୋଇଲେ ଶିବଙ୍କୁ
ଆହେ ଦେବ ମହେଶ୍ୱର ଆପଣ ଏହାଙ୍କୁ ।
ଆଲିଙ୍ଗନ କରିବାର ଦେଖି ଅନ୍ୟଗଣ
ବିସ୍ମିତ ହୋଇଲେ କହ ଏହାର କାରଣ ।
ନନ୍ଦୀ କଥା ଶୁଣି ଭୂତ ଭାବନ ଯେ ଭବ
ବିଚାର ନ କରିପାର ତୁମ୍ଭେ ଭାବାଭାବ ।
ତେଣୁ ଜ୍ଞାନହତ ହୋଇଅଛ ଅହଙ୍କାରେ
ତେଣୁ ହର ପୂଜା କର ତୁମ୍ଭେ ଭାବଭରେ ।
ଯେହି ବିଷ୍ଣୁ ସେହି ମୁହିଁ ନାହିଁ କିଛି ଭିନ୍ନ
ଆମ୍ଭ ଦୁହିଁଙ୍କର ଅଛି ଯେ ସବୁ ସମାନ ।
ଜ୍ଞାନ ହତ ହେତୁ ତୁମ୍ଭେ ନ ପାରୁଛ ଜାଣି
ଏହି ପାଶୁପତଗଣ ଅଟନ୍ତି ଯେ ଜ୍ଞାନୀ ।
ତାଙ୍କ ତୁଲ୍ୟ ତୁମ୍ଭେ ନୁହଁ ଆହେ ମୂଢ଼ମତି
ଯେଣୁ ବିଷ୍ଣୁ ନିନ୍ଦାକର ମୋତେ କର ସ୍ତୁତି ।
ଏଣୁ ଆଲିଙ୍ଗନ ଯୋଗ୍ୟ ନୁହଁ ତୁମ୍ଭେ ମୋର
ଏହାଶୁଣି ଗଣମାନେ କହିଲେ ଭୋ ହର ।
କି ରୂପେ ଶ୍ରୀହରି ତୁମ୍ଭେ ହୋଇଅଛ ଏକ
ଆପଣତ ମହାଯୋଗୀ ଜ୍ଞାନର ତିଳକ ।
ଜ୍ଞାନବଳେ ଆପଣଙ୍କ ସ୍ୱଭାବ ବିଶୁଦ୍ଧ
ନିର୍ମଳ ସ୍ଫଟିକ ତୁଲ୍ୟ ଅଟ ଆତ୍ମବୋଧ ।

ଶାନ୍ତ ଶୁକ୍ଳ ନିରଞ୍ଜନ ପ୍ରକୃତି ତୁମ୍ଭର
ଅଞ୍ଜନ ସଦୃଶ ଦିଶେ ବିଷ୍ଣୁ କଳେବର ।
ଏ ଉଭୟ ମୂର୍ତ୍ତି ଏକ ହେବା ଅସମ୍ଭବ
କହୁଅଛି ଶୁଣ ତାହା ବୋଇଲେକ ଶିବ ।
କହିଲେ ତ ଯଶୋବୃଦ୍ଧି ହେବ ଆପଣାର
ମହାଯୋଗ କହୁଅଛି ମୁଁ ତୁମ୍ଭ ଆଗର ।
ତୁମ୍ଭେ ତ ଅଯୋଗ୍ୟପାତ୍ର ନୁହଁ କଦାଚନ
ଅବିହିତ ଗୋପନୀୟ ବୃତ୍ତାନ୍ତ କଥନ ।
ତାହା ମୁଁ କହୁଛି ଶୁଣ ଅପବାଦ ଭୟେ ।
କାହିଁ ନ କହିବ ଏହା ରଖିବ ହୃଦୟେ ।
ଦୁଗ୍ଧ ଘୃତ ଚନ୍ଦନାଦି ଜଳେମୋତେ ସ୍ନାନ
କରାଇଲେ ତୃପ୍ତି ମୋର ନୋହିବ ତେସନ ।
କବଚ ଧାରଣ କରି ଛେଦିଲେ ମୋ ଦେହ
ତା ମଧ୍ୟେ ଦେଖିବ ତୁମ୍ଭେ ବିଷ୍ଣୁଙ୍କ ବିଗ୍ରହ ।
ଏକାହାରୀ ବିଷ୍ଣୁଭକ୍ତ ଏ ଦୁହେଁ ସମାନ
ତୁମ୍ଭଙ୍କୁ ନରକେ ଏଣୁ ନ କଲି ପତନ ।
ଯେଣୁ ତୁମ୍ଭେମାନେ ପଦ୍ମପଲାଶ ଲୋଚନ
ଜଗନ୍ନାଥ ବିଷ୍ଣୁଙ୍କର ନିନ୍ଦା କଲ ଗାନ ।
ସର୍ବବ୍ୟାପୀ ସର୍ବଦାହିଁ ସେ ସର୍ବ ସ୍ୱରୂପ
ଭଗବାନ ଗଣେଶ୍ୱର ସୁରାସୁରଧିପ ।
ଏ ସଚରାଚର ଲୋକେ ନାହିଁ ତା ସଦୃଶ
ତ୍ରିଜଗତପତି ସେହି ପ୍ରଭୁ ହୃଷୀକେଶ ।
ସେହି ଶ୍ୱେତ ସେହି ପୀତ ସେହି ରକ୍ତବର୍ଣ୍ଣ
ତା ଅପେକ୍ଷା ଶ୍ରେଷ୍ଠ କେହି ସତ୍ୟ ନାହିଁ ଜାଣ
ସାତ୍ତ୍ୱିକ ରାଜସ ସେହି ତାପସ ମିଶ୍ରକ
ସର୍ବପୂଜ୍ୟ ସଦାଶିବ ସକଳ ଧାରକ ।
ମହାଦେବ କଥା ଶୁଣି ପ୍ରମଥାଦିଗଣ
ବୋଇଲେ ବିସ୍ତାରି କହ ପ୍ରଭୁ ତାଙ୍କ ଗୁଣ ।
ନିରଞ୍ଜନ ଶୈବମୂର୍ତ୍ତି ଦେଖାଇଲେ ହର
ସହସ୍ର ସହସ୍ର ମୁଖ ସେହି ସ୍ୱରୂପର ।
ସହସ୍ର ସହସ୍ର ପାଦ ବିରାଜଇ ତହିଁ
ସହସ୍ର ସହସ୍ର ବାହୁ ଅଛି ପୁଣି ରହି ।
ହସ୍ତରେ ଅଛଇ ସର୍ବଲୋକ ବ୍ୟାପୀ ଦଣ୍ଡ
ଚାହିଁ ନ ପାରିବ ସେହି ଦଣ୍ଡ ହିଁ ପ୍ରଚଣ୍ଡ ।
ଦଣ୍ଡମଧ୍ୟେ ଦେବ ଅସ୍ତ୍ର ସମସ୍ତ ଅଛଇ
ରୌଦ୍ର ବଇଷ୍ଣବ ଚିହ୍ନ ମାନ ବିରାଜଇ ।

ଅଧେ ବିଷ୍ଣୁ ଦେହ ଅଧେ ଶଙ୍କର ବିଗ୍ରହ
ଏକାରଣୁ ଖଗଧ୍ୱଜ ବୃଷାରୂଢ଼ ଦେହ ।
ପୁଣି ସେହି ବୃଷ ଧ୍ୱଜ ଖଗାରୂଢ଼ ମୂର୍ତ୍ତି
ମହାପାଶୁପତଗଣ ତହିଁ ବିରାଜନ୍ତି ।
ଏକ ରୂପେ ବହୁ ରୂପ ହେଲେ ସେ ସୁଢ଼ଳ
କ୍ଷଣେ ଶ୍ୱେତ କ୍ଷଣେ ରକ୍ତ କ୍ଷଣେ ପୀତ ନୀଳ ।
କ୍ଷଣକେ ମିଶ୍ରିତ ବର୍ଣ୍ଣ କ୍ଷଣେ ବର୍ଣ୍ଣହୀନ
କ୍ଷଣେ ମହାପାଶୁପତ ରୂପ ତ୍ରିଲୋଚନ ।
କ୍ଷଣେ ମହାରୁଦ୍ର କ୍ଷଣେ ଶମ୍ଭୁ ପ୍ରଭାକର
କ୍ଷଣାର୍ଦ୍ଧେ ଶ୍ରୀ ବିଷ୍ଣୁ ପୁଣି କ୍ଷଣାର୍ଦ୍ଧେ ଶଙ୍କର ।
କ୍ଷଣାର୍ଦ୍ଧରେ ଧଇଲେ ସେ ବ୍ରହ୍ମାଙ୍କ ବିଗ୍ରହ
ଅତ୍ୟନ୍ତ ବିସ୍ମିତ ହେଲେ ସେ ଗଣସମୂହ ।
ଜାଣିଲେ ସେ ବ୍ରହ୍ମା ବିଷ୍ଣୁ ଶିବ ସୂର୍ଯ୍ୟ ଏକ
ତକ୍ଷଣେ ନିଷ୍ପାପ ହେଲେ ସେହି ଗଣଯାକ ।
ଶଙ୍କର ବୋଇଲେ ତୁମ୍ଭେ ହୋଇଲ ସୁବ୍ରତ
ତୁମ୍ଭର ଅଭେଦ ଜ୍ଞାନ ହେବାରୁ ମୋ ଚିତ୍ତ ।
ଦୟାର୍ଦ୍ର ହୋଇଲା ତେଣୁ ଯାଚୁଅଛି ବର
ସେ ବୋଇଲେ ଆମ୍ଭର ଏ ପାପ ଯାଉ ଦୂର ।
ହେଉ କହି ତାଙ୍କୁ କଲେ ଗାଢ଼ ଆଲିଙ୍ଗନ
ଆନନ୍ଦରେ ରଥ ଚଢ଼ି ପ୍ରଥମାଦି ଗଣ ।
ଶିବଙ୍କ ସହିତ ଗଲେ ମନ୍ଦିରକୁ ଚଳି
ଚାରିଆଡ଼େ ଗଣ ମଧ୍ୟେ ସେ ଚନ୍ଦ୍ରମଉଳି ।
ମେଘତୁଲ୍ୟ ପର୍ବତକୁ ଆଚ୍ଛାଦିଲେ ଗଣ
ସ୍ୱଭାବେ ସେ ଗିରିବର ଅଟେ ଶୁକ୍ଳବର୍ଣ୍ଣ ।
ତା ପୃଷ୍ଠରେଦେଲେ ନେଇ ମହେଶ୍ୱର ପାଦ
ଅତି ଶୋଭା ପାଇଲେ ସେ ନୀଳଦୁଃଖସ୍କନ୍ଦ ।
ସେ ପାଦପଦ୍ମରେ ଦୀନ ଗୋପୀନାଥ ମନ
ଦିନ ରାତି ଥାଉ ପ୍ରଣତାର୍ତ୍ତି ବିନାଶନ ।

= + =

## ଅନ୍ଧକ ଦୈତ୍ୟ ପରାଜୟ

ପୁଲସ୍ତ୍ୟ କହିଲେଏହି ଅନ୍ଧକ ଦଇତ
ମିଳିଲା ମନ୍ଦରାଚଳେ ଦୈତ୍ୟଙ୍କ ସହିତ ।
ପ୍ରମଥାଦିଗଣ ଥିଲେ ପର୍ବତ କନ୍ଦରେ
କିଳି କିଳା ଧ୍ୱନି କଲେ ଅସୁର ନିକରେ ।
ପ୍ରଳୟ ସଦୃଶ ସେହି କିଳିକିଳା ଧ୍ୱନି
ସ୍ୱର୍ଗ ପୃଥ୍ୱୀ ଘୋଟିଲା ତା ବିନାୟକ ଶୁଣି ।

ବାୟୁ ମାର୍ଗେ ଥିଲେ କ୍ରୋଧେପଡ଼ିଲେ କଡେଇଁ
ପ୍ରମଥଗଣଙ୍କ ମେଳେ ପଡ଼ିଲେ ସେ ଯାଇଁ ।
ପିତାଙ୍କୁ ସାକ୍ଷାତ କରି ମନ୍ଦର ପର୍ବତେ
ଭକ୍ତିରେ ପ୍ରମାଣ କରି ବୋଇଲେ ତ୍ୱରିତେ ।
ଉଠ ଉଠ ବସି ଅଛ କିମ୍ପାଇ ହେ ତାତ
ରଣେଶ୍ଚୁକ ନ ହେଉଛ ଜଗତର ନାଥ ।
ଗଣେଶ ବଚନେ ଶିବ କହିଲେ ଦୁର୍ଗାଙ୍କୁ
ଯାଉଛି ମୁଁ ନିଜେ ଦୈତ୍ୟବଧ କରିବାକୁ ।
ଅପ୍ରମତ୍ତା ହୋଇ ତୁମ୍ଭେ ଥାଅ ଏହି ସ୍ଥାନେ
ଆଲିଙ୍ଗନ କରି ଉମା ସସ୍ନେହ ବଚନେ ।
କହିଲେ ଅନ୍ଧକବଧ କରନ୍ତୁ ହେ ନାଥ
ଏହାକହି ପାଦ ବନ୍ଦି ଜଗତର ମାତ ।
ପାର୍ବତୀଙ୍କ ସଖି ଜୟା ବିଜୟା ଜୟନ୍ତୀ
ମାଳିନୀ ଅପରାଜିତା ଚାହିଁ ପଶୁପତି ।
କହିଲେ ଗୋ ତୁମ୍ଭେମାନେ ଅପ୍ରମତ୍ତ ଦେହେ
ପାର୍ବତୀଙ୍କି ଜଗିଥିବ ସୁରକ୍ଷିତ ଗେହେ ।
ଏହା କହି ବସିଲେ ସେ ବୃଷଭ ଉପରେ
ଗୃହରୁ ବାହାର ହୋଇଗଲେ ହର୍ଷଭରେ ।
ଗଣ ସବୁ ପଛେ ପଛେ ଗଲେ ତାହାଙ୍କର
ଜୟନାଦେ କମ୍ପାଇଲେ ପର୍ବତ ମନ୍ଦର ।
ଶୂଳଧରି ବାହାରନ୍ତେ ଯୁଦ୍ଧକୁ ଶଙ୍କର
ଶୁଭ ସୌମ୍ୟ ସୁମଙ୍ଗଳ ଚିତ୍ତ ତାହାଙ୍କର ।
ଜୟକୁ ସୂଚାଇ ଦେଲେ ଥିଲେ ଶିବାଗଣ
ସୁସ୍ୱରେ ଶବଦେ କଲେ ବାମରେ ଗମନ ।
ଯେତେକ ଆମିଷଭୋଗୀକ୍ରବ୍ୟାଦ ସେ ଆସି
ତୃଷାର୍ତ୍ତ ହୋଇଣ ରଣ ଭିତରକୁ ପଶି ।
ଶିବଙ୍କ ଦକ୍ଷିଣ ଅଙ୍ଗୁଷ୍ଠରେ ଘନଘନ
ଏ ଶୁଭସୂଚକ ଦେଖି ଦେବ ତ୍ରିଲୋଚନ ।
କହିଲେ ଭୋ ନନ୍ଦୀ ଜୟ ହୋଇବ ଆମ୍ଭର
ନନ୍ଦୀ ଶୁଣି କହିଲେକ ହେ ଦେବ ଶଙ୍କର ।
ନିଶ୍ଚେ ଶତ୍ରୁଜୟୀ ହେବେ ଅଛି କି ସନ୍ଦେହ
ଦୁରାତ୍ମା ଅନ୍ଧକ ଯିବ ନିଶ୍ଚେ ଯମ ଗେହ ।
ଏହା କହି ରୁଦ୍ରଗଣ ପାଶୁପତଗଣ
ସଙ୍ଗତେ ମିଳିତ ହୋଇ ନନ୍ଦୀ କଲା ରଣ ।
ବିବିଧ ଆୟୁଧ ଘେନି ମାଇଲେ ଦାନବ
ବୃଷଙ୍କୁ ଛେଦଇ ଯେହ୍ନେ ବଜ୍ରରେ ବାସବ ।
ଦଇତ୍ୟ ଦାନବେ କରେ ଧରିଣ ମୁଦ୍‌ଗର
ଶବଗଣ ପଠାଇଲେ ଶମନ ମନ୍ଦିର ।
ବ୍ରହ୍ମା ବିଷ୍ଣୁ ଇନ୍ଦ୍ର ସୂର୍ଯ୍ୟ ଏମାନେ ଅମ୍ବରେ
ଦେଖିଲେ ଅପୂର୍ବ ଯୁଦ୍ଧ ଘେନିଣ ଅମରେ ।
ଦୁନ୍ଦୁଭି ନିର୍ଘୋଷେ ପୂର୍ଣ୍ଣ ହୋଇଲା ଗଗନ
ଅତି କ୍ରୁଧ ହୋଇ ମହା ପାଶୁପତଗଣ ।
ଦାନବସୈନ୍ୟଙ୍କୁ ମାରି କଲେ ଖଣ୍ଡ ଖଣ୍ଡ
ତା ଦେଖି ଧାଇଁଲା ଦୈତ୍ୟ ମହାବଳ ଦଣ୍ଡ ।
ପରିଘ ବୁଲାଇରୁଦ୍ରଗଣଙ୍କୁ ମାରନ୍ତେ
ଭୟେ ରଣେଭଙ୍ଗ ଦେଲେ ଗଣେଶ ଦେଖନ୍ତେ ।
ତୁହୁଣ୍ଡ ସଙ୍ଗତେ କଲେ ଯାଇଁ ଘୋରରଣ
ଦୁରାତ୍ମା ଦଇତ୍ୟ କଲା ତାଙ୍କୁ ଆକ୍ରମଣ ।
ବଳେ କୁମ୍ଭେ ପ୍ରହାରିଲା ବୁଲାଇ ପରିଘ
ବକ୍ରେ ପୂର୍ଣ୍ଣ ହେଲା ପ୍ରାୟ ମେରୁଗିରି ଶୃଙ୍ଗ ।
ତେସନ ପରିଘ କୁମ୍ଭେ ହେଲା ଶତଖଣ୍ଡ
ଧାଇଁଲେ ଅସୁର ପାଶେ ପ୍ରଭୁ ବକ୍ରତୁଣ୍ଡ ।
ତା ଦେଖି ଦାନବ ତାଙ୍କୁ ବାନ୍ଧି ବାହୁପାଶେ
ମୁଦ୍‌ଗର ପ୍ରହାର କଲା ମସ୍ତକରେ ରୋଷେ ।
ପରଶ୍ୱଧ ପ୍ରହାରିଲେ ଦୈତ୍ୟକୁ ଗଣେଶ
କାଷ୍ଠ ପରି ଦୁଇଖଣ୍ଡ ହୋଇଣ ରାକ୍ଷସ ।
ଧରାତଳେ ପଡ଼ି ବାହୁ ପାଶ ନ ଛାଡ଼ଇ
ନ ପାରିଲେ ସେ ପାଶକୁ ଗଣେଶ ଛଡ଼ାଇ ।
କୁଣ୍ଡୋଦର ନାମେ ଥିଲା ଏକ ଗଣେଶ୍ୱର
ସେ ଆସି ମୂଷଳେ ଛେଦେ ବାହୁକୁ ତାହାର ।
ତହୁଁ ବିନାୟକ ବେଗେ ପ୍ରାସ ଅସ୍ତ୍ର ମାରି
ପକାଇଲେ ରାହୁ ଦୈତ୍ୟ ହୃଦୟ ବିଦାରି ।
ପଳାଇଲା ରାହୁଦୈତ୍ୟ ରଣ ଛାଡ଼ି ବେଗେ
ଧାଇଁଲେ ଆୟୁଧ ଧରି ରୁଦ୍ରଗଣ ରାଗେ ।
ବିଂଶତି ଦାନବ ବଧ କଲେ ସେ ସମରେ
ତା ଦେଖି ଧାଇଁଲା ବଳି ପବନ ବେଗରେ ।
ଗଦାବର ଧରି କରେ ବୁଲାଇ ବୁଲାଇ
ଗଣେଶଙ୍କ କୁମ୍ଭସ୍ଥଳେ ମାଇଲା ନିଠାଇ ।
କୁଣ୍ଡୋଦରକର ଭାଙ୍ଗି ପକାଇଲା ବଳି
ମହୋଦର ଶିର ଚୂର୍ଣ୍ଣକଲା ବଳଶାଳୀ ।
ସମରେ ପଡ଼ିଲା ମହା କପାଳ ଆବର ।
କୁମ୍ଭଧ୍ୱଜ ସନ୍ଧି ଚୂର୍ଣ୍ଣ କଲା ଦୈତ୍ୟବର ।

ଘଟୋଦର ଉରୁ ସନ୍ଧି ଭାଙ୍ଗିଗଲା ବାଣେ
ବିମୁଖ ହୁଅନ୍ତେ ରଣେ ଗଣାଧିପ ଗଣେ ।
ବଳିଷ୍ଠ ଅସୁରଗଣ ଆୟୁଧ ପ୍ରହାରି
ଗଣାଧିପ ଗଣଙ୍କୁ ସେ ପକାଇଲେ ମାରି ।
ସ୍କନ୍ଦ ବିଶାଖାଦିଗଣ ମାରିବା ନିମନ୍ତେ
ବଳିଷ୍ଠ ଦାନବଗଣ କ୍ରୋଧରେ ଧାମନ୍ତେ ।
ତା ଦେଖି ନନ୍ଦୀକି ଚାହିଁ କହିଲେ ଶଙ୍କର
ବେଗେ ଯାଇଁ କର ବଳି ଦୈତ୍ୟଙ୍କୁ ସଂହାର ।
ଚକ୍ର ଧରି ନନ୍ଦୀ ବଳି ଆଗରେ ମିଳିଲା
ମସ୍ତକରେ ମାରି ତାକୁ ତଳେ ପକାଇଲା ।
ଭ୍ରାତୃପୁତ୍ର ମୋହ ଦେଖି କୁଜମ୍ଭ ଅସୁର
ମୂଷଳ ବୁଲାଇ ରୋଷେ ପିଟନ୍ତେ ସତ୍ୱର ।
ମୂଷଳ ଆସନ୍ତେ ନନ୍ଦୀ ଧଇଲା ତା କରେ
ପିଟନ୍ତେ କୁଜମ୍ଭ ଦୈତ୍ୟ ଗଲା ଯମପୁରେ ।
ସେ ମୂଷଳେ ନନ୍ଦୀ ଦୈତ୍ୟ ମାଇଲା ବହୁତ
ପଳାଇଲେ ଦୈତ୍ୟସେନା ହୋଇ ଇତସ୍ତତ ।
ଦୁର୍ଯ୍ୟୋଧନ ଅସୁରର ଆଶ୍ରୟେ ରହିଲେ
କେହି କେହି ରଣ ଛାଡ଼ି ଭୟେ ପଳାଇଲେ ।
ଅସୁରଙ୍କ ଦଶା ଦେଖି ଦୈତ୍ୟ ଦୁର୍ଯ୍ୟୋଧନ
ପାଶପାତି କରନ୍ତେ ସେ ନନ୍ଦୀକି ବନ୍ଧନ ।
ବଜ୍ର ମାରି ନନ୍ଦୀ ତାହା ପକାଇଲା ଛେଦି
ବିଧାଏ ମାରନ୍ତେ ଦୈତ୍ୟ ତାହାଦେଖି ନନ୍ଦୀ ।
ବଜ୍ର ମାରି ଦାନବର ଶିରକାଟି ତଳେ
ପକାଇଲା ତାଳଫଳ ପରି ଅସ୍ତ୍ରବଳେ ।
ପୁତ୍ରର ନିଧନ ଦେଖି ହସ୍ତୀନାମା ଦୈତ୍ୟ
କରେ ଶରାଶନ ଧରି ଧାଇଁଲା ତୁରିତ ।
ଯମଦଣ୍ଡକଳ୍ପ ଶରନିକର ପ୍ରହାରି
ବାରିଧାରା ବରଷଇ ଘନ ଯେଉଁପରି ।
ପର୍ବତକୁ ଆଚ୍ଛାଦଇ ତେସନ ଅସୁର
ଆଚ୍ଛାଦିଲା ନନ୍ଦୀ ଆଦି ଗଣଙ୍କ ଶରୀର ।
ବିନାୟକ ଆଦି ଯେତେ ମହାବଳି ଗଣ
ସହ୍ୟ କରି ନ ପାରିଲେ ଦୈତ୍ୟତୀକ୍ଷଣବାଣ ।
ସିଂହ ଦେଖି ବୃଷଗଣ ପଳାନ୍ତି ଯେସନେ
ଡରେ ପଳାଇଲେ କେହି ନ ରହିଲେ ରଣେ ।
କାର୍ତ୍ତିକେୟ ଦେଖି ତାହା ଶକ୍ତି ଧରି କରେ
ଅସୁରକୁ ଲକ୍ଷ୍ୟ କରି ମାଇଲେ ସତ୍ୱରେ ।
ଦାନବ ହୃଦୟେ ଯାଇଁ ପଡ଼ିଲା ଶକତି
ଭୂମିରେ ପଡ଼ିଲା ରଣେ ମହାଦୈତ୍ୟ ହସ୍ତୀ ।
ନନ୍ଦୀକି ଆଗରେ କରି କ୍ରୋଧେ ଶିବଗଣ
ମାଇଲେ ଦାନବ ବଳ ମାରି ତୀକ୍ଷ୍ଣ ବାଣ ।
ଯୁଦ୍ଧରୁ ନିବୃତ୍ତ ହେଲେ ପ୍ରମଥ ଯେତେକ
ନନ୍ଦିଷେଣ ଆଦି ଗଣ ଯେତେ ବ୍ୟାଘ୍ର ମୁଖ ।
ରହିଲେ ଅରୁଣନେତ୍ରେ ନିଃଶ୍ୱାସ ପକାଇ
ଗଣପତିଙ୍କ ହସ୍ତରେ ପଟ୍ଟୀଶ ଅଛଇ ।
କାନ୍ତସ୍ୱର ଗଦାହସ୍ତେ ହୋଇଲେ ନିବୃତ୍ତ
ଜ୍ୱଳନସନ୍ନିଭ ନାମେ ଏକ ମହାଦୈତ୍ୟ ।
ତାହାକୁ ଦେଖିଲେ ରଣେ ପ୍ରଭୁ ଗଣପତି
ପଟ୍ଟୀଶକୁ ବୁଲାଇଲେ କରି ଚିତ୍ରଗତି ।
ମସ୍ତକେ ପିଟନ୍ତେ କଲା ଅସୁର ଚିତ୍କାର
ବିକୃତ ସ୍ୱରରେ ଗଲା ଶମନନଗର ।
ମାମୁଁ ପୁଅ ହତ ଦେଖି ତୁରଙ୍ଗଙ୍କ ଧ୍ୱଜ
ପାଶ ଏକ ପାତିଲା ସେ ବଳିଷ୍ଠ ଦନୁଜ ।
ପଚିଶ ସହିତ ନନ୍ଦିଷେଣ ହେଲା ବନ୍ଦି
ଶକ୍ତହସ୍ତେ ବିଷାଣ ତା ସଙ୍ଗେ ହେଲା ବାଦୀ ।
ବିଶାଖା କୁକ୍କୁଟଧ୍ୱଜ ଦୁହିଁଙ୍କ ସହିତ
ଯୁଦ୍ଧ କଲା ଅୟଃଶିରା ହୋଇ ଶକ୍ତିହସ୍ତ ।
ନ ପାରି ସେ ପଳାଇଲା ଶମ୍ବର ପାଶକୁ
ଶରଣ ପଶିଲି ବୋଲି କହିଲା ତାହାକୁ ।
ଶଙ୍କର ଆତ୍ମଜ ଚାର ଶକ୍ତି ହସ୍ତେ ଧରି
ପାଶ କାଟି ପକାଇଲେ ଛିନ୍ନ ଭିନ୍ନ କରି ।
ତା ଦେଖି ଶମ୍ବରାସୁର ହୋଇଲା କାତର
ପଳାଇଣ ରଣ ଛାଡ଼ି ଦେଖିଣ କୁମାର ।
ବାଣେ କଲେ ଦାନବଙ୍କ ସେନାଙ୍କୁ ମର୍ଦ୍ଦନ
ଭୟ ପାଇ ଦୈତ୍ୟସୈନ୍ୟ କଲେ ପଳାୟନ ।
ଶରଣ ପଶିଲେ ଯାଇଁ ଶୁକ୍ରଙ୍କ ଚରଣେ
ଗୋଟିଏ ଦାନବ ମାତ୍ର ନ ରହିଲେ ରଣେ ।

=+=

## ଜମ୍ଭ କୁଜମ୍ଭ ବଧ

କହିଲେ ପୁଲସ୍ତ୍ୟ ଋଷି ପ୍ରମଥାଦି ଗଣ
କୁଜମ୍ଭାଦି ଦାନବଙ୍କ ସଙ୍ଗେ କରି ରଣ ।
ଯମପୁରେ ପଠାଇଲେ ତା ଦେଖି ଅନ୍ଧକ
ଶୁକ୍ରଙ୍କୁ ବୋଇଲା ସେହି ଅସୁର ନାୟକ ।

ଆପଣଙ୍କ ଆଶ୍ରୟରେ ଆମ୍ଭେମାନେ ରହି
ଆମ୍ଭର କାହାକୁ ତିନିପୁରେ ଡର ନାହିଁ ।
ଦାନବ ମାନବ ଯକ୍ଷ ଗନ୍ଧର୍ବ କିନ୍ନର
ହାରିଛନ୍ତି ଆମ୍ଭସଙ୍ଗେ କରିଣ ସମର ।
ଦେଖ ଏବେ ମୋର ସେନା ହେଲେ ଅରକ୍ଷିତ
ଅନାଥ ରମଣୀ ପ୍ରାୟ ମାଇଲେ ପ୍ରମଥ ।
କୁଜମ୍ଭ ପ୍ରଭୃତି ମୋର ମଲେ ଭ୍ରାତୃଗଣ
ପ୍ରମଥଗଣଙ୍କ ସଙ୍ଗେ କରି ମହାରଣ ।
ଅସଂଖ୍ୟ ପ୍ରମଥ କୁରୁକ୍ଷେତ୍ର ଫଳ ପରି
ଅଜ୍ଞାତଶତ୍ରୁଙ୍କୁ ଆମ୍ଭେ ଜିଣିବୁ କିପରି ।
ତହିଁର ଉପାୟ ପ୍ରଭୁ କରନ୍ତୁ ବିଧାନ
ଦୈତ୍ୟ ଗୁରୁ ଶୁକ୍ର ଶୁଣି ଅନ୍ଧକବଚନ ।
ତାହାଙ୍କୁ ପ୍ରବୋଧି ହର୍ଷେ କହିଲେ ଏମନ୍ତ
ତୀର୍ଥେ ଯାଇଁ କରିବି ମୁଁ ତୁମ୍ଭର ଯେ ହିତ ।
ଏହାକହି ଶୁଚିହୋଇ ଶୁକ୍ରାଚାର୍ଯ୍ୟ ଆସି
ସଂଜୀବନୀ ମହାମନ୍ତ୍ର ବାରମ୍ବାର ଘୋଷି ।
ଘୋଷନ୍ତେ ଯେତେକ ଦୈତ୍ୟମରିଥିଲେ ରଣେ
ଜୀଇ ଉଠି ବସିଲେ ସେ ସର୍ବେ ତତକ୍ଷଣେ ।
ନନ୍ଦୀ ଯାଇଁ ଜଣାଇଲା ଶିବଙ୍କ ଅଗ୍ରତେ
ସଂଗ୍ରାମରେ ମରିଥିଲେ ଯେତେକ ଦଇତେ ।
ସଂଜୀବନୀ ବିଦ୍ୟାବଳେ ଶୁକ୍ର ଜୀଆଇଲେ
ଶୁଣି ମହାଦେବ ଗଣପତିଙ୍କି କହିଲେ ।
ତୁ ଯାଇଁ ଶୁକ୍ରଙ୍କୁ ଘେନି ଆସ ମୋର ପାଶେ
ସଂଯତ କରିବି ଯୋଗ ବଳେ ମୁଁ ବିଶେଷେ ।
ରୁଦ୍ରଆଜ୍ଞାପାଇ ଗଲେ ନନ୍ଦୀ ଗଣପତି
ପଶିଲେଦୈତ୍ୟଙ୍କ ସୈନ୍ୟ ମଧ୍ୟେ ନାହିଁଭୀତି ।
ଭୟଙ୍କର ବଳବନ୍ତ ପ୍ରଧାନ ଅସୁରେ
ବନେ ପଶୁଗଣ ଯଥା ସିଂହ ଅଗ୍ରତରେ ।
ରହି ପଥ ନିରୋଧନ୍ତି ତେସନ ଘେରନ୍ତେ
ଅଶନି ସଦୃଶ ବାଣ ଗଣେଶ ମାରନ୍ତେ ।
ପଡ଼ିଲେ ନିଚେଷ୍ଟ ହୋଇ ବାଣାଘାତ ପାଇ
ତ୍ୱରିତେ ଗମନ୍ତି ନନ୍ଦୀ ଗଣେଶ ଏ ଦୁଇ ।
ତାଦେଖି କୁଜମ୍ଭ ଜମ୍ଭ ବଳି ବୃତ୍ରାସୁର
ମୟ ହ୍ରାଦ ଆଦି ଯେତେ ରଣବ୍ୟାଘ୍ରବୀର ।
ଧାଇଁ ଆସି ପ୍ରହାରିଲେ ବିବିଧ ଆୟୁଧ
ସେ ସମସ୍ତେ ମହାବଳେ ରଣେ ମହାଯୋଧ ।

ଗଣେଶ ନନ୍ଦୀକି ଘେରି ମାରନ୍ତେ ବହୁତ
ତା ଦେଖି ବୋଇଲେ ବ୍ରହ୍ମା ଆହେ ପୁରୁହୂତ ।
ତୁମ୍ଭେମାନେ ଯାଇଁ ହୁଅ ଦେବଙ୍କ ସହାୟ
ପିତାମହଙ୍କର ବାକ୍ୟେ ଦେବ ସୁରରାୟ ।
ଦେବସେନା ଘେନି ଖସି ଅମ୍ବରୁ ଅଇଲେ
ମହାଦେବ ସୈନ୍ୟମଧ୍ୟେ ଆସିଣ ପଡ଼ିଲେ ।
ନଦୀମାନେ ମହା ବେଗେ ସମୁଦ୍ରେ ଯେସନ
ପଡ଼ନ୍ତି ଦେବଙ୍କ ବେଗେ ସୈନ୍ୟରେ ତେସନ ।
ଦେଖି ଦୁଇବଳ ମଧ୍ୟେ କୋଳାହଳ ଜାତ
ଏ ସମୟେ ନନ୍ଦୀ ଗଲା ହୋଇଣ ତ୍ୱରିତ ।
ଶୁକ୍ରଙ୍କୁ ଆଣିଲା ଧରି ଅସୁର ସୈନ୍ୟରୁ
ନନ୍ଦୀ ଆଉ ଶୁକ୍ରଙ୍କୁ ସେ ଶିବ ଦେଖି ଦୂରୁ ।
ଚାରିପାଖେ ସୈନ୍ୟରଖି କରାଇଲେ ବନ୍ଦି
କହିଲେ ଅନ୍ଧକ ଆଗେ ଦୈତ୍ୟ ଯାଇ କାନ୍ଦି ।
ଯୋଗବଳେ ସେ ଶୁକ୍ରଙ୍କୁ ଶିବ କଲେ ଗ୍ରାସ
ଗର୍ଭେ ଥାଇଁ ଶୁକ୍ର ବୋଲେ ଆହେ କୃତିବାସ ।
ତୁମ୍ଭେ ବରଦାତା ତୁମ୍ଭେ ଗୁଣଶାଳୀ ହର
ମହେଶ୍ୱର ବିଶ୍ୱେଶ୍ୱର ଶଙ୍କର ଈଶ୍ୱର ।
ସକଳଜୀବନ ତୁମ୍ଭେ ଚରାଚର ନାଥ
ନମସ୍ତେ ହେ ବୃଷାକଟୀ କାତ୍ୟାୟନୀକାନ୍ତ ।
ନମୋ ନମୋ କାଳଶକ୍ତି ମଦନ ମୋହନ
ନମସ୍ତେ ହେ ବାମଦେବ ନମସ୍ତେ ବାମନ ।
ନମସ୍ତେ ହେ ବିଶ୍ୱରୂପ ନମସ୍ତେ ସବିତା
ନମୋ ସଦଗତି ସର୍ବ ନମୋ ବିଶ୍ୱପିତା ।
ନମୋ ନମୋ ମହାଦେବ ନମୋ ବାମଦେବ
ନମୋ ଉମାପତି ହରି ତ୍ରିନୟନ ଭବ ।
ହେ ଜୀମୁତକେତୁ ଗୁହା ଶ୍ମଶାନନିରତ
ଗୋପତି ହେ ପଶୁପତି ରହେ ଶୂଳ ହସ୍ତ ।
ପୁରୁଷଉତ୍ତମ ଆହେ ଭୂତିବିଲେପନ
ତୁମ୍ଭ ପାଦପଦ୍ମ ଦୁଇ କରୁଛି ବନ୍ଦନ ।
କରିବର ଶୁକ୍ର ସ୍ତବେ ପ୍ରସନ୍ନ ଶଙ୍କର
ବୋଇଲେରେ ଗଜରୂପୀ ଶୁକ୍ର ଘେନ ବର ।
ଶୁକ୍ରବୋଇଲେ ତୋଗର୍ଭୁ ଯିବି ମୁଁ କେମନ୍ତେ
ଆଖି ବୁଜି ଶିବ ତାଙ୍କୁ କହିଲେ ଏମନ୍ତେ ।
ବାହାର ହୁଅ ମୋ ଗର୍ଭୁ ଭାର୍ଗବ ନନ୍ଦନ
ଉଦରେ କ୍ରୋଧରେ ଶୁକ୍ର କରନ୍ତେ ଭ୍ରମଣ ।

ଦେଖିଲେ ଅର୍ଣ୍ଣବ ସହ ସକଳ ଭୁବନ
ବିଶ୍ୱେଦେବାଗଣ ଆଉ ରୁଦ୍ର ବସୁଗଣ ।
ଅପସରା ଆଦି ଯକ୍ଷ କିଂପୁରୁଷ ଯେତେ
କିନ୍ନର ଗନ୍ଧର୍ବ ଆଦି ଅଛନ୍ତି ସମସ୍ତେ ।
ମୁନି ମନୁ ସାଧ ସିଦ୍ଧ କୀଟ ପତଙ୍ଗାଦି
ବୃକ୍ଷଗୁଳ୍ମ ସରୀସୃପ ଫଳ ମହୌଷଧି ।
ଜଳଚର ସ୍ଥଳଚର ଅବ୍ୟକ୍ତ ସୁବ୍ୟକ୍ତ
ଚତୁଷ୍ପଦଜନ୍ତୁ ଯେତେ ଦ୍ୱିପଦ ବ୍ୟତୀତ ।
ଏମାନଙ୍କୁ ଦେଖି ପୁଣି ଦେଖିଲେ ଦ୍ୱିପଦ
ଅରଣ୍ୟ ପର୍ବତ ଆଦି ନାନା ବିଧ ଯୁଦ୍ଧ ।
କଉତୁକେ ଦେଖୁ ଦେଖୁ ଗଲା ଦିବ୍ୟବର୍ଷେ
ମହାଶ୍ରମ ପାଇ ଶୁକ୍ର ଏକାନ୍ତ ମାନସେ ।
ବୋଇଲେ ହେ ବିଶ୍ୱରୂପ ମହାରୂପ ହର
ବିରୁପାକ୍ଷ ସହସ୍ରାକ୍ଷ ସ୍ୱରୂପ ଶଙ୍କର ।
ମହାଦେବ ସର୍ବ ଶମ୍ଭୁ ସହସ୍ର ନୟନ
ସହସ୍ର ଚରଣ ଆହେ ଭୁଜଗ ଭୂଷଣ ।
ସମୁଦାୟ ବିଶ୍ୱ ଦେଖି ତୋ ଗର୍ଭଗହ୍ୱରେ
ଶରଣ ପଶିଲି ଭ୍ରମି ତୋର ଶ୍ରୀପୟରେ ।
ଶୁକ୍ରସ୍ତବେ ସୁପ୍ରସନ୍ନ ହୋଇ ମହାଦେବ
ହାସ୍ୟ କରି କହିଲେକ ହେ ମୁନି ଭାର୍ଗବ ।
ତୁ ମୋହର ପୁତ୍ର ହେଲୁ ଶିଶ୍ନ ମାର୍ଗେ ଆସ
ଆଜିଠାରୁ ଶୁକ୍ର ନାମେ ପାଇବ ପ୍ରକାଶ ।
ଜଗତରେ ଶୁକ୍ର ବୋଲି ତୁମ୍ଭଙ୍କୁ ଡାକିବେ
ଶୁକ୍ରାଚାର୍ଯ୍ୟ ଶିବଙ୍କର ଏମନ୍ତ ପ୍ରସ୍ତାବେ ।
ଶିବଙ୍କର ଶିଶ୍ନ ମାର୍ଗେ ଅଇଲେ ବାହାରି
ପୃଥିବୀରେ ପଡ଼ିଲେ ସେ ଶୁକ୍ରରୂପ ଧରି ।
ମହାଦେବ ପାଦପଦ୍ମ କରିଣ ବନ୍ଦନ
ମିଳନ୍ତେ ଅସୁରସୈନ୍ୟେ ହିରଣ୍ୟ ନନ୍ଦନ ।
ଯୁଝିବାକୁ ବାହାରିଲା ପୁଲକିତ ଚିତ୍ତେ
ରୁଦ୍ରସୈନ୍ୟଦୈତ୍ୟସୈନ୍ୟଅଇଲେତ୍ୱରିତେ ।
ନନ୍ଦୀବୀର ସଙ୍ଗତରେ ଅନ୍ଧକ ସମର
ଅୟଃଶିରା ଶଙ୍କୁକର୍ଣ୍ଣ ଯୁଦ୍ଧ ଘୋରତର ।
ବଳିସଙ୍ଗେ କୁମ୍ଭଧ୍ୱଜ କଲା ଘୋରରଣ
ବିରୋଚନ ସଙ୍ଗତରେ ଯୁଝେ ନନ୍ଦିଷେଣ ।
ଅଶ୍ୱଗ୍ରୀବ ବିଶାଖର ଲାଗିଲା ସଂଗ୍ରାମ
ବାଣାସୁର ସଙ୍ଗତରେ ଯୁଝଇ ନୈଗମ ।

ଶାଖ ବୃତ୍ର ଦୁହେଁ ଯୁଦ୍ଧକଲେ ପରସ୍ପରେ
ରାକ୍ଷସବଳରେ ଥିଲେ ଯେତେ ମହାବୀରେ ।
ବିନାୟକଗଣ ସଙ୍ଗେ ଯୁଝିଲେ ସେ ଆସି
ଦାନବ ରାକ୍ଷସ ଶ୍ରେଷ୍ଠ ହେଲେ ମିଶାମିଶି ।
ପ୍ରମଥ ଗଣଙ୍କ ସଙ୍ଗେ ଯୁଦ୍ଧ କଲେ ରୋଷେ
ତୁହୁଣ୍ଡ ରାକ୍ଷସ ମିଳେ ଶତକ୍ରତୁ ପାଶେ ।
ହସ୍ତୀକୁଣ୍ଡୋଦର ଆଉ ହ୍ରାଦ ଘଟୋଦର
ମହାଯୁଦ୍ଧ ଆରମ୍ଭିଲେ ହେ ବ୍ରହ୍ମର୍ଷିବର ।
ଦାନବ ପ୍ରମଥଗଣ ଆରମ୍ଭିଲେ ରଣ
ବଜ୍ରପାଣି ତୁଲ୍ୟ ଆସି ଗଣୋତ୍କଟ ଗଣ ।
ମଧ୍ୟେ ଛିଡ଼ାହେଲେ ତାଙ୍କ ସଂଖ୍ୟା ଛଅଶତ
ତାହା ଦେଖି ଜମ୍ଭ ନାମେମହାବଳ ଦୈତ୍ୟ ।
ତାହାଙ୍କୁ ନିଷେଧ କଲା ଆୟୁଧ ହସ୍ତରେ
ଶମ୍ଭୁଦୈତ୍ୟ ଯୁଦ୍ଧକଲା ବ୍ରହ୍ମାଙ୍କ ସଙ୍ଗରେ ।
ବିଷ୍ଣୁ ସଙ୍ଗେ ଯୁଦ୍ଧକଲା କୁଜମ୍ଭ ଦଇତ
ମହାଦୈତ୍ୟ ସୋଲ୍‌କ ଯୁଝେ ଯମର ସହିତ ।
ବରୁଣ ସଙ୍ଗରେ ଯୁଝେ ତ୍ରିଶିରା ଅସୁର
ଦ୍ୱମୂର୍ଦ୍ଧା ପବନ ସଙ୍ଗେ କଲାକ ସମର ।
ଅସୁର ବିରୂପଧରି ଯୁଝେ ଚନ୍ଦ୍ରସଙ୍ଗେ
ଏକଚକ୍ଷୁ ରୁଦ୍ରସଙ୍ଗେ କାଳନେମି ଲାଗେ ।
ରଣୋତ୍କଟ ବିଦ୍ୟୁନ୍ମାଳୀ ଅସୁର ଏକାକେ
ଏକାଦଶରୁଦ୍ରଗଣ ରଖିଲାକ ପାଖେ ।
ନରକ ନାରକ ଦୁଇ ଅସୁର ପ୍ରଧାନ
ଅଶ୍ୱିନୀକୁମାର ସଙ୍ଗେ କଲେ ଘୋର ରଣ ।
ଦ୍ୱାଦଶ ଆଦିତ୍ୟ ସଙ୍ଗେ ଯୁଝଇ ଶମ୍ବର
ସାଧଗଣ ମରୁଦ୍‌ଗଣ ସଙ୍ଗତେ ସମର ।
କରନ୍ତି ନିବାତ କବଚାଦି ନିଶାଚରେ
ଆହେ ମହାମୁନି ଏହିପରି ପରସ୍ପରେ ।
ସହସ୍ର ସହସ୍ର ଜାଣ ଦାନବ ପ୍ରମତ
ରୋଷଭରେ ଯୁଦ୍ଧ କଲେ ନାହିଁ ଦିବାରାତ୍ର ।
ଦେବବର୍ଷ ଛଅ ଶତ ବର୍ଷ ଗଲା ବହି
ଦାନବଙ୍କ ବାଣ ଦେବେ ନପାରିଲେ ସହି ।
କ୍ରମେ କ୍ରମେ ଦେବତାଙ୍କ ଦୈତ୍ୟଦେଲେ ଗିଳି
ବେଳୁଁ ବେଳନିଶାଚରେ ହେଲେ ବଳଶାଳୀ ।
ପ୍ରମଥ ଅମର ସୈନ୍ୟ କ୍ରମେ ହେଲେ ଶୂନ୍ୟ
ଶେଷେ ଯେ ରହିଲେ କଲେ ସେ ଗିରିବର୍ଦ୍ଧନ ।

ଏହା ଦେଖି ରୁଦ୍ରଙ୍କର ହେଲା କ୍ରୋଧ ଜାତ
ହାଇ ମାରୁ ଅଳସୁଆ ହୋଇଲେ ଦଇତ ।
ମନ୍ଦଭାଷୀ ଶସ୍ତ୍ର ତ୍ୟାଗୀ ଜୃମ୍ଭାତ୍ୟାଗୀ ହେଲେ
ବଦନ ବିସ୍ତାରି ହାଇ ବହୁତ ମାଇଲେ ।
ବ୍ୟାକୁଳେ ପ୍ରମଥଗଣ ଅମର ନିକର
ଉଦରୁ ବାହାରି ତଳେ ପଡ଼ିଲେ ସତ୍ୱର ।
ଦେଖାଗଲେ ମେଘମଧ୍ୟେ ବିଜୁଳି ପରାୟ
ପୁଣି ଯୁଦ୍ଧ ଆରମ୍ଭିଲେ ଅମର ନିଚୟ ।
ଏ ରୂପେ ସପ୍ତାଷ୍ଟ ଶତ ବର୍ଷ ଗଲା ବହି
ଭୟଙ୍କର ଯୁଦ୍ଧ ହୁଏ ଦିବାରାତ୍ର ନାହିଁ ।
ଅଷ୍ଟାଦଶ ଭୁଜ ହୋଇ ପ୍ରଭୁ ତ୍ରିଲୋଚନ
ସରସ୍ୱତୀ ଜଳେ ପଶି କଲେ ସନ୍ଧ୍ୟାସ୍ନାନ ।
ଜପିଲେ ହରିଣ୍ୟଗର୍ଭ ମନ୍ତ୍ର ବାରମ୍ବାର
ଭାବଭରେ ଶତ ଶତ କରି ନମସ୍କାର ।
ମାତିଲେ ତାଣ୍ଡବନୃତ୍ୟେ ମହାଦେବ ଶିବ
ନୃତ୍ୟସାରି ବାହାରିଲେ ବଧିବେ ଦାନବ ।
ରୁଦ୍ରତେଜେ ବଳଶାଳୀ ହେଲେ ଶିବସୈନ୍ୟ
ପଠାଇଲେ ଅସୁରଙ୍କୁ ଯମ ନିକେତନ ।
ନିଜସୈନ୍ୟ ମୃତ ଦେଖି ଅନ୍ଧକ ଅସୁର
ସୁନ୍ଦକୁ ବୋଇଲା ଭାଇ ଅଟୁ ତୁ ମୋହର ।
ସଂଗ୍ରାମରେ ରୁଦ୍ରସୈନ୍ୟ ଅଟନ୍ତି ନିପୁଣ
ନ ଜିଣି ପାରିବା ଶିବ ସଂଗେ କଲେ ରଣ ।
ପାର୍ବତୀ କି ଭୋଗ କରି ନ ପାରିଲି ମୁହିଁ
ଏଣୁ ଯାହା ବିଚାରୁଛି ଶୁଣ ଆରେ ଭାଇ ।
ତୁହି ହୁଅ ନନ୍ଦୀ ମୁହି ହୁଅଇ ଶଙ୍କର
ପାର୍ବତୀକି ଭୋଗ କରି ଆସିବା ସତ୍ୱର ।
ରୁଦ୍ରବଳ ଦେବବଳ ସଂହାରିବା ରଣେ
ସ୍ୱର୍ଗ ମର୍ତ୍ତ୍ୟ ପାତାଳରେ ନ ରଖିବା ଜଣେ ।
ଏହା କହି ଶିବରୂପ ଧରିଲା ଅସୁର
ସୁନ୍ଦନନ୍ଦୀରୂପ ଧରି ହେଲା ଅନୁଚର ।
ହସ୍ତଧରି ଦୁରାଚାର ମିଳିଲେ ମନ୍ଦିରେ
ଯହିଁ ବିଜେ କରିଛନ୍ତି ସଖୀ ସଙ୍ଗତରେ ।
ବାଣାଘାତେ ଅନ୍ଧକର ଦେହ ଜର୍ଜରିତ
ଦୂରୁଦେଖି ଗିରିସୁତା ବୋଇଲେ ଏମନ୍ତ ।
ଦେଖ ଗୋ ମାଳିନୀ ଜୟା ବିଜୟା ଏହାଙ୍କୁ
ଆସିଛନ୍ତି ଦୁହେଁ ମୋର ମହତ୍ୱ ନେବାକୁ ।

ଏରୂପେ ଆସିଛି ସେହି ଦାରୁଣ ଅସୁର
ଉଠ ଏଠାବରୁ ଆମ୍ଭେ ଯିବା ଗୋ ସତ୍ୱର ।
ପୁରାତନ ଘୃତ ଦଧି ଲୁଣ ଦିଅ ଆଣି
ନିଜେ ଶିବ ବ୍ରଣ ଭଙ୍ଗ କରିବଇଁ ପୁଣି ।
ସ୍ୱାମୀ ବ୍ରଣ ଭାଙ୍ଗିବାକୁ ତୁମ୍ଭେ ଯତ୍ନକର
ଏହା କହି ବରାସନୁ ଉଠିଲେ ସତ୍ୱର ।
ବୃଷଧ୍ୱଜଙ୍କର ଧ୍ୟାନ କରି ତହୁଁ ଗଲେ
ଉପକରଣମାନଙ୍କୁ ଯୋଗାଡ଼ି ଆଣିଲେ ।
ଅତି ଯତ୍ନେ ଶରପତ୍ରେ କଲେ ତା ଛେଦନ
ସେ ଦୁହିଁଙ୍କି ଦେଖିଲେ ସେ କରୁ ଅନ୍ୱେଷଣ ।
ମାୟା ଆଚ୍ଛାଦିତ ସେହି ଦୁଇ କଳେବର
ଦେଖିଲା ମାତ୍ରକେ ଜାଣି ପାରିଲେ ଅସୁର ।
ସେଠାରୁ ତକ୍ଷଣେ ଦେବୀ ଗଲେକ ପଳାଇ
ଦେବୀଙ୍କର ଅଭିପ୍ରାୟ ବୁଝି ଦୈତ୍ୟସାଇଁ ।
ସୁନ୍ଦକୁ ଛାଡ଼ିଣ ତାଙ୍କ ପଛେ ପଛେ ଗଲା
ସେ ଯାଇଁ ରହିଲେ ଯହିଁ ଏ ତହିଁ ମିଳିଲା ।
ଏହାଦେଖି ଭୟ ପାଇ ଗିରିନ୍ଦ୍ର ନନ୍ଦିନୀ
ଗୃହଛାଡ଼ି ପଳାଇଲେ ସଖୀଗଣ ଘେନି ।
ଉପବନେ ପ୍ରବେଶିଲେ ହେ ମୁନି ପୁଙ୍ଗବ
ମଦାନ୍ଧ ଅନ୍ଧକ ଯାଏ ହୋଇ ମହାଦେବ ।
ଉପବନେ ପ୍ରବେଶନ୍ତେ ଦେଖି ଗିରିସୁତା
ଅର୍କପୁଷ୍ପେ ଲୁଚିଲେ ସେ ହୋଇ ଭୟାନ୍ୱିତା ।
ଅପରହା ଅର୍ଥେ ଶାପ ନ ଦେଲେ ଦୈତ୍ୟଙ୍କୁ
ବିଜୟାଦି ସଖୀଗଣ ନ ଦେଖି ଦେବୀଙ୍କୁ ।
ମହାଗୁଳ୍ମ ମଧ୍ୟେ ଲୀନ ହେଲେ ଭୟପାଇ
ଖୋଜି ଖୋଜି ସେ ଅନ୍ଧକତାହାଙ୍କୁ ନ ପାଇ ।
ସୁନ୍ଦ ହସ୍ତ ଧରି ସୈନ୍ୟ ମଧ୍ୟରେ ମିଳିଲା
ଦୈତ୍ୟ ରୁଦ୍ର ସୈନ୍ୟଙ୍କର ପୁଣି ଯୁଦ୍ଧ ହେଲା ।
ବିଷ୍ଣୁ ଚକ୍ର ଗଦା ଧରି ମାରିଲେ ଅସୁର
ଶାର୍ଙ୍ଗଧନୁ ଧରି କଲେ ଦାନବ ସଂହାର ।
ଥିଲେ ହେ ଛବିଶ ଜଣ ପ୍ରଧାନ ଦଇତ
ଏହାଙ୍କୁ ଶ୍ରୀହରି କଲେ ଚକ୍ରରେ ନିପାତ ।
କାହାକୁ ଗଦାରେ ଅବା କାହାକୁ ଖଡ଼୍‌ଗେ
କାହାକୁ ସୁତୀକ୍ଷଣ ବାଣ ମାରି ଅତିବେଗେ ।
ହଳମୂଷଳରେ କଲେ କାହା ଶିର ଚୂର୍ଣ୍ଣ
ଶରଜାଳେ ପ୍ରଭୁ କଲେ ଦଶଦିଗ ପୂର୍ଣ୍ଣ ।

ନେତ୍ରାନଳେ ନିଶାଚରବଳ ଦେଲେ ପୋଡ଼ି
ସୁଦର୍ଶନ ଚକ୍ର ବୁଲି ମାରେ ଘଡ଼ି ଘଡ଼ି ।
ଗରୁଡ଼ର ପକ୍ଷାଘାତେ ଉଡ଼ିଲେ ଦଇତେ
ପଡ଼ିଲେ ସମୁଦ୍ରେ ବୁଡ଼ିମଲେ ଯାଇଁ କେତେ
ଅଣ୍ଟ ମାରି ବିଦାରିଲା କାହାର ବା ଉର
ନଖେ ଚିପି ପକାଇଲା କାହାର ଉଦର ।
ପୁରାଣ ପୁରୁଷ ଧାତା ଲୋକ ପିତାମହ
ମନ୍ତ୍ରଜଳ ସିଞ୍ଚି କଲେ ଦୃଢ଼ ଗଣଦେହ ।
ନବ କଳେବର ଧରି ହେଲେ ବଳବନ୍ତ
ବରାୟୁଧ ଧରି କଲେ ଦାନବ ନିପାତ ।
ଦାନବଙ୍କ ଦେହେ ଯାଇଁ ପଡ଼ନ୍ତେ ସେ ଜଳ
ବଜ୍ରସ୍ପର୍ଶ ଗିରିପ୍ରାୟ ମରନ୍ତି ସକଳ ।
ବ୍ରହ୍ମା ବିଷ୍ଣୁ କରନ୍ତେ ସେ ଦାନବ ସଂହାର
ଦେଖି ଯୁଦ୍ଧ ଆରମ୍ଭିଲେ ଦେବ ପୁରନ୍ଦର ।
ଇନ୍ଦ୍ରଙ୍କୁ ଯୁଝିବା ଦେଖି ବଳନାମା ଦୈତ୍ୟ
ବ୍ରହ୍ମା ବିଷ୍ଣୁଙ୍କର ପାଦେ କରି ପ୍ରଣିପାତ ।
ଯୁଦ୍ଧ କରିବାକୁ ମୁଷ୍ଟି ଉଞ୍ଚାଇ ଧାଇଁଲା
କାଳାନ୍ତକ ଯମ ପ୍ରାୟ ସେହି ଦେଖାଗଲା ।
ତ୍ରିଦଶ ଈଶ୍ୱର ବଜ୍ର ଘୂରାଇ ଘୂରାଇ
ପିଟିଲେ ଦାନବ ଶିରେସବଳେ ନିଠାଇ ।
ବଜ୍ର ଖଣ୍ଡ ଖଣ୍ଡ ହେଲା ପଡ଼ି ତାର ଶିରେ
ଧାଇଁଲା ସେ ବଳ ଦୈତ୍ୟ ଅସ୍ତ୍ର ନାହିଁ କରେ ।
ଭୟ ପାଇ ପଳାଇଲେ ଦେବ ପୁରନ୍ଦର
ଭୂତଗଣ ମଧ୍ୟେ ଥିଲା ଜମ୍ଭ ନିଶାଚର ।
ବୋଇଲା ତୁ ପରା ଇନ୍ଦ୍ର ଚରାଚରଙ୍କର
ରାଜଧର୍ମେ ପଳାଇବା ଅଟେ ଅନାଚାର ।
ସହସ୍ରାକ୍ଷ ଜମ୍ଭ ଦୈତ୍ୟ କଥା ଶୁଣି ଡରେ
ଶରଣ ପଶିଲା ବିଷ୍ଣୁ ପଦ୍ମ ଚରଣରେ ।
ବୋଇଲା ହେ ପ୍ରଭୁ ଭୂତ ଭବିଷ୍ୟତ ନାଥ
ମୋହର କଥାରେ ଟିକେ କର କର୍ଣ୍ଣପାତ ।
ଅସ୍ତ୍ରଶୂନ୍ୟ ଦେଖି ମୋତେ ଦୁରାଚାର ଦମ୍ଭ
ଗର୍ଜ୍ଜନ ତର୍ଜନ କରି ଦେଖାଉଛି ଦମ୍ଭ ।
ଆୟୁଧ ପ୍ରଦାନ କର ପ୍ରଭୁ ନାରାୟଣ
ଆପଣଙ୍କ ଶ୍ରୀଚରଣେ ପଶିଲି ଶରଣ ।
ଶ୍ରୀହରି ବୋଇଲେ ଇନ୍ଦ୍ର ଯାଇଣ ସଂପ୍ରତି
ଅଗ୍ନିକି ମାଗ ସେ ଅସ୍ତ୍ର ଦିଅନ୍ତୁ ଝଟତି ।

ଏହା ଶୁଣି ସେ ଅମିତ ବିକ୍ରମ ବାସବ
ପାବକ ଶରଣ ନେଇ ବୋଇଲେ ଭୋଦେବ ।
ମୋର ବଜ୍ର ଖଣ୍ଡ ଖଣ୍ଡ ହେଲା ଦୈତ୍ୟଶିରେ
ହେ କୃଶାନୁ ଜମ୍ଭ ମୋତେ ଡାକୁଛି ସମରେ ।
ଏଣୁ ମୁଁ ମାଗୁଛି ମୋତେ ଦିଅ ବରାୟୁଧ
ଯହିଁରେ କରିବି ମୁହିଁ ଜମ୍ଭଦୈତ୍ୟ ବଧ ।
ହୁତାଶନ ବୋଇଲେ ମୁଁ ହୋଇଲି ପ୍ରସନ୍ନ
ଯେଣୁ ମୋ ଶରଣ ନେଲା ସହସ୍ରଲୋଚନ ।
ଏହା କହି ଦେଲେ ତାଙ୍କୁ ଆପଣାର ଶକ୍ତି
ଅପ୍ରମିତ ବଳ ଯାର ଅନିବାର୍ଯ୍ୟ ଗତି ।
ସେହି ଶକ୍ତି ଅସ୍ତ୍ର ଘଣ୍ଟା ଲାଗିଅଛି ଶଏ
ତାକୁ ଘେନି ପୁରନ୍ଦର ଧାଇଁଲେ ନିର୍ଭୟେ ।
ତାଙ୍କ ପଛେ ଦେବଗଣ ଅସ୍ତ୍ରଶସ୍ତ୍ର ଘେନି
ପୃଷ୍ଠରକ୍ଷା କଲେ ଦେଖି ଦେବ ବଜ୍ରପାଣି ।
ଐରାବତ ଆରୋହିଲେ ତାହା ଦେଖି ଜମ୍ଭ
ବିଧାଏ ମାରନ୍ତେ ଭାଙ୍ଗିଗଲା ଗଜକୁମ୍ଭ ।
ବଜ୍ରାହତ ଗିରିପ୍ରାୟ ପଡ଼ିଲା ସେ ଢଳି
ତା ପିଠିରୁ ଡେଇଁ ଗଲେ ଇନ୍ଦ୍ର ମହାବଳି ।
ଭୂମିରେ ପଡ଼ନ୍ତି ଇନ୍ଦ୍ର ତା ଦେଖି ଚାରଣ
ବୋଇଲେ ଯେ ନ ପଡ଼ନ୍ତୁ ଭୂମିରେ ଆପଣ ।
ଏହା ଶୁଣି କ୍ଷଣକାଳ ରହିଲେ ବାସବ
ବୋଇଲେ କିରୂପେ ଯୁଦ୍ଧ ଶତ୍ରୁ ସଙ୍ଗେ ହେବ ।
ଦେବତା ଗନ୍ଧର୍ବଗଣ କହିଲେ ଭୋ ନାଥ
ଦୁଃଖିତ ନ ହୁଅ ଆମ୍ଭେ ଦେଉଅଛୁ ରଥ ।
ଏହାକହି ରଥ ଏକ ଦେଲେକ ପଠାଇ
ବାନର କେତନ-ବାନା ସେ ରଥେ ଉଡ଼ଇ ।
ସ୍ୱସ୍ତିକ ଲକ୍ଷଣଯୁକ୍ତ ଅତ୍ୟନ୍ତ ବିପୁଳ
ସୁବର୍ଣ୍ଣ ମଣ୍ଡିତ ସୁର ଗବାକ୍ଷର ଜାଳ ।
ସାରଥି ବିହୀନ ରଥ ଦେଖି ପୁରନ୍ଦର
ବୋଇଲେ ଚାଳିବ କିଏ ଏହି ଅଶ୍ୱବର ।
ଯଦ୍ୟପି ମିଳିବ ମୋତେ ସାରଥୀ ପ୍ରବଳ
ସଂପ୍ରତି କରିବି ଶତ୍ରୁ କୁଳ ମୁଁ ନିର୍ମୂଳ ।
ଗନ୍ଧର୍ବେ କହିଲେ ନାହିଁ ସାରଥି ଆମ୍ଭର
ଆପେ ରଥି ହୁଅ ଆପେ ସାରଥି ଆବର ।
ଏହାଶୁଣି ଶତକ୍ରତୁ ରଥ ତ୍ୟାଗ କରି
ଭୂମିରେ ପଡ଼ନ୍ତେ ଶସ୍ତ୍ର ନ ପାରିଲେ ଧରି ।

କେଶପାଶ ଫିଟିଗଲା ଭୂମିକମ୍ପ ହେଲା
ଏକ ବିପ୍ର ପାଶେ ଏକ ତପସ୍ୱିନୀ ଥିଲା ।
ସ୍ୱାମୀକି କହିଲା ପ୍ରଭୁ ମୋର ଏ ବାଳକ
ବାହାରକୁ ଘେନିଯାଅ ଭୂମିକମ୍ପେ ଦେଖ ।
ପତ୍ନୀ କଥା ଶୁଣି ଦ୍ୱିଜ ବୋଇଲା କାହିଁକି
ବାହାରକୁ ନେବ ଏହି ଶିଶୁକୁ ଗୋ ସଖି ।
ଭାର୍ଯ୍ୟାବୋଲେ ନାଥ ଶୁଣ ଦଇବଜ୍ଞ ବାଣୀ
ଭୂମିକମ୍ପ ହେଲେ ଘରୁ ଯେ ପଦାର୍ଥ ଆଣି ।
ବାହାରେ ଥୋଇବ ସେହି ହୋଇବ ଦ୍ୱିଗୁଣ
ଶୁଣି ଦ୍ୱିଜ ଶିଶୁପୁତ୍ର ଘେନି ତତକ୍ଷଣ ।
ନିର୍ଭୟେ ବାହାରେ ଯାଇଁ ରହିଲା ଭୂମିରେ
ଗୋରୂ ଆଣିବାକୁ ପୁଣି ଦ୍ୱିଜ ଗଲା ଘରେ ।
ଭାର୍ଯ୍ୟା ତା ବାରଣ କଲା ନ କର ଏମନ୍ତ
ଗୋ ଯୁଗଳ ନେଲେ ହାନି ହୋଇବ ବହୁତ ।
ଭାର୍ଯ୍ୟା କଥା ମାନି ଦ୍ୱିଜ ବାହାରକୁ ଆସି
ଦେଖେ ଦୁଇ ଶିଶୁ ତହିଁ ଅଛନ୍ତି ଯେ ବସି ।
ରୂପ ଅଙ୍ଗ ଅବୟବ ସକଳ ସମାନ
ସେ ଦ୍ୱିତୀୟ ବାଳକକୁ କରି ବିଲୋକନ ।
ଭାର୍ଯ୍ୟାକୁ କହିଲା କହ ଦ୍ୱିତୀୟ ବାଳକ
କି ଗୁଣ କି କର୍ମ କରି ବଞ୍ଚିବ ବାଳକ ।
ଗାଲବ ମୁଖରୁ ତୁମ୍ଭେ ଶୁଣିଅଛ ଯାହା
ସମ୍ପ୍ରତି ମୋ ଆଗେ ପ୍ରିୟେ କହୁକିନା ତାହା ।
କହିବାର ସମୟ ଏ ନୁହଇ ହେ ନାଥ
ଦ୍ୱିଜବୋଲେ ନ କହିଲେ ଏହାର ବୃତ୍ତାନ୍ତ ।
ଅନାହାରେ ରହିବି ମୁଁ ଏକଥା ନିଶ୍ଚୟ
ବ୍ରାହ୍ମଣୀ ବୋଇଲା ଚାଲ ଇନ୍ଦ୍ର ରଥ ଦ୍ୱୟ ।
କାଳ କଟାଇବ ବହି ସାରଥିର ଗୁଣ
ଏହା କହୁ ସେ ବାଳକ ଉଠି ତତକ୍ଷଣ ।
ଇନ୍ଦ୍ରଙ୍କୁ ସାହାଯ୍ୟ ଦେବାପାଇଁ ତହୁଁ ଗଲା
ବାଟେ ଯାଉଁ ବିଶ୍ୱାବସୁ ଗନ୍ଧର୍ବ ଦେଖିଲା ।
ଗନ୍ଧର୍ବଗଣଙ୍କ ତେଜ ରଖିଲେ ତା ଦେହେ
ସେ ଦ୍ୱିଜକୁମର ଯାଇଁ ବାସବଙ୍କୁ କହେ ।
ଆସ ଦେବରାଜ ତୁମ୍ଭ ସାରଥି ମୁଁ ହେବି
ଯହିଁକି କହିବ ରଥ ତହିଁକି ବାହିବି ।
ଇନ୍ଦ୍ର ବୋଇଲେ ତୁ ଅଟୁ ନିତାନ୍ତ ବାଳକ
ତୁ କାହାର ପୁତ୍ର କହ କେ ତୋର ଜନକ ।
କିରୂପେ ତୁ ରଥ ଅଶ୍ୱ ପାରିବୁ ଚଳାଇ
ବାଳକ କହିଲା ଶୁଣ ପୁଲୋମଜା ସାଇଁ ।
ଶମିକର ପୁତ୍ର ମୁହିଁ ପୃଥିବୀରେ ଜାତ
ଗନ୍ଧର୍ବଗଣଙ୍କ ତେଜେ ହୋଇଛି ବର୍ଦ୍ଧିତ ।
ଅଶ୍ୱ ଚାଳିବାର ବିଦ୍ୟା ଜାଣେ ଭଲ କରି
ମୋରନାମ ମାତଳି ହେ ଜାଣ ବଜ୍ରଧାରୀ ।
ଆନନ୍ଦରେ ବିଜେ କଲେ ରଥେ ପୁରନ୍ଦର
ଅଶ୍ୱ ରଜ୍ଜୁ ଧଇଲା ସେ ଶ୍ରମିକ କୁମର ।
ମନ୍ଦର ପର୍ବତେ ଶତ୍ରୁ ସୈନ୍ୟେ କଲା ରଥ
ସେଠାରେ ପାଇଲେ ଏକ ଧନୁବଜ୍ରହସ୍ତ ।
ସୁବିଶାଳ ସୁପ୍ରଶସ୍ତ ସେହି ଶରାସନ
ଶ୍ୱେତରକ୍ତ ପୀତକୃଷ୍ଣ ପାଣ୍ଡୁର ତା ବର୍ଣ୍ଣ ।
ସେ ସଶର- ଶରାସନ ଧରି ବ୍ରଜ ଧାରୀ
ବ୍ରହ୍ମା ବିଷ୍ଣୁ ଶିବ ପାଦେ ନମସ୍କାର କରି ।
ଧନୁରେ ଯୋଚିଲେ ଗୁଣ ସନ୍ଧିଲେ ଯେ ଶର
ତହିଁ ଲେଖା ହୋଇଅଛି ବ୍ରହ୍ମା ବିଷ୍ଣୁ ହର ।
ମୟୂର ପୁଚ୍ଛରେ ଶୋଭା ପାଉଅଛି ସେହି
ଦଳିଲେ ଦାନବବଳ ଶବ୍ଦେ ପୂର୍ଣ୍ଣ ମହୀ ।
ପୃଥିବୀ ଆକାଶ ଦିଗ ବିଦିଗ ସକଳ
ଆଚ୍ଛାଦିଲେ ଶରଜାଳେ ଦେବ ଆଖଣ୍ଡଳ ।
ଅସୁରମାନଙ୍କ ଦେହ ବାଣେ ଦେଲେ ଛାଇ
ଗଜ ଅଶ୍ୱ ମାରନ୍ତେ ସେ ତଳେ ଗଲେ ଶୋଇ ।
ରଥିମାନଙ୍କର ଶିର କଲେକ ଛେଦନ
ମହାପାତ୍ର ଅଙ୍ଗ କଲେ ବାଣରେ ଆଚ୍ଛନ୍ନ ।
ପଡ଼ିଲା ସେ ବୀର ବସୁନ୍ଧରାର ଉପରେ
ଜମ୍ଭଦୈତ୍ୟ ଇତସ୍ତତ ହୋଇଲା ଆତୁରେ ।
କ୍ଷଣମଧ୍ୟେ ସୁବିଶାଳ ଥାଟ କଲେ ନାଶ
ସୈନ୍ୟହତ ଦେଖି ଜମ୍ଭ କୁଜମ୍ଭ ରାକ୍ଷସ ।
ଧାଇଁ ଯାନ୍ତେ ଇନ୍ଦ୍ର ପାଶେ କରେ ଗଦା ଧରି
ଆସନ୍ତେ ତାହାଙ୍କୁ ବାଟେ ଦେଖିଲେ ଶ୍ରୀହରି ।
ସୁଦର୍ଶନ ଚକ୍ରେ କଲେ କୁଜମ୍ଭକୁ ବଧ
ରଥରୁ ପଡ଼ିଲା ତଳେ ଦେଖନ୍ତି ବିବୁଧ ।
ଭାଇର ମରଣ ଦେଖି ମହାବୀର ଜମ୍ଭ
କ୍ରୋଧଭରେ ଧାଇଁଗଲା ମନେ କରି ଦମ୍ଭ ।
ସିଂହ ପାଶେ ପ୍ରବେଶିଲା ମୃଗ କିବା ଯାଇ
ତା ଆସିବା ଦେଖି ଧନୁ ତେଜି ସୁରସାଇଁ ।

ଯମଦଣ୍ଡ ତୁଲ୍ୟ ଶକ୍ତି ମାଇଲେ ତୁରିତେ
ଘଣ୍ଟା ସ୍ୱର ତୁଲ୍ୟ ସ୍ୱନ କରି ସେ ଆସନ୍ତେ ।
ଦେଖି ସେ ଶକ୍ତିକି ଗଦା ମାଇଲା ଅସୁର
ଗଦା ଛେଦି ଶକ୍ତି ଆସି ବିଦାରିଲା ଉର ।
ଭୂମିରେ ପଡ଼ିଲା ଜମ୍ଭ ପ୍ରାଣ ଗଲା ଛାଡ଼ି
ମହାଶକ୍ତି ତା ଛାତିରେ ବସିଲାକ ମାଡ଼ି ।
ଦେଖି ଭୟେ ପଳାଇଲେ ଅସୁର ସଇନ
ରୁଦ୍ରଗଣ କଲେ ଦେବରାଜଙ୍କୁ ପୂଜନ ।
ଆବର ତାହାଙ୍କୁ କଲେ ପ୍ରଶଂସା ବହୁତ
ଶିବଙ୍କ ଅଗ୍ରତେ ଉଭା ହେଲେ ଶଚୀକାନ୍ତ ।

=+=

## ଅନ୍ଧକ ବରଦାନ

ପୁଲସ୍ତ୍ୟ କହିଲେ ଦୈତ୍ୟେଭଙ୍ଗଦେଲେରଣେ
ଅନ୍ଧକ ଦୈତ୍ୟଙ୍କୁ ଇନ୍ଦ୍ର କହନ୍ତି ତକ୍ଷଣେ ।
ରଣ ଛାଡ଼ି ପଳାଇଲେ ପ୍ରଧାନ ଅସୁରେ
ଆସ ଆମ୍ଭେ ଯୁଝିବା ଏ ପର୍ବତ ଉପରେ ।
ଅନ୍ଧକ ବୋଇଲା ଯାହା କହିଲ ଉଚିତ
କୁଳ ଧର୍ମ ରକ୍ଷା ମୋର କରିବା ବିହିତ ।
ରଣ ଛାଡ଼ି କଦାଚନ ନ ଯିବି ପଳାଇ
ସୁଦୁର୍ଦ୍ଧର ବୀର୍ଯ୍ୟ ମୋର ଦେଖ ସୁରସାଇଁ ।
ରୁଦ୍ର ଇନ୍ଦ୍ର ବିଷ୍ଣୁ ଦେବ ଦାନବ ଗନ୍ଧର୍ବ
ଅବଶ୍ୟ ଜିଣିବି ମୁହିଁ କରୁଅଛି ଗର୍ବ ।
ଏହା କହି କ୍ରୋଧଭରେ ହରିଣ୍ୟାକ୍ଷ ସୁତ
ସାରଥିକି ଚାହିଁ ବୋଲେ ଆରେ ବାବୁସୁତ ।
ମହାଦେବ ନିକଟକୁ ବାହିନିଅ ରଥ
ଶରଜାଳେ ବଧିବି ମୁଁ ସକଳ ପ୍ରମଥ ।
ଅନ୍ଧକର କଥା ଶୁଣି ସାରଥି ସତ୍ୱରେ
କୃଷ୍ଣବର୍ଣ୍ଣ ମହାକାୟ ଅଶ୍ୱରଜ୍ଜୁ ଧରେ ।
ମହାଦେବ ନିକଟକୁ ରଥ ନେଲା ବାହି
ବାୟୁବେଗେ ରଥଯାନ୍ତେ ବର୍ଷେ ଗଲା ବହି ।
ପ୍ରମଥଗଣଙ୍କୁ ରଥ ଭେଟିଲା ପ୍ରଥମେ
ଦୈତ୍ୟେନ୍ଦ୍ର ଅନ୍ଧକ ଦେଖି ବାଣକ୍ରମେକ୍ରମେ
ବାଳଇନ୍ଦୁ ସମ ଦୃଢ଼ ଚାପକୁ ଆମଣ୍ଟି
କୋଟି କୋଟି ଶାଣଦିଆ ବାଣ ତହିଁ ଯୋଚି ।

ରୁଦ୍ର ଇନ୍ଦ୍ର ଉପେନ୍ଦ୍ରଙ୍କ ଅଙ୍ଗରେ ପ୍ରହାରି
ବିଶିଖେ ବିମୁଖ କଲା ଦେଖି ଦଇତ୍ୟାରି ।
ବୋଇଲେ ହେ ସୁରଗଣ ବସିଛ କିମ୍ପାଇଁ
ମହାବଳ ପରାକ୍ରମ ଶାଳୀ ଦୈତ୍ୟସାଇଁ ।
ଏହାକୁ ସମସ୍ତେ ମିଳି ଅସ୍ତ୍ରଶସ୍ତ୍ର ମାର
ନୋହିଲେ କରିବ ଏହି ସକଳ ସଂହାର ।
କେ ମାର ସାରଥି କେହି ଅଶ୍ୱଶିର ଛେଦ
କେ ରଥ ଦଉଡ଼ି କାଟ କେହ୍ନୁ ରଥଭେଦ ।
ବିରଥ ହୋଇଲେ ଏହି ଦାନବ ରାଜନ
ତେବେ ରକ୍ଷାହେବ ଜାଣ ଏ ତିନି ଭୁବନ ।
ତଦନ୍ତେ ତାହାକୁ ଦଗ୍ଧ କରିବେ ଶଙ୍କର
ବାସୁଦେବ କଥା ଶୁଣି ଅମର ନିକର ।
ପ୍ରମଥଗଣଙ୍କୁ ଘେନି ବେଢ଼ିଲେ ଦୈତ୍ୟକୁ
ଜନାର୍ଦ୍ଦନ ଗଦା ଘେନି ଗଲେ ତା ପାଖକୁ ।
ଗଦାଘାତେ ସହସ୍ରେକ ଅଶ୍ୱ କଲେ ନାଶ
ସ୍କନ୍ଦ ଅନ୍ଧକର ରଥ ଚକ କଲେ ଧ୍ୱଂସ ।
କେ ଭାଙ୍ଗିଲା ରଥଧ୍ୱଜ କେ ଭାଙ୍ଗିଲା ଅକ୍ଷ
କେ ଛେଦିଲା ଗୁଣ କେହୁ ଛେଦିଲା କାର୍ମୁକ ।
ବୀରଥ କାର୍ମୁକହୀନ ଅନ୍ଧକ ଅସୁର
ଗଦା ଧରି ମହାତେଜେ ଧାଇଁଲା ସତ୍ୱର ।
ଦେବଗଣ ସହିତରେ ଅଷ୍ଟ ଦିଗପାଳ
ନିମିଷକେ ଗଦାଘାତେ କରିଣ ନିର୍ମୂଳ !
କହିଲା ଗମ୍ଭୀର ସ୍ୱରେ ରୁଦ୍ରଙ୍କୁ ଅନାଇଁ
ଆରେ ଭିକ୍ଷୁ ମୁହିଁ ଏକା ମୋର କେହି ନାହିଁ ।
ଅଛନ୍ତି ବହୁତ ସୈନ୍ୟ ସହାୟ ତୋହର
ଜିଣିବି ଅବଶ୍ୟ ତୋତେ କଲେ ମୁଁ ସମର ।
ଅଜି ମୋର ପରାକ୍ରମ ଦେଖରେ ଜଟିଆ
ମୋ ଆଗରେ ତୋର ଥାଟ ନ ହୋଇ ବେଠିଆ ।
ମହାଦେବ ଅନ୍ଧକର ଶୁଣି ଏ ବଚନ
ଇନ୍ଦ୍ର ବ୍ରହ୍ମା ଆଦି ଥିଲେ ଯେତେ ସୁରଗଣ ।
ଆବର ଯେତେକ ଥିଲେ ପ୍ରମଥ ନିକର
ସ୍କନ୍ଦ ନନ୍ଦୀ ଆଦି ଗଣ ପାର୍ବତୀ କୁମର ।
ଏହାଙ୍କୁ ସେ ଆପଣାର ଦେହେ କରେ ଲୀନ
ଏକା ହୋଇ କହିଲେ ସେ ଏମନ୍ତ ବଚନ ।
ଆରେରେ ଦୁରାତ୍ମା ଆସ ବିଳମ୍ବ ନକର
ମୁଁ ଏକାକେ ତୁ ଏକାକେ କରିବା ସମର ।

ଏହା ଦେଖି ଦୈତ୍ୟପତି ଆଶ୍ଚର୍ଯ୍ୟ ମଣିଲା
ଗଦା ଘେନି ଶଙ୍କରଙ୍କ ନିକଟକୁ ଗଲା ।
ଦାନବ ଆସିବା ଦେଖି ମହାଦେବ ଭବ
ଶୂଳଧରି ଠିଆ ହେଲେ ତେଜିଣ ବୃଷଭ ।
ଲାଗିଲା ଦାରୁଣ ରଣ ଡ଼ରିଲେ ସକଳେ
ରହି ନ ପାରିଲେ କେହି ଜଳେ ଅବାସ୍ଥଳେ ।
ସେକାଳେ ରୁଦ୍ରଙ୍କ ରୂପ ଦେଖି ଭୟଙ୍କର
କୋଟି ସୂର୍ଯ୍ୟ ସମ ତେଜ ଗଳେ ସର୍ପହାର ।
ତରଳ ବଦନ ସିଂହଚର୍ମ୍ମ ପରିଧାନ
ଶିରେ ଶୋହେ ଜଟାଜୁଟ ଅନଳ ଲୋଚନ ।
ବ୍ୟାଘ୍ର ସମ ବାହୁ ଦ୍ୱୟ ବିଭୂତି ଲେପନ
ଶୂଳେ କଲେ ଅନ୍ଧକର ବକ୍ଷ ବିଦାରଣ ।
ଦାନବ ଯେ ଭୟଙ୍କର ଗଦା ଧରି କରେ
ଶିବ ଉର ବିଦାରିଲା ନିର୍ଭୟେ ସତ୍ୱରେ ।
କ୍ରୋଶ ପରିମିତ ଭୂମି ମଧ୍ୟେ ହେଲା ରଣ
ଆମ୍ଭାରେ ଆମ୍ଭାକୁ କଲେ ଶଙ୍କର ସ୍ତମ୍ଭନ ।
ଶୂଳ ମାରି ଦାନବକୁ ପକାଇଲେ ତଳେ
ହସ୍ତଭରା ଦେଇ ଉଠି ଗଗନମଣ୍ଡଳେ ।
ରୁଦ୍ର ଶିରେ ପ୍ରହାରିଲା ଦୈତ୍ୟ ଗଦାବର
ସେ ଆଘାତେ ବିଚଳିତ ନୋହିଲେ ଶଙ୍କର
ବହିଲା ରୁଧିର ଧାରମସ୍ତକୁ ବହୁତ
ସେ ରୁଧିର ହେଲେ ଅଷ୍ଟ ଭଇରବ ଜାତ ।
ପୂର୍ବଦିଗେ ବହିଗଲା ଯେବଣ ରୁଧିର
ଯେ ଭୈରବ ତହୁ ଜାତ ହେଲା ମୁନିବର ।
ତାର ନାମ ବିଦ୍ୟାରାଜ ଅଗ୍ନି ତୁଲ୍ୟ ପ୍ରଭା
ତା ଗଳାରେ ପଦ୍ମମାଳା ପାଏ ବଡ଼ ଶୋଭା ।
ଅପର ରୁଧିର ଧାର ମଧ୍ୟରୁ ଉପୂନ୍ନ
ରୁଦ୍ର ନାମା ଭଇରବ ସର୍ବଲୋକ ମାନ୍ୟ ।
ଶୂଳ ଥିବାରୁ ତା କରେ ପାଏ ବଡ଼ ଶୋଭା
ମସ୍ତକରେ ଶୋଭାପାଏ ତାର-ଜଟା ଗଭା ।
ଆବର ଶୋଣିତ ଧାର ମଧ୍ୟରୁ ଜନମ
ଚାରିଗୋଟି ଜାତ ହେଲେ ଶୁଣ ତାଙ୍କ ନାମ ।
ଚଣ୍ଡ ଆଉ କପାଳାଦି ନାମରେ ବିଖ୍ୟାତ
ଭୂମିସ୍ଥିତ ରୁଧିରରୁ ଯେ ଭୈରବ ଜାତ ।
ଶୋଭାଞ୍ଜନ ସମପ୍ରଭ ଶୂଳ ତାର କରେ
ତା ନାମ ଲଳିତରାଜ ବିଖ୍ୟାତ ସଂସାରେ ।

ଅଷ୍ଟମ ଭୈରବ ନାମ ଅଟେ ବିଘ୍ନରାଜ
ଶିବଙ୍କର କ୍ରୋଧଜାତ ହେଲା ଆହେ ଦ୍ୱିଜ ।
ଅସୁର ଛାତିରେ ବଳେ ପୋତିଦେଲେ ଶୂଳ
ଛତ୍ରପ୍ରାୟ ଧରନ୍ତେ ସେ ଇନ୍ଦ୍ରାୟୁଧ ତୁଲ୍ୟ ।
ଶୋଭାରାଶି ପ୍ରକାଶିଲା ରକ୍ତ ବୃଷ୍ଟି ହେଲା
ସପ୍ତମୂର୍ତ୍ତି ଶିବ କଣ୍ଠଯାଏ ବୁଡ଼ିଗଲା ।
ରୁଦ୍ର ଲଲାଟରୁ ସ୍ୱେଦ ଧାରା ହେଲା ଜାତ
ରୁଧିର ମିଶନ୍ତେ ତହୁଁ କନ୍ୟାଏ ସମ୍ଭୁତ ।
ଯେଉଁ ସ୍ୱେଦବିନ୍ଦୁ ଯାଇଁ ଭୂମିରେ ପଡ଼ିଲା
ବାଳକ ଗୋଟିଏ ତହୁଁ ଉତପନ୍ନ ହେଲା ।
ତା ବର୍ଣ୍ଣ ଅଙ୍ଗାର ପରି ସେ ତୃଷାଆତୁର
ପାନକଲା ସେ ବାଳକ ଅନ୍ଧକ ରୁଧିର ।
ବାଳସୂର୍ଯ୍ୟ ପ୍ରଭା ସେହି କନ୍ୟାକୁ ଅନାଇ
ଶଙ୍କର ବୋଇଲେ ତୁ ଗୋ ମୋର ବରପାଇ ।
ଜଗତ ମଧରେ ପୂଜା ପାଇବୁ ବହୁତ
ଦେବ ଋଷି ପିତୃ ଯକ୍ଷ ମାନବ ସମସ୍ତ ।
କରିବେ ତୋହର ପୂଜା ଆଗୋ ଶୁଭଙ୍କରି
ବଳି ଫୁଲହାର ଦେବେ ହୋମ ପୂଜା ସାରି ।
ରୁଧିରେ ଚର୍ଚ୍ଚିତା ହେଲୁ ତୋ ନାମଚର୍ଚ୍ଚିକା
ବର ପାଇ ସେ ସୁନ୍ଦରୀ ତହୁଁ ଗଲା ଏକା ।
ବିନ୍ଧ୍ୟ ଗିରିବର ଶିଖେ କଲା ଯାଇଁ ବାସ
କିଛି ଦିନ ଅନ୍ତେ ପୁଣି ତେଜି ଗିରି ଆଶ ।
ପୃଥିବୀର ଚାରିଦିଗେ ଭ୍ରମିଲା ସୁନ୍ଦରୀ
ଆଶ୍ରା କଲା ପୁଣି ଯାଇ ହିଙ୍ଗୁଳକ ଗିରି ।
ଅନ୍ଧକ ରୁଧିରପାୟୀ ଶିଶୁକୁ ଯେ ଚାହିଁ
ବୋଇଲେ ଏ ପୃଥିବୀରୁ ଜାତ ହେଲୁ ତୁହି ।
ଏଣୁ ତୋର ନାମ କୁଜ ହେଲାରେ ବାଳକ
ଗ୍ରହାଧିପ ହୋଇବୁ ତୁ ମୋ ବରେ ବାଳକ ।
ଜଗତର ଶୁଭାଶୁଭ କରିବୁ ବିଧାନ
ବିପଦରେ ନ ପଡ଼ିବୁ ତୁହି କଦାଚନ ।
ବର ଦେଇ ଶିବ ଦିବ୍ୟ ସହସ୍ର ବରଷେ
ନେତ୍ରାନଳେ ସୂର୍ଯ୍ୟଙ୍କର କିରଣ ତରାସେ ।
ଅନ୍ଧକର ବଳ ଦର୍ପ ଶୋଣିତକୁ ଶୋଷି
ଅସ୍ଥିଚର୍ମ ରଖୁଁ ତାର ନାଶି ପାପ ରାଶି ।
ଅନ୍ଧକ ତାହାଙ୍କୁ ଜାଣି ସର୍ବଭୂତନାଥ
ଅବିନାଶୀ ବରଦାତା ଲୋକ ନମସ୍କୃତ ।

ସ୍ତୁତିକଲା ତୁମ୍ଭେ ଭୀମ ତୁମ୍ଭେ ଭଇରବ
ତ୍ରିଭୁବନ ରକ୍ଷାକାରୀ ଶୂଳଧାରୀ ଭବ ।
ନମସ୍ତେ କପାଳପାଣି ନମସ୍ତେ ତ୍ରିନେତ୍ର
ବାସୁକୀ ହାରରେ ତୁମ୍ଭ ଅଙ୍ଗ ବିମଣ୍ଡିତ ।
ତୁମ୍ଭଙ୍କୁ ପ୍ରଣତି ମୁହିଁ ପଡ଼ିଛି ବିପଦେ
ବାରମ୍ବାରଶରଣ ମୁଁ ତୁମ୍ଭ ପଦ୍ମପାଦେ ।
ବିଶ୍ୱମୂର୍ତ୍ତି ମହେଶ୍ୱର ତୁମ୍ଭ ଶ୍ରୀଚରଣେ
ସର୍ବଦା ବନ୍ଦନ୍ତି ଆସି ସୁରାସୁର ଗଣେ ।
ତ୍ରୈଲୋକ୍ୟ ଜନନୀ ଗୁରୁ ବୃଷାଙ୍କ ଶରଣ
ଭୟେ ମୁହିଁ ତୋର ପାଦେ ପଶୁଛି ଶରଣ ।
ଆହେ ନାଥ ଦେବେତୋତେବୋଲୁଥାନ୍ତି ଶିବ
ପିତୃଗଣ ଦେଇଛନ୍ତି ତୋର ନାମ ଭବ ।
ସ୍ଥାଣୁନାମ ଦେଇଛନ୍ତି ମହାଋଷି ଗଣ
ହର ନାମ ଦେଇଛନ୍ତି ତୋର ସିଦ୍ଧଗଣ ।
ଯକ୍ଷଗଣ ଦେଇଛନ୍ତି ତୋର ନାମ ଭୀମ
ଭୂତ ଗଣ ଦେଇଛନ୍ତି ଭୂତାଧିପ ନାମ ।
ବୋଲନ୍ତି ମାନବ ଗଣ ତୋତେ ମହେଶ୍ୱର
ଉଗ୍ରନାମ ଦେଇଛନ୍ତି ତୋତେ ନିଶାଚର ।
ପରମ ପବିତ୍ର ନାମ ତୋହର ସ୍ୱଭାବ
ମୁଁ ତୋର ଚରଣ ତଳ ଦାସ ମହାଦେବ ।
ପାପ କ୍ଷୟ କର ମୋର ଆହେ ଲୋକନାଥ
ରକ୍ଷାକର ବାରମ୍ବାର କରେ ପ୍ରଣିପାତ ।
ତ୍ରିଦେବ ତ୍ରିଯୁଗ ତୁମ୍ଭେ ପୁଣି ତ୍ରିପୁଷ୍କର
ସର୍ବବ୍ୟାପୀ ଅବ୍ୟୟାତ୍ମା ତ୍ରିନେତ୍ର ଆବର ।
ହେ ଶ୍ରୁତି ସ୍ୱରୂପ ତୁମ୍ଭ ଚରଣେ ଶରଣ
ତ୍ରୟ୍ୟାରୁଣୀ ନାଥ ମୋତେ କର ପରିତ୍ରାଣ ।
ତ୍ରିପଦ ପ୍ରତିଷ୍ଠ ତ୍ରିନାଚିକେତ ଶଙ୍କର
ନିର୍ଲ୍ଲୋଭ ପୁରୁଷ ପ୍ରଭୁ ମୋତେ ରକ୍ଷା କର ।
ଷଡ଼ଙ୍ଗ ପାରଗ ତୁମ୍ଭେ ତ୍ରିଲୋକୀର ନାଥ
ମହା ଭୂତପତି ପାଦେ ଦେଲୁ ମୋର ମାଥ ।
ଗିରିଶ ଚରଣ ତଳ ଦାସ ମୁଁ ନିରତେ
ଅପରାଧି ଅପରାଧ କ୍ଷମା ଉମାପତେ ।
କାମର ଆୟତେ ରହି ମୋର ପାପମନ
କରିଛି ବହୁତ ପାପ ଆହେ ତ୍ରିନୟନ ।
ପାପ କର୍ମା ପାପାତ୍ମା ମୁଁ ପାପରୁ ସମ୍ଭବ
ତୁମ୍ଭେ ସର୍ବ ପାପନାଶକାରୀମହାଦେବ ।
ସୁପ୍ରସନ୍ନ ବରଦିଅ ହର୍ତ୍ତା କର୍ତ୍ତା ଧାତା
ନିର୍ଦ୍ଦୋଷୀ ଦୋଷୀର ତୁମ୍ଭେ ଅଟ ବର ଦାତା ।
ମଙ୍ଗଳ ଓଁକାର ତୁମ୍ଭେ ଜୟ ମହାଜୟ
ଧ୍ରୁବ ସ୍ୱରୂପ ହିଁ ତୁମ୍ଭେ ଈଶାନ ଅବ୍ୟୟ ।
ତୁମ୍ଭେ ବ୍ରହ୍ମା ତୁମ୍ଭେ ବିଷ୍ଣୁ ତୁମ୍ଭେ ମହେଶ୍ୱର
ତୁମ୍ଭେ ଇନ୍ଦ୍ର ତୁମ୍ଭେ ଧର୍ମ ତୁମ୍ଭେ ବଷଟ୍‌କାର ।
ତୃଷିତ ଅବ୍ୟକ୍ତ ବ୍ୟକ୍ତ ସୂକ୍ଷ୍ମ ସୁଧୀବର
ଆଦି ଅନ୍ତ ମଧ୍ୟ ତୁମ୍ଭେ ଜଙ୍ଗମ ସ୍ଥାବର ।
ବିରୂପାକ୍ଷ ସହସ୍ରାକ୍ଷ ତୁମ୍ଭେ ମହାଭୁଜ
ଅନନ୍ତ ସର୍ବଗ ତୁମ୍ଭେ ସର୍ବବ୍ୟାପୀ ଅଜ ।
ଅଚ୍ୟୁତ ଗୀର୍ବାଣ ପତି ତୁମ୍ଭେ ପୂର୍ଣ୍ୟାଧିକ
ଅବ୍ୟଗ୍ର ହେ ଜିତକ୍ରୋଧ ପାର୍ବତୀ ନାୟକ ।
ଜିତାରାତି ଜିତେନ୍ଦ୍ରିୟ ଶରଣ ତୁମ୍ଭର
ଶୂଳପାଣି ହେ ତ୍ରୈବିଦ୍ୟ ମୋତେ ରକ୍ଷାକର ।
ଦୈତ୍ୟପତି ସ୍ତବେ ତୋଷ ହେଲେ ପଶୁପତି
ବୋଇଲେ ମାଗିବୁ ଯାହା ଦେବଇଁ ସଂପ୍ରତି ।
କହିଲା ଅନ୍ଧକ ଦୈତ୍ୟ ଅମ୍ବିକା ମୋ ମାତା
ପିଙ୍ଗଳାକ୍ଷ ମହେଶ୍ୱର ଅଟେ ମୋର ପିତା ।
ଯେବେ ମୋତେ ବରଦେବ ଦେବ ମହାଦେବ
ଶାରୀରିକ ମାନସିକ ବାଚିକ ଏ ସର୍ବ ।
ଦୂରିତ ଯେ ଦୂରିକୃତ ହେଉ ମହେଶ୍ୱର
ଦାନବ ସ୍ୱଭାବ ଯାଉ ଦିଅ ଏହିବର ।
ଆପଣଙ୍କ ପ୍ରତି ହେଉ ଅଚଳ ଭକତି
ମହାଦେବ କହିଲେ ହେ ଶୁଣ ଦୈତ୍ୟପତି ।
ଯାହା କହିଲୁ ତା ହେବ ପାପଯିବ କ୍ଷୟ
ତୁହି ଭୃଙ୍ଗୀ ନାମଧାରୀ ଗଣପତି ହୁଅ ।
ଏହାକହି ଶୂଳ ଅଗ୍ରୁ ଆଣିଲେ ଉଦ୍ଧାରି
ବ୍ରଣ ବିବର୍ଜିତ କଲେ ଦେହେ ହାତମାରି ।
ବ୍ରହ୍ମା ଆଦି ଦେବତାଙ୍କୁ ଡାକିଲେ ତଦନ୍ତେ
ବାହାରିଲେ ରୁଦ୍ରଦେହୁଁ ସେମାନେ ତୁରିତେ ।
ଚରଣେ ପ୍ରଣାମ କରି ଉଭା ହେଲେ ଆଗେ
ନନ୍ଦୀଆଦି ଗଣପତି ଗଣଙ୍କୁ ସରାଗେ ।
କହିଲେ ଦାନବପତି ଅନ୍ଧକକୁ ଦେଖ
ଅସ୍ଥି ଚର୍ମ ରହି ଅଛି ରକ୍ତ ମାଂସ ଶୁଷ୍କ ।
ଭୃଙ୍ଗୀ ନାମେ ଗଣାଧିପ କଲି ମୁଁ ଏହାକୁ
ସମସ୍ତେ ପ୍ରଶଂସା କଲେ ସେ ବୃଷଧ୍ୱଜଙ୍କୁ ।

ଗାଢ଼େ ଆଲିଙ୍ଗନ କରି ଦେବଙ୍କୁ ଶଙ୍କର
ବୋଇଲେ ସ୍ୱସ୍ଥାନେ ଯାଇଁ ସୁଖ ଭୋଗକର ।
ସହସ୍ରାକ୍ଷ ଇନ୍ଦ୍ର ଯାଉ ମଳୟ ପର୍ବତେ
ନିଜ କାର୍ଯ୍ୟ ସାଧି ଯାଉ ସ୍ୱର୍ଗକୁ ପଶ୍ଚାତେ ।
ଦେବଙ୍କୁ ସମ୍ଭାଷି କରି ବ୍ରହ୍ମଙ୍କୁ ପ୍ରଣତି
ଶ୍ରୀବିଷ୍ଣୁଙ୍କୁ ଆଲିଙ୍ଗନ ଦେଇ ପଶୁପତି ।
ବିଦାୟ ଦେଲେ ସେ ଗଲେ ନିଜ ନିଜ ସ୍ଥାନେ
ଗଣ ଅନୁମତି ପାଇ ଗଲେ ସ୍ୱଭବନେ ।
ଦୈତ୍ୟବଧେ ଗୋରୁସବୁ ହେଲେ ଦୁଗ୍‌ଧବତୀ
ବିରାଜିଲେ ବୃକ୍ଷେ ହୋଇ ଫଳ ପୁଷ୍ପବତୀ ।
ନଦୀରେ ଅମୃତ ତୁଲ୍ୟ ଜଳ ବହିଗଲା
ପାୟସ କର୍ଦମେ ହ୍ରଦ ସବୁ ପୂର୍ଣ୍ଣ ହେଲା ।
ଅନ୍ଧକ ହସ୍ତକୁ ଧରି ପ୍ରଭୁ ତ୍ରିଲୋଚନ
ନନ୍ଦିନାମା ପର୍ବତକୁ କଲେକ ଗମନ ।
ରହିଲେକ ତହିଁ ଦୁଇ ସହସ୍ର ବତ୍ସର
ପୁନରପି ଅଇଲେ ସେ ଆପଣା ମନ୍ଦିର ।
ଦେଖିଲେ ଅଛନ୍ତି ଶ୍ୱେତ ଅର୍କ ପୁଷ୍ପେ ଉମା
ମହାଦେବ ଆସିବାର ଦେଖି ହରବାମା ।
ଅର୍କପୁଷ୍ପ ତେଜି ସଖୀମାନଙ୍କୁ ଡାକିଲେ
ଜୟାଆଦି ସଖୀମାନେ ପାଶରେ ମିଳିଲେ ।
ତାଙ୍କୁ ଘେନି ଉମା କଲେ ହରଙ୍କୁ ଦର୍ଶନ
ମହାଦେବ ଗିରଜାଙ୍କୁ କଲେ ଆଲିଙ୍ଗନ ।
ବୋଇଲେ ଅନ୍ଧକ ହେଲା ଏବେ ତୁମ୍ଭ ଦାସ
ପାପକ୍ଷୟ ଗଲା ଦୈତ୍ୟବୁଦ୍ଧି ଗଲା ନାଶ ।
ଚାରୁହାସିନୀ ଏ ପୁତ୍ର ହୋଇଲା ସଂପ୍ରତି
ଏହାପ୍ରତି ଦୃଷ୍ଟିପାତ କର ହୈମବତୀ ।
ଏହାକହି ଅନ୍ଧକକୁ ବୋଇଲେକ ଚାହିଁ
ଆସ ପୁତ୍ର ଜନନୀକି ଭେଟ ଏବେ ତୁହି ।
ମଙ୍ଗଳ କରିବେ ତୋର ଶରଣ ତୁ ପଶ
ନନ୍ଦୀ ଭୃଙ୍ଗୀଦୁହେଁ ଯାଇ ଅମ୍ବିକାର ପାଶ ।
ଚରଣ ଯୁଗଳ ବନ୍ଦି କଲେ ମହାସ୍ତୁତି
ଭବାନୀର ପାଦପଦ୍ମେ ମୋହର ପ୍ରଣତି ।
ଭୂତଭବ୍ୟ ପ୍ରିୟା ତୁମ୍ଭେ ତୁମ୍ଭେ ଲୋକଧାତ୍ରୀ
ସ୍କନ୍ଦମାତା ଜନୟିତ୍ରୀ ସ୍ୟନ୍ଦିନୀ ଧରିତ୍ରୀ ।
ମହାଦେବ ଗୃହିଣୀ ତୁ ଚେତନା ରୂପିଣୀ
ତୁ ଦେବତା ମାତା ତିନିଲୋକ ପ୍ରସବିନୀ ।
ଶ୍ରୁତି ସ୍ମୃତି ଦୟା ଲଜ୍ଜା ତୁ କାମଜନନୀ
ପ୍ରୀତି ସ୍ୱରୂପିଣୀ ତୁ ଗୋ ସର୍ବଦା ପାବନୀ ।
ଦୈତ୍ୟ ସୈନ୍ୟକ୍ଷୟ କରିବ ଗୋ ମହାମାୟା
ତୁ ଶୁଭ ସ୍ୱରୂପା ବଇଜୟନ୍ତୀ ସୁମାୟା ।
ଗୋବିନ୍ଦ ପ୍ରସବ କର୍ତ୍ତ୍ରୀ ତୁ ଗୋ କାଳରାତ୍ରୀ
ସର୍ବ ଦେବର୍ଚ୍ଚିତା ତୁ ଗୋ ଶୈଳରାଜପୁତ୍ରୀ
ସର୍ବଭୂତ ସୁପୂଜିତା ବିଦ୍ୟା ସରସ୍ୱତୀ
ତ୍ରିନୟନ ମହିଷୀ ତୋ ଚରଣେ ପ୍ରଣତି ।
ସର୍ବରକ୍ଷା କାରିଣୀ ତୋ ଚରଣେ ଶରଣ
ମୃଡାନୀ ମୋ ନମସ୍କାର ବାରମ୍ବାର ଘେନ ।
ଅନ୍ଧକର ସ୍ତୁତି ଶୁଣି ପ୍ରସନ୍ନେ ଭବାନୀ
ବୋଇଲେରେ ପୁତ୍ର ଶୁଭ ହେଉ ମନଜାଣି ।
ବର ମାଗ ଦେବି ମୁହିଁ କରୁଅଛି ସତ୍ୟ
ଭୃଙ୍ଗୀ ବୋଲେ ମୁଁ ତୁମ୍ଭର ପାଦତଳ ଭୃତ୍ୟ ।
ମୋହର ତ୍ରିବିଧପାପ ନ ରହୁ ମୋ ଦେହେ
ବର ଦିଅଯେମନ୍ତେ ତୋ ପାଦେ ଭକ୍ତି ରହେ ।
ହେଉ ବୋଲି କହି ପୁଣି ବୋଇଲେ ଏମନ୍ତ
ମୋ ସମ୍ମୁଖେ ଶିବ ପୂଜି ଲଭ ଆଧିପତ୍ୟ ।
ଶିବ ପୂଜି ଅଧିପତି ହୋଇଲା ଅନ୍ଧକ
ଏ ଆଖ୍ୟାନ ନାମ ହର କୀରତି ବର୍ଦ୍ଧକ ।
ଏ ଆଖ୍ୟାନ ପୁଣ୍ୟ ଆଉ ଶୁଭ ଦାନ କରେ
ଆୟୁଷ ଆରୋଗ୍ୟ ଧନ ଜନକାମୀ ନରେ ।
ସଭା ମଧ୍ୟେ ଏ ଆଖ୍ୟାନ କରିବେ କୀର୍ତ୍ତନ
ଗୋପୀନାଥ ମନ ଉମା ହର ପାଦେ ଲୀନ ।

=+=

## ମରୁଦୁତ୍ପତ୍ତି

କହିଲେ ନାରଦ ଋଷି ହେ ଦ୍ୱିଜ ସତ୍ତମ
ମଳୟ ପର୍ବତେ ଇନ୍ଦ୍ର କଲେ କେଉଁ କର୍ମ ।
ଅନୁଗ୍ରହ କରି ତାହା କହ ମୋର ଆଗେ
ପୁଲସ୍ତ୍ୟ କହିଲେ ମୁନି ଶୁଣ ମନଯୋଗେ ।
ଲୋକ ହିତକର କାର୍ଯ୍ୟ କରିଥିଲେ ଯାହା
ମୟ ତାର ଆଦି ଯେତେ ନିଶାଚର ନାହା ।
ଦେବତାମାନଙ୍କଠାରୁ ପରାଜୟ ପାଇ
ଅଘାସୁର ବଚନରେ ପାତାଳକୁ ଯାଇ ।
ଯାଉଁ ଯାଉଁ ଦେଖିଲେ ସେ ମଳୟ ପର୍ବତ
ଗିରି ଚାରିପାଖ ଲତାବିତାନେ ଆବୃତ ।

ପର୍ବତ କନ୍ଦରେ ସିଦ୍ଧଗଣଙ୍କ ବସତି
ମଦମତ୍ତ ପ୍ରାଣୀ ତହିଁ ବହୁତ ଅଛନ୍ତି ।
ଶୀତଳ ଚନ୍ଦନ ବାସ ହୁଏ ନିରନ୍ତର
ଶ୍ରମ ହରିବାକୁ ତହିଁ ଭାଳି ନିଶାଚର ।
ତରୁମୂଳ ଆଶ୍ରାକରି ରହିଲେ ପର୍ବତେ
ଶୀତଳ ମଳୟାନିଳ ପାଇ ଅବିରତେ ।
ଶ୍ରମ ହରି ବଳବନ୍ତ ହୋଇଲେ ସକଳେ
ପଜ୍ୟଜନଦ୍ୱେଷୀ ହେଲେ ଅହଙ୍କାରବଳେ ।
ଯୋଗବଳେ ମହାଦେବ ଏହାଜାଣିପାରି
ଇନ୍ଦ୍ରଙ୍କୁ କହିଲେ ଶୁଣ ଆହେ ବଜ୍ରଧାରୀ ।
ଲୋକହିତ କାର୍ଯ୍ୟ କରି ମଳୟ ପର୍ବତେ
ଆପଣା ପୁରକୁ ଯିବ ଦେବଙ୍କ ସହିତେ ।
ଇନ୍ଦ୍ରଯିବାବେଳେ ବାଟେଦେଖିଲେ ଗୋମାତା
ତାଙ୍କୁ ପ୍ରଦକ୍ଷିଣ କରି ସ୍ୱର୍ଗ ରକ୍ଷାକର୍ତ୍ତା ।
ଦେଖିଲେ ଉତ୍ତମ ରୂପେ ମଳୟ ପର୍ବତ
ଆନନ୍ଦେ ଅଛନ୍ତି ତହିଁ ବହୁତ ଦଇତ୍ୟ ।
ଦେଖି ବଳନିସୂଦନ ଦେବ ପୁରନ୍ଦର
ବୋଇଲେ ମୋ ସଙ୍ଗେ ଆସ କରିବ ସମର ।
ଇନ୍ଦ୍ରଙ୍କ ଆସ୍ପର୍ଦ୍ଧାବାକ୍ୟ ନ ପାରିଲେ ସହି
ଅସ୍ତ୍ରଶସ୍ତ୍ର ଧରି ଦୈତ୍ୟେ ଇନ୍ଦ୍ରଆଗେ ରହି ।
ମାଇଲେ ସେ ବାସବଙ୍କୁ ନାରାଚ ନିକର
ଅଦ୍ଭୁତ ଦର୍ଶନ ଇନ୍ଦ୍ର ଚଢ଼ି ରଥପର ।
ପର୍ବତ ଉପରେ ମେଘ ବରଷିଲା ପରି
ଶରବୃଷ୍ଟି କଲେ ନିଶାଚରଙ୍କ ଉପରି ।
ସୁତୀକ୍ଷ୍ଣ ନାରାଚେ ପାକ ଦାନବର ଶିର
କାଟି ପକାଇଲେଯହୁଁ ପୁଲୋମଜା ବର ।
ସେ କାରଣୁ ବୋଲାଇଲେ ସେ ପାକଶାସନ
ପୁର ଅସୁରକୁ କଲେ ସମରେ ନିଧନ ।
ସେ କାରଣୁ ପୁରନ୍ଦର ନାମଧାରୀ ହେଲେ
ତା ଦେଖି ଅପରଦୈତ୍ୟେ ଡରି ପଳାଇଲେ ।
ରହିଲେ ସେ ରସାତଳେ ଆହେ ମୁନିବର
ଏହି ଲୋକହିତ କର୍ମକରି ପୁରନ୍ଦର ।
ଗଲେ ସ୍ୱର୍ଗ ଭୁବନକୁ ଦେବଙ୍କ ସହିତ
ଶୁଣିଲ ତ ଗୋତ୍ରଭିଦ ଇନ୍ଦ୍ରଙ୍କ ଚରିତ ।
କହିଲେ ନାରଦ ମୁନି ଇନ୍ଦ୍ରଙ୍କୁ କିପାଇଁ
ଗୋତ୍ରଭିତ ନାମ ଦେଲ ହେ ମୁନି ଗୋସାଇଁ ।

କହିଲେ ପୁଲସ୍ତ୍ୟ ଋଷି କହୁଛି ତା ଶୁଣ
ନୃସିଂହ ରୂପରେ ଆସି ପ୍ରଭୁ ନାରାୟଣ ।
ହିରଣ୍ୟ କଶିପୁ ବଧ କଲେ ତାହା ଦେଖି
ଦୈତ୍ୟମାତା ଦିତିଦେବୀ ହୋଇଣ ବିମୁଖୀ ।
କହିଲେ କଶ୍ୟପ ଆଗେ ତୁମ୍ଭେ ମୋର ନାଥ
କୃପାକରି ଦିଅ ମୋତେ ଇନ୍ଦ୍ରହନ୍ତା ସୁତ ।
କଶ୍ୟପ କହିଲେ ଆଗୋ ଅସିତ ଲୋଚନେ
ଶୌଚାଚାରେ ରହିପାରେ ଯେବେ ଦିନେଦିନେ ।
ଦେବବର୍ଷ ଗଣନାରେ ସହସ୍ରେ ବରଷ
ତ୍ରୈଲୋକ୍ୟ ନାୟକ ପୁତ୍ର ପାଇବ ଅବଶ୍ୟ ।
ଭର୍ତ୍ତାବାକ୍ୟେ ଦିତିଦେବୀ କଲେ ମହାବ୍ରତ
କଶ୍ୟପ ତାହାଙ୍କ ଗର୍ଭେ ଦେଇ ବୀରସୁତ ।
ରହିଲେ ଉଦୟ ଗିରି ଶିଖରେ ସେ ଯାଇଁ
କହିଲେଦିତିଙ୍କ ଆଗେ ଦେବ ସୁରସାଇଁ ।
ଯେବେ ମୋତେ ଅନୁମତି ଦେବ ଆଗୋମାତ
ମୁଁ ତୁମ୍ଭ ଚରଣସେବା କରୁଥିବି ନିତ୍ୟ ।
ଦିତି ତାଙ୍କୁ ଅନୁମତି ଦେଲେ ଏ ବିଷୟେ
ଛିଦ୍ରାନ୍ୱେଷୀ ହେଲେ ଇନ୍ଦ୍ର ଭୁଜଗ ପରାୟେ ।
ବିନୟରେ ତାଙ୍କ ସେବା କରେ ପ୍ରତିଦିନ
ଦଶବର୍ଷ ଶତ ଗଲା ଆହେ ତପୋଧନ ।
ଶୌକନ୍ୱିତା ତପସ୍ୱିନୀ ଦିତି ଏକ ଦିନେ
କେଶପାଶ ମୁକୁଳିତ କରି ଶିରସ୍ନାନେ ।
ଆପଣା ମସ୍ତକ ଦେଇ ଜାନୁର ଉପରେ
କେଶପ୍ରାନ୍ତ ଲାଗିଅଛି ଯାଇ ଚରଣରେ ।
ଶୋଇଲେ ଏ କାଳେ ଦେବ ସହସ୍ରଲୋଚନ
ଏତିକି ମାତ୍ରକ ଛିଦ୍ର କରି ବିଲୋକନ ।
ନାସାରନ୍ଧ୍ରେ ପ୍ରବେଶିଲେ ମାତାର ଉଦରେ
ଦେଖିଲେ ବାଳକ ଏକ ଊର୍ଦ୍ଧ୍ୱବଦନରେ ।
କଟିଦେଶେ କରଦେଇରହିଛି ନିଶ୍ଚିନ୍ତେ
ମୁଖେଥିବା ମାଂସପେଶି ଇନ୍ଦ୍ରଧରି ହସ୍ତେ ।
କୋପେ ପ୍ରଜ୍ୱଳିତ ହୋଇ କଲେକ ମର୍ଦ୍ଦନ
ସ୍ଫଟିକ ବରନ ମାଂସ ହୋଇଲା କଠିନ ।
ଅଧେ ଊର୍ଦ୍ଧ୍ୱେ ଅଧେ ଅଧୋଭାଗକୁ ବଢ଼ିଲା
ଶତପର୍ବ ବଜ୍ର ତହିଁ ମଧ୍ୟୁ ଜାତ ହେଲା ।
ସେହି ଶତପର୍ବ ବଜ୍ର ଶତକ୍ରତୁ ଧରି
ଗର୍ଭସ୍ଥ ଶିଶୁକୁ ଦେଲେ ସାତଖଣ୍ଡ କରି ।

କାନ୍ଦିଲା ସେ ଗର୍ଭସ୍ଥିତ ଶିଶୁ ତାର ସ୍ୱରେ
ନିଦ ଭାଙ୍ଗିଗଲା ଦିତି ଉଠିଲେ ସତ୍ୱରେ ।
ଶୁଣିଲେ ସେ ଗର୍ଭସ୍ଥିତ ବାଳକ ରୋଦନ
କହିଲେ ଶିଶୁକୁ ପୁଣି ସହସ୍ର ଲୋଚନ ।
ରେ ମୂଢ଼ ଘର୍ଘର ସ୍ୱରେ ରୋଦନ ନ କର
କହି ଅଣଚାଶ ଖଣ୍ଡ କଲେ ପୁନର୍ବାର ।
ତଥାପି ନ ମଲା ଶିଶୁ ଗର୍ଭୁ ବାହାରିଲା
ଅଣଚାଶ ମୂର୍ତ୍ତିଧରି ଭୂମିରେ ପଡ଼ିଲା ।
ତା ନାମ ମରୁତ ସେହି ହେଲା ଦେବଗଣ
ଗର୍ଭୁ ବାହାରିଲେ ବଜ୍ରଧର ସୁରରାଣ ।
ଦିତିକି କହିଲେ ଭୟେ ଯୋଡ଼ି ବେନିକର
ଆଗୋ ମାତ ମୋର ଦୋଷ ବାରେକ୍ଷମାକର ।
ଏ ବାଳକ ମୋର ଶିଶୁ ତେଣୁ କଲି ବଧ
ମୋଠାରେ ଜନନୀକେଭେ ନ କରିବୁ କ୍ରୋଧ ।
ଦିତି କହିଲେରେ ବାପ ତୋର ଦୋଷ ନାହିଁ
ଦଇବ ଘଟନା କେଭେ ଅନ୍ୟଥା ନୁହଇ ।
ଏହାଶୁଣି ଆନନ୍ଦରେ ସହସ୍ର ଲୋଚନ
ଭ୍ରାତୃଗଣ ଘେନି ଗଲେ ଆପଣା ଭୁବନ ।
ଏଣୁ ଗୋତ୍ରଭିଦ ନାମ ବହିଲେ ବାସବ
ଯେଣୁ ଗୋତ୍ର ବଧକଲେ ଧରି ଶତପର୍ବ ।

=+=

## ପୂର୍ବ ମରୁଦୁତ୍ପତ୍ତି

କହିଲେ ନାରଦ ମୁନି ଆହେ ମୁନିବର
ଏ କେଉଁ ମରୁତ ଗଣ ଦିତିର କୁମର ।
ପୂର୍ବେ କି ମରୁତ ମାର୍ଗ ନ ଥିଲା ଭୋ ମୁନି
ପୂର୍ବ ମନ୍ୱନ୍ତର ଥିଲେ କେଉଁପରି ପ୍ରାଣୀ ।
ପୁଲସ୍ତ୍ୟ କହିଲେ ମୁନି ନାରଦ ହେ ଶୁଣ
ସ୍ୱାୟମ୍ଭୁବମନୁ ଠାରୁ ଆଜିଯାଏ ପୁଣ ।
ଯେ ମରୁତ ଗଣ ଥିଲେ ତାହାଙ୍କ ଉତ୍ପତ୍ତି
କହୁଅଛି ମନଦେଇ ଶୁଣ ମହାଯତି ।
ସ୍ୱାୟମ୍ଭୁବମନୁ ପୁତ୍ର ଅଟେ ପ୍ରିୟବ୍ରତ
ତା ପୁତ୍ର ସବନ ସେହି ତ୍ରୈଲୋକ୍ୟ ବିଖ୍ୟାତ
ତାର ପୁତ୍ର ନାହିଁ ସେହି ଗଲା ପରଲୋକେ
ତା ପତ୍ନୀ ସୁଦେବା ବସି କାନ୍ଦେ ଇହଲୋକେ
ନ ପୋଡ଼ିଲା ସ୍ୱାମୀ ଶିବ ଆଲିଙ୍ଗନ କରି
ହା ନାଥ ହା ନାଥ କହି ଉଚ୍ଚେ କାନ୍ଦେ ଗୋରୀ ।
ଏ ସମୟେ ଆକାଶରୁ ହେଲା ଶୂନ୍ୟବାଣୀ
ରୋଦନ ନ କର ଆଉ ଆଗୋ ରାଜରାଣୀ ।
ସ୍ୱାମୀ ସଙ୍ଗେ ଅଗ୍ନି ମଧ୍ୟେ କର ଗୋ ପ୍ରବେଶ
କହିଲା ସୁଦେବାଶୁଣ ହେ ବିହଗଈଶ ।
ଏହି ରାଜ ଅପୁତ୍ରିକ ଏଣୁ କାନ୍ଦେ ମୁହିଁ
ବିଧବା ହୋଇଲି ବୋଲି ଶୋକ କରୁନାହିଁ ।
କହିଲା ଆକାଶ ବାଣୀ ନ କାନ୍ଦ ଗୋ ରାଣୀ
ତୋ ଗର୍ଭେ ରାଜାର ହେବ ସାତ ପୁତ୍ର ପୁଣି ।
ସ୍ୱାମୀ ଘେନି ଅଗ୍ନିମଧ୍ୟେ ପଶ ଗୋ ତୁରିତେ
ସତ୍ୟ କହୁଅଛୁ ଆମ୍ଭେ ଦେଖିବୁ ସାକ୍ଷାତେ ।
ସ୍ୱାମି ସହ ଅଗ୍ନି ମଧ୍ୟେ ପଶିଲା ସୁନ୍ଦରୀ
ରାଣୀ ଘେନି ଆକାଶକୁ ଗଲା ଦଣ୍ଡଧାରୀ ।
ସେହି ବସୁନାଭ ପୁତ୍ରୀ ସୁଦେବା ସହିତ
ବିହାର କରନ୍ତେ ହେଲା ସାତପୁତ୍ର ଜାତ ।
ସେ ସମସ୍ତେ ବଳବନ୍ତ ହେଲେ ମହୀପାଳ
ମହାତ୍ମା ସେ ବୁଦ୍ଧିମନ୍ତ ହୋଇ ନେଲେ କାଳ ।
ନାମାଚାରୀ ହୋଇ ରାଜା ପୁଣି ସେ ଗଗନେ
ଭାର୍ଯ୍ୟାସହ ବାହାରିଲା ଋତୁକ୍ଷୟ ଦିନେ ।
ଯେ ଶତ୍ରୁ ସ୍ଖଳିତ ହେଲା ପଡ଼ିଲା ଭୂତଳେ
ଭାର୍ଯ୍ୟା ସହ ଦିବ୍ୟ ଗତି ଲଭିଲେ ସେ କାଳେ ।
ସେହି ଅଭ୍ରବର୍ଣ୍ଣ ଶୁକ୍ର ନୃପତିର ଖସି
ପଡ଼ିଲା ଭୂତଳେ ଜଳେ ପଦ୍ମପୁଷ୍ପେ ଆସି ।
ବିଶାଖା ହରିତା ଚିତ୍ରା ଆଉ ଅଳି ନୀଳା
ଦେଖିଲେ ଏ ମୁନି ପତ୍ନୀ ଚାରିଗୋଟି ବାଳା ।
ଋଷିଙ୍କି ନ କହି ସେହି ଶୁକ୍ର କଲେ ପାନ
ମନେ କଲେ ନ ତୁଟିବ ଆମ୍ଭର ଯୌବନ ।
ବ୍ରହ୍ମ ତେଜ ହୀନା ପୁଣି ହେଲେ କଳୁଷିତା
ଗର୍ଭବତୀ ହେଲେ ଘରେ ନ ରଖିଲେ ଭର୍ତ୍ତା ।
ସାତପୁତ୍ର ଜାତକଲେ ସେହି ମୁନିନାରୀ
କାନ୍ଦିଲେ ଭୈରବ ରବେ ଶିଶୁ ରାବ ଧରି ।
ସେ ରୋଦନ ଶବ୍ଦେ ପୂର୍ଣ୍ଣ ହୋଇଲା ସଂସାର ।
ପୁଣି ତହିଁ ଉପସ୍ଥିତ ହେଲେ ବେଦବର ।
ବୋଇଲେ ଶିଶୁଙ୍କୁ ଚାହିଁ ନ କର ରୋଦନ
ତୁମ୍ଭେ ସାତଜଣ ହେବ ମହାବଳବାନ ।
ମରୁତ ନାମରେ ତୁମ୍ଭେ ଯୁବା ଦେହେ ଥିବ
ଏହା କହି ସଙ୍ଗେ ଘେନି ଗଲେ ଦେବଦେବ ।

ସ୍ୱାୟମ୍ଭୁବ ମନ୍ୱନ୍ତରେ ଏ ଆଦ୍ୟ ମରୁତ
ସ୍ୱରୋଚିଷମନ୍ୱନ୍ତରେ ଆହେ ତପୋବନ୍ତ ।
ଯେ ମରୁତଗଣ ଥିଲେ କହୁଅଛି ଶୁଣ
ସ୍ୱାରୋଚିଷ ପୁତ୍ର ନାମ ରତଧ୍ୱଜ ଜାଣ ।
ତାର ସାତପୁତ୍ର ସୂର୍ଯ୍ୟତୁଲ୍ୟ ବଳବନ୍ତ
ତପ ଅର୍ଥେ ଆଶ୍ରା କଲେ ମେରୁ ପର୍ବତ ।
ବ୍ରହ୍ମା ଆରାଧନା କଲେ ଇନ୍ଦ୍ରପଦ ପାଇଁ
ବିପଶ୍ଚିତ ନାମେ ଥିଲେ ସ୍ୱର୍ଗେ ସୁରସାଇଁ ।
ତାହାଙ୍କର ତପ ଦେଖିକରି ମହାଭୟ
ଅପସରା ପୁତନାକୁ ଡ଼ାକି ସୁରରାୟ ।
ମେରୁ ପର୍ବତକୁ ତୁ ଗୋ ଚଳ ବିଳାସିନି
ତପ କରୁଛନ୍ତି ତହିଁ ସାତଗୋଟି ମୁନି ।
ରତୃଧ୍ୱଜ ରାଜାର ସେ ଅଟନ୍ତି ନନ୍ଦନ
ତାଙ୍କ ତପ ଭାଙ୍ଗିଆସ ଅମର ଭୁବନ ।
ପୁତନାସୁନ୍ଦରୀ ଶକ୍ର ଆଜ୍ଞା ଘେନି ବେଗେ
ମିଳିଲା ସେ ତପସ୍ଥାନେ ମହାମେରୁ ନଗ୍ରେ ।
ଆଶ୍ରମର କିଛିଦୂରେ ଅଛି ଏକ ନଈ
ତହିଁ ସ୍ନାନ କରନ୍ତି ସେ ସାତଗୋଟି ଭାଇ ।
ପୁତନା ସେ ନଦୀଜଳେ ପଶି କଲା ସ୍ନାନ
ଚଞ୍ଚଳ ହୋଇଲା ଦେଖି ତାହାଙ୍କର ମନ ।
ସ୍ଖଳିତ ହୋଇଲା ଶୁକ୍ର ପଡ଼ିଲା ସେ ଜଳେ
ଶଙ୍ଖିନୀ ତା ପାନକଲା ପଡ଼ନ୍ତେ ସଲିଳେ ।
ଗ୍ରାହବର ମହାଶଙ୍ଖ ଭାର୍ଯ୍ୟା ସେହି ଜାଣ
ତପୋଭ୍ରଷ୍ଟ ହୋଇ ସେହିଭାଇ ସାତଜଣ ।
କଲେ ଆସି ପଇତୃକ ରାଜ୍ୟକୁ ପାଳନ
ଅପ୍‌ସରା ପୁତନା କଲା ସ୍ୱର୍ଗକୁ ଗମନ ।
କହିଲା ବାସବ ଆଗେ ସକଳ ବୁଝାଇ
ଶଙ୍ଖିନୀ କୁମ୍ଭିରୀ ଜାଲେ ପଡ଼ିଲାକ ଯାଇ ।
ସ୍ଥଳକୁ ଆଣିଲେ ଧରି ମତ୍ସ୍ୟଜୀବିଗଣ
ରତଧ୍ୱଜ ପୁତ୍ର ଆଗେ କରନ୍ତେ ବଖାଣ ।
ଯୋଗବଳେ ଜାଣିପାରି ସେ ରାଜ ନନ୍ଦନେ
ଶଙ୍ଖିନୀକି ଘେନିଆସି ଆପଣା ଭବନେ ।
ପୁରବାସୀ ମଧ୍ୟେ ଛାଡ଼ିଦେଲେ ଏଥୁଅନ୍ତେ
ସାତ ଶିଶୁ ଜାତ କଲା ରହି ଜଳପ୍ରାନ୍ତେ ।
ମୋକ୍ଷମାର୍ଗ ଲଭିଲା ସେ ପୁତ୍ର ଉପୁଜାଇ
ଶିଶୁଗଣ ମାତୃହୀନ ପିତୃହୀନ ହୋଇ ।

ଜଳେପଡ଼ି କ୍ଷୁଧାତୃରେ କରନ୍ତି ରୋଦନ
ବ୍ରହ୍ମା ଆସି କହିଲେ ହେ ଶୁଣ ବସ୍ତଗଣ ।
ମରୁତ ଦେବତା ହେଲ ତୁମ୍ଭେ ସାତଭାଇ
ଏହାକହି ସଙ୍ଗେନେଇ ବାୟୁପଥେ ଥୋଇ ।
ଆପଣା ଭୁବନେ ଗଲେ ହେ ନାରଦମୁନି
ଉତ୍ତମ ମନୁରେ ଥିଲେ ମରୁତ ଯେ ପୁଣି ।
କହୁଅଛି ତାହା ତୁମ୍ଭେ ଶୁଣ ସାବଧାନେ
ଉତ୍ତମ ମନୁର ପୁତ୍ର ନିଷେଧ ଭୁବନେ ।
ଅଧିପତି ହେଲେ ତାଙ୍କନାମ ବପୁଷ୍ମାନ
ଭାସ୍କର ସଦୃଶ ତାଙ୍କ ଶୁକ୍ର ଜ୍ୟୋତିଷ୍ମାନ ।
ଗୁଣବନ୍ତ ଧାର୍ମିକ ସେ ଅପୁତ୍ରିକ ଥିଲେ
ମନ୍ଦାକିନୀ ନଦୀତଟେ ଘୋର ତପକଲେ ।
ତାହାଙ୍କ ଭାରିଯା ଦେବାଚାର୍ଯ୍ୟଙ୍କ ନନ୍ଦିନୀ
କୁଶଫଳ ପୁଷ୍ପଜଳ ଯୋଗାଇଲେ ଆଣି ।
ପତି ସଙ୍ଗେ ତପସ୍ୱିନୀ ହେଲେ ସେହି ସତୀ
ଅରଣ୍ୟରେ ଭେଟିଲେ ସେ ସାତଗୋଟି ଯତି ।
ସେ ପତି ପତ୍ନୀଙ୍କି କୃଶ ଦେଖି ଋଷିଗଣ
ପଚାରିଲେ କିମ୍ପାକର ତପ ଆଚରଣ ।
ସେ ବୋଇଲେ ପୁତ୍ରପାଇଁ କରୁ ଆମ୍ଭେ ତପ
ସପ୍ତଋଷି ବୋଇଲେକ ଶୁଣ ଆହେ ନୃପ ।
ଆମ୍ଭବରେ ସାତ ପୁତ୍ର ହୋଇବ ତୁମ୍ଭର
ହୋଇବେ ସେ ଗୁଣବନ୍ତ ଧାର୍ମିକ ଆବର ।
ଏହା କହି ସାତଋଷି ଗଲେ ତହୁଁ ଚଳି
ନୃପତି ଭାରିଯା ଘେନି ସ୍ୱ ନଗରେ ମିଳି ।
ବହୁଦିନ ପରେ ପ୍ରିୟା ହେଲା ଗର୍ଭବତୀ
କାଳବଶେ ପରଲୋକେ ଗଲେ ନରପତି ।
ଅନଳେ ପଶନ୍ତେ ରାଣୀ ସ୍ୱାମୀର ସଙ୍ଗତେ
ମନ୍ତ୍ରୀକଥା ନମାନିଲେ ସେହି କଦାଚିତେ ।
ପଡ଼ନ୍ତେ ଅନଳେ ଯାଇ ସେ ଗର୍ଭ ତାହାର
ଜଳରେ ପଡ଼ିଲା ଯାଇ ପାଇ ଶୀତନୀର ।
ସାତଖଣ୍ଡ ହେଲା ଗର୍ଭ ପିତାମହ ଆସି
ସପତ ମରୁତ କରିନେଲେ ଦେବଋଷି ।
ତାମସ ମନୁର କଥା କହୁଛି ହେ ଶୁଣ
ଦନ୍ତଧ୍ୱଜ ନାମେ ପୁତ୍ର ତାମସର ଜାଣ ।
ଅପୁତ୍ରିକ ସେହି ରାଜା ଅନଳ ମଧ୍ୟରେ
ହୋମକଲା ଆପଣାର ମାଂସରେ ରୁଧିରେ ।

ଅସ୍ଥି ରୋମ କେଶ ସ୍ନାୟୁ ମଜ୍ଜା ଯକୃତ୍ ଶୁକ୍ର
ଅଗ୍ନିରେ ଦିଅନ୍ତେ ମଲା ଦେଖି ରାଜଚକ୍ର ।
ଅନେକ ରୋଦନ କଲେ ହେଲା ଅରାଜକ
ଶୁକ୍ର ଦେଲାବେଳେ ଶବ୍ଦ ହେଲା ଏସନକ ।
ଅନଳରେ ଶୁକ୍ର ତୁହି ନ ଦିଅ ରାଜନ
ନ ମାନିଲା ଦନ୍ତଧ୍ୱଜ ତାମସ ନନ୍ଦନ ।
ଶୁଣ ଗୀତ ବାଦ୍ୟ କଳିପ୍ରିୟ ମୁନିବର
ଅନଳରୁ ଜାତ ହେଲେ ସାତୋଟି କୁମର ।
ଶୋକ କଲେ ସେହି ଶିଶୁ ଭଇରବ ରବେ
ଶୁଣି ବ୍ରହ୍ମା ଉପସ୍ଥିତ ହେଲେ ଆସି ଜବେ ।
ମରୁତ ପଦରେ ତାଙ୍କୁ ସ୍ଥାପିଲେ ଆକାଶେ
ତହୁଁ ପଦ୍ମଯୋନି ଗଲେ ଆପଣା ଆବାସେ ।
ରୈବତ ମନୁର କଥା ଶୁଣ ଏଥୁଅନ୍ତେ
ମହାରାଜା ରଇବତ ମନୁଙ୍କର ଅନ୍ତେ ।
ତାଙ୍କ ପୁତ୍ର ରିପୁଜିତ ହେଲେ ନରପତି
ସେହି ଅପୁତ୍ରିକ ତପେ ତୋଷି ଛାୟାପତି ।
ସୁରତି ନାମରେ କନ୍ୟା ପାଇ ଗୃହେ ଗଲେ
କାଳବଶେ ରିପୁଜିତ ନରପତି ମଲେ ।
ପିତୃହୀନ ହୋଇ ଦୁଃଖ ଶୋକ କଲେବରେ
ସୁରତି ଶରୀର ତ୍ୟାଗ କରନ୍ତେ ସତ୍ୱରେ ।
ସପ୍ତଋଷି ଆସି ତାକୁ କଲେକ ବାରଣ
କାହିଁକିନା କନ୍ୟା ପ୍ରତି ଥିଲା ତାଙ୍କ ମନ ।
ନ ମାନି ସେ କନ୍ୟା ଅଗ୍ନି ମଧ୍ୟରେ ପଶିଲା
ସପ୍ତଋଷିଙ୍କର ମନ ବିଚଳିତ ହେଲା ।
ହାୟ ହାୟ କହି ତହୁଁ ଗଲେ ଋଷିଗଣ
ସାତ ପୁତ୍ର ଜାତ ହେଲେ ଅଗ୍ନିରୁ ତକ୍ଷଣ ।
ଜନନୀ ବିହୀନେ ଉଚ୍ଚେ କରନ୍ତେ ରୋଦନ
ଉପସ୍ଥିତ ହେଲେ ତହିଁ କମଳଆସନ ।
ତାହାଙ୍କୁ ମରୁତ ପଦେ ସ୍ଥାପି ଶୂନ୍ୟେ ଗଲେ
ଚାକ୍ଷୁଷ ମନୁରେ ସେହି ମରୁଦ୍‌ଗଣ ଥିଲେ ।
କହୁଅଛି ମନ ଦେଇ ଶୁଣ ତପୋଧନ
ମଙ୍କି ନାମେ ଥିଲେ ଏକ ତପସ୍ୱୀ ପ୍ରଧାନ ।
ସତ୍ୟବାଦୀ ଶୂର ସେହି ସପ୍ତାସାରସ୍ୱତେ
କଠୋର ତପସ୍ୟା କରୁଁ ଦେଖି ଦେବ ବ୍ରାତେ ।
ତପୋବିଘ୍ନ ମାନସରେ ତୁଷିତାକୁ ପେଷି
ତୁଷିତା ସୁନ୍ଦରୀ ଜଳେ ସ୍ନାନ କଲା ପଶି ।
ରୂପ ଦେଖି ମୁନି ଶୁକ୍ର ଖସିଲାକ ଜଳେ
କୋପେ ଶାପ ଦେଲେ ମୁନି ଜାଣି ତପୋବଳେ ।
ଯଜ୍ଞ କର୍ମ ଉପସ୍ଥିତ ବେଳେ ଯିବୁ ନାଶ
ଶାପ ଦେଇ ଆଶ୍ରମକୁ ଗଲେ ମୁନି ଈଶ ।
ସପ୍ତ ସାରସ୍ୱତ ଜଳୁ ସାତ ଶିଶୁ ଜାତ
ତାଙ୍କୁ ପିତାମହ କଲେ ସପତ ମରୁତ ।
ଏରୂପେ ମରୁତଗଣ ପୂର୍ବେ ଥିଲେ ମୁନି
କହିଲି ତାହାଙ୍କ ଜନ୍ମ ଯାହା ଥିଲି ଜାଣି ।
ଏକଥା ଶୁଣିଲେ ପାପ ନ ରହିବ ଦେହେ
ଧର୍ମବନ୍ତ ହେବେ ଲୋକେ ଯିବେ ବିଷ୍ଣୁଗୃହେ ।

=+=

## କାଳନେମି ବଧ

କହିଲେ ପୁଲସ୍ତ୍ୟ ମୁନି ଆହେ କଳିପ୍ରିୟ
ଏ କାରଣେ ବଳୀ ଦୈତ୍ୟ ହୋଇଥିଲା ରାୟ ।
ମନ୍ତ୍ରଦାତା ପ୍ରହ୍ଲାଦ ଯେ ଶୁକ୍ର ପୁରୋହିତ
ବଳୀରାଜା ଅଟଇ ଯେ ବିରୋଚନ ସୁତ ।
ଦେଖିବା ମାନସେ ଦିନେ ଅମର ନିକର
ବଳୀ ପାଶେ ମିଳନ୍ତେ ସେ ଉଠିଣ ସତ୍ୱର ।
ଯଥାକ୍ରମେ ପୂଜାବିଧି କଲା ବିଧିମତେ
ପଚାରିଲା କୁଳଜଙ୍କୁ ତାହାଙ୍କ ସାକ୍ଷାତେ ।
କି କଲେ ମୋହର ଶ୍ରେୟ ହେବ କହ ଭାବି
ସେ କହିଲେ ହେ ଅସୁର ଗଉରବ ରବି ।
ତୋର ଶ୍ରେୟ ହେବ ପୁଣି ଆମ୍ଭ ଉପକାର
ବୋଲୁ ଛୁଁ ଶ୍ରବଣ କର ଅସୁର - ସୁନ୍ଦର ।
ତୋର ପିତାମହ ଥିଲା ଅତି ବଳବାନ
ଦାନବଗଣଙ୍କୁ କରୁଥିଲା ସେ ପାଳନ ।
ହିରଣ୍ୟ କଶିପୁ ନାମ ଅଟଇ ତାହାର
ତ୍ରିଭୁବନ ଇନ୍ଦ୍ର ବୀରଗଣଙ୍କର ଶିର ।
ସୁରଶ୍ରେଷ୍ଠ ବିଷ୍ଣୁ କୋପେ ସିଂହରୂପ ଧରି
ଦାନବେନ୍ଦ୍ରଗଣ ଅଗ୍ରେ ନଖରେ ପ୍ରହାରି ।
ବପୁ ବିଦାରିଣ ତାକୁ କଲେକ ସଂହାର
ପିତୃବ୍ୟ ଜମ୍ଭକୁ ବଧକଲା ପୁରନ୍ଦର ।
ତୋର ଭାଇ ସୁଦର୍ଶନ ଶଙ୍ଖ ପାକ ତିନି
ବଧ କଲା ପୁରନ୍ଦର ବଜ୍ର କରେ ଘେନି ।
ତୋର ପିତା ବିରୋଚନ ନିଧନ ବୃତ୍ତାନ୍ତ
ମନଦେଇ ଶୁଣ ଆମ୍ଭେ କହୁଁ ଆଦ୍ୟ ପ୍ରାନ୍ତ ।

ଇନ୍ଦ୍ର ଗୋତ୍ର କ୍ଷୟକଲେ ଶୁଣି ବିରୋଚନ
ମହାସୁରଗଣ ସହ ଘେନି ନିଜ ସୈନ୍ୟ ।
ଅମର ଗଣଙ୍କ ସଙ୍ଗେ ଯୁଝିବାକୁ ଗଲେ
କେ ରଥେକେ ଗଜେ ଅଶ୍ୱେ ପାଦଗାମିହେଲେ ।
ତାଙ୍କ ମଧ୍ୟେ କାଳନେମି ହେଲା ଅଗ୍ରସର
ଅମିତବିକ୍ରମ ଶାଳ ନାମରେ ତାହାର ।
ଦକ୍ଷିଣଭାଗରେ ଉଗ୍ର- ପ୍ରକୃତି ତାରକ
ଅର୍ବୁଦ ଅର୍ବୁଦ ଦୈତ୍ୟ ତାହାର ରକ୍ଷକ ।
କୋଟି କୋଟି ଲକ୍ଷ ଲକ୍ଷ ସହସ୍ର ସହସ୍ର
ଅୟୁତ ଅୟୁତ ଗଲେ ଯୁଦ୍ଧାର୍ଥ ଅଜସ୍ର ।
ଅସୁରଙ୍କ ଯୁଦ୍ଧ - ଯାତ୍ରା ଶୁଣି ସୁରରାଣ
ଦେବଙ୍କୁ ବୋଇଲେ ଘେନି ନିଜ ନିଜ ବାଣ ।
ସର୍ବେ ମେଳି ହୋଇ ଆସ ବିଳମ୍ବ ନ କର
ଏହା କହି ରଥେ ବସି ନିଜେ ବଜ୍ରଧର ।
ମାତଳିକି କହିଲେ ତୁ ବେଗେ ଚଳା ରଥ
ବାହନ ଆରୋହି ଦେବେ ଅଇଲେ ଯୁଦ୍ଧାର୍ଥ ।
ବସୁଗଣ ରୁଦ୍ରଗଣ ବିଶ୍ୱେଦେବାଗଣ
ଅଶ୍ୱିନୀ ଆଦିତ୍ୟଗଣ ବିଦ୍ୟାଧର ଗଣ ।
ଗୁହ୍ୟକ ରାକ୍ଷସ ଯକ୍ଷ ପନ୍ନଗ ଯେତେକ
ରାଜରଷି ସିଦ୍ଧଗଣ ଯେ ଭୂତ-ନାୟକ ।
କେହି ଗଜ କେହି ଅଶ୍ୱ କେହି ଚଢ଼ି ରଥ
କେ ବିମାନ ଆରୋହିଣ ଅଇଲେ ତ୍ୱରିତ ।
ଯହିଁ ଦୈତ୍ୟସୈନ୍ୟ ତହିଁ ମିଳିଲେ ସେ ଯାଇଁ
ଏ ସମୟେ ଉପସ୍ଥିତ ହେଲା ଖଗ -ସାଇଁ ।
ବିଷ୍ଣୁ କରିଛନ୍ତି ତାର ପୃଷ୍ଠ ଆରୋହଣ
ଦେବଙ୍କ ସହିତ ଇନ୍ଦ୍ର ବନ୍ଦିଲେ ଚରଣ ।
ସେନାପତି କାର୍ତ୍ତିକେୟ ଦେବସେନା ଆଗେ
ବାସବ ରହିଲେ ସେହି ସେନାମଧ୍ୟଭାଗେ ।
ରହିଲେ ଜଘନ ଦେଶେ ବିଷ୍ଣୁ ଗଦା ଧରି
ଜୟନ୍ତ ରହିଲା ବାମ ପାର୍ଶ୍ୱକୁ ଆବୋରି ।
ବରୁଣ ଦକ୍ଷିଣ ପାର୍ଶ୍ୱ ରଖିଲା ଯତନେ
ସ୍କନ୍ଦ ଇନ୍ଦ୍ର ବିଷ୍ଣୁ ବୀର୍ଯ୍ୟେ ବଳୀ ଦେବସୈନ୍ୟ ।
ଉପସ୍ଥିତ ଦୁଇଥାଟ ଉଦୟାଦ୍ରି ତଟେ
ବୃକ୍ଷ ପକ୍ଷୀ ବିରହିତ ଚାରୁ ମହୀପୃଷ୍ଠେ ।
ସମ ଶିଳା ତଳେ ରଣକଲେ ଦୁଇବଳ
ସେ ସଂଗ୍ରାମ ଭୟଙ୍କର ହେଲା ବେଳୁ ବେଳ ।
ମହୀତଳେ ରହିଛନ୍ତି ଦାନବ ସଇନ୍ୟ
ଅସ୍ତ୍ର ଶସ୍ତ୍ର ଘେନି ଦେବେ କଲେ ଆକ୍ରମଣ ।
କାର୍ତ୍ତିକେୟ ଭୁଜବଳେ ଦେବତା ନିକର
ମାଇଲେ ଦାନବ ବଳ ପଶୁ ଉପକାର ।
ମାୟାସୁର ଭୁଜବଳେ ଦୈତ୍ୟ ହେଲେ ବଳୀ
ସଂଗ୍ରାମରେ ଦେବତାଙ୍କୁ ପକାଇଲେ ଦଳି ।
ପୂର୍ବେ ସେହି ଗିରିପୃଷ୍ଠେ କପି ହସ୍ତଙ୍କର
ଯୁଦ୍ଧ ହୋଇଥିଲା ଯେହ୍ନେ ହେଲା ସେ ପ୍ରକାର ।
ରଥଚକ ଧୂଳି ଉଡ଼ି ଉଠିଲା ଗଗନେ
ସନ୍ଧ୍ୟାରାଗେ ରକ୍ତବର୍ଣ୍ଣ ଜଳଦ ଯେସନେ ।
ରଣାଙ୍ଗନ ସେହିପରି ଶୋଭା ପ୍ରକାଶିଲା
କ୍ରମେ କ୍ରମେ ସେହି ଯୁଦ୍ଧ ତୁମୂଳ ହୋଇଲା ।
ମାର ମାର ଧର ଧର ଶବ୍ଦ ଘୋରତର
ପୃଥ୍ୱୀ ଧୂଳିଶୂନ୍ୟ ହେଲା ବହିଣ ରୁଧିର ।
ଅମରେ ଅମୃତ ପାନ କରି ନ ଥିବାରୁ
ଦାନବେ ବଳିଷ୍ଠ ହୋଇ ଯୁଦ୍ଧେ ମାରୁ ମାରୁ ।
କାର୍ତ୍ତିକେୟ ସହଦେବ ହେଲେ ବଳହୀନ
ତାହା ଦେଖି ଶାର୍ଙ୍ଗଧନୁ ଧରି ଜନାର୍ଦ୍ଦନ ।
ମାଇଲେ ଦାନବବଳ ତୀକ୍ଷ୍ଣଶର ମାରି
ଖଗବର ପକାଇଲା ନଖରେ ବିଦାରି ।
ରଣେ ମହା ଭୟପାଇ ମହା ସୁରଗଣ
ନେଲେ ମହାବୀର କାଳନେମିଣ ଶରଣ ।
କାଳନେମି ଯାଇ ବିଷ୍ଣୁ ଆଗରେ ମିଳିଲା
ବ୍ୟାଧି ପ୍ରାୟ କାଳନେମି ଦାନବ ବଢ଼ିଲା ।
ଦେଲା ସେହି ରଣେ ଦୁଇ କରକୁ ବଢ଼ାଇ
ଦେବ ଯକ୍ଷ କିନ୍ନରଙ୍କୁ ଧରି ଦେଲା ଖାଇ ।
ବିସ୍ତୃତ ବଦନ ଗିରି ଗହ୍ୱର ଆକାର
ନିରସ୍ତ୍ର ସେ କାଳନେମି ଦୈତ୍ୟ ମହାବୀର ।
ଦାନବଙ୍କୁ ସଙ୍ଗେ ଘେନି କର ପାଦ ନଖେ
ଦେବତାଙ୍କୁ ପଠାଇଲା ଶମନ ସମ୍ମୁଖେ ।
ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ଯମ ବରୁଣ କୁବେର
କାର୍ତ୍ତିକେୟ ଆଦି ସର୍ବେ ନ ଧଇଲେ ଶର ।
ଅଖିଳ ସଂସାର ଦଗ୍ଧ କରିବା ମାନସେ
ବେଳୁଁ ବେଳ କାୟ ବୃଦ୍ଧିକଲା ମହାରୋଷେ ।
ଆକାଶ ପାତାଳ ପୃଥ୍ୱୀ ବ୍ୟାପିଲା ତା କାୟ
ଦିଶିଲା ସେ କଳ୍ପାନ୍ତର କାଳାନଳ ପ୍ରାୟ ।

ତାର ଭୟଙ୍କର ରୂପ ଦେଖି ଦେବଗଣ
ଦିଗପାଳ ସହିତରେ ସିଦ୍ଧ ସାଧଗଣ ।
ଗନ୍ଧର୍ବ କିନ୍ନର ଯକ୍ଷନାଗବଳ ଯେତେ
ଭୟପାଇ ପଳାଇଲେ ଯୁଦ୍ଧରୁ ତୁରିତେ ।
ତାହାଦେଖି ଦୈତ୍ୟଗଣ ବହି ଅହଙ୍କାର
ବିଷ୍ଣୁ ଅଙ୍ଗେ ଅସ୍ତ୍ରଶସ୍ତ୍ର କଲେକ ପ୍ରହାର ।
ମୟବଳି କାଳନେମି ଆଦି ଦୈତ୍ୟବୀରେ
ଅସ୍ତ୍ର ପ୍ରହାରିବା ଦେଖି ବିଷ୍ଣୁ କୋପଭରେ ।
ବଜ୍ରକଳ୍ପ ମର୍ମଭେଦି ନାରାଚ ନିକର
ଅନବରତରେ ମାରି ଶାର୍ଙ୍ଗ ଧନୁର୍ଦ୍ଧର ।
ଅଶ୍ୱଗଜ ରଥସହ ତାହାଙ୍କୁ ସମରେ
ମେଘଯେହ୍ନେ ପର୍ବତକୁ ଆଚ୍ଛାଦିତ କରେ ।
ତେସନ ଆଚ୍ଛନ୍ନ କରି ହତବୀର୍ଯ୍ୟ କଲେ
ମୟ ଆଦି ଦାନବେନ୍ଦ୍ର ତରସ୍ତ ହୋଇଲେ ।
ଶତମୁଖ ମଥନର ନେଲେକ ଆଶ୍ରୟ
ମହାବୀର କାଳନେମି ଦେଇଣ ଅଭୟ ।
ଅପ୍ରମିତ ବଳଶାଳୀ ଲୋକନାଥ ହରି
ଯହିଁ ଶର ମାରୁଛନ୍ତି ଶାର୍ଙ୍ଗଧନୁ ଧରି ।
କାଳଦଣ୍ଡ ସମ ଅର୍ଦ୍ଧଚନ୍ଦ୍ରାକୃତି ବାଣ
ମାରୁଛନ୍ତି ଅନୁକ୍ଷଣ ଦେବ ନାରାୟଣ ।
କାଳନେମି ଗଦାଧରି ମିଳିଲେ ଆଗରେ
ମହାଶୈଳରାଜଶୃଙ୍ଗ ତୁଲ୍ୟ କଳେବରେ ।
ଶତଶିରା କାଳନେମି ଆସେ ଗଦାଧରି
ଦେଖି ସୁଦର୍ଶନଚକ୍ର ଧଇଲେ ଶ୍ରୀହରି ।
ତାହାଦେଖି କାଳନେମି ହସି ଉଚ୍ଚସ୍ୱରେ
ବିଷ୍ଣୁଙ୍କୁ କହିଲା ମେଘ - ଗଭୀର ନାଦରେ ।
ଦାନବବିଟପ ଛେଦି ତୁହି ବନମାଳୀ
ଦୈତ୍ୟସୈନ୍ୟ ତ୍ରାସକାରୀ ଯୁଦ୍ଧେମହାବଳି ।
କୋପନ ସ୍ୱଭାବ ରଣବିଘ୍ନକର୍ତ୍ତା ମୋର
ହିରଣ୍ୟାକ୍ଷ ଅନ୍ତକ ତୁ ପରମ ବଇର ।
ତୋ ସମାନ ଖଳଜନ ନାହିଁ ଏ ସଂସାରେ
ଆଜି ପଡ଼ିଅଛୁ ଆସି ମୋହର ଗୋଚରେ ।
ନିଜ ନିଳୟକୁ ଯେବେ ନ ଯିବୁ ପଳାଇ
ଯୁଝିବୁ ମୋ ସଙ୍ଗେ କେଉଁ ସ୍ଥାନକୁ ନ ଯାଇ ।
ଅମର ନିକର ଭୟ କାତର ଲୋଚନେ
ମୋମୁଷ୍ଟିରେ ଧୂଳିହୋଇ ଉଡ଼ିବେ ଗଗନେ ।
ଅବଶ୍ୟ ଦେଖିବୁ ତୁହି ଅମ୍ବୁଜ ଲୋଚନ
ଏହା କହି କାଳନେମି ଅସୁର ପ୍ରଧାନ ।
କମ୍ପାଇ ଅଧର ଓଷ୍ଠ ମହାକୋପ ଭରେ
ଇନ୍ଦ୍ରଯେହ୍ନେ ପର୍ବତରେ ବଜ୍ରାଘାତ କରେ ।
ତେସନ ଗରୁଡ଼ ପୃଷ୍ଠେ ଗଦା ପ୍ରହାରିଲା
ଗଦାବର ପବନହୁଁ ବେଗରେ ଧାଇଁଲା ।
ମନ୍ଦଭାଗ୍ୟ ମନୋରଥ ଭଗ୍ନ ହେଲା ପରି
ଛେଦିଲେ ସେ ଗଦା ବିଷ୍ଣୁ ଚକ୍ରକରେ ଧରି ।
ଡେଇଁ ଯାଇଁ ତତକ୍ଷଣେ କୋପଚକ୍ରେ ଶୁଣି
ଛେଦିଲେ ତା ଭୁଜଦୁଇ ପ୍ରଭୁଚକ୍ରପାଣି ।
ଦଗ୍‌ଧଶୈଳପ୍ରାୟ ଶୋଭାପାଇଲା ଦନୁଜ
ମସ୍ତକ ଛେଦିଲେ ଚକ୍ରେ ପୁଣି ଦେବରାଜ ।
ପକ୍ୱ - ତାଳଫଳ ପରି କନ୍ଧ ପଡ଼େ ଝଡ଼ି
ବାହୁହୀନ ଶିରହୀନ ହୋଇ ଛାଡ଼େ ରଡ଼ି ।
ମେରୁତୁଲ୍ୟ ଛିଡ଼ାହେଲା ନଟଳିଲା ତିଳେ
ଗରୁଡ଼ ତା ଛାତିଧରି ପକାଇଲା ତଳେ ।
ଜଣାଗଲା ମହେନ୍ଦ୍ର କି ବଜ୍ରେ ରାହୁଶିର
ଛେଦନ୍ତେ ଗଗନୁ ଖସି ପଡ଼ିଲା ଭୂମିର ।
ତାଦେଖି ତ୍ରିଦଶେ କଲେ ଅସୁର ଦଳନ
ଅସ୍ତ୍ରଶସ୍ତ୍ର ବସ୍ତ୍ର ବର୍ମ କରିଣ ବର୍ଜନ ।
ପଳାଇଲେ ଭୟେ ଦୈତ୍ୟନରହିଲେ କେହି
ନିର୍ଭୟରେ ବାଣାସୁର ଏକାଅଛି ରହି ।

= + =

## ପ୍ରହଲ୍ଲାଦ ବାକ୍ୟ

ପୁଲସ୍ତ୍ୟ କହିଲେ ବାଣ ରହିବାର ଦେଖି
ଦାନବେ ଫେରିଲେ ପୁଣି ଭୟକୁ ଉପେକ୍ଷି ।
ବଳିପୁତ୍ର ବାଣାସୁର ସମରେ ଅଜେୟ
ଏହାଜାଣି ଯୁଦ୍ଧ ତେଜି ପ୍ରଭୁ ଦେବରାୟ ।
ଦେବତାମାନଙ୍କୁ ଡ଼ାକି ବୋଇଲେ ଏମନ୍ତ
ଯୁଦ୍ଧ କରୁଥାଅ ତୁମ୍ଭେ ଦୈତ୍ୟଙ୍କ ସଙ୍ଗତ ।
ଏହାକହି ଅନ୍ତର୍ଦ୍ଧାନ ହେଲେ ଯହୁଁ ହରି
ଶୁକ୍ରାଚାର୍ଯ୍ୟ ଅସୁରଙ୍କୁ କହିଲେ ହକାରି ।
ବିଷ୍ଣୁରଣ ଛାଡ଼ିଗଲେ ନାହିଁ ଆଉ ଭୟ
ଦେବତା ମାନଙ୍କୁ ରଣେ କର ଏବେ ଜୟ ।
ଶୁକ୍ରବାକ୍ୟେ ବଳୀଦୈତ୍ୟ ଗଦାଧରି କରେ
ମହାତେଜେ ପ୍ରବେଶିଲା ଦେବଙ୍କ ଆଗରେ ।

ତା ଦେଖି ସହସ୍ର ଭୂଜେ ଧରି ନାନାବାଣ
ପ୍ରବେଶିଲା ଦେବତାଙ୍କ ଅଗ୍ରେ ଯାଇଁ ବାଣ ।
ଭିନ୍ନ ଭିନ୍ନ ମୂର୍ତ୍ତି ଧରି ପ୍ରବଳ ଦାନବେ
ମୟ ବିଦ୍ୟୁଜ୍ଜିହ୍ୱ ପର ଭଦ୍ର ଆଦି ସର୍ବେ ।
ବିପାକ ବିକ୍ଷର ଆଉ ଅସିତ ଈକ୍ଷଣ
ବୃଷପର୍ବା ଆଦି ଯେତେ କଉଣପ ଗଣ ।
ସୈନ୍ୟ ଘେନି ଯୁଦ୍ଧକଲେ ଦେବଙ୍କ ସହିତେ
ସଂଗ୍ରାମେ ବିମୁଖ ପାଇ ଇନ୍ଦ୍ରାରି ସମସ୍ତେ ।
ପଳାଇଲେ ତାଙ୍କ ପଛେ ଧାଇଁଲେ ଅସୁରେ
ସ୍ୱର୍ଗଛାଡ଼ି ପଳାଇଲେ ଅମରନିକରେ ।
ବ୍ରହ୍ମଲୋକେ ଲୁଚିଲେକ ହୋଇଣ କାତର
ବଳି ସ୍ୱର୍ଗ ଭୋଗକଲା ହୋଇ ପୁରନ୍ଦର ।
ବାଣ ଯମପଦ ନେଲା ମୟ ଜଳପତି
ରାହୁ ହେଲା ଚନ୍ଦ୍ର ଶୁକ୍ର ହେଲେ ବୃହସ୍ପତି ।
ସ୍ୱର୍ଭାନୁ ସୂର୍ଯ୍ୟଙ୍କ ପଦ ନେଲା ଭୁଜ ବଳେ
ଅନ୍ୟାନ୍ୟ ଦାନବଗଣ ଯେ ଥିଲେ ପାତାଳେ ।
ସମସ୍ତ ଦେବତା ହୋଇ ପାଳିଲେକ ମହୀ
ପଞ୍ଚମ କଳିର ଆଦ୍ୟେ ଦ୍ୱାପର ଶେଷହିଁ ।
ଏ ସମୟେ ଇନ୍ଦ୍ର ପଦ ନେଲେ ବଳୀ ରାଜା
ସପତ ପାତାଳେ ଥିଲେ ଯେତେ ଜନପ୍ରଜା ।
ଭୂର୍ଭୁବ ସ୍ୱ ଆଦି ଏହି ଦଶଲୋକ ଜାଣ
ବଳୀ ଅଧିକାର କଲା ଅପସରା ଗଣ ।
ଆବର ଗନ୍ଧର୍ବଗଣ ତାହାଙ୍କୁ ସେବିଲେ
ଯକ୍ଷ ବିଦ୍ୟାଧର ଆଦି ବାଦ୍ୟରେ ତୋଷିଲେ ।
ଏଥୁଅନ୍ତେ ଦିନେ ବଳୀ ସ୍ୱର୍ଗଭୋଗ କାଳେ
ପିତାମହ ପ୍ରହ୍ଲାଦକୁ ଚିନ୍ତିଲେ ନିଶ୍ଚଳେ ।
ପ୍ରହ୍ଲାଦ ପାତାଳୁ ଯାଉ ମିଳିଲେ ସ୍ୱର୍ଗରେ
ସିଂହାସନ ତେଜି ବଳୀ ପଡ଼ୁଁ ପାଦତଳେ ।
କରେ ଟୋଳି ପ୍ରହଲାଦ କରାଇଲେ ଉଭା
ଶିବଅଗ୍ରେ ଇନ୍ଦ୍ର ସମ ବିକାଶିଲା ଶୋଭା ।
ବଳୀ କହିଲେ ଭୋ ତାତ ତବ ପରସାଦେ
ଦେବତାଙ୍କୁ ଜୟ କରି ଭୀଷଣ ବିବାଦେ ।
ଏ ସ୍ୱର୍ଗ ସମ୍ପଦ ଲାଭ କରିଅଛି ଦେଖ
ତୁମ୍ଭେ ଏଥେ ବସି ଭୋଗ କର ସ୍ୱର୍ଗ ସୁଖ ।
ତୁମ୍ଭ ପାଦେ ଭୃତ୍ୟପରି ଖଟିଥିବି ମୁହିଁ
ଐରାବତ ତୁଲ୍ୟ ତବ ଉଛିଷ୍ଟକୁ ଖାଇ ।

ଗୁରୁ ଆଜ୍ଞା ନ ପାଳଇ ଯେବଣ କୁମର
ତା ଉପରେ ନଯୋଗାଏ କେଭେ ରାଜ୍ୟଭାର ।
ପ୍ରହ୍ଲାଦ ବୋଇଲେ ବାବୁ ଅକଣ୍ଟକ ରାଜ୍ୟ
ଭୋଗକରି ମିତ୍ରଙ୍କର ହୋଇଅଛି ପୂଜ୍ୟ ।
ପ୍ରାଣି ଅନ୍ତଃକରଣ ମୁଁ ସାଧିଅଛି ବଳେ
ଦାନ ଦେଇ ଦରିଦ୍ରଙ୍କୁ ତୋଷିଛି ଅକାଳେ ।
ପୁତ୍ର ଉତ୍ପାଦନ ବାବୁ କରିଅଛି ମୁହିଁ
ତାହା ଛାଡ଼ି ଏବେ ଯୋଗ ସାଧୁଅଛି ରହି ।
ଏବେ ତୋ ପ୍ରଦତ୍ତ ରାଜ୍ୟ କରୁଛି ଗ୍ରହଣ
ପୁନରପି ତୋ ହସ୍ତେ ମୁଁ କଲି ସମର୍ପଣ ।
ନିରନ୍ତର ହୁଅ ବାବୁ ଗୁରୁସେବା ରତ
ଏହା କହି ତତକ୍ଷଣେ ଧରି ବଳୀ ହସ୍ତ ।
ଇନ୍ଦ୍ର ସିଂହାସନେନେଇ ବସାଇଲେ ସ୍ନେହେ
ସାକ୍ଷାତେ ମହେନ୍ଦ୍ର ଶୋଭାବିକାଶି ସେ କହେ ।
ଆହେ ତାତ ତ୍ରଇଲୋକ୍ୟ ରକ୍ଷାକାରୀ ଜନ
ଧର୍ମ ଅର୍ଥ କର୍ମ ମୋକ୍ଷ ଏ ଚାରିରୁ ଜାଣ ।
କି କର୍ମ କରିବ କହ ବୁଝାଇ ମୋ ଆଗେ
ଏ ସମୟେ ଶୁକ୍ରାଚାର୍ଯ୍ୟ କହିଲେ ସରାଗେ ।
ଯୁକ୍ତିଯୁକ୍ତ କଥା କହ ବଳୀକି ବୁଝାଇ
ପ୍ରହ୍ଲାଦ କହିଲେ ବାବୁ ଶୁଣ ମନ ଦେଇ ।
ଧର୍ମରେ କରିବ ବାବୁ ଅର୍ଥ ଉପାର୍ଜନ
ପ୍ରାଣୀହିତ କାର୍ଯ୍ୟେ ବାବୁ କରିବ ଯତନ ।
ଯେଉଁକାର୍ଯ୍ୟ କଲେ ହେବ ତ୍ରିବର୍ଗର ଫଳ
ଉଭୟଲୋକରେ ପୁଣି ହୋଇବ ମଙ୍ଗଳ ।
ଯହିଁରେ କି ସମସ୍ତଙ୍କ ପୂଜନୀୟ ହେବ
ଯାହା କଲେ ଯଶ କୀର୍ତ୍ତି ଅରଜି ପାରିବ ।
କଳଙ୍କ ପାଖକୁ ବାବୁ ନ ଯିବ କଦାପି
ଆତ୍ମବଂଶେ ଜାତହୋଇ ଥିବେ ବା ଯଦ୍ୟପି ।
ବ୍ୟସନୀ ଆବର ଜ୍ଞାତିହୀନ ଯେବେ ଜନ
ବୃଦ୍ଧା ଜ୍ଞାତି ବିପ୍ର କୀର୍ତ୍ତି ଯେ ଯଶ ଗୁଣବାନ ।
ଏହାଙ୍କୁ କଦାପି ପାଖେ ନ ରଖିବ ବାବୁ
ଯେରୂପେ ସଦ୍‌କୁଳେଜାତ ସେ ରୂପେ ତୁ ପ୍ରଭୁ ।
ଯେ ସର୍ବଦା ତୋର ଗୃହେ କରିଥିବେ ବାସ
ତାହା କହୁଅଛି ଶୁଣ ଆହେ ଦୈତ୍ୟ ଈଶ ।
ପୃଥିବୀ ସର୍ବଦା ହେବ ବ୍ରହ୍ମାଣ୍ଡେ ଭୂଷଣ
କ୍ଷତ୍ରି ବୈଶ୍ୟ ସମନ୍ୱିତ ନରପତି ଗଣ ।

ଏହା କଲେ ଆପେ ଆସି ମିଳଇ ସମ୍ପତ୍ତି
ଶ୍ରୁତି - ଶାସ୍ତ୍ର-ବିଶାରଦ ଗୁଣବନ୍ତ ଯତି ।
ନରାଧିପ ଗଣ ତୋର ଅନୁଗାମୀ ହେବେ
ଦିବ୍ୟ ଯଜ୍ଞ ଅନୁଷ୍ଠାନ କର ଠାବେ ଠାବେ ।
ଅଗ୍ନିଧୂମ କରୁ ତୋର ଶାନ୍ତିର ବିଧାନ
ଅଧ୍ୟୟନ ଅଧ୍ୟାପନ ଯଜନ ଯାଜନ ।
ଏ ଆଦି ଷଟ୍‌କର୍ମରତ ବିପ୍ରଗଣ ତୋର
ଯେମନ୍ତେ ହୋଇବେ ଆଜ୍ଞାକାରୀ ନିରନ୍ତର ।
ଯେମନ୍ତେ କ୍ଷତ୍ରୀୟଗଣ ତୋର ଅଧିକାରେ
ସ୍ୱାଧ୍ୟାୟୀ ଯାଜ୍ଞିକ ଦାତା ଥିବେ ଶସ୍ତ୍ରକରେ ।
ପ୍ରଜା ପାଳୁଥିବେ ବାବୁ ଅଧର୍ମେ ନ ଥିବେ
ବୈଶ୍ୟେ ଯଜ୍ଞ କରୁଥିବେ ବିଦ୍ୟା ପଢୁଥିବେ ।
ପୂଣ୍ୟ ବ୍ୟବସାୟୀ ଦାତା ହେବେ କୃଷିକାରୀ
ଶୂଦ୍ରେ ହେବେ ବିପ୍ର ବୈଶ୍ୟଶୂଦ୍ର ସେବାକାରୀ ।
ବର୍ଣ୍ଣମାତ୍ରେ ସ୍ୱ ସ୍ୱ ଧର୍ମ ଥିବେ ଅବିରତ
ତାହେଲେ ତୋହର ଧର୍ମ ହୋଇବ ବର୍ଦ୍ଧିତ ।
ଶୁଣି କ୍ଷଣମାତ୍ର ତୁନି ହୋଇ ଦୈତ୍ୟେଶ୍ୱର
ହୋଇଲା ତୁମ୍ଭର ବାକ୍ୟଶିରୋଧାର୍ଯ୍ୟ ମୋର ।

=÷=

## ବଳୀରାଜ୍ୟ

ପୁଲସ୍ତ୍ୟ କହିଲେ ଶୁଣ ଆହେ ତପୋଧନ
ବଳି ଧର୍ମେ ଥାଇ କଲା ତ୍ରୈଲୋକ୍ୟ ପାଳନ ।
କଳିଯୁଗ ସତ୍ୟଯୁଗଠାରୁ ଗଲା ବଳି
ଭୟ ପାଇ ବ୍ରହ୍ମଲୋକେ ଗଲା କଳି ଚଳି ।
ଦେଖିଲା ବ୍ରହ୍ମାଙ୍କୁ ବେଢ଼ି ବସିଛନ୍ତି ଦେବେ
କଳି ନମସ୍କାର କରି ବୋଲେ ଭବେ ଏବେ ।
ମୋର ସ୍ୱଭାବ ରହିଲା କି କରିବି କହ
ଏହା ଶୁଣି କହିଲେ ସେ ଦେବ ପିତାମହ ।
ତୋର ଏକା ସ୍ୱଭାବ କି ନାଶ କଲା ବଳି
ଜଗତ ସ୍ୱଭାବ ନାଶେ ବଳବାନ ବଳୀ ।
ଉଠି ଦେଖ ଇନ୍ଦ୍ର ଆଦି ଦେବଙ୍କର କଷ୍ଟ
ବଳୀ ତେଜେ ଭାସ୍କରଙ୍କ ପ୍ରଭାହେଲା ନଷ୍ଟ ।
ଏକମାତ୍ର ବିଷ୍ଣୁ ତାକୁ କରିବେ ଶାସନ
ସ୍ୱର୍ଗ ମର୍ତ୍ତ୍ୟ ରାଜ୍ୟ ଲକ୍ଷ୍ମୀ ଯଶ ବଳ ଧନ ।
ଧର୍ମବଳେ ଆପଣାର ଅଧୀନ କରିବ
ଦେଖେ ଦେବେ ଆସିଛନ୍ତି ହୋଇ କ୍ଷୀଣପ୍ରଭ ।

କଳି କଲା ବିଭୀତକ ବନକୁ ଗମନ
ସତ୍ୟଯୁଗ ପ୍ରାଦୁର୍ଭାବ ହେଲା ଦିନୁ ଦିନ ।
ତ୍ରିଭୁବନ ମଧ୍ୟେ ରହି ନ ପାରିଲା କଳି
ଚାରିବର୍ଣ୍ଣେ ଚାରିପାଦ ଧର୍ମ ଯାଇଁ ମିଳି ।
ଇନ୍ଦ୍ରିୟ ନିଗ୍ରମ ଶୌଚ ତପସ୍ୟା ଅହିଂସା
ଦୟା ଦାନ ଅନୃଶଂସ୍ୟ ଯଜ୍ଞ ଯେ ଶୁଶ୍ରୂଷା ।
ଏ ସବୁ ଧର୍ମ କର୍ଣ୍ଣରେ ପୂରିଲା ସଂସାର
ଅଇଲେ ତ୍ରୈଲୋକ୍ୟ ଲକ୍ଷ୍ମୀ ଦେଖି ନୃପବର ।
ବୋଇଲା କେ ତୁମ୍ଭେ ଆସିଅଛ କାହିଁ ପାଇଁ
ପଦ୍ମମାଳା- ବିଭୂଷିତା ଲକ୍ଷ୍ମୀ ବୋଲେ ଚାହିଁ ।
ଯେ କାରଣେ ବଳେ ମୁହିଁ ଆସିଛି ହୋ ବଳି
ଯାହାର ମହିଷୀ କହେ ଶୁଣ ମହାବଳୀ ।
ଯାହାର ଅସୀମବଳ ଚକ୍ର ଗଦାଧର
ସେ ବିଷ୍ଣୁ ଛାଡ଼ିଲେ ଯହୁଁ ଇନ୍ଦ୍ରଙ୍କୁ ଆମ୍ଭର ।
ତେଣୁ ତୋର ନିକଟକୁ ଆସିଅଛି ମୁହିଁ
ଚାରିଗୋଟି ଯୁବତୀର ସୃଷ୍ଟି କଲେ ବିହି ।
ସମସ୍ତେ ସୁନ୍ଦରୀ ଏକୁଁ ଏକ ଅନୁପମା
ତା ମଧ୍ୟରୁ ଶ୍ୱେତ ବସ୍ତ୍ର ପିନ୍ଧିଛି କେ ବାମା ।
ଶ୍ୱେତମାଲ୍ୟେ ବିଭୂଷିତା କେବଣ ଲଳନା
ଶ୍ୱେତ ଅନୁଲୋପନରେ କେ ରାମା ମଣ୍ଡନା ।
ଶ୍ୱେତବର୍ଣ୍ଣା ଶ୍ୱେତ ହସ୍ତୀ ଆରୁଢ଼ାକେ ବାଳା
କାହାର ଗଳାରେ ଶୋହେ ରକ୍ତବର୍ଣ୍ଣ ମାଳା ।
କେହି ରକ୍ତାମ୍ବର ପରିଧାରିଣୀ ସୁନ୍ଦରୀ
ରକ୍ତବାଜି ଆରୋହଣକାରିଣୀ କେ ଗୋରୀ ।
ରକ୍ତାଙ୍ଗୀ କେ ପୀତବସ୍ତ୍ରା କେହି ପୀତବର୍ଣ୍ଣା
ପୀତମାଲ୍ୟ ପୀତ ଅନୁଲେପନ ଭଞ୍ଜନା ।
ସୁବର୍ଣ୍ଣ ରଥରେ ଚଢ଼ିଅଛି କେହି ପୁଣି
ନୀଳବସ୍ତ୍ରା ନୀଳମାଲ୍ୟ କେବଣ ରମଣୀ ।
ନୀଳଗନ୍ଧାନୁଲୋପନା କେବଣ ସୁନ୍ଦରୀ
ନୀଳବୃକ୍ଷ ଆରୋହଣ କରିଛି କେ ଗୋରୀ ।
ସତ୍ୱଗୁଣା ରଜୋଗୁଣା କେହି ତମୋଗୁଣ
କେହିବା ଦ୍ୱିଗୁଣା କେହି କେହି ସର୍ବଗୁଣ ।
ଶ୍ୱେତବର୍ଣ୍ଣା ଆଶ୍ରାକଲା ବ୍ରହ୍ମା ଚନ୍ଦ୍ରମାକୁ
ରକ୍ତବର୍ଣ୍ଣା ଇନ୍ଦ୍ରମନୁ ମନୁ କୁମରକୁ ।
ନୀଳବର୍ଣ୍ଣା ଆଶ୍ରାକଲା ଶୂଦ୍ର ବିଦ୍ୟାଧର
ଆବର ନୈର୍ଋତଗଣ ଦାନବ ନିକର ।

ବିପ୍ରେଦେଲେ ଶ୍ୱେତବର୍ଣ୍ଣା ନାମ ସରସ୍ୱତି
ଯଜ୍ଞେ କଲେ ବ୍ରହ୍ମାସହ ମନ୍ତ୍ରେ ତାଙ୍କୁ ସ୍ତୁତି ।
ରକ୍ତବର୍ଣ୍ଣା ନାମଦେଲେ ଜୟ ଶ୍ରୀ କ୍ଷତ୍ରିୟ
ସେ ରହିଲା ଯାଇ ମନୁଚନ୍ଦ୍ରର ଆଶ୍ରୟ ।
କନକାଙ୍ଗୀ ନାମଲକ୍ଷ୍ମୀ ଦେଲେ ବୈଶ୍ୟଗଣ
ଶ୍ରଦ୍ଧା ଭକତିରେ ସ୍ତୁତିକଲେ ଅନୁକ୍ଷଣ ।
ଶୂଦ୍ରେ ଦେଲେ ନୀଳବର୍ଣ୍ଣା ନାମ ପ୍ରିୟଦେବୀ
ରାକ୍ଷସ ଦାନବଗଣ ତାଙ୍କ ପାଦ ସେବି ।
ଶ୍ରଦ୍ଧା ଭକତିରେ କଲେ ସେ ଦେବୀର ପୂଜା
ଏହିରୂପେ ଚାରିଭାଗ କଲେ ଦେବରାଜା ।
ଇତିହାସ ପୁରାଣ ଯେ ବେଦ ସାଙ୍ଗ ଉକ୍ତି
ଚଉଷଠି କଳା ମହାପଦ୍ମନିଧି ଜାତି ।
ଏମାନେ ରହନ୍ତି ଶ୍ୱେତବର୍ଣ୍ଣାର ଆଶ୍ରୟେ
ସୁବର୍ଣ୍ଣ ରଜତ ରତ୍ନ ରଥଗଜ ହୟେ ।
ଅସ୍ତ୍ର ଶସ୍ତ୍ର ପଦ୍ମନିଧି ଭୂଷଣ ଆବର
ରକ୍ତବର୍ଣ୍ଣା ଆଶ୍ରୟରେ ଥାନ୍ତି ନିରନ୍ତର ।
ଗୋ ମହିଷ ଗଧ ଓଟ ଅମ୍ବର ଓଷଧି
ଭୂମି ଆଉ ପଶୁଗଣ ଆଦି ମହାନିଧି ।
ପୀତବର୍ଣ୍ଣା ଆଶ୍ରୟରେ ରହନ୍ତି ଏମାନେ
ଏହାଭିନ୍ନ ଆଉ ଯେତେ ପଦାର୍ଥ ସେମାନେ ।
ଶଙ୍ଖନିଧି ଘେନି ନୀଳବର୍ଣ୍ଣାର ଆଶ୍ରିତ
ଏହାଙ୍କର ସ୍ୱଭାବାଦି କହୁଛି ଯେମନ୍ତ ।
ମହାପଦ୍ମାଶ୍ରିତ ଲୋକେ ସତ୍ୟ ଶୁଚିଯୁକ୍ତ
ବଳବନ୍ତ ଦାନଶୀଳ ଉତ୍ସବାଦି ରତ ।
ଯାଗକାରୀ ମହାଭାଗ ଗର୍ବିତ ଆବର
ସୁଦକ୍ଷିଣ ସର୍ବସୁଖୀ ନିତ୍ୟ ମାଲ୍ୟଧର ।
ମହାନୀଳାଶ୍ରିତା ଲୋକେ ସତ୍ୟ ମିଥ୍ୟାଭାଷି
ଯେ ପଶେ ଶରଣ ତାକୁ ରଖନ୍ତି ଆଶ୍ୱାସି ।
ନ୍ୟାୟାନ୍ୟାୟ ବ୍ୟୟି ପୁଣି ଦାନଯୋଗକାରୀ
ଶଙ୍ଖାଶ୍ରିତ ଲୋକକଥା ଶୁଣ ଦଣ୍ଡଧାରୀ ।
ନାସ୍ତିକ ଶଉଚହୀନ ନିତାନ୍ତ କୃପଣ
ଭୋଗ ବିବର୍ଜିତ ଚୋର ମିଥ୍ୟାବାଦୀ ଜାଣ ।
ମୋ ନାମ ରାଗିଣୀ ମୁହିଁ ଜୟଶ୍ରୀ ଅଟଇ
ତୋ ପାଶକୁ ଆସିଅଛି ଆହେଦୈତ୍ୟସାଇଁ ।
ମୋହର ପ୍ରତିଜ୍ଞା ଯାହା କହୁଅଛି ଶୁଣ
ବୀର ପୁରୁଷକୁ ଆଶ୍ରା କରଇ ମୁଁ ଜାଣ ।

କ୍ଳୀବର ସଂସର୍ଗ ମୁହିଁ କଦାପି ନକରେ
ତୋ ତୁଲ୍ୟ ବଳିଷ୍ଠ ନାହିଁ ତିନିଭୁବନରେ ।
ମୋ ସଙ୍ଗେ ଅକ୍ଷୟ ପ୍ରୀତିକର ତୁ ରାଜନ
ଯେଣୁ ଯୁଦ୍ଧେ ଜିଣିଅଛୁ ସହସ୍ର ଲୋଚନ ।
ମହାବଳ ମହାସତ୍ୱ ଦେଖି ମୁହିଁ ତୋତେ
ଆସିଅଛି ପ୍ରୀତିବନ୍ଧା ଦେବାର ନିମନ୍ତେ ।
ହିରଣ୍ୟ କଶିପୁକୁଳେ ଜନ୍ମିଛ ଆବର
ଅସୁର କୁଳର ରାଜା ହେ ଦାନବ ବୀର ।
ତୋ ପକ୍ଷେ ଏ କର୍ମ କିଛି ବିସ୍ମୟ ନୁହଇ
ଶତ୍ରୁ ହସ୍ତୁ ତ୍ରଇଲୋକ୍ୟ ଆଣିବା ଛଡ଼ାଇ ।
ବିଶେଷିତା କରିବାହିଁ ପ୍ରପିତା ମହକୁ
ଏହାକହି ଦାନବେନ୍ଦ୍ର ବଳିରାଜନକୁ ।
ଜନ୍ମୟୀ ଚନ୍ଦ୍ରମୁଖୀ ଜୟଶ୍ରୀ ତା ଘରେ
ରହନ୍ତି ବିଧବାନାରୀଗଣ ପରକାରେ ।
ଶିରୀକୀର୍ତ୍ତି ଦୃତ୍ୟପ୍ରଭା ଗତି କ୍ଷମା ଭୂତି
ବିଦ୍ୟା ନୀତି ଦୟାମତୀ ଶ୍ରୁତି ସ୍ମୃତି ଶାନ୍ତି ।
ଧୃତିକ୍ରିୟା ପୁଷ୍ଟି ତୁଷ୍ଟି ଆସି ଯଥାସୁଖେ
ଆଶ୍ରାକରି ରହିଲେ ସେ ବଳିପାଖେପାଖେ ।
ସେ ମହାତ୍ମା ବଳିରାଜା ଶୁଭ ବୁଦ୍ଧିମନ୍ତ
ଯାଗଶୀଳ ତପୋବନ୍ତ ପୁଣି ଆତ୍ମବନ୍ତ ।
ମଦୁଳ ସ୍ୱଭାବ ତାର ସତ୍ୟବାଦୀ ଦାତା
ସର୍ବ ପ୍ରାଣୀମାନଙ୍କର ଭରଣ କରତା ।
ସ୍ୱଜନ ଜନଙ୍କ ରକ୍ଷାକାରୀ ଜନ ବଳୀ
ସ୍ୱର୍ଗକୁ ଶାସନ କଲାବେଳେ ମହାବଳୀ ।
କ୍ଷୁଧାତୁର ନ ରହିଲେ ମଳି ନ ରହିଲା
ଦରିଦ୍ରତା ନ ରହିଲା ଉଜ୍ୱଳ ଦିଶିଲା ।
ଧର୍ମନିଷ୍ଠା ବଦାନ୍ୟତା କାମ ଉପଭୋଗେ
ରହି କାଳ କଟାଇଲେ ସମସ୍ତ ନୀରୋଗେ ।

=+=

## ଅଦିତି ବରପ୍ରଦାନ

ପୁଲସ୍ତ୍ୟ କହିଲେ ପୁଣି ଏଥୁ ଅନନ୍ତରେ
ଇନ୍ଦ୍ର ଆଦି ଦେବଗଣ ବ୍ରହ୍ମା ସଦନରେ ।
ଦେଖିଲେ କମଳ ଯୋନି ବିଶିଷ୍ଟ ଆସନେ
ବସି ସଭା କରୁଛନ୍ତି ଘେନି ମୁନିଜନେ ।
ନିଜ ପିତା କଶ୍ୟପହିଁ ବସିଛନ୍ତି ତହିଁ
ନମସ୍କାର କରି ଇନ୍ଦ୍ର ବୋଇଲେ ହେ ବିହି ।

ବଳେ ବଳୀ ଭୋଗକଲା ଅମର ଭୁବନ
ଏହାଶୁଣି ବୋଇଲେ ସେ କମଳ ଆସନ ।
ଆପଣାର ମନ୍ଦକୃତ କର୍ମଫଳ ଏହି
କି କୁକର୍ମ କରିଛି ମୁଁ କହ ମୋତେ ବିହି ।
କଶ୍ୟପ ବୋଇଲେ ଶୁଣ ଆହେ ପୁରନ୍ଦର
ଭ୍ରୂଣହତ୍ୟା ମହାପାପ କାହୁଁ ଯିବ ତୋର ।
ଦିତିର ଉଦରେ ପଶି କଲୁ ଗର୍ଭ ନାଶ
ଇନ୍ଦ୍ର ବୋଇଲେ ଭୋତାତ ଜନନୀର ଦୋଷ ।
ଶୋଇଥିଲେ ବ୍ରତକାଳେ ଅଶଉଚା ହୋଇ
କଶ୍ୟପ କହିଲେ ଏହା ସତ୍ୟ ସୁରସାଇଁ ।
ତୁ କିମ୍ପାଇ ବଜ୍ରେ କଲୁ ଗର୍ଭକୁ ବିନାଶ
ସେ ପାପ ତୋହର କାହୁଁ ଯିବ ସୁରଈଶ ।
ଇନ୍ଦ୍ର ବୋଇଲେ ଭୋ ତାତ କହ ପ୍ରାୟଶ୍ଚିତ
ବଶିଷ୍ଠ କଶ୍ୟପ ବ୍ରହ୍ମା ବିଚାରି ଏମନ୍ତ ।
ବିଷ୍ଣୁ ସେବାକଲେ ତୋର ଯିବ ପାପକ୍ଷୟ
ବହୁକାଳ ସାଧ ସେହି ବୋଲେ ସୁରରାୟ ।
ଏହା ଶୁଣି ବ୍ରହ୍ମା ଘେନି କଶ୍ୟପ ବଶିଷ୍ଠ
ବ୍ରହ୍ମଲୋକୁ ଅବତରି ଗଲେ ମହୀପୃଷ୍ଠ ।
ସହସ୍ର ଲୋଚନ ତାଙ୍କ ପଛେ ପଛେ ଗଲେ
ସେ ସମସ୍ତ କାଳିଞ୍ଜିର ଉତ୍ତରେ ମିଳିଲେ ।
କୁଶସ୍ଥଳୀ ପୂର୍ବେ ବସୁପୁରର ପଶ୍ଚିମେ
ହିମଗିରି ଦକ୍ଷିଣରେ ରହି ଯଥାକ୍ରମେ ।
ଉତ୍ତମ ଦକ୍ଷିଣା ଦେଇ ପୂର୍ବେ ଯେ ନୃବରେ
ସହସ୍ର ମନୁଷ୍ୟମେଧ ଯଜ୍ଞ ସହିତରେ ।
ଶତ ଶତ ଅଶ୍ୱମେଧ ଯଜ୍ଞକରି ଯହିଁ
ଅସୁରଗଣଙ୍କ ସଙ୍ଗେ ଯୁଦ୍ଧେ ହେଲେ ଜୟୀ ।
ଯେଉଁ ଯଜ୍ଞ ମହାମେଧ ନାମରେ ବିଖ୍ୟାତ
ଅବ୍ୟକ୍ତ ମୂରତି ହରି ହୋଇ ମୂର୍ତ୍ତିମନ୍ତ ।
ଯାର ଦ୍ୱାର ରଖିବାକୁ ଦେଲେ ଗଦାଧର
ଶ୍ରୁତି ଶାସ୍ତ୍ର ବିବର୍ଜିତ ବିପ୍ରେନ୍ଦ୍ର ନିକର ।
ବ୍ରହ୍ମାଙ୍କ ସାଦୃଶ୍ୟ ଲାଭ କରିଥିଲେ ଯହିଁ
ଏକଚିତ୍ତେ ପିତୃଗଣ ପୂଜାକଲେ ରହି ।
ଯେଉଁ ସ୍ଥାନେ ସୁରଋଷି କନ୍ୟା ମହାନଦୀ
ହିମଶୈଳେ ମିଳି ପୁଣ୍ୟ ଜଳକୁ ସମ୍ପାଦି ।
ଦରଶନ ପାନ ସ୍ନାନ ଦେଇ ଜଗତର
ପାତକ ମୋଚନ କରେ ଦେବ ପୁରନ୍ଦର ।

ସେ ନଦୀର ତୀରେ ବିଷ୍ଣୁ ଆରାଧନା ଅର୍ଥେ
ରହି ପ୍ରାତଃ ସ୍ନାନ କଲେ ଅଧଃଶାୟୀ ରାତ୍ରେ ।
ବାରେକ ଭୋଜନ କଲେ ଯାଚ୍ଞା ପରିହରି
ବିଷ୍ଣୁସ୍ତବ ପାଠକଲେ ତପସ୍ୟା ଆଚରି ।
କାମ କ୍ରୋଧ ତେଜି କଲେ ଇନ୍ଦ୍ରିୟ ଦମନ
ସହସ୍ର ବର୍ଷରେ ପ୍ରୀତ ହେଲେ ଭଗବାନ ।
ବୋଇଲେ ତୋହର ହେଲା ପାପ ବିମୋଚନ
ସଂପ୍ରତି ଗମନକର ସହସ୍ର ଲୋଚନ ।
ତୋର ନିଜରାଜ୍ୟ ତୁହି ଲଭିବୁ ଅଚିରେ
ଯତ୍ନ ବାନ ହେଲି ତୋର ସ୍ନେହ କରିବାରେ ।
ଏହା କହି ଗଦାଧର ପାକ ଶାସନଙ୍କୁ
ମନୋହର ଜଳେ ସ୍ନାନ କରାଇ ପୂରକୁ ।
ଗଲେ ଅନ୍ତର୍ଦ୍ଧାନେ ତାହା ଦେଖି ପୁରନ୍ଦର
ସ୍ନାନ କଲାମାତ୍ରେ ପାପରାଶି ହେଲା ଦୂର ।
ପୁରୁଷ ରୂପରେ ତାଙ୍କୁ କହିଲେ ଏମନ୍ତ
କି କରିବୁ ଆଜ୍ଞା ଦିଅ ଶଚୀଦେବୀ କାନ୍ତ ।
ପୁରୁଷ ମାନଙ୍କୁ ଚାହିଁ କହିଲେ ବାସବ
ତୁମ୍ଭେମାନେ ହେଲ ମୋର ପାପରୁ ସମ୍ଭବ ।
ହିମାଳୟ କାଳିଞ୍ଜିର ପର୍ବତ ଅନ୍ତରେ
ବାସକର ତୁମ୍ଭଙ୍କୁ ଯେ ବୋଲିବେ ସଂସାରେ ।
ଏ ପୁଳିନ୍ଦ ଜାତ ଏହା କହି ସୁରପତି
ଜନନୀ ଯେ ଆଶ୍ରମରେ ଯାଇଁ ରହିଛନ୍ତି ।
ସୁର ସିଦ୍ଧ ଯକ୍ଷଗଣ ଘେନି ଅଦିତିଙ୍କୁ
ପୂଜା କରି କରଯୋଡ଼ି ଆପଣା ଶିରକୁ ।
କମଳ ଚରଣଯୁଗେ ନିବେଶିଲେ ନେଇ
ମାତା ସ୍ନେହେ ଆଲିଙ୍ଗନ କରିଣ ଉଠାଇ ।
ପଚାରିଲେ କି କାରଣେ ଆସିଅଛ ବାବୁ
ଦେବେନ୍ଦ୍ର ବୋଇଲେ ବଳି ନେଲା ରାଜ୍ୟସବୁ ।
ଅଦିତି ଏ କଥା ଶୁଣି କଲେ ବସି ଶୋକ
ବୋଇଲେ ହେ ଜନାର୍ଦ୍ଦନ ଜଗତ ପାଳକ ।
କହିଲେ ନାରଦ ଋଷି ଆହେ ମୁନିବର
ଅଦିତି ଯେ ଆରାଧନା କଲେ ବିଷ୍ଣୁଙ୍କର ।
କେଉଁ ସ୍ଥାନେ ରହି କଲେ ତାହା କହ ମତେ
ପୁଲସ୍ତ୍ୟ କହିଲେ ଶୁଣ ଅଦିତି ଯେମନ୍ତେ ।
ହରି ଆରାଧନା କଲେ କହୁଅଛି ତାହା
ପୁତ୍ରରାଜ୍ୟ ନେବା ଶୁଣି ବଳୀ ଦୈତ୍ୟନାହା ।

ମାଘ ମାସ ଶୁକ୍ଳପକ୍ଷ ସପତମୀ ଦିନ
ଶକ୍ରଦିଗେ ଭାସ୍କରଙ୍କୁ କରି ଦରଶନ ।
ଅନାହାରେ ରହି କଲେ ଶ୍ରୀହରିଙ୍କ ସ୍ତୁତି
ଏକମନେ ଏକଧ୍ୟାନେ ବୋଇଲେ ଅଦିତି ।
ଜୟତୁ ଜୟତୁ ଦିବ୍ୟାମ୍ବୁଜକୋଶ ଚୌର
ଜୟ ତୁ ସଂସାର ତରୁବରର କୁଠାର ।
ଜୟତୁ ଜୟତୁ ପାପ ଇନ୍ଧନ ଜ୍ୱଳନ
ଜୟ ତୁ ଜୟ ତୁ ପାପ- ଓଘ ବିନାଶନ ।
ନମସ୍ତେ ଭାସ୍କର ନମୋ ନମୋ ଦିବ୍ୟମୂର୍ତ୍ତି
ନମସ୍ତେ ନମସ୍ତେ ତ୍ରଇଲୋକ୍ୟ ଲକ୍ଷ୍ମୀପତି ।
ସମୁଦାୟ ଚରାଚର କାରଣ ହେ ନାଥ
ରକ୍ଷାକର ବିଶ୍ୱମୂର୍ତ୍ତି ପ୍ରଭୁ ଜଗନ୍ନାଥ ।
ସର୍ବଜନ ରକ୍ଷାକର୍ତ୍ତା ତୁମ୍ଭେ ଜଗନ୍ମୟ
ରାଜ୍ୟହୀନ ମାନହୀନ ମୋହର ତନୟ ।
ତେଣୁ ମୁହିଁ ତୋ ଚରଣେ ପଶିଲି ଶରଣ
ମୋତେ ରକ୍ଷାକର ଆହେ ଅରୁଣ ବାହନ ।
ଏହା କହି ଧୂପ ଦୀପ ଦେଇ କରବୀରେ
ପୂଜାକରି ପୁତ୍ରଅର୍ଥେ ପବିତ୍ର ପାତ୍ରରେ ।
ଦିବ୍ୟ ଭୋଜ୍ୟ ଘୃତଯୁକ୍ତ ବହୁମୂଲ୍ୟ ଅନ୍ନ
ଶ୍ରଦ୍ଧାଭରେ ଭକତିରେ କଲେ ନିବେଦନ ।
ପରମ ପବିତ୍ର ସ୍ତବ ପଢ଼ି ନିରାହାରେ
ଦ୍ୱିତୀୟ ଦିବସେ ସ୍ନାନ ପୂଜା ସାରି ଖରେ ।
ବିପ୍ରଙ୍କୁପ୍ରଣାମ କରି ବସାଇ ଆସନେ
ସୁପ୍ରସନ୍ନ କଲେ ସ୍ୱର୍ଣ୍ଣ ତିଳ ଘୃତ ଦାନେ ।
ପ୍ରୟତ - ଚିତ୍ତରେ ବସି କରନ୍ତେ ସେ ଧ୍ୟାନ
ସୁପ୍ରସନ୍ନେ ଭାନୁ ଆସି ଅଗ୍ରେ ବିଦ୍ୟମାନ ।
ବୋଇଲେ ଗୋ ଦକ୍ଷସୁତା ହେଲି ସୁପ୍ରସନ୍ନ
ତୋହର ଉଦରୁ ମୁହିଁ ହୋଇ ଉତପନ୍ନ ।
ତୋ ପୁତ୍ରକୁ ରାଜ୍ୟ ଦେବି ଦାନବଙ୍କୁ ଦଳି
ବାସୁଦେବ କଥା ଶୁଣି ପ୍ରଜାପତି - ବାଳୀ ।
କମ୍ପମାନ କଳେବରେ କହିଲେ ସଧୀରେ
ତୋତେ ମୁହିଁ କାହୁଁ ଧରିପାରିବି ଉଦରେ ।
ସମୁଦାୟ ଜଗତକୁ ଧରିଅଛୁ ତୁହି
ଏଣୁ ତୋତେ ଧରିବାକୁ ତ୍ରିଭୁବନେ ନାହିଁ ।
ଅନ୍ୟ ବିଧାନରେ ମୋର୍ ଦୁଃଖ ଦୂରକର
ପୁନରପି କହିଲେ ସେ ପ୍ରଭୁ ଦାମୋଦର ।
ଯାହା ତୁମ୍ଭେ କହିଲ ସେ କଥା ଅଟେ ସତ
ଯଦ୍ୟପି ଜଗତଜନ ମିଳିବେ ସମସ୍ତ ।
ତଥାପି ଧାରଣ କରି ନ ପାରିବେ ମୋତେ
ତୋ ଉଦରେ ଅବତାର ହେବି ସୁର ହିତେ ।
ଯୋଗବଳେ ମୋତେ ମୁହିଁ କରିବି ଧାରଣ
ତୋତେ ଆଉ କଶ୍ୟପଙ୍କୁ ପର୍ବତ ଭୁବନ ।
ଭୟ ନ କର ତୋ ଗର୍ଭୁ ହେଲେ ଅବତାର
ନିଶ୍ଚୟ ନିସ୍ତେଜ ହେବେ ଦାନବନିକର ।
ଏହାକହି ଜନାର୍ଦ୍ଦନ ପୁରନ୍ଦର ହିତେ
ସ୍ୱତେଜେ ଅଦିତି ଗର୍ଭେ ରହିଲେ ନିଶ୍ଚିନ୍ତେ ।

=+=

## ବଳୀ ଶିକ୍ଷାଦାନ

କହିଲେ ପୁଲସ୍ତ୍ୟ ଋଷି ଦେବ ଜନାର୍ଦ୍ଦନ
ଦେବମାତା ଅଦିତିର ଗର୍ଭେ ଅବସ୍ଥାନ ।
କରନ୍ତେ ଦାନବଗଣ ହୋଇଲେ ନିସ୍ତେଜ
ତା ଦେଖି ପ୍ରହ୍ଲାଦ ଆଗେ ବଳୀଦୈତ୍ୟରାଜ ।
କହିଲେ ଭୋ ତାତ ତୁମ୍ଭେ ଅଟ ମହାଜ୍ଞାନୀ
ତୁମ୍ଭଙ୍କୁ ମୁଁ ଶୁଭାଶୁଭ - ବିଶାରଦ ଜାଣି ।
ପଚାରିଛି ଦୈତ୍ୟେ ହେଲେ ନିସ୍ତେଜ କିପାଇଁ
ପ୍ରହ୍ଲାଦ ମୁହୂର୍ତ୍ତମାତ୍ର ଧ୍ୟାନପର ହୋଇ ।
ଜାଣିଲେ ଯେ ବାସୁଦେବ ହେଲେ ଅବତାର
ଏଣୁ ତେଜୋହୀନ ହେଲେ ଦାନବ ନିକର ।
ବିଚାରିଲେ କାହିଁ ପୁଣି ଅଛନ୍ତି ଶ୍ରୀହରି
ଧ୍ୟାନବଳେ ଖୋଜିଲେ ସେ ଚତୁର୍ଦ୍ଦଶ ପୁରୀ ।
ନାଭିଠାରୁ ଅଧୋଭାଗ ସପତ ପାତାଳ
ନାଭିଠାରୁ ଉର୍ଦ୍ଧ୍ୱଭାଗ ଭୂରାଗି ସକଳ ।
ପଙ୍କଜାକୃତି ଭୂମିକି ଦେଖିଲେ ପ୍ରଥମେ
ତା ମଧ୍ୟେ ଦେଖିଲେ ମେରୁପଦ୍ମାକାରକ୍ରମେ ।
ସାତକୁମ୍ଭ ସମ୍ପଦରେ ସମ୍ପାଦିଛି ଜ୍ୟୋତି
ତା ଉପରେ ମହାପୁରୀ ଅଷ୍ଟଲୋକପତି ।
ବ୍ରହ୍ମାଙ୍କ ବୈଭ୍ରାଜପୁରୀ ତାହାର ଉପରେ
ଦେଖିଲେ ଆଶ୍ରମ ଏକ ତା ଅଧୋଭାଗରେ ।
ପରମ ପବିତ୍ର ମୃଗ ପକ୍ଷୀଗଣବୃତ
ପୂଜା କରୁଛନ୍ତି ଦେବଗଣେ ଆସି ନିତ୍ୟେ ।
ସେଠାରେ ଦେଖିଲେ ଦେବଜନନୀ ଅଦିତି
ମଧୁସୂଦନଙ୍କୁ ତହିଁ ପ୍ରହ୍ଲାଦ ଖୋଜନ୍ତି ।

ଦେଖିଲେ ଶ୍ରୀଜଗନ୍ନାଥ ତାହାଙ୍କ ଉଦରେ
ବିରାଜନ୍ତି ନିଜତେଜେ ବାମନ ଆକାରେ ।
ସେ ବାନମଦେହେ ସୁରାସୁରେ ବିରାଜନ୍ତି
ହସ୍ତେ ଶଙ୍ଖଚକ୍ର ନାହିଁ ଅପୂର୍ବ ମୂରତି ।
ଦୈତ୍ୟତେଜୋହର ବିଷ୍ଣୁ ବାମନ ଆକାର
ଯୋଗବଳେ ପ୍ରହଲାଦ ଦେଖିହେଲେ ସ୍ଥିର ।
ବିଷ୍ଣୁଙ୍କୁ ପ୍ରଣାମକରି କହିଲେ ହେ ବଳି
ଯେଣୁ ତେଜୋହୀନ ହେଲେ ଦୈତ୍ୟମହାବଳି ।
ଯେହେତୁ ତାହାଙ୍କ ଚିତ୍ତେ ଉପୁଜିଲା ଭୀତି
ତହିଁର କାରଣ କହେ ଶୁଣ ଦୈତ୍ୟପତି ।
ତୁମ୍ଭେ ଦେବତାଙ୍କୁ ଯୁଦ୍ଧେ କରିବାକୁ ଜୟ
ଛଡ଼ାଇନେବାରୁ ରାଜ୍ୟପାଇ ମହାଭୟ ।
ଶରଣପଶିଲେ ଦେବେ ଶ୍ରୀହରି ଚରଣେ
ଶ୍ରୀହରି ଅଭୟ ଦାନକରି ଦେବଗଣେ ।
ଅଦିତିଙ୍କଠାରେ ହେଲେ ବାମନାବତାର
ସେ ତେଜ ହରଣକଲେ ତୁମ୍ଭ ମାନଙ୍କର ।
ଅନ୍ଧକାର ସୂର୍ଯ୍ୟତେଜ ନପାରଇ ସହି
ପ୍ରହ୍ଲାଦଙ୍କ କଥାଶୁଣି ରୋଷେ ବଳିଦେହୀ ।
କମ୍ପମାନହେଲା ପୁଣି ସ୍ଫୁରିଲା ଅଧର
ବୋଇଲା ଭୋତାତ କହ ଆଗରେ ମୋହର ।
ସେ ହରି କିଏ ସେ ହରିନେଲା ଆମ୍ଭ ତେଜ
ଅଷ୍ଟଲୋକପତି ମୁହିଁ ଦାନବଙ୍କ ରାଜ ।
ଦେଖ ଶତଶତ ଦୈତ୍ୟ ମୋହର ଅଧୀନେ
ବିଷ୍ଣୁଠାରୁ ସମଧିକ ବଳିଷ୍ଠ ସେମାନେ ।
ସହସ୍ର ସହସ୍ର ବାର ସମରେ ସେ ବୀରେ
ଇନ୍ଦ୍ରରୁଦ୍ର ଆଦିଯେତେ ଅମର ନିକରେ ।
ରଣାଙ୍ଗଣେ ଦର୍ପ ଚୂର୍ଣ୍ଣକରି ତାହାଙ୍କର
ଭୋଗକଲେ ତାଙ୍କ ହସ୍ତେ ଥିବା ସ୍ୱର୍ଗପୁର ।
ବିପ୍ରଚିତ୍ତିନାମେ ଯେଉଁ ଦାନବ - କେଶରୀ
ବେଗଗାମୀ ସୂର୍ଯ୍ୟରଥଚକ ବାୟୁପରି ।
ସେ ରଥର ଚକକାଢ଼ି ଆଣିଲା ସେ ବେଗେ
ସେ ମୋହର ସେନାପତି ଥାଏ ସେନା ଆଗେ ।
ତାହା ଭିନ୍ନ ଅସିଲୋମା ଶିବ ଅୟଃଶଙ୍କୁ
ବିରୂପାକ୍ଷ ମକରାକ୍ଷ ଅସିତାକ୍ଷ ଶଙ୍କୁ ।
ବୃଷପର୍ବା ତ୍ରିଶିରା ଏ ଆଦି ମହାବୀରେ
ବିବିଧ ଆୟୁଧଧାରୀ ବଳିଷ୍ଠ ସମରେ ।

ଏହାଙ୍କର ଏକାଂଶକୁ ଯୋଗ୍ୟନୋହେ ହରି
ପ୍ରହ୍ଲାଦ ନାତିର କଥା ଶୁଣି ଏହିପରି ।
କ୍ରୋଧେ ବିମୂର୍ଚ୍ଛିତ ହୋଇ ବୋଇଲେ ତୁ ଧିକ
ଯେ କାରଣୁ ହେଉ ତୁହି ଶ୍ରୀହରି ନିନ୍ଦୁକ ।
ଅତି ମୂର୍ଖଦୁର୍ବୁଦ୍ଧି ତୁ ପାପାଚାରୀ ଜନ
ବିଷ୍ଣୁ ନିନ୍ଦାକରୁ ଜିଭ ନଛିଡ଼େ କେସନ ।
ଶୋଚନୀୟ ସାଧୁଗଣ ନିନ୍ଦନୀୟ ତୁହି
ବିଷ୍ଣୁଭିନ୍ନ ଅନ୍ୟ ମୋର ପ୍ରିୟକେହି ନାହିଁ ।
ଏହା ତୁହି ଜାଣୁ ମହାସୁରହିଁ ଜାଣନ୍ତି
ମୋତେ ଅପମାନ ଦେବାପାଇଁ ଦୁଷ୍ଟମତି ।
ଜାଣିଶୁଣି ବିଷ୍ଣୁନିନ୍ଦା କରୁ ମୋର ଆଗେ
ତୁହି ଲୋକପତି ହୋଇ କହୁ ପୁଣି ରାଗେ ।
ଏଣୁ ତୋର ପିତାଅଟେ ନିଶ୍ଚେ ଶୋଚନୀୟ
କର୍କଶ ସ୍ୱଭାବ ତୁହି ତାହାର ତନୟ ।
ହରି କିଏ ପଚାରିଲୁ କହୁଛି ମୁଁ ଶୁଣ
ଯେତେକ ଈଶ୍ୱର ତାଙ୍କ ଈଶ୍ୱର ସେ ଜାଣ ।
ସ୍ୱୟଂ ପ୍ରକାଶ ଚୈତନ୍ୟ ଜ୍ୟୋତିରୂପ ସେହି
ଗୁରୁ ସ୍ୱଭାବରୁ ପୂଜନୀୟ ଭାବଗ୍ରାହୀ ।
ତୋ ପିତା ତୋହର ଗୁରୁମୁହିଁ ତାର ଗୁରୁ
ସେହି ଜନାର୍ଦ୍ଦନ ମୋର ପୂଜନୀୟ ଗୁରୁ ।
ସେହେତୁ ତାହାଙ୍କ ପୂଜା କର୍ତ୍ତବ୍ୟରେ ମୂଢ଼
ତୁହି ଅତି ପରାପର ଗୁରୁନିନ୍ଦା ଛାଡ଼ ।
ଏ ହେତୁ ତୁ ନିଶ୍ଚେ ଅଧଃପତିତ ହୋଇବୁ
ଦାନବମାନଙ୍କୁ ତୁହି ଶୋକେ ପକାଇବୁ ।
ଏ ହେତୁ ଅବଶ୍ୟ ରାଜ୍ୟନାଶହେବ ଘୋର
ଅଳ୍ପଦିନେ ନାଶହେବ ସତ୍ୟ ଏ ମୋ ଗୀର ।
ମୋର ମନ ବଚନରେ ବାସୁଦେବ ଭିନ୍ନ
ଅନ୍ୟକର୍ମ ପ୍ରିୟତମ ନୋହେ କଦାଚନ ।
ଏ କାରଣୁ ରାଜ୍ୟଭ୍ରଷ୍ଟ ହୁଅ ତୁ ପତିତ
ତୋହଯୋଗୁଁ ଏ ଦାନବେ ହୁଅନ୍ତୁ ପତିତ ।
ବିଷ୍ଣୁ ଭିନ୍ନ କେହି ନାହିଁ ଚଉଦଭୁବନେ
ରାଜ୍ୟଭ୍ରଷ୍ଟ ପତିତ ତୁ ହୁଅ ଏ କାରଣେ ।
ବାସୁଦେବ ଭିନ୍ନନାହିଁ ଭୂତପରାୟଣ
ଏଣୁ ରାଜ୍ୟଭ୍ରଷ୍ଟ ତୋର କରିବି ଦର୍ଶନ ।
କହିଲେ ପୁଲସ୍ତ୍ୟ ଋଷି ମହାତ୍ମା ପ୍ରହ୍ଲାଦ
କହନ୍ତେ ଏମନ୍ତ କଥା ବଳୀ ବଶମ୍ବଦ ।

ବେଗେ ଆସନରୁ ଉଠି ଯୋଡ଼ି ବେନିକର
ପାଦ ତଳେ ପଡ଼ି କହେ ଆହେ ଗୁରୁବର ।
ସୁପ୍ରସନ୍ନ ହୁଅ ଯେଣୁ ଗୁରୁଜନ ମାନେ
ଦୋଷକରି ଶିଶୁ ଦୋଷ ନ ଧରନ୍ତି ମନେ ।
ଶାପ ଦେଲ ଭଲ କଲ ଦାନବ- ପ୍ରଧାନ
ଶତ୍ରୁକୁ ମୋହର ଭୟ ନାହିଁ କଦାଚନ ।
ରାଜ୍ୟ ବିନାଶକୁ ମୋର ମନେ ଡର ନାହିଁ
କିଛି ମାତ୍ର ଦୁଃଖ ମନେ ନ କରେ ତା ପାଇଁ ।
କେବଳ ମୁଁ ଅପରାଧି ହୋଇଛି ତୋହର
ତହିଁରେ ଦୁଃଖିତ ହୁଏ ହୃଦୟ ମୋହର ।
ଭୋ ଦେବ ଦୁର୍ବୁଦ୍ଧି ଶିଶୁ ନୀଚଜନ ମୁହିଁ
ମୋର ଅପରାଧ କ୍ଷମାକର କି ନା ତୁହି ।
ଶିଶୁଦୋଷ ଦୈନଦଶା ଦେଖି ଗୁରୁଜନ
ମନେ ନ ଧରି କରନ୍ତି ଶୀଘ୍ର କ୍ଷମାଦାନ ।
କହିଲେ ପୁଲସ୍ତ୍ୟ ଋଷି ବଳୀବାକ୍ୟ ଶୁଣି
ହରିପାଦ ଭକ୍ତ ବହୁକ୍ଷଣ ମନେ ଗୁଣି ।
ପରମ ବିସ୍ମୟାବହ ମଧୁର ବଚନେ
ନାତିକି କହିଲେ ମୋହ ହେତୁ ମୁଁ ଅଜ୍ଞାନେ ।
ବିବେକ ବିଚାର ମୋର ହେଲା ତିରସ୍କୃତ
ତୋତେ ଶାପ ଦେଲି ଜାଣ ବିଷ୍ଣୁ ସର୍ବଗତ ।
ମୋହବଳେ ଅବିବେକ ଉପସ୍ଥିତ ତୋର
ବିବେକକୁ ନାଶ ଗଲା ସେହି ମୋହ ମୋର ।
ଯାହାକି ହେବାର ଥାଏ ନିଶ୍ଚୟ ସେ ହୁଏ
କଦାପି ସେ କଥାଗୋଟି ବିନାଶ ନ ପାଏ ।
ପୁତ୍ର ମିତ୍ର କଳତ୍ର ଯେ ରାଜ୍ୟ ଭୋଗ ଧନ
ଆଗମେ ନିଗମେ କେବେ ନୁହନ୍ତି ବିଷନ୍ନ ।
ହେ ଦୈତ୍ୟେନ୍ଦ୍ର ପୂର୍ବ କର୍ମଫଳ ଅନୁସାରେ
ଯେ ବିଧିରେ ସୁଖ ଦୁଃଖ ଘଟଇ ସଂସାରେ ।
ସେ ବିଧିରେ ତାହା ସହ୍ୟ କରିବେଟି ନର
ବଶୀଜନ ବିପଦରେ ନୁହଇ କାତର ।
ଉତ୍ତମ ପୁରୁଷ ମୋହ ନୋହେ ଧନକ୍ଷୟେ
ତଥା ହୃଷ୍ଟ ନ ହୁଅଇ ଧନ ଉପଗୟେ ।
ନିରନ୍ତର ଧୈର୍ଯ୍ୟଧରି କାର୍ଯ୍ୟ କରୁଥାଇ
ଦୁଃଖିତ ନ ହୁଅ ଏହା ଜାଣି ଦୈତ୍ୟସାଇଁ ।
ଆହେ ମହାବାହୁ ତୁହି ଅଟୁ ବିଦ୍ୟାବାନ
ତଥାପି ମୁଁ ଉପଦେଶ କରୁଛି ପ୍ରଦାନ ।

ମହା ସୁରଗଣ ସହ ଶୁଣ ସାବଧାନେ
ପ୍ରବୃତ୍ତ ହୋଇବ ସେହି ରୂପ ଅନୁଷ୍ଠାନେ ।
ଶ୍ରୀପୁରୁଷୋତ୍ତମ ଯେହୁ ଅଖିଳ ଶରଣ୍ୟ
ସେହି ବାସୁଦେବପାଦେ ପଶିବ ଶରଣ ।
ତୁମ୍ଭଙ୍କୁ ରଖିବେ ଭୟ ଆପଦରୁ ସେହି
ତାହାଙ୍କର ଆଦି ନାହିଁ ଅନ୍ତ ମଧ ନାହିଁ ।
ସର୍ବଲୋକ-ନିୟନ୍ତା ସେ ସର୍ବ ଦୁଃଖହନ୍ତା
ଚରାଚର ଗୁରୁ ସେହି ଈଶ୍ୱର କରତା ।
ସଂସାର ଗର୍ଭରେ ପଡ଼ିଥିବା ପୁରୁଷର
କରାବଲମ୍ବନ ସେହି ସର୍ବ ବ୍ୟାପୀ ସାର ।
ତାହାର ଆଶ୍ରିତ ଜନ ନ ପଡ଼େ ସନ୍ତାପେ
ଲିପ୍ତ ନ ହୁଅଇ ସେହି କେବେ ମହା ପାପେ ।
ହେ ଦାନବ ବର ତୁହି ସଂପ୍ରତି ତା ପ୍ରତି
ଚିତ୍ତଦେଇ ତାହାଠାରେ କରୁ ଦୃଢ଼ଭକ୍ତି ।
ସେହି ଜନାର୍ଦ୍ଦନ ତୋର କରିବେ ମଙ୍ଗଳ
ତା ପାଦେ ଶରଣ ପଶ ଘେନି ଦୈତ୍ୟବଳ ।
ତୀର୍ଥଯାତ୍ରା କରିବି ମୁଁ ପାପ ଶମନାର୍ଥେ
ବିଷ୍ଣୁଙ୍କୁ ମୁଁ ଆରାଧିବି ବୁଲି ତୀର୍ଥେ ତୀର୍ଥେ ।
ତାହା କଲେ ମୋର ପାପରାଶି ଯିବ ନାଶ
ଯେ ହେତୁ ଅଚ୍ୟୁତସେହି ନୃସିଂହ ଲୋକେଶ ।
ନାତିକି ଏରୂପେ ବୋଧି ହରି ପାଦଭକ୍ତ
ଯୋଗାଧିପ ଶ୍ରୀବିଷ୍ଣୁଙ୍କଠାରେ ରଖି ଚିତ୍ତ ।
ସେନାପତିମାନଙ୍କୁ ସେ କରି ଆମନ୍ତ୍ରଣ
ପାପ ବିନାଶାର୍ଥେ କଲେ ତୀର୍ଥକୁ ଗମନ ।

=+=

## ଧୁନ୍ଧୁ ପରାଜୟ

କହିଲେ ନାରଦ ମୁନି ଆହେ ଦ୍ୱିଜବର
କହ ପ୍ରହ୍ଲାଦଙ୍କ ତୀର୍ଥ ଯାତ୍ରା ସମାଚାର ।
କେଉଁ କେଉଁ ତୀର୍ଥେଗଲେ କହ ତା ବିସ୍ତାରି
କହିଲେ ପୁଲସ୍ତ୍ୟଋଷି ଶୁଣ ତପଚାରୀ ।
କହୁଅଛି ପ୍ରହ୍ଲାଦର ତୀର୍ଥଯାତ୍ରା କଥା
ପାପ-ପଙ୍କ ପ୍ରଣାଶିନୀ ହରେ ସର୍ବ ବ୍ୟଥା ।
ପ୍ରହ୍ଲାଦ କନକାଚଳ ମେରୁ ତ୍ୟାଗ କରି
ଶୁଭଦ ମାନସ ତୀର୍ଥେ ଯାଇଁ ଅବତରି ।
ମତ୍ସ୍ୟବପୁ ଧରି ବିଷ୍ଣୁ ଯହିଁଥିଲେ ରହି
ସେହି ତୀର୍ଥବରେ ସ୍ନାନ ସାରି ଜଳ ଦେଇ ।

ପିତୃଗଣ ଦେବଗଣ ତରପଣ କଲେ
ଜଗନ୍ନାଥ ଅଚ୍ୟୁତଙ୍କୁ ବିଶେଷେ ପୂଜିଲେ ।
ଉପବାସେ ରହି ପୁଣି ଦେବ ଋଷିଗଣ
ପିତୃ ମାନବଙ୍କ ପୂଜା ସାରି ତହୁଁ ପୁଣ ।
କୌଶିକୀ ନଦୀରେ ସ୍ନାନ କରି ଜଗପତି
ଜନାର୍ଦ୍ଦନ ପୂଜାସାରି ହୋଇ ଶୁଚିବ୍ରତୀ ।
ଉପବାସେ ରହି ଦେଇ ବିପ୍ରଙ୍କୁ ଦକ୍ଷିଣ
କରାଇ ତାହାଙ୍କୁ ପୁଣି ଦାନେ ହୃଷ୍ଟମନା ।
କୂର୍ମରୂପୀ ବିଷ୍ଣୁ ପାଦେ କରି ନମସ୍କାର
ହୟମୁଖ ଦର୍ଶନାର୍ଥେ ଗଲେ କୃଷ୍ଣାତୀର ।
ଦେବହ୍ରଦେ ସ୍ନାନ କରି ତୋଷି ପିତୃଗଣ
ହୟଶୀର୍ଷପୂଜା ସାରି ହସ୍ତୀନା ଗମନ ।
ତହିଁ ସ୍ନାନକରି ପୂଜି ଦେବ ଚକ୍ରପାଣି
ତହୁଁ ଯାଇଁ ଯମୁନାରେ ସ୍ନାନକରି ପୁଣି ।
ଶୁଚିହୋଇ ତୋଷି ଋଷିଦେବ ପିତୃଗଣ
ଲୋକନାଥ ତ୍ରିବିକ୍ରମ କଲେ ଦରଶନ ।
ବୋଇଲେ ନାରଦ ମୁନି ଆହେ ଦ୍ୱିଜବର
ଜଗତ ଜନର ସ୍ୱାମୀ ବିଷ୍ଣୁ ଚକ୍ରଧର ।
ବଳିକି ଯେ ପ୍ରବଞ୍ଚନା କରିବା ନିମନ୍ତେ
ତ୍ରୈଲୋକ୍ୟେ ବିକ୍ରମଦେହ ଧରିବେ କେମନ୍ତେ ।
କି ରୂପେ ସେ ତ୍ରିବିକ୍ରମ ହେଲେ କହ ତାହା
ବାନ୍ଧିଥିଲେ କାହାକୁହିଁ ସେହି ଚଉବାହା ।
ପୁଲସ୍ତ୍ୟ କହିଲେ ଶୁଣ କହୁଛି ବିସ୍ତାରି
କଶ୍ୟପ ଔରସ ପୁତ୍ର ଧୁନ୍ଧୁ ନାମଧାରୀ ।
ଦନୁର ଗର୍ଭରେ ଜନ୍ମ ଅଟଇ ଏହାର
ବଳ ପରାକ୍ରମ ସୀମା ନାହିଁ ମହାବୀର ।
ସେହି ଧୁନ୍ଧୁ ତପ କରି ବ୍ରହ୍ମାଙ୍କୁ ତୋଷିଲା
ଇନ୍ଦ୍ରାଦି ଦେବଙ୍କୁ ମୁହିଁ ଜାଣିବି ବୋଇଲା ।
ତପେ ତୁଷ୍ଟ ହୋଇ ବ୍ରହ୍ମା ଦେଲେ ସେହିବର
ଚତୁର୍ଥ ବଳିର ଆଦ୍ୟେ ଇନ୍ଦ୍ରାଦି ଅମର ।
ଜୟ କରି ଇନ୍ଦ୍ରପଦ ନେଲା ତେତେବେଳେ
ହିରଣ୍ୟକଶିପୁ ଦୈତ୍ୟ ଥିଲା ସେହିକାଳେ ।
ଧନ୍ଧୁଙ୍କୁ ଆଶ୍ରୟ କରି ରହିଲା ମନ୍ଦରେ
ଅନ୍ୟାନ୍ୟ ଅସୁରଗଣ ଇଚ୍ଛା ଅନୁସାରେ ।
ସ୍ୱର୍ଗରେ ବିହାର କଲେ ଦେଖି ଦେବଗଣ
ଭୟେ ବ୍ରହ୍ମଲୋକେ ଯାଇଁ କଲେ ବିଚରଣ ।
ଦେବେ ବ୍ରହ୍ମପୁରେ ଥିବା ଶୁଣି ଧୁନ୍ଧୁ ବୀର
ଅସୁରଙ୍କୁ ଚାହିଁ ବୋଲେ ଆସ ମୋ ସଙ୍ଗର ।
ଚାଲ ଆମ୍ଭେ ସୈନ୍ୟ ସାଜି ବ୍ରହ୍ମଲୋକେ ଯିବା
ଇନ୍ଦ୍ରଆଦି ଦେବତାଙ୍କୁ ଯୁଦ୍ଧରେ ଜିଣିବା ।
ଧୁନ୍ଧୁ କଥା ଶୁଣି ଦୈତ୍ୟେ କହିଲେ ଏମନ୍ତ
ଆହେ ଲୋକପାଳଆମ୍ଭେ ଯିବା ବା କେମନ୍ତ ।
ବ୍ରହ୍ମଲୋକେ ଯିବା ଗତି ନାହିଁ ଯେ ଆମ୍ଭର
ଅତିଶୟ ସୁଦୁର୍ଗମ ଯିବା ପଥ ତାର ।
ଏଥୁ ମହର୍ଲ୍ଲୋକ ବହୁ ସହସ୍ର ଯୋଜନେ
ତହିଁ ବାସ କରିଛନ୍ତି ଯେଉଁ ଋଷିମାନେ ।
ତାହାଙ୍କ କଟାକ୍ଷପାତ ମାତ୍ରେ ଯିବା ଜଳି
ତହୁଁ କୋଟି ଯୋଜନରେ ଜନଲୋକ ସ୍ଥଳି ।
ସେଠାରେ ଗୋମାତାମାନେ କରିଛନ୍ତି ବାସ
ଦୈତ୍ୟ କେହି ନାହିଁ ତାଙ୍କୁ କରିବା ବିନାଶ ।
ସତ୍ୟଲୋକ ତହୁଁ ତ୍ରିଂଶକୋଟି ଯୋଜନରେ
ସହସ୍ର ଆଦିତ୍ୟ ପ୍ରାୟତେଜ ସେ ବିସ୍ତାରେ ।
ଯେଉଁ ବ୍ରହ୍ମା ତୁମ୍ଭଙ୍କୁଟି ଦେଇଥିଲେ ବର
ସେହି ପୁର ବାସସ୍ଥାନ ଜାଣ ତାହାଙ୍କର ।
ଯାର ବେଦଧ୍ୱନି ଶୁଣି ବିକଶତ ସୁରେ
ତାହାଙ୍କର ସହଧର୍ମା ଅଟନ୍ତି ଅସୁରେ ।
ସଙ୍କୁଚିତ ହୁଅନ୍ତି ଯେ ଅନ୍ୟାନ୍ୟ ପୁରୁଷେ
ଏଣୁ ଆପଣଙ୍କୁ ଆମ୍ଭେ ବୋଲୁଛୁଁ ବିଶେଷେ ।
ଆହେ ଧୁନ୍ଧୁ ଏହି ବୁଦ୍ଧି ଛାଡ଼ କିନା ତୁମ୍ଭେ
ବୈରାଜ ଭୁବନେ ଯାଇ ନ ପାରିବୁ ଆମ୍ଭେ ।
ଧୁନ୍ଧୁ ତାଙ୍କ କଥା ଶୁଣି ପଚାରିଲା ତାଙ୍କୁ
ଇଚ୍ଛା ଅଛି ମୋର ବ୍ରହ୍ମ ସଦନେ ଯିବାକୁ ।
ଦାନବେନ୍ଦ୍ରଗଣ କହ କଲେ କେଉଁ କର୍ମ
ବ୍ରହ୍ମସଦନକୁ ଯିବି କଲେ କିବା ଧର୍ମ ।
ଦେବଗଣ ସହ ଇନ୍ଦ୍ର ଯିବେ କି ଉପାୟେ
ଏହିରୂପେ ପଚାରନ୍ତେ ଧୁନ୍ଧୁ ଦୈତ୍ୟରାୟେ ।
ଦାନବେ କହିଲେ ତାହା ଜାଣିନାହୁଁ ଆମ୍ଭେ
ପଚାରିଲେ ଶୁକ୍ରାଚାର୍ଯ୍ୟ ଅବଶ୍ୟ କହିବେ ।
ଦୈତ୍ୟଙ୍କ ବଚନେ ଧୁନ୍ଧୁ ଗୁରୁଙ୍କୁ ପଚାରେ
କି କର୍ମ କଲେ ମୁଁ ବ୍ରହ୍ମପୁରେ ଯାଇପାରେ ।
ଶୁକ୍ର ଇନ୍ଦ୍ର ପୂର୍ବକଥା କହିଲେ ବୁଝାଇ
ପୂର୍ବେ ସେହି ସହସ୍ରାକ୍ଷ ସୁରପୁର - ସାଇଁ ।

ଏକଶତ ଏକ ଅଶ୍ୱମେଧ ଯଜ୍ଞ କଲେ
ସେହି ଧର୍ମକର୍ମେ ବ୍ରହ୍ମପୁରକୁ ସେ ଗଲେ ।
ଶୁକ୍ରାଚାର୍ଯ୍ୟ କଥାଶୁଣି ଦାନବ ରାଜନ
ଅଶ୍ୱମେଧ ଅନୁଷ୍ଠାନେ ବଳିଲା ତା ମନ ।
ଆଚାର୍ଯ୍ୟ ଦାନବଗଣ ଅନୁମତି ଘେନି
ବୋଇଲା ଆଚାର୍ଯ୍ୟ ହେବେ ଯଜ୍ଞେ ଶୁକ୍ରମୁନି ।
ବିଶେଷ ଦକ୍ଷିଣା ଦେବି ମୁହିଁ ଏ ଯଜ୍ଞରେ
ଏଣୁ ସର୍ବେ ଯିବ ଆସ ପୃଥିବୀ ମଧରେ ।
ରାଜାଙ୍କ ନିକଟେ ଯାଇଁ ଏକଥା କହିବ
ସୁଲକ୍ଷଣ ଶତଅଶ୍ୱ ଖୋଜିଣ ଆଣିବ ।
ନିଧି ଆଉ ଗୁହ୍ୟକଙ୍କୁ ଆଣିବ ଯେ ଡାକି
ପ୍ରଧାନ ପ୍ରଧାନ ଦେଖିଆଣ ଦ୍ୱିଜାଉଙ୍କି ।
ଦେବୀକା ତଟକୁ ସର୍ବେ କରିବ ଗମନ
ପରମ ପବିତ୍ର ବୋଲି ବିଖ୍ୟାତ ସେ ସ୍ଥାନ ।
ସର୍ବସିଦ୍ଧି ପ୍ରସବିନୀ ସରିଦ୍‌ବରା ସେହି
ସେ ପ୍ରାଚୀନସ୍ଥାନେ ଯଜ୍ଞ କରିବା ଯେ ରହି ।
ଅସୁର ଯାଜକ ଶୁକ୍ର ଧୁନ୍ଧୁ କଥା ଶୁଣି
ସମ୍ମତ ହୋଇଲେ ହର୍ଷ ପ୍ରକାଶି ସେ ପୁଣି ।
ପଣ୍ଡିକା ତୀର୍ଥରେ ପୁଣ୍ୟସ୍ଥାନେ ଦୈତ୍ୟନାଥ
ଉଶନା ଆଦେଶେ ହେଲେ ଯଜ୍ଞରେ ଦୀକ୍ଷିତ ।
ଭାର୍ଗବ ବଂଶରେ ଜାତ ଯେତେ ଦ୍ୱିଜଗଣ
ଶୁକ୍ରଙ୍କର ଶିଷ୍ୟ ଆଉଅନ୍ୟ ବିଦ୍ୱଜନ ।
ଯଜ୍ଞରେ ସଦସ୍ୟ ହେଲେ ଶୁକ୍ର ଅନୁମତେ
ସ୍ୱର୍ଭାନୁ ଅସୁରଆଦି ଅସୁରହିଁ ଯେତେ ।
ଶୁକ୍ର ଆଜ୍ଞା ଅନୁସାରେ ହେଲେ ଯଜ୍ଞଭାଗୀ
ଅଶ୍ୱ ଛାଡ଼ିଦେଲେ ସୈନ୍ୟ ପଛେ ପଛେ ଲାଗି ।
ଅସିଲୋମା ହେଲାସେନା ଅଶ୍ୱର ରକ୍ଷକ
ଯଜ୍ଞ ଅଗ୍ନିଧୂମେ ପୂର୍ଣ୍ଣହେଲା ଅନ୍ତରୀକ୍ଷ ।
ପର୍ବତ ପୃଥିବୀ ଦିଗ ବ୍ୟାପିଗଲା ଧୂମ
ବାୟୁଯୋଗୁ ବ୍ୟାପିଲା ସେ ବନସ୍ପତି ଦ୍ରୁମ ।
ସେ ଉଗ୍ରଗନ୍ଧକୁ ଘେନି ପବନ ଚଳିଲା
ଆକାଶମାର୍ଗରେ ବ୍ରହ୍ମ ଲୋକରେ ମିଳିଲା ।
ସୁରଗଣ ସେହି ଗନ୍ଧ କରିଣ ଆଘ୍ରାଣ
ଜାଣିଲେ ହୋଇଛି ଧୁନ୍ଧୁ ଯଜ୍ଞପରାୟଣ ।
ଭୟପାଇ ବ୍ରହ୍ମା ସହ ଇନ୍ଦ୍ରାଦି ଅମରେ
ଶରଣ ପଶିଲେ ବିଷ୍ଣୁ ଶ୍ରୀରଙ୍ଗାପୟରେ ।
ନମସ୍କାର କରି ଭୟଗଦ୍‌ଗଦ ବଚନେ
ବୋଇଲେ ହେ ତ୍ରିଜଗନ୍ନାଥ ଜନାର୍ଦ୍ଦନେ ।
ଆର୍ତ୍ତବିନାଶନ ପ୍ରଭୁ ଆମ୍ଭକଥା ଶୁଣ
ଧୁନ୍ଧୁନାମେ ମହାବଳ ଦନୁର ନନ୍ଦନ ।
ମହାସୁର ବଳଘେନି ଜିଣିଲା ସମରେ
ତ୍ରୈଲୋକ୍ୟ ହରଣକଲା ବ୍ରହ୍ମାଙ୍କର ବରେ ।
ଭୟେ ଆମ୍ଭେ ବ୍ରହ୍ମଲୋକେ ଲୁଚିଛୁ ଗୋସାଇଁ
ତୁମ୍ଭବିନା ରକ୍ଷାକର୍ତ୍ତା ଆଉ କେହି ନାହିଁ ।
ବ୍ରହ୍ମଲୋକ ଜୟକାମୀ ହୋଇ ସେ ସଂପ୍ରତି
ଶତ ଅଶ୍ୱମେଧ ଯଜ୍ଞ କଲେ ଆମ୍ଭ ପ୍ରତି ।
ଦୟାକରି ଯଜ୍ଞନାଶ କର କି ଉପାୟେ
ନୋହିଲେ ଆମ୍ଭଙ୍କୁ ସେହି ମାରିବ ନିଶ୍ଚୟେ ।
ଦେବଗଣ ଦୁଃଖଦେଖି ଶ୍ରୀମଧୁସୂଦନ
ବୋଇଲେ ଅଭୟ ଦେଲି ଯାଅ ନିଜସ୍ଥାନ ।
ଏହା କହି ଭାବଗ୍ରାହୀ ଭବଭୟହର
ବିଚାରିଲେ ଧର୍ମଧ୍ୱଜ ଧୁନ୍ଧୁ ମହାବୀର ।
ତା ସଙ୍ଗେ ଯୁଝିଲେ ତାକୁ ନ ପାରିବ ଜିଣି
ଏମନ୍ତ ମନରେ ଭାଳି ପ୍ରଭୁ ଚକ୍ରପାଣି ।
ବାମନ ରୂପରେ ତାକୁ କରିବି ବନ୍ଧନ
ଏମନ୍ତ ବିଚାରି ପ୍ରଭୁ ଶ୍ରୀ ମଧୁସୂଦନ ।
ବେଦୀକା ସଲିଳେ ପଶି କେଶକୁ ଫିଟାଇ
ସ୍ନାନକଲେ ବାରମ୍ବାର କମଳାର ସାଇଁ ।
କାଷ୍ଠପରି ବୁଡ଼ନ୍ତି ସେ ଉପୁଚାଇ ଜଳେ
ବାମନରୂପକୁ ଧରିଛନ୍ତି କୁତୂହଳେ ।
ଦୈତ୍ୟଗଣ ଋଷିଗଣ ଦେଖି ଏ ଘଟଣା
ଧାଇଁଗଲେ ଯଜ୍ଞ ତେଜି ହୋଇଣ ଉନ୍ମନା ।
ସଦସ୍ୟ ଋତ୍ୱିଗଗଣ ମିଳିତ ହୋଇଣ
ବୁଡ଼ିଯାଉଥିବା ସେହି ବାମନ ବ୍ରାହ୍ମଣ ।
ଉଦ୍ଧାରି ସ୍ଥଳରେ ରଖି କରାଇଲେ ସୁସ୍ଥ
ହୋଇଣ ସକଳ ଜନ ତା ଦୁଃଖେ ଦୁଃଖିତ ।
ପଚାରିଲେ କହ ବିପ୍ର ଏହାର କାରଣ
ଜଳରେ ପକାଇ ଦେଲା କେଉଁ ନିଦାରୁଣ ।
କମ୍ପମାନ କଳେବର କହନ୍ତି ବାମନ
ଯେମନ୍ତେ ବୁଡ଼ିଲି ଶୁଣ ହୋଇ ସାବଧାନ ।
ପ୍ରଭାସ ନାମରେ ଖ୍ୟାତ ସୁଗୁଣ ବ୍ରାହ୍ମଣ
ବରୁଣ ଗୋତ୍ରୀ ସେ ବିଜ୍ଞ ଶାସ୍ତ୍ରାର୍ଥ ନିପୁଣ ।

ତାହାଙ୍କର ଦୁଇପୁତ୍ର ତା ମଧ୍ୟେ ମୁଁ ସାନ
ମନ୍ଦଭାଗ୍ୟ ଦୁଃଖଭୋଗୀ ଆମ୍ଭେ ବେନିଜନ ।
ଜ୍ୟେଷ୍ଠ ଭାଇ ନାମ ମୋର ଅଟେ ନେତ୍ରଭାସ
କୌତୁକେ ମୋ ନାମପିତା ଦେଲେ ଗତିଭାସ ।
ସ୍ୱର୍ଗୀୟ ଦେବତା ତୁଲ୍ୟ ପରମ ଶୋଭନ
ମୋର ପିତା ରମଣୀୟ ସୁଗୁଣ ସମ୍ପନ୍ନ ।
କାଳବଶେ ପରଲୋକେ ଗଲେ ଦୁଇଭାଇ
ତାଙ୍କୁ ଶୁଦ୍ଧ ହେଲୁଁ ଶୋକେ ଜଳପିଣ୍ଡ ଦେଇ ।
କ୍ରିୟା ଶେଷେ କହିଲି ମୁଁ ଭାଇକି ମୋହର
ମୋର ଭାଗ ବାଣ୍ଟିଦିଅ ମୁଁ କରିବି ଘର ।
ସେ ବୋଇଲେ ଧନେଘରେ ତୋର ଭାଗ ନାହିଁ
କାହିଁକି ନା କୁବୁଜ ଖଞ୍ଜ କ୍ଳୀବ କୁଷ୍ଠୀ ଯେହି ।
ଉନ୍ମତ୍ତ ବାମନ ଅନ୍ଧ ନ ପାନ୍ତି ଏ ଭାଗ
ଘରେ ରହି ପାଉଥିବେ ହାତଟେକା ଭାଗ ।
ପିନ୍ଧିବା ବସନ ଖଣ୍ଡେ ହାତଟେକା ପାଣି
ବଞ୍ଚିଥିବା ଯାଏ ଆମ୍ଭେ ଦେଉଥିବୁ ଆଣି ।
ଏହା ଶୁଣି ବୋଇଲି ମୁଁ କହୁଛ ଯା ଭାଇ
କେଉଁ ଶାସ୍ତ୍ର ଅନୁସାରେ ଭାଗ ମୁଁ ନ ପାଇ ।
ପିତୃ ଧନରୁ ଯେ ପୁତ୍ର ଭାଗ ନ ପାଇବ
ଯାହା କି କହୁଛ ଭାଇ ଏତ ଅସମ୍ଭବ ।
କୋପେ ଧାଇଁ ଆସିମୋର କେଶ ଧରିବଳେ
ବୁଲାଇ ପକାଇ ଦେଲା ଆଣି ନଦୀଜଳେ ।
ପହଁରି ନ ଜାଣେ ମୁହିଁ ତେଣୁ ବୁଡ଼ିଗଲି
ଭାସି ଭାସି ଆସି ପୁଣି ଏଠାରେ ଲାଗିଲି ।
ବରଷିକ ପରେ ତୁମ୍ଭେ ଆଣିଲ ଉଦ୍ଧାରି
ତୁମ୍ଭେ କିଏ ସ୍ନେହମୟ ବାନ୍ଧବଙ୍କ ପରି ।
ଏଠାକୁ ଆସିଲ ତୁମ୍ଭ ମଧ୍ୟେ ଏହି କିଏ
ସାକ୍ଷାତରେ ଦେଖି ଇନ୍ଦ୍ର ତୁଲ୍ୟ ଦେଖାଯାଏ ।
ତୁମ୍ଭେମାନେ ଦିଶୁଅଛ ମହର୍ଷି ସଦୃଶ
ମୋଠାରେ ସୁଦୟା କରି ହରିଲ ମୋ ତ୍ରାସ ।
ବାମନ ବ୍ରାହ୍ମଣ କଥା ଶୁଣି ଦ୍ୱିଜଗଣ
କହିଲେ ଯେ ଆମ୍ଭେମାନେ ଭାର୍ଗବ ବ୍ରାହ୍ମଣ ।
ଏହି ଜାଣ ଦୈତ୍ୟରାଜ ଧୁନ୍ଧୁନାମେ ଖ୍ୟାତ
ମହାସୁରଗଣ ଏହି ମହାତେଜୋବନ୍ତ ।
ଯଜ୍ଞ କର୍ମେ ଦୀକ୍ଷିତ ଯେ ଏହି ମହୀପତି
ଦାତା ଭୋକ୍ତା ବାର୍ତ୍ତା ବୋଲି ଜଗତେ ବିଖ୍ୟାତି ।

ଭାର୍ଗବ ବଂଶୀୟ ବିପ୍ରେ ଏହିରୂପେ କହି
ସକଳେ ମିଳିତ ହୋଇ ନୃପତିକି ଚାହିଁ ।
ବୋଇଲେ ଏ ବାମନକୁ ଦିଅ ଖଣ୍ଡେ ଘର
ସର୍ବ ଉପକରଣାଦି ଦାସୀ ରତ୍ନସାର ।
ଦ୍ୱିଜଙ୍କ ବଚନ ଶୁଣି ଧୁନ୍ଧୁ ଦୈତ୍ୟପତି
ବାମନକୁ କହିଲେ ହେ ଦ୍ୱିଜେନ୍ଦ୍ର ସନ୍ତତି ।
ଯେ ଧନ ମାଗିବ ମୋତେ ତାହା ମୁହିଁ ଦେବି
ସତ୍ୟ କରି କହୁଅଛି ଆନ ନ କରିବି ।
ଦାସ ଦାସୀ ଗୃହ ସ୍ୱର୍ଣ୍ଣ ଅଶ୍ୱ ରଥ ଗଜ
ଗୋରୁ ଭୂମି ଛତ୍ର ବସ୍ତ୍ର ଆଦି କିବା ରାଜ୍ୟ ।
ଏଥିରୁ ମାଗିବୁ ଯାହା ଦେବଇଁ ଅବଶ୍ୟ
ନିଶ୍ଚୟ କରିବି ମୁହିଁ ତୋ ଦୁର୍ଦ୍ଦଶା ନାଶ ।
ଦାନବପତିର କଥା ଶୁଣି ସେ ବାମନ
କହେ ମୋ ପ୍ରାର୍ଥନା ଶୁଣ ଦାନବ ରାଜନ ।
ବୋଇଲେ ମୋ ଭାଇ ହରି ନେଲା ମୋ ସମ୍ପତ୍ତି
ତହିଁରେ କି ପ୍ରୟୋଜନ ଅଛି ହେ ଭୂପତି ।
ଧନ ମୋର କି ହୋଇବ ଆହେ ମହାଭୁଜ
ଦାସ ଦାସୀ ଭୃତ୍ୟ ଗୃହ ରତ୍ନ ବସ୍ତ୍ର ରାଜ୍ୟ ।
ଶକ୍ତିମନ୍ତ ଦ୍ୱିଜେନ୍ଦ୍ରଙ୍କୁ କରନ୍ତୁ ପ୍ରଦାନ
ମୋହର ପ୍ରମାଣ ତୁମ୍ଭେ କରି ବିଲୋକନ ।
ତିନିପାଦ ଭୂମିଦାନ କରନ୍ତୁ ଦୈତ୍ୟଶ
ଏହା ଶୁଣି ଧୁନ୍ଧୁ ଦୈତ୍ୟ କରି ଉଚ୍ଚହାସ୍ୟ ।
କରେ ଜଳ ତିଳ ଧରି କଲେ ଭୂମିଦାନ
ତିନିପାଦ ଭୂମିପାଇଁ ଶ୍ରୀମଧୁସୂଦନ ।
ଧଇଲେ ଶଶାଙ୍କ ପରି ତ୍ରିବିକ୍ରମ ମୂର୍ତ୍ତି
କ୍ଷଣକେ ଲଙ୍ଘିଲେ ତିନିଭୁବନ ଝଟତି ।
ଅନନ୍ତ ଶକତି ସେହି ଶ୍ରୀବିଷ୍ଣୁ ବାମନ
ପ୍ରଥମ ପାଦରେ କଲେ ଦୈତ୍ୟଙ୍କୁ ଦଳନ ।
ଋଷିଙ୍କି ପ୍ରଣାମ କରି ପର୍ବତ ସାଗର
ହରିଲେ ପତନ ପୃଥ୍ୱୀ ସହ ରତ୍ନାକର ।
ସର୍ବଲୋକେଶ୍ୱର ସେହି ଶ୍ରୀବିଷ୍ଣୁ ବାମନ
ଦ୍ୱିତୀୟ ପାଦରେ କଲେ ସ୍ୱର୍ଗ ଆକ୍ରମଣ ।
ଚନ୍ଦ୍ର ସୂର୍ଯ୍ୟ ଗ୍ରହ ତାରା ଦେବଙ୍କ ନିବାସ
କ୍ଷଣକେ ହରଣ କଲେ ସମସ୍ତ ଆକାଶ ।
ଯେ ଦ୍ୱିତୀୟ ପଦ ହେଲା ଗାଭୀରୁ ବାହାର
ତାହାପାଇଁ ସ୍ଥାନ ନାହିଁ ଦେଖି ଦାମୋଦର ।

ଧୁନ୍ଧୁ ଦୈତ୍ୟ ପୃଷ୍ଠ ଦେଶେ ରଖି ରୋଷଭରେ
ମାଡ଼ିବସିଲେ ସେ ମେରୁ ତୁଲ୍ୟ କଳେବରେ ।
ତିରିଶି ଯୋଜନ ଭୂମି ଗର୍ତ୍ତକରି ତହିଁ
ସେ ଗର୍ତ୍ତେ ପକାଇ ତାଙ୍କୁ ପୂର୍ଣ୍ଣକଲେ ଭୂଇଁ ।
ବାସବଙ୍କୁ ସ୍ୱର୍ଗପଦ ଦେଇ ତ୍ରିବିକ୍ରମ
ନିରୂପଦ୍ରବରେ କଲେ ଅମରେ ବିଶ୍ରାମ ।
ବାଲୁକାରେ ପୂର୍ଣ୍ଣକରି ଗର୍ତ୍ତକୁ ଶ୍ରୀହରି
କାଳିନ୍ଦୀରେ ତ୍ରିବିକ୍ରମ ରୂପେ ବିଜେକରି ।
ତହୁଁ ଅନ୍ତର୍ଦ୍ଧାନେ ଗଲେ ପ୍ରଭୁ ଭଗବାନ
ସେ ବାମନ ପଦ ଭଜେ ଗୋପୀନାଥ ଦୀନ ।

=✢=

## ପୁରୁରବା ଉପାଖ୍ୟାନ

କହିଲେ ପୁଲସ୍ତ୍ୟ ଋଷି ଶୁଣ ହେ ନାରଦ
କାଳିନ୍ଦୀରେ ସ୍ନାନକରି ମହାତ୍ମା ପ୍ରହ୍ଲାଦ ।
ତ୍ରିବିକ୍ରମ ପୂଜି ରାତ୍ରେ ଉପବାସେ ରହି
ଲିଙ୍ଗଭେଦ ପରବତେ ମିଳିଲେ ସେ ଯାଇ ।
ତହିଁ ସ୍ନାନକରି ଶିବ ପୂଜି ଭକତିରେ
ରାତ୍ରେ ରହି ତହୁଁ ଯାଇ କେଦାର ତୀର୍ଥରେ ।
ସ୍ନାନକରି ଜଗପତି ଆରାଧିଲେ ତହିଁ
ସାତଦିନ ରହି ଯାଇ କୁବ୍‌ଜାଗ୍ରରେ ରହି ।
ଉପବାସୀ ଜିତେନ୍ଦ୍ରିୟ ହୋଇ ଭକତିରେ
ବାସୁଦେବ ପୂଜାବିଧି ସାରି ତଦୁତ୍ତାରେ ।
ତହୁଁ ଯାଇ ବଦରିକା ଶ୍ରମରେ ମିଳିଲେ
ଭକତିରେ ନାରାୟଣ ଦେବଙ୍କୁ ପୂଜିଲେ ।
ସରସ୍ୱତୀ ଜଳେ ସ୍ନାନ କରି ତହୁଁ ଗଲେ
ବରାହ ତୀର୍ଥରେ ଯାଇଁ ଉପଗତ ହେଲେ ।
ସେ ସ୍ଥାନେ ଦର୍ଶନ କରି ଗରୁଡ଼ ବାହନ
ପରମ ଭକ୍ତିରେ କରି ତାଙ୍କୁ ଆରାଧନ ।
ତହୁଁ ଯାଇ ଭଦ୍ରକର୍ଣ୍ଣେ ଶଶି ଶେଖରଙ୍କୁ
ପୂଜାକରି ତହୁଁ ପୁଣି ଗଲେ ପିପାସାକୁ ।
ତହିଁ ସ୍ନାନ ସାରି ଭଗବାନ ପୂଜାକରି
ତହୁଁ ଗଲେ ଯହିଁ ଇରାବତୀ ନଦୀ ବାରି ।
ସ୍ନାନସାରି କଲେ ବାସୁଦେବଙ୍କୁ ଦର୍ଶନ
ପରମ ଭକ୍ତିରେ କଲେ ତାହାଙ୍କୁ ପୂଜନ ।
ପରମ ଐଶ୍ୱର୍ଯ୍ୟ ଲାଭ କରି ତହୁଁ ଗଲେ
ଭୃଗୁ କୁଷ୍ଠରୋଗେ ଯାଇ ସ୍ନାନ ସମ୍ପାଦିଲେ ।

ଜଗପତି ଆରାଧନା ସେହିସ୍ଥାନେ କଲେ
ଅତୁଳ ଆରୋଗ୍ୟ ପାଇ ସନ୍ତତି ଲଭିଲେ ।
କହିଲେ ନାରଦମୁନି ଆହେ ଦ୍ୱିଜବର
ପୁରୁରବା ବିଷ୍ଣୁ ପୂଜା କରି କି ପ୍ରକାର ।
ବିରୂପ ସ୍ୱରୂପ ତେଜି ହୋଇଲେ ସୁନ୍ଦର
କହିଲେ ପୁଲସ୍ତ୍ୟ ମୁନି ନାରଦ ଆଗର ।
ତ୍ରେତାଯୁଗ ଆଦ୍ୟେ ଯାହା ଘଟିଅଛି ଶୁଣ
ଯେ କଥାର ମହାପାପ-ପ୍ରଣାଶନ ଗୁଣ ।
ମଦ୍ରଦେଶ ନାମେ ଏକ ବ୍ରାହ୍ମଣ ଶାସନ
ଶାକଳ ସେ ନଗରୀର ନାମ ତପୋଧନ ।
ସେ ନଗରେ ଧର୍ମନାମେ ବଣିକର ଘର
ଧନାଢ଼୍ୟ ବାଣିଜ୍ୟକାରୀ ଗୁଣୀ ସେହି ନର ।
ଦିନେ ନାନା ଦ୍ରବ୍ୟ ଘେନି ସଉରାଷ୍ଟ୍ରେ ଗଲା
ବାଟେ ଯାଉଁ ଯାଉଁ ମରୁ ଭୂମିଏ ଦେଖିଲା ।
ସେ ଭୂମି ମଧ୍ୟରେ ବେଳବୁଡ଼ି ହେଲା ରାତି
ଚୋରମାନେ ହରିନେଲେ ତା ସର୍ବସମ୍ପତ୍ତି ।
ଏକାଳେ ବଣିକ ଉନମତ୍ତ ପରି ଯାଏ
ଅରଣ୍ୟ ପ୍ରାନ୍ତରେ ଯାଇ ମିଳୁ ଏ ସମୟେ ।
ସୁବିଶାଳ ଶମିତରୁ ହୋଇଲା ଉତ୍ପନ୍ନ
ସେ ବୃକ୍ଷରେ ନାହାନ୍ତି ଯେ ମୃଗପକ୍ଷୀ ଗଣ ।
ସେ ବଣିକ ଶ୍ରମପାଇ କ୍ଷୁଧା ତୃଷାତୁରେ
ଶମୀ ତରୁ ଦେଖି ବସି ତାହାର ମୂଳରେ ।
ବସୁ ବସୁ ନିଦ୍ରା ଆଦି ଘାରିଲା ନୟନେ
ମଧ୍ୟାହ୍ନେ ଭାଙ୍ଗିଲା ନିଦ୍ରା ବସିଲା ସେ ସ୍ଥାନେ ।
ଦେଖିଲା ସେ ଆସୁଅଛି ଏକ ମହାପ୍ରେତ
ଚାରିଦିଗେ ବେଢ଼ିଛନ୍ତି ପ୍ରେତ ଶତ ଶତ ।
କେତେ ପ୍ରେତ ବହିଛନ୍ତି ପ୍ରେତ ନାୟକଙ୍କୁ
ରୁକ୍ଷଦେହେ କେହି ଧାଇଁଯାନ୍ତି ଅଗ୍ରତକୁ ।
ସକଳ ପୃଥିବୀ ଭ୍ରମି ଆସି ପ୍ରେତପତି
ଶମୀବୃକ୍ଷ ମୂଳେ ଦେଖେ ବଣିକ-ସନ୍ତତି ।
ତାହାକୁ ସେ ପ୍ରେତ ସ୍ତୁତି ସମ୍ଭାଷଣ କରି
ବୃକ୍ଷ ଛାୟାତଳେ ବସି ପଥଶାନ୍ତି ହରି ।
ଅନନ୍ତର ବଣିକଙ୍କୁ ପଚାରିଲା ସଖେ
କେଉଁଠାରୁ ଆସି ଏଥେ ବସିଅଛ ଦୁଃଖେ ।
କାହିଁ ତୁମ୍ଭଘର ତୁମ୍ଭେ ଅଇଲ କେମନ୍ତେ
ବିସ୍ତାରି ଏ ସବୁ କଥା କହ ମୋ ଅଗ୍ରତେ ।

ତୁମ୍ଭର ମଙ୍ଗଳ ହେଉ ହେ ପଥିକ ଭାଇ
ପଚାରନ୍ତେ ସେ ବଣିକ ସଂକ୍ଷେପେ କହଇ ।
ବାଟରେ ଯେମନ୍ତେ ତାର ହେଲା ଧନନାଶ
ସେ ବୃତ୍ତାନ୍ତ ତାହାଠାରୁ ଶୁଣି ପ୍ରେତଈଶ ।
ତା ଦୁଃଖେ ଦୁଃଖିତ ହୋଇ ସ୍ୱବନ୍ଧୁ ପରାୟ
କହିଲା ହେବାର ଯାହା ହେଲା ସେ ନିଶ୍ଚୟ ।
ତାହାପାଇଁ ଶୋକକଲେ ଆସିବ କି ସେହି
ତୋର ଭାଗ୍ୟବଳ ଥିଲେ ଅର୍ଜିବୁନା ତୁହି ।
ଭାଗ୍ୟକ୍ଷୟ ଅର୍ଥକ୍ଷୟ ହୁଅଇ ନିଶ୍ଚୟ
ଅଭ୍ୟୁଦୟେ ପୁନରପି ହୁଅଇ ସଞ୍ଚୟ ।
ଚିନ୍ତାକଲେ କେବଳ ଏ ଦେହ ହେବ କ୍ଷୀଣ
ପ୍ରେତପତି ଏହାକହି ଡାକି ଭୃତ୍ୟଗଣ ।
ବୋଇଲେ ଏ ଅତିଥି ସହଜ ଦେଶଜ
ଏହାର ସତ୍କାର ଆମ୍ଭେ କରିବା ଯେ ଆଜ ।
ଏହି ବଣିକର ଦେଖାହେବାରୁ ମୋହର
ବାନ୍ଧବବର୍ଗ କି ହେଲା ମୋ ଦୃଷ୍ଟି ଗୋଚର ।
ଏହାଙ୍କୁ ଦେଖିଣ ମନେ ଜାତହୁଏ ପ୍ରୀତି
ଏମନ୍ତ କରିବା କାଳେ ସେହି ପ୍ରେତପତି ।
ଅତିଦୃଢ଼ ଅଭିନବ ମୃଣ୍ମୟ ଭାଜନ
ତହିଁରେ ଯେ ପୂର୍ଣ୍ଣ ହୋଇ ଅଛି ଦଧ୍ୟୋଦନ ।
ଆପଣା ଇଚ୍ଛାରେ ଆସି ମିଳିଲା ସେଠାରେ
ଅଭିନବ ଜଳପାତ୍ର ତାର ସଙ୍ଗତରେ ।
ନିର୍ମଳ ସଲିଳ ପୂର୍ଣ୍ଣ ହୋଇଛି ସେ ପାତ୍ରେ
ଦେଖି ପ୍ରେତପତି କହେତାହିଁ ବୈଶ୍ୟପୁତ୍ରେ ।
ତୁମ୍ଭର ଆହ୍ନିକ ବିଧି ବେଗେ ଯାଇ ସାର
ବଣିକ ଆହ୍ନିକ ବିଧି ସାରିଲା ସତ୍ୱର ।
ପ୍ରେତପତି ବଣିକକୁ ନେଇ ଦଧ୍ୟୋଦନ
ବାଣ୍ଟିଦେଲା ଯେତେ ତହିଁଥିଲେ ପ୍ରେତଗଣ ।
ସେମାନେ ଭୋଜନ ପାନ କଲାପରେ ଆପେ
ଅବଶିଷ୍ଟ ଦଧ୍ୟୋଦନ ଭୁଞ୍ଜିଲା ସ୍ୱରୂପେ ।
ବାରିପାତ୍ର ଅନ୍ନପାତ୍ର ଗଲା ଅନ୍ତର୍ଦ୍ଧାନେ
ଅଦ୍ଭୁତ ଘଟଣା ଦେଖି ବଣିକ ନୟନେ ।
କୁତୁହଳ ଚିତ୍ତେ ପ୍ରେତପତିକି ପଚାରେ
ନିର୍ଜନ କାନନେ ଅନ୍ନ ଆସେ କି ପ୍ରକାରେ ।
କିରୂପେ ନିର୍ମଳ ଜଳ ପୂର୍ଣ୍ଣ ବାରିଧାନୀ
ଆସଇ ଏକଥା ମୋତେ କହ ମହାଜ୍ଞାନୀ ।

ତୁମ୍ଭ ଭୃତ୍ୟଗଣ କିମ୍ବା ତୁମ୍ଭଠାରୁ ସରୁ
ହୃଷ୍ଟପୁଷ୍ଟ ଦେହ କିମ୍ବା ତୁମ୍ଭେ ତାଙ୍କଠାରୁ ।
ତେଜୋବନ୍ତ ଅଟ ପୁଣି ପରମ ସୁନ୍ଦର
ଶୁକ୍ଳବସ୍ତ୍ର ପରିଧାନ କରିଛ ଆବର ।
ବହୁତ ଲୋକଙ୍କୁ ତୁମ୍ଭେ କରୁଛ ପାଳନ
ଏହି ଶୀମତରୁ କିଏ କରନ୍ତୁ ବର୍ଣ୍ଣନ ।
ଏହାଶୁଣି ପ୍ରେତପତି ପୂର୍ବର ବୃତ୍ତାନ୍ତ
କହିବାକୁ ଆରମ୍ଭିଲେ କରି ଆଦ୍ୟପ୍ରାନ୍ତ ।
ସାକଳ ନାମରେ ଯେଉଁ ପ୍ରଧାନ ନଗର
ତହିଁ ମୋର ଘରନାମ ସୋମଶର୍ମା ମୋର ।
ବହୁଳା ଗର୍ଭରୁ ମୁହିଁ ହୋଇଅଛି ଜାତ
ପ୍ରତିବାସୀ ଥିଲା ମୋର ବଣିକର ସୁତ ।
ତାର ନାମ ସୋମଶ୍ରମା ସେହି ମହାଧନ
ଯଶୋବନ୍ତ ବିଷ୍ଣୁଭକ୍ତ ଅଟେ ସେହି ଜନ ।
ଯେଉଁପରି କଦର୍ଯ୍ୟ ମୁଁ ମୂଢ଼ାତ୍ମା ତେସନ
ଦୁର୍ମତି ହେବାରୁ ବିପ୍ରେ ନ ନିଅଇ ଦାନ ।
ଆପେ ଦିନେ ଭଲକରି ନକରେ ଆହାର
ଯଦ୍ୟପି ପ୍ରମଦବଶେ ଦିନେ ଦଧି କ୍ଷୀର ।
ଘୃତଯୁକ୍ତ ଅନ୍ନମୁହିଁ କରଇ ଭୋଜନ
ଯଷ୍ଟିତ୍ରୟ ରାତ୍ରେ କରେ ଭୀଷଣ ତାଡ଼ନ ।
ମୃତ୍ୟୁତୁଲ୍ୟ ବିସୂଚିକା ପ୍ରଭାତେ ହୁଅଇ
କେହି ମୋର ନିକଟରେ ରହି ନପାରଇ ।
ଏହିପରି କଷ୍ଟେପ୍ରାଣ କରଇ ଧାରଣ
ଏହିପରି ପାପୀମୁହିଁ ଘୃଣାଶୂନ୍ୟ ଜାଣ ।
ସଉବୀର ତିଳପିଣ୍ଡ ଖାଦ୍ୟଶାକ ତୁଷ
କଦନ୍ନ ଭକ୍ଷଣ କରି ଯାଏ ଦିନମାସ ।
ବହୁତ ବରଷ ଗତପରେ ଦିବାନିଶି
ଭାଦ୍ରପଦ ମାସେ ହେଲା ଶ୍ରାବଣ ଦ୍ୱାଦଶୀ ।
ବ୍ରାହ୍ମଣ କ୍ଷତ୍ରିୟ ଆଦି ନଗର ବାସୀଏ
ସ୍ନାନଅର୍ଥେ ଗଲେ ସର୍ବେ ନଦୀକୂଳ ଯାଏ ।
ତାଙ୍କ ସଙ୍ଗେ ମୁହିଁଗଲି କରିବାକୁ ସ୍ନାନ
ଉପବାସୀ ହେଲୁ ସର୍ବେ ଏକାଦଶୀ ଦିନ ।
ପତିବ୍ରତା ଶୁଚି ପୁଣି ହୋଇଲୁ ସମସ୍ତେ
ଇରାବତୀ ନଡ୍ଵଳାର ସଙ୍ଗମ ପର୍ଯ୍ୟନ୍ତେ ।
ଯାଇ ସେ ସଲିଳେ ସ୍ନାନକଲି ମୁହିଁ ବୁଡ଼ି
ଉପରକୁ ଆସି ନବ ବାରିଧାନୀ କାଢ଼ି ।

ଜଳପୂର୍ଣ୍ଣ କରି ବସ୍ତ୍ରେ ମଣ୍ଡିଲି ତାହାକୁ
ଦଧ୍ୟୋଦନପୂର୍ଣ୍ଣ ନବମୃତ୍ତିକା ପାତ୍ରକୁ ।
ରଖିଲି ତା ସଙ୍ଗେ ପୁଣି ପାଦୁକା ଯୁଗଳ
ଛତ୍ର ଉପାନହ ରଖି କରେ ଧରି ଜଳ ।
ଶୁଦ୍ଧ ଜାତି ଶ୍ରେଷ୍ଠ ବିପ୍ର ଡାକିଦେଲି ତାହା
ସତୁରି ବରଷ ମଧ୍ୟେ ଦାନ ବୋଲି ଏହା ।
ଦିନେ ମୁଁ କାହାକୁ ଆଉ ଦେଇ ନାହିଁ କିଛି
ଦ୍ୱାଦଶୀ ତିଥିର ସ୍ନାନ ଦାନରୁ ପାଉଛି ।
ପ୍ରେତାନ୍ନ ଦେବାରୁ ମୁହିଁ ହୋଇଲଇଁ ପ୍ରେତ
ଏହି ଯେତେ ପ୍ରେତଗଣ ଆମ୍ଭର ଆଶ୍ରିତ ।
ଦାନଦେଇ ନ ଥିବାରୁ ଭକ୍ଷନ୍ତି ମୋ ଅନ୍ନ
ମଧ୍ୟାହ୍ନେ ଯେ ଅନ୍ନମିଳେ ଶୁଣ ତା କାରଣ ।
ମୁଁ ପାନ ଭୋଜନ କରି ନ ଥିବା ପର୍ଯ୍ୟନ୍ତ
ଥାଏ ଏହି ବାରିଧାନୀ ପୂର୍ଣ୍ଣ ଅନ୍ନପାତ୍ର ।
ଏମାନେ ଭକ୍ଷନ୍ତି ଆଗେ ସେହି ପ୍ରେତଅନ୍ନ
ମୋହର ଭୋଜନଅନ୍ତେ ଯାଏ ଅନ୍ତର୍ଦ୍ଧାନ ।
କରିବାକୁ ଛତ୍ରଦାନ ଏହି ଶମୀତରୁ
ଛାୟାଦାନ କରେ ମୋତେ ଦେଖି ଭୂମି ମରୁ ।
ବସ୍ତ୍ର ଦେଇଥିବାରୁ ଯେ ବସ୍ତ୍ର ମିଳେ ମୋତେ
ଉପାନହ ଦେବାରୁ ଏ ପ୍ରେତହିଁ ସମସ୍ତେ ।
ଭୃତ୍ୟ ପ୍ରାୟ ଖଟି ମୋତେ କରନ୍ତି ବହନ
ଦ୍ୱାଦଶୀ ତିଥିରୁ ପୁଣ୍ୟେ ହୁଅଇ ଏସନ ।
ବଣିକ ବୋଇଲା ତାତ କି କରିବି ମୁହିଁ
ତୁମ୍ଭେ ଯାହା କହିବ ସେ ଆନ ହେବନାହିଁ ।
ପ୍ରେତପତି ବୋଲେ ଶୁଣ ଆହେ ମହାମତି
ଗୟାତୀର୍ଥେ ସ୍ନାନ କରି ହୋଇ ଶୁଚିବ୍ରତୀ ।
ଅନଳେ ଆହୁତି ଦେଇ ମୋର ନାମ ଧରି
ପିଣ୍ଡ ଦେଇ ପ୍ରେତତ୍ୱରୁ ମୋତେ ମୁକ୍ତକରି ।
ଭାଦ୍ରମାସ ଶୁକ୍ଳପକ୍ଷ ଦ୍ୱାଦଶୀ ତିଥିରେ
ବୁଧବାର ଶ୍ରାବଣ ଏ ନକ୍ଷତ୍ର ଯୋଗରେ ।
ସ୍ନାନଦାନ କଲେ ହୁଏ ପରମ ମଙ୍ଗଳ
ସବୁସ୍ନାନ ଠାରୁ ଏଥେ ଅଧିକ ଯେ ଫଳ ।
ଏହା କଲେ ହିତ ହେବ ତୁମ୍ଭର ମୋହର
ଏହା କହି ପ୍ରେତପତି ଉଠିଲା ସତ୍ୱର ।
ପ୍ରେତ କନ୍ଧେ ବସି ମରୁଭୂମି ତେଜି ଗଲା
ସୁରସେନ ଦେଶେ ଯାଇ ବଣିକ ମିଳିଲା ।

ଧର୍ମ କର୍ମବଳେ ଧନ ଅର୍ଜିଲା ବହୁତ
ଅନୁତ୍ତମ ଗୟାତୀର୍ଥେ ହେଲା ଉପଗତ ।
ପ୍ରେତୋଦ୍ଦେଶେ ପିଣ୍ଡହୋମକରି ସେ ବଣିକା
ବନ୍ଧୁଗଣେ ପିତୃଗଣେ ଦେଇଣ ପିନ୍ୟାକା ।
ତିଳହୀନ ଶ୍ରାଦ୍ଧକଲା ଆପଣା ନିମନ୍ତେ
ଗୋତ୍ରଜମାନଙ୍କୁ ପିଣ୍ଡ ଦେଲା ବିଧିମତେ ।
ଏହିରୂପେ ପଞ୍ଚପିଣ୍ଡ ଦେଇ ମୁକ୍ତକରି
ଆପଣା ଗୃହକୁ ସେହି ସୁଖେ ଆସେ ଫେରି ।
ଶ୍ରାବଣ ଦ୍ୱାଦଶୀ ଫଳେ ହୋଇଲା ଗନ୍ଧର୍ବ
ବହୁ ସୁଖ ଭୋଗ କଲା ମର୍ତ୍ତ୍ୟଲୋକ ଲାଭ ।
କ୍ଷତ୍ରିୟ ତନୟ ହୋଇ ସ୍ୱବୃତ୍ତିରେ ରହି
ସୁଖ ଭୋଗକରି ହୋଇ ଶତ୍ରୁଗଣ ଜୟୀ ।
ଅନ୍ତେ ଦେବଲୋକେ ବସି ପାଇଲା ଆଦର
ପୁଣ୍ୟକ୍ଷୟେ ଶାକଳେ ସେ ହେଲା ବିପ୍ରବର ।
ସର୍ବଶାସ୍ତ୍ର ବିଶାରଦ ହୋଇଲା ସେ ପୁଣି
ଧଇଲାକ ରୂପବତୀ ବିପ୍ର କନ୍ୟା ପାଣି ।
ସୁଶୀଳା ସେ ବିପ୍ର ମୂର୍ତ୍ତି ବିକଟ ତାହାର
ସ୍ୱାମୀକି ସେ ବିପ୍ରକନ୍ୟା ଦେଖି ଅସୁନ୍ଦର ।
ସ୍ନେହ ନକଲା ତା ଦେଖି ବିପ୍ର ଦୁଃଖୀ ହୋଇ
ଇରାବତୀ ତଟେ ଏକ ଆଶ୍ରମେ ମିଳଇ ।
ନକ୍ଷତ୍ର ପୁରୁଷ ବ୍ରତ କଲା ତହିଁ ରହି
ପୂଜା କଲା ଜଗନ୍ନାଥ ପ୍ରଭୁ ଭାବଗ୍ରାହୀ ।
ସେହି ବ୍ରତଫଳେ ହେଲା ପରମ ସୁନ୍ଦର
ସୁଖ ଭୋଗକଲା ପ୍ରିୟ ହୋଇଲା ଭାର୍ଯ୍ୟାର ।
ଅଭ୍ୟାସବଶରୁ କଲା ଶ୍ରାବଣ ଦ୍ୱାଦଶୀ
ତାଠାରେ ପ୍ରସନ୍ନ ହେଲେ ବଇକୁଣ୍ଠବାସୀ ।
ମରଣାନ୍ତେ କଲେ ସେହି ବିପ୍ରକୁ ନୃପତି
ତାର ନାମ ପୁରୁରବା ହେ ନାରଦ ଯତି ।
ବ୍ରତମୂଳେ ସୁକୁମାର ସୁନ୍ଦର ଶରୀର
ଗୁଣବନ୍ତ ବୁଦ୍ଧିମନ୍ତ ପୁରୁରବା ନର ।

=+=

## ନକ୍ଷତ୍ର ପୁରୁଷ ବ୍ରତ

ପୁଚ୍ଛିଲେ ନାରଦ ମୁନି ଆହେ ଦ୍ୱିଜବର
ନକ୍ଷତ୍ର ପୁରୁଷ ବ୍ରତ ବିଧି କି ପ୍ରକାର ।
ଶ୍ରୀପତିର ଆରାଧନା କରିବ କେମନ୍ତେ
ବିସ୍ତାରି କହନ୍ତୁ ଏହା ମୋହର ଅଗ୍ରତେ ।

କହିଲେ ପୁଲସ୍ତ୍ୟ ମୁନି ଶୁଣ ତପୋଧନ
ନକ୍ଷତ୍ର ପୁରୁଷ ବ୍ରତ ବିଧିର ବିଧାନ ।
ଯେ ନକ୍ଷତ୍ର ବିଷ୍ଣୁଙ୍କର ପ୍ରସିଦ୍ଧ ଅଟଇ
ତାହା କହୁଅଛି ଏବେ ଶୁଣ ମନଦେଇ ।
ବିଷ୍ଣୁଙ୍କର ପାଦଦୁଇ ମୂଳା ଯେ ନକ୍ଷତ୍ର
ଦୁଇଜଙ୍ଘ ଅଶ୍ୱିନୀ ଯେ ରୋହିଣୀ ନକ୍ଷତ୍ର ।
ପୂର୍ବା ଉତ୍ତରାଷାଢ଼ା ଏ ନିତମ୍ବ ତାଙ୍କର
ଅନୁରାଧା ଉରୁ ପିଠି ଧନିଷ୍ଠା ଆବର ।
ବିଶାଖା ଯେ ଭୁଜଦୁଇ ହସ୍ତା କର ଦୁଇ
ଦୁଇ ଗୁଲ୍ଫ ପୁନର୍ବସୁ ନକ୍ଷତ୍ର ଅଟଇ ।
ସର୍ପଗଣ ନକ୍ଷତ୍ର ଯେ ତାଙ୍କ ନଖ ଜାଣ
ଜ୍ୟେଷ୍ଠ ତାଙ୍କ ଗ୍ରୀବାଦେଶ ଶ୍ରବଣା ଯେ କର୍ଣ୍ଣ ।
ପୁଷ୍ୟା ଓଷ୍ଠ ସ୍ୱାତି - ଦନ୍ତ ନାସା ଜାଣ ମୈତ୍ର
ପୁନର୍ବସୁ ହନୁ ଦୁଇ ପ୍ରଜାପତ୍ୟ ନେତ୍ର ।
ଏମନ୍ତେ ସେ ଜନାର୍ଦ୍ଦନ ନକ୍ଷତ୍ର ପୁରୁଷ
ବ୍ରତ ଆରମ୍ଭିବ ଯେବେ ହେବ ଚୈତ୍ରମାସ ।
ଶୁକ୍ଳ ଅଷ୍ଟମୀରେ ଚନ୍ଦ୍ର ମୂଳାରେ ଯେ ଥିବେ
ଯଥାବିଧି ବିଷ୍ଣୁପାଦଦ୍ୱୟଙ୍କୁ ପୂଜିବେ ।
ଜାନୁଦ୍ୱୟ କ୍ରମେ ପୂଜା କରିବ ତଦନ୍ତେ
ହବିଷ୍ୟାନ୍ନ ଦେବ ଦ୍ୱିଜଗଣ ଭୋଜନାର୍ଥେ ।
ପୂଜିବ ନିତମ୍ବ ଦୁଇ ଆଷାଢ଼ ନକ୍ଷତ୍ରେ
ସୁଶୀତଳ ଜଳ ଦେବ ବିପ୍ରେ ଜଳପାତ୍ରେ ।
ଫାଲଗୁନୀ ନକ୍ଷତ୍ରଦ୍ୱୟେ ଗୁହ୍ୟକୁ ପୂଜିବ
ଦ୍ୱିଜ ଭୋଜନାର୍ଥେ ଗୋରୁ ଦୁଧ ଦୁହିଁ ଦେବ ।
ଉପବାସୀ ଜିତେନ୍ଦ୍ରିୟ ହେବ କୃତ୍ତିକାରେ
ବିଷ୍ଣୁ କଟୀଦେଶ ପୂଜା କରିବ ଭକ୍ତିରେ ।
ସୁଗନ୍ଧି କୁସୁମ ଜଳ ଦେବ ବିପ୍ରହସ୍ତେ
ଭାଦ୍ରପଦା ଯୁଗଳରେ ଜାଣ ଏଥୁଅନ୍ତେ ।
ଯଥାବିଧି ପାର୍ଶ୍ୱଦୁଇ ଭକ୍ତିରେ ପୂଜିବ
ବିଷ୍ଣୁପ୍ରୀତିପ୍ରଦ ଗୁଡ଼ ଶାଳେୟକ ଦେବ ।
ରେବତୀରେ କୁକ୍ଷିଦ୍ୱୟ ପୂଜିବ ତାଙ୍କର
ମୁଗର ମୋଦକ ଦେବ ହସ୍ତରେ ବିପ୍ରର ।
ଅନୁରାଧା ନକ୍ଷତ୍ରରେ ବକ୍ଷକୁ ପୂଜିବ
ଷଷ୍ଟିକାନ୍ନ ଭୋଜନାର୍ଥ ବିପ୍ର କରେ ହେବ ।
ଧନିଷ୍ଠାରେ ପୃଷ୍ଠ ପୂଜି ଦେବ ଶାଳିଭକ୍ତ
ବିଶାଖାରେ ଭୁଜ ଯୁଗ୍ମ ପୂଜିବ ସୁବ୍ରତ ।

ପରମ ଓଦନ ଦେବ ବିପ୍ର ଭୋଜନାର୍ଥେ
ହସ୍ତାରେ ପୂଜିବ ହସ୍ତଦ୍ୱୟକୁ ତଦନ୍ତେ ।
ବିପ୍ରଗଣ ଡାକିଦେବ ଯାବକ ଭୋଜନ
ପୁନର୍ବସୁ ନକ୍ଷତ୍ରରେ ଅଙ୍ଗୁଳି ପୂଜନ ।
ପୂଜାଶେଷେ ଖୁଆଇବ ବିପ୍ରଙ୍କୁ ପଟୋଳ
ଅଶ୍ଳେଷାରେ ପୂଜିବ ଯେ ନଖର ପଟଳ ।
ବିପ୍ରଙ୍କୁ ଭୋଜନଦେବ ତିତ୍ତିର ଆମିଷ
ଜ୍ୟେଷ୍ଠାରେ ପୂଜିବ ଭକ୍ତିକରେ ଗ୍ରୀବାଦେଶ ।
ତିଳର ମୋଦକ ଦେବ ବିପ୍ରଙ୍କୁ ଭୋଜନ
ଶ୍ରାବଣେ ଶ୍ରବଣ ଦୁଇ କରିବ ପୂଜନ ।
ଦଧିଭକ୍ତ ଖୁଆଇବ ବିପ୍ରଙ୍କୁ ଡକାଇ
ପୁଷ୍ୟାରେ ପୂଜିବ ମୁଖ ହେ ମୁନି ଗୋସାଇଁ ।
ବିପ୍ରଗଣେ ଦେବ ଘୃତ ପାୟସ ଭୋଜନ
ସ୍ୱାତୀନକ୍ଷତ୍ରରେ ପୂଜା କରିବ ଦଶନ ।
ତିଳ ଶସ୍କୁଳି ଯେ ଦେବ ବିପ୍ରଙ୍କୁ ଭୁଞ୍ଜାଇ
ଶତଭିଷା ଯୋଗେ ପୂଜା କରି ହନୁ ଦୁଇ ।
ବିପ୍ରଙ୍କୁ ପ୍ରିୟଙ୍ଗୁ ଭକ୍ତ କରାଇ ଭୋଜନ
ମଘାରେ ନାସିକା ଦୁଇ କରିବ ପୂଜନ ।
ବିପ୍ରଙ୍କୁ ମଧୁର ଘୃତ ଶ୍ରଦ୍ଧାରେ ଭୁଞ୍ଜାଇ
ମୃଗଶିରା ନକ୍ଷତ୍ରରେ ପୂଜି ନେତ୍ର ଦୁଇ ।
ବିପ୍ରଙ୍କୁ ଡକାଇ ଦେବ ସୁମିଷ୍ଟ ଭୋଜନ
ଭରଣୀରେ ଶିରୋଦେଶେ କରିବ ପୂଜନ ।
ବିପ୍ରଙ୍କୁ ସୁନ୍ଦରଖାଦ୍ୟ ଦେବ ଶ୍ରଦ୍ଧା କରି
ଆଦ୍ରାଯୋଗେ କେଶ ପୂଜି ଆହେ ତପଚାରୀ ।
ଏରୂପେ ନକ୍ଷତ୍ର ଯୋଗେ ପୂଜି ଜଗପତି
ବାଛି ବାଛି ଦେବ ପାରାୟଣ ବିପ୍ରଜାତି ।
ତାହାଙ୍କୁ ଦକ୍ଷିଣା ଦେବ ଉପାନହ ଛତ୍ର
ସପ୍ତଧାନ୍ୟ ସ୍ୱର୍ଣ୍ଣ ଦୋଗ୍‌ଧ୍ରୀ ଗୋରୁ ଘୃତପାତ୍ର ।
ନକ୍ଷତ୍ରଙ୍କ ବ୍ରାହ୍ମଣଙ୍କୁ ଦକ୍ଷିଣା ପୃଥକ
ପ୍ରତିନକ୍ଷତ୍ରରେ ବିପ୍ର ପୂଜାହିଁ ପୃଥକ ।
ନକ୍ଷତ୍ର ପୁରୁଷ ନାମ ଏ ବ୍ରତ ପ୍ରଧାନ
ଆଦ୍ୟେ ଭୃଗୁ କଲେ ଏହି ବ୍ରତ ଅନୁଷ୍ଠାନ ।
ସର୍ବ-ପାପ -ବିନାଶନ ବ୍ରତ ଏ ନାରଦ
ଅଙ୍ଗୋପାଙ୍ଗ ପୂଜାଗ୍ରେ ସେ ହୁଅନ୍ତି ଆନନ୍ଦ ।
ସତ୍ରଜନ୍ମ କୃତ ପାପ କରନ୍ତି ହରଣ
ପିତୃମାତୃ କୃତ ପାପ ପ୍ରଭୁ ନାରାୟଣ ।

ନିରୋଗ ହୁଅଇ ପୁଣି ଅତ୍ୟନ୍ତ ସୁନ୍ଦର
ହୃଦୟ ଆନନ୍ଦ ତାର ବାକ୍ୟ ସୁମଧୁର ।
କାନ୍ତିତାର ବଢ଼େ ପୂର୍ଣ୍ଣ ହୁଏ ଅଭିଳାଷ
ଏ ନକ୍ଷତ୍ର ଯୋଗେ କ୍ରମେ କରି ଉପବାସ ।
ପରମ ପ୍ରସିଦ୍ଧ ଲାଭ କଲେ ଅରୁନ୍ଧତୀ
ପୁତ୍ର ଅର୍ଥେ ପୁଜିଥିଲେ ପୂର୍ବରେ ଅଦିତି ।
ପୁତ୍ରହେଲେ ତାହାଙ୍କର ପ୍ରଭୁ ଜନାର୍ଦ୍ଦନ
ରମ୍ଭାପୂର୍ବେ ପୂଜାକରି ଆହେ ତପୋଧନ ।
ପରମାସୁନ୍ଦରୀ ହେଲା ତ୍ରିଲୋକ୍ୟ ମଧରେ
ଦେଖି ତିଳୋତ୍ତମା ବ୍ରତକଲା ଭକତିରେ ।
ମାଧୂର୍ଯ୍ୟ ବଚନେ ସେହି ମୋହିଲା ଜଗତ
ଚନ୍ଦ୍ରମାପରାୟ କାନ୍ତି ଲଭିଲା ନିୟତ ।
ପୁରୁରବା ରାଜାହେଲା କରି ଏହିବ୍ରତ
ଆରୋଗ୍ୟ ଉତ୍ତମା ଯଶଲାଭହୁଏ ସତ୍ୟ ।
ପବିତ୍ରତା ସାଧନା ଏ ବ୍ରତ ଗୋଟି ଜାଣ
ପରମପବିତ୍ର ତୀର୍ଥ ଯାତ୍ରା କଥା ଶୁଣ ।

= + =

## ଜଳୋଦ୍ଭବ ବଧ

ପୁଲସ୍ତ୍ୟ କହିଲେ ଶୁଣ ହେ ମୁନି ନାରଦ
ପରମ ପବିତ୍ର ସେହି ମହାତ୍ମା ପ୍ରହ୍ଲାଦ ।
ଋଷିକନ୍ୟା ଇରାବତୀ ଜଳେ କରି ସ୍ନାନ
ଚୈତ୍ରମାସ ଅଷ୍ଟମୀରେ ପୂଜି ଜନାର୍ଦ୍ଦନ ।
ନକ୍ଷତ୍ର ପୁରୁଷ ବ୍ରତକରି ଶୁଚି ହୋଇ
ପୁଣ୍ୟପ୍ରଦ କୁରୁକ୍ଷେତ୍ରେ ମିଳିଲେ ସେ ଯାଇଁ ।
ଐରାବତ ମନ୍ତ୍ରରାଜ କରି ଉଚ୍ଚାରଣ
ସୁଦର୍ଶନ ଚକ୍ରତୀର୍ଥେ କରିଣ ଭ୍ରମଣ ।
ବେଦୋକ୍ତ ବିଧାନେ କରି ସେ ତୀର୍ଥରେ ସ୍ନାନ
ରାତ୍ରେ ରହି କୁରୁଧ୍ୱଜ କରିଣ ପୂଜନ ।
ଦେଖିବା ନିମନ୍ତେ ଗଲେ ପୁରୁଷକେଶରୀ
ବେଦିକାରେ ସ୍ନାନକରି ପୂଜିଲେ ନୃହରି ।
ରାତ୍ରେରହି ତହୁଁ ଯାଇ ମିଳିଲେ ଗୋକର୍ଣ୍ଣେ
ସେ ତୀର୍ଥରେ ସ୍ନାନକରି ପ୍ରଥମ ପ୍ରାଚୀନେ ।
ବିଶ୍ୱସ୍ରଷ୍ଟା ଈଶ୍ୱରଙ୍କ ପୂଜାକରି ଶେଷ
ଅପର ପ୍ରାଚୀନେ ଅଛି କାମ୍ୟେଶ୍ୱର ଈଶ ।
ତାହାଙ୍କୁ ଦେଖିବା ପାଇଁ ତହୁଁ ଚଳିଗଲେ
ତହିଁ ସ୍ନାନକରି ତାଙ୍କୁ ଦରଶନ କଲେ ।
ପୂଜାକରି ତହୁଁ ଗଲେ ପୁଣ୍ଡରୀକ ତୀର୍ଥ
ତହିଁ ସେ ଜଳକୁ ଦେଖି ନିର୍ମଳ ପବିତ୍ର ।
ସ୍ନାନ ସାରି ପିତୃଦେବ ତରପଣ କଲେ
ପୁଣ୍ଡରୀକ ପୂଜି ତିନିଦିବସ ରହିଲେ ।
ବିଶାଖା ଯୂପରେ କଲେ ଅଜିତ ଦର୍ଶନ
ତହୁଁ ପୁଣି ଯାଇଁ କଲେ କୃଷ୍ଣାତୀର୍ଥେ ସ୍ନାନ ।
ତିନିରାତି ରହିତହୁଁ ହଂସପାଦ ଗଲେ
ହଂସରୂପୀ ଶ୍ରୀବିଷ୍ଣୁଙ୍କୁ ସେଠାରେ ପୂଜିଲେ ।
ତହୁଁ ଯାଇଁ ପୟୋଷ୍ଣୀରେ ପୂଜିଲେ ଅଚ୍ୟୁତ
ତହୁଁଯାଇ ବିତସ୍ତାରେ ହେଲେ ଉପଗତ ।
ସ୍ନାନସାରି ଦେବେଶ୍ୱର କୁମାରିକୁ ପୂଜି
ବାଳଖିଲ୍ୟା ଋଷି ସେହି ଭକ୍ତିଭାବେ ମଜି ।
ସେ ମହାତ୍ମା ପ୍ରହ୍ଲାଦଙ୍କୁ ସମାଦର କଲେ
ସେଠାରୁ ଅଯୁତତୀର୍ଥେ ଯାଇ ସେ ମିଳିଲେ ।
ଗୋମାତା ସୁରଭି ଯହିଁ ଦେବଙ୍କ ନିମନ୍ତେ
କପିଳାକୁ ଜାତକଲେ ଜଗତର ହିତେ ।
ସେହି ଦେବହ୍ରଦେ ଯଥାବିଧି କରି ସ୍ନାନ
ପରମ କଲ୍ୟାଣରୂପୀ ବିଧାତା ପୂଜନ ।
ସାରିତହୁଁ ମହାମତି ମଣିତୀର୍ଥେ ଗଲେ
ସ୍ନାନସାରି ବ୍ରହ୍ମାଙ୍କୁ ସେ ଦରଶନ କଲେ ।
ଷଡ଼ରାତ୍ର ରହିତହିଁ ପୂଜିଲେ ସମସ୍ତ
ମଧୁନନ୍ଦିନୀରେ ଯାଇ ହେଲେ ଉପଗତ ।
ମଧୁଜଳେ ସ୍ନାନକରି ଚକ୍ରଧର ହର
ଶୂଳଧର ଗୋବିନ୍ଦଙ୍କୁ ଦେଖିଲେ ସେଠାର ।
ଏହା ଶୁଣି ପଚାରିଲେ କଳିପ୍ରିୟ ମୁନି
ଶୂଳଧାରୀ ହେଲେ କିମ୍ପା କହ ଚକ୍ରପାଣି ।
ଶମ୍ଭୁ କିମ୍ପା ସୁଦର୍ଶନ ଚକ୍ରଧର ହେଲେ
ଏହାଶୁଣି ତାହାଙ୍କୁ ଯେ ପୁଲସ୍ତ୍ୟ କହିଲେ ।
ଏକ ପୁରାତନ କଥା କହୁଅଛି ଶୁଣ
ପୂର୍ବେ ଯାହା କହିଥିଲେ ପ୍ରଭୁ ନାରାୟଣ ।
ଜଳୋଦ୍ଭବ ନାମେ ଥିଲା ବିଖ୍ୟାତ ଅସୁର
ଘୋର ତପେ ଆରାଧିଲା ଦେବ କୁଶଧର ।
ପ୍ରସନ୍ନେ କମଳ ଯୋନି ଯାଚିଦେଲେ ବର
ସଂଗ୍ରାମେ ନୋହିବେ ତୋତେ ସରି ସୁରାସୁର ।
ଦେବତାଙ୍କ ଅସ୍ତ୍ରେ ତୋର ନଛିଡ଼ିବ ଶିର
ବ୍ରହ୍ମାବର ପ୍ରଭାବରେ ଦୁର୍ଦ୍ଧାନ୍ତ ଅସୁର ।

ନରପତି ଋଷିଙ୍କ ସେ ସଂହାରିଲା ବଳେ
ଏକେଶର ଭ୍ରମିସେହି ପୃଥିବୀ ମଣ୍ଡଳେ ।
ଯାଗଯଜ୍ଞ ନାଶି ସବୁକଲା ନାରଖାର
ବିଷ୍ଣୁଙ୍କ ଶରଣ ନେଲେ ଅମର ନିକର ।
ଦେବଙ୍କୁ ସଙ୍ଗରେ ଘେନି ଶ୍ରୀମଧୁ ସୂଦନ
ମିଳିଲେ ଅଛନ୍ତି ଯହିଁ ପ୍ରଭୁତ୍ରିଲୋଚନ ।
ହିମାଳୟ ପର୍ବତରେ ଭେଟିଲେ ତାହାଙ୍କୁ
ମନ୍ତ୍ରଣାକଲେ ସେ ବେନି ଘେନି ଦେବତାଙ୍କୁ ।
ସଂକଳ୍ପକଲେ ସେ ନିଶ୍ଚେ ମାରିବେ ଅସୁର
ଆୟୁଧ ନଧରି ସେହି ଦେବ ହରିହର ।
ଭ୍ରମିଲେ ସେ ଉଗ୍ର କର୍ମ ସାଧନ ନିମନ୍ତେ
ଅସୁର ତା ଜାଣିପାରି ବିଚାରଇ ଚିତ୍ତେ ।
ଦୁହେଁ ସୁରେଶ୍ୱର ଶତ୍ରୁଗଣର ଅଜେୟ
ମାରିବାକୁ ଆସୁଛନ୍ତି ହୋଇ ନିଃସହାୟ ।
ଏହାଭାବି ଜଳୋଦ୍ଭବ ପଶିଲା ସଲିଳେ
ଜଳକୁ ସେ ଦୁଇଭାଗ କରି ନିଜବଳେ ।
ବିଶାଳା ନଦୀର ଗର୍ଭେ ଲୁଚନ୍ତେ ଅସୁର
ଜାଣିପାରି ସେହିଦୁଇ ଦେବ ହରି ହର ।
ଜଗିଲେ ଉଭୟତଟ ରହି ସେ ଗୋପନେ
ଅସୁର ତା ଦେଖି ଭୟେ ଉଠିଲା ଗଗନେ ।
ଦୁର୍ଗମ ହିମାଦ୍ରି ଶିଖେ ଲୁଚିଲା ସେ ଯାଇଁ
ଧ୍ୟାନେ ତାହା ଜାଣିପାରି ହରିହର ଦୁଇ ।
ଶମ୍ଭୁ ସୁଦର୍ଶନ ଚକ୍ର ଧଇଲେ ହସ୍ତରେ
ତ୍ରିଶୂଳ ଧାରଣ କରି ହରି ଗଲେ ଖରେ ।
କାଟି ଅସୁରର ଦେହ କଲେ ଖଣ୍ଡଖଣ୍ଡ
ପର୍ବତରୁ ପଡ଼ିଲାସେ ଅସୁର ପ୍ରଚଣ୍ଡ ।
ତପନ ସଦୃଶ ଦୈତ୍ୟ ପତନ ସମୟେ
ଅନ୍ତରୀକ୍ଷୁଁ ଧରାତଳ କଲାକି ଆଶ୍ରୟେ ।
ଏ କାରଣୁ ଶୂଳଧାରୀ ପ୍ରଭୁ ଦଇତ୍ୟାରି
ଶତ୍ରୁନାଶ ଅର୍ଥେ ଶମ୍ଭୁ ହେଲେ ଚକ୍ରଧାରୀ ।
ତା ଜାଣି ପ୍ରହ୍ଲାଦ ସେହି ତୀର୍ଥେ କଲା ବାସ
ହରିହର ପୂଜା କରି ନାଶି ସର୍ବ ଦୋଷ ।
ଭୃଗୁତୁଙ୍ଗେ ଉପଗତ ହେଲା ତହୁଁ ଯାଇଁ
ଚକ୍ର ଦେଇଥିଲେ ଶମ୍ଭୁ ଶ୍ରୀହରିଙ୍କି ଯହିଁ ।

=÷=

## ଶ୍ରୀଦାମ ଚରିତ

ପୃଚ୍ଛିଲେ ନାରଦଋଷି ଆହେ ତପୋଧନେ
କିମ୍ପା ଶୂଳଦେଲେ ନାରାୟଣ ତ୍ରିଲୋଚନେ ।
ପୁଲସ୍ତ୍ୟ କହିଲେ ଶୁଣ କଥା ପୁରାତନୀ
ଚକ୍ର ସମ୍ପନ୍ଧିନୀ ଶିବମହାତ୍ମ୍ୟ ବନ୍ଧନୀ ।
ବୀତ ମନ୍ୟୁ ନାମେ ଜାତିଶ୍ରେଷ୍ଠ ଏକ ଦ୍ୱିଜ
ଗୃହାଶ୍ରମେ ରହିକରେ ନିତ୍ୟ ଧର୍ମ କାର୍ଯ୍ୟ ।
ବେଦ ବେଦାଙ୍ଗାଦି ଶାସ୍ତ୍ରେ ଅଟଇ ପାରଗ
ଉଦାସୀନ ସ୍ୱଭାବ ସେ ବିପ୍ର ମହାଭାଗ ।
ତାହାର ଭାରିଯା ନାମ ଅଟଇ ଅତ୍ରେୟୀ
ପତିବ୍ରତା ପତିଗତ ଜୀବିତା ଅଟଇ ।
ସୁଶିଳା ଧାର୍ମିକା ମହାଭାଗା ସେ ରମଣୀ
କନ୍ୟା ନାହିଁ ଏକପୁତ୍ରୀ ଅଟଇ ବ୍ରାହ୍ମଣୀ ।
ଉପମନ୍ୟୁ ନାମେ ସେହି ବ୍ରାହ୍ମଣ ନନ୍ଦନ
ତା ମାତା ଦରିଦ୍ରା ନିତ୍ୟ ନପାଇ ସେ ଅନ୍ନ ।
ଧନ କାହୁଁ ପାଇବ ସେ କିଣିବାକୁ କ୍ଷୀର
ଶାଳିପିଷ୍ଟ ରସ ଦେଇ ପୋଷଇ କୁମର ।
ଉପମନ୍ୟୁ କ୍ଷୀର ସ୍ୱାଦୁ କାହୁଁ ବା ଜାଣିବ
ଦୁଗ୍ଧଧ୍ୟାନେ ଶାଳିପିଷ୍ଟ ରସେ ଶ୍ରଦ୍ଧାଭାବ ।
ଦିନେ ସେହି ପିତାସଙ୍ଗେ ଏକ ବିପ୍ରଘରେ
କ୍ଷୀର ପାନ କଲା ଅନ୍ନଭୋଜନ ସଙ୍ଗରେ ।
କ୍ଷୀର ସ୍ୱାଦୁ ପିଇ ଆସି ଦ୍ୱିତୀୟ ଦିବସେ
ମାତା ଦତ୍ତ ପିଠାରସ ନଖାଇ ସେ ରୋଷେ ।
ଜନନୀର କାନି ଧରି ରୋଦନ କରଇ
ଜଳାର୍ଥୀ ଚାତକପରି କ୍ଷୀରକୁ ଖୋଜଇ ।
ତାଦେଖି ଜନନୀ ବାଷ୍ପଗଦ୍ ଗଦ ବଚନେ
ବୋଇଲେ ରେ ବତ୍ସକ୍ଷୀର ମିଳିବକେସନେ ।
ଶୂଳଧାରୀ ଉମାପତି ବିରୂପାକ୍ଷ ହର
ପ୍ରସନ୍ନ ହୋଇଲେବାବୁ ମିଳିପାରେ କ୍ଷୀର ।
ଶଙ୍କରଙ୍କ ଆରାଧନା କରିପାରୁ ଯେବେ
ସଦ୍ୟୋଜାତ କ୍ଷୀରପାନ କରିବୁ ତୁ ତେବେ ।
କଲ୍ୟାଣମୟ ସେ ଦେବ ଜଗତର ନାଥ
ସେ ପ୍ରସନ୍ନ ହେଲେ ମିଳିପାରଇ ଅମୃତ ।
ଜନନୀର କଥା ଶୁଣି ଉପମନ୍ୟୁ କହେ
ଯାହା ତୁ କହିଲୁ ସେହି ବିରୁପାକ୍ଷ କିଏ ।

ଧାର୍ମିକ ଅତ୍ରେୟୀ ବୋଲେ ଶୁଣରେ ନନ୍ଦନ
ଶ୍ରୀଦାମ ନାମରେ ଥିଲା ଅସୁର - ରାଜନ ।
ବିଷ୍ଣୁ ପ୍ରାୟ ସେ ଦୁରାତ୍ମା ଦାନବ - କେଶରୀ
ଅଖିଳ ଜଗତେ ଭ୍ରମି କଲା ହତଶିରୀ ।
ବିଷ୍ଣୁ ବକ୍ଷେ ଅଛି ଯେହୁ ଶ୍ରୀବତ୍ସ ଲାଞ୍ଛନ
ତାହା ହରି ନେବାପାଇଁ ଅସୁରର ମନ ।
ସେ ଦୁଷ୍ଟର ମନ ଜାଣି ପ୍ରଭୁ ଦଇତାରି
ଅସୁରକୁ ମାରିବାକୁ ମନରେ ବିଚାରି ।
ମହେଶ୍ୱର ସନ୍ନିଧିକି କଲେକ ଗମନ
ଯୋଗେ ମଗ୍ନ ହୋଇଛନ୍ତି ପ୍ରଭୁ ତ୍ରିଲୋଚନ ।
ତହିଁ ମିଳି ସର୍ବବ୍ୟାପୀ ସେ ସହସ୍ରଶିରା
ମହାଦେବ ଆରାଧନା କଲେ ହୋଇ ତ୍ୱରା ।
ପାଦାଙ୍ଗୁଷ୍ଠେ ରହିଗଲା ସହସ୍ର ବରଷ
ସନାତନ ବ୍ରହ୍ମ ମନ୍ତ୍ର ଜପିଲେ ରମେଶ ।
ମହାଦେବ ସୁପ୍ରସନ୍ନେ ଦେଲେ ତାଙ୍କୁ ବର
ପାଇବ ପରମପଦ ଆହେ ଗଦାଧର ।
ଏହା କହି ସୁଦର୍ଶନ ଚକ୍ର ଦେଲେ ଆଣି
ବୋଇଲେ ସେ ମହାଦେବ ଆହେ ଚକ୍ରପାଣି ।
ସର୍ବାୟୁଧ ବିନାଶନ ଏହି ବରାୟୁଧ
ଏହା ନାମ ସୁଦର୍ଶନ ଅସ୍ତ୍ର ଯେ ଅସାଧ ।
ଷଡ଼ନାଭି ବାର ଅର ଅତି ବେଗଗାମୀ
କ୍ଷଣକରେ ଚତୁର୍ଦ୍ଦଶପୁର ପାରେ ଭ୍ରମି ।
ଏ ଅସ୍ତ୍ରେ ଅଛନ୍ତି ଜାଣ ସକଳ ଦେବତା
ଅଗ୍ନିସୋମ ବିଶ୍ୱେଦେବ ବରୁଣ ସବିତା ।
ଇନ୍ଦ୍ର ପ୍ରଜାପତି ବାୟୁ ତାପ ଧନନ୍ତରୀ
ତପସ୍ୟାକୁ ଘେନିବାର ଦେବତା ଏପରି ।
ବାର ଅରେ ରହିଛନ୍ତି ଘେନି ବାରମାସ
କାମରୂପୀ ଆୟୁଧ ଏ ହରିବ ଆୟୁଷ ।
ଏଥିରେ ସକଳ ଶତ୍ରୁସଂହାର ହେ ହରି
ଅବ୍ୟର୍ଥ ଆୟୁଧ ପୂଜା କଲେ ବଜ୍ରଧାରୀ ।
ତପୋବଳେ ମନ୍ତ୍ରମଳେ ଏହାକୁ ମୁଁ ଧରେ
ଏହା ଶୁଣି ବିଷ୍ଣୁ ତାଙ୍କୁ କହିଲେ ସଧୀରେ ।
ଅବ୍ୟର୍ଥ କି ବ୍ୟର୍ଥ ତାହା କି ରୂପେ ଜାଣିବି
ଆପଣଙ୍କୁ ଏହି ଅସ୍ତ୍ରବାରେ ପ୍ରହାରିବି ।
ପରୀକ୍ଷାର୍ଥେ ପ୍ରତିଗ୍ରହ କରନ୍ତୁ ଆପଣ
ଅବିନାଶୀ ବିନାଶିଲେ ଅମୋଘ ପ୍ରମାଣ ।

ବାସୁଦେବ କଥାଶୁଣି ପିନକ ଧାରଣ
ତୁମ୍ଭର ଏ ଅଭିଳାଷ ଯେବେ ନାରାୟଣ ।
ନିର୍ଭୟ ଚିତ୍ତରେ ତେବେ କରନ୍ତୁ ପ୍ରହାର
ଏହାଶୁଣି ଚକ୍ର ଘେନି ପିଟିଲେ ସତ୍ୱର ।
ତ୍ରିନେତ୍ରଙ୍କୁ ତିନିଖଣ୍ଡକଲା ନିମିଷକେ
ଲଜ୍ଜାପାଇ ପ୍ରଣମିଲେ ହରି ନତମୁଖେ ।
ବିଷ୍ଣୁତେଜଠାରୁ ଶିବ ତେଜ ଗଲା ବଳି
ପାଦଗତ ଶ୍ରୀହରିଙ୍କି ଦେଖିଣ ତ୍ରିଶୂଳୀ ।
ସୁପ୍ରସନ୍ନେ ତୋଳିଧରି କହିଲେ ହେ ହରି
ପ୍ରାକୃତ ବିକାର ଏହି ଅଟଇ ମୋହରି ।
ସ୍ୱଭାବେ ଅଛେଦ୍ୟ ଆଉ ଅନାଦ୍ୟମୋଦେହୀ
ତିନିଅଙ୍ଗ ବିଦାରିଲ ଚକ୍ରେ ଭାବଗ୍ରାହୀ ।
ଏ ପରମ ପବିତ୍ରତା କରିବେ ଅବଶ୍ୟ
ଏହାଯୋଗୁଁ ପୁଣ୍ୟଲାଭ କରିବେ ମନୁଷ୍ୟ ।
ଯଥାକ୍ରମେ ହିରଣ୍ୟାକ୍ଷ ସୁବର୍ଣ୍ଣାକ୍ଷ ହେବେ
ବିଶ୍ୱରୂପାକ୍ଷ ନାମକୁ ଆବର ବହିବେ ।
ସଂପ୍ରତି ହେ ହରି ଏହି ଚକ୍ରେ ମୋର ଅରି
ଶ୍ରୀଦାମ ସଂହାର କର ରହୁ ସର୍ବଶିରୀ ।
ମହାଦେବ ବଚନରେ ଗରୁଡ଼ - ଆସନ
ସୁରଗିରି ଶିଖେ କଲେ ସତ୍ୱର ଗମନ ।
ଶ୍ରୀଦାମକୁ ଦେଖି ଚକ୍ର ପ୍ରହାରିଲେ ବେଗେ
ଦାନବ ମସ୍ତକ ଛେଦି ଅଇଲା ସେ ରାଗେ ।
ବଜ୍ରାହତ ଗିରିଶିଖ ପର୍ବତରୁ ଝଡ଼ି
ଗଡ଼ିଗଡ଼ି ଆସି ଭୂମି ଉପରେ କି ପଡ଼ି ।
ଦୈତ୍ୟନାଶି ନିଜପୁରେ ଗଲେ ଚକ୍ରଧର
ଆରେ ବତ୍ସ ଦେବଦେବ ସେହି ମହେଶ୍ୱର ।
ବିରୁପାକ୍ଷ ନାମଧାରୀ ହୋଇଲେ ଏମନ୍ତେ
ତାହାଙ୍କ ମହିମା ମୁହିଁ କହିବି ବା କେତେ ।
କ୍ଷୀରପାନେ ଇଚ୍ଛାଥିଲେ ଶିବପୂଜା କର
ଜନନୀର କଥା ଶୁଣି ସେ ବିପ୍ରକୁମର ।
ବିରୁପାକ୍ଷ ପୂଜାକରି କ୍ଷୀରପାନ କଲା
ଉପମନ୍ୟୁ ଶିବଙ୍କର ମହାଭକ୍ତ ହେଲା ।
ପରମ ପବିତ୍ର ଏହି ମୁରାରି ଆଖ୍ୟାନ
ପାପ - ତରୁ ଛେଦନରେ ଠାକୁର ସମାନ ।
ପ୍ରହ୍ଲାଦ ସେ ପୁଣ୍ୟତୀର୍ଥେ ହେଲା ଉପଗତ
ବିରୁପାକ୍ଷ ପାଦେ ରହୁ ଗୋପୀନାଥ ଚିତ୍ତ ।

= + =

## ପହଲ୍ଲାଦ ତୀର୍ଥଯାତ୍ରା

କହିଲେ ପୁଲସ୍ତ୍ୟ ଋଷି ହେ ମୁନି ନାରଦ
ତୀର୍ଥବରେ ସ୍ନାନକରି ମହାତ୍ମା ପ୍ରହ୍ଲାଦ ।
ସୁବର୍ଣ୍ଣକ୍ଷପୂଜା କରି ଗଲେ ନଇମିଷେ
କାଞ୍ଚନାକ୍ଷୀ ଗୋମତୀ ଏ ନଦୀ ଦୁଇ ପାଶେ ।
ତିରିଶି ସହସ୍ର ତୀର୍ଥ ମଧରେ ଅଛଇ
ତହିଁ ସ୍ନାନକରି ପୀତାମ୍ବରଙ୍କୁ ପୂଜଇ ।
ପୂଜାକରି ନଇମିଷବାସୀ ଋଷିଗଣ
ଆରାଧନା କରି ଦେବେଦେବେ ତ୍ରିଲୋଚନ ।
ଗୟାକ୍ଷେତ୍ରେ ଉପଗତ ହେଲେ ତହୁଁ ଯାଇଁ
ଗୋପତି ଦର୍ଶନକରି ଭକ୍ତକୁଳ ସାଇଁ ।
ବ୍ରହ୍ମତଡ଼ାଗରେ ସ୍ନାନ ପ୍ରଦକ୍ଷିଣ କରି
ପିତୃପିଣ୍ଡ ଦେଇ ଜଳପାନ ସ୍ନାନ କରି ।
ବାସୁଦେବ ମହାଦେବ ପୂଜି ସେ ସ୍ଥାନରେ
ଇନ୍ଦ୍ରତୀର୍ଥେ ଯାଇଁ ସ୍ନାନକଲେ ପୁଣ୍ୟନୀରେ ।
ପିତୃଦେବ ତୋଷି ତହୁଁ ମହାନଦୀ ଜଳେ
ସ୍ନାନକରି ମିଳିଲେ ସେ ସରଯୁ ସଲିଳେ ।
ସ୍ନାନସାରି ଗୋପ୍ରତାର କୁଶେଶୟ ପୂଜି
ରାତ୍ରେ ରହି ହୃଦୟରେ ଶ୍ରୀହରିଙ୍କୁ ଭଜି ।
ସେଠାବରୁ ଯାଇଁକଲେ ରଜସ୍ତୀର୍ଥେ ସ୍ନାନ
ପିତୃଗଣ ପୂଜାକରି କଲେ ପିଣ୍ଡଦାନ ।
ତହୁଁକଲେ ଶ୍ରୀ ପୁରୁଷୋତ୍ତମକୁ ଗମନ
ତହିଁ ପୁଣ୍ଡରୀକାକ୍ଷଙ୍କୁ କରି ଦରଶନ ।
ଷଡ଼ରାତ୍ରି ରହିତହୁଁ ଦକ୍ଷିଣକୁ ଗଲେ
ଅର୍ଦ୍ଧନାରୀଶ୍ୱର ଦେବ ଦରଶନ କଲେ ।
ମହେନ୍ଦ୍ର ପୂଜିଲେ ପିତୃଗଣଙ୍କ ସହିତ
ଉତ୍ତରକୁ ଗଲେ ତହୁଁ ଶ୍ରୀହରି ଭକତ ।
ଶମ୍ଭୁ ଆଉ ଗୋପାଳଙ୍କୁ କଲେ ଦରଶନ
ତହୁଁ ଯାଇଁ ସୋମତୀର୍ଥ ଜଳେକଲେ ସ୍ନାନ ।
ମହାପରବତେ ଯାଇଁ ହେଲେ ଉପଗତ
ମହୋଦଧି ଜଳେ ସ୍ନାନକଲେ ବିଷ୍ଣୁଭକ୍ତ ।
ବୈକୁଣ୍ଠ ଅର୍ଚ୍ଚନା କରି ଦେବପିତୃ ତୋଷି
ପାରିଯାତ୍ର ପରବତେ ପ୍ରବେଶିଲେ ଆସି ।
ଲାଙ୍ଗଳିନୀ ଜଳେ ସ୍ନାନ କଲେ ସେଠାବରେ
ଅପରାଜିତଙ୍କୁ ପୂଜିକଶେରୁ ଦେଶରେ ।
ଦେବଦେବ ବିଶ୍ୱରୂପ କରି ଦରଶନ
ମଙ୍କଣିକା ନଦୀଜଳେ କଲେ ଯାଇଁ ସ୍ନାନ ।
ମହାଦେବ ପୂଜିଗଲେ ମୟଳ ଅଚଳେ
ସେଠାବରେ ସ୍ନାନକଲେ ମହାଦ୍ରଦ ଜଳେ ।
ଶଙ୍କରଙ୍କୁ ପୂଜାକରି ଯୋଗାତ୍ମା ପ୍ରହ୍ଲାଦ
ସଦାଶିବ ଦର୍ଶନାର୍ଥେ ଗଲେ ଗିରି ବିନ୍ଧ୍ୟ ।
ବିପାସ ନଦୀରେ ସ୍ନାନକରି ସଦାଶିବ
ପୂଜାକରି ତିନିରାତ୍ର ରହି ପୂଜି ଭବ ।
ତହୁଁ ଯାଇଁ ମିଳିଲେ ସେ ଅବନ୍ତୀ ନଗରେ
ଶିପ୍ରାନଦୀ ଜଳେ ସ୍ନାନକରି ଭକତିରେ ।
ବାସୁଦେବ ପୂଜାକରି ତହୁଁ ପୁଣି ଗଲେ
ମହାକାଳ ଦେବତାଙ୍କ ନିକଟେ ମିଳିଲେ ।
ସର୍ବଦା ଶ୍ମଶାନବାସୀ ସେହି ମହାଦେବ
ତାମସମୂର୍ତ୍ତିକି ଆଶ୍ରାକରି ସଦାଶିବ ।
ସେହିସ୍ଥାନେ ଭୂତଗଣ କରନ୍ତି ସଂହାର
ସର୍ବଭୂତନିହନ୍ତା ଯେ ଅନ୍ତକ ଅସୁର ।
ତାକୁ ଦଗ୍ଧ କରିଥିଲେ ସେହିସ୍ଥାନେ ରହି
ଶ୍ୱେତକି ରାଜାକୁ ରକ୍ଷା କରିଥିଲେ ତହିଁ ।
ଆନନ୍ଦରେ ସେ ସ୍ଥାନକୁ କରନ୍ତି ସେ ବାସ
ପ୍ରତିଦିନ ସେ ବିଗ୍ରହ ପୂଜନ୍ତି ତ୍ରିଦଶ ।
ପ୍ରମଥଗଣ ଯେ ତାଙ୍କୁ ବେଢ଼ିଥାନ୍ତି ନିତ୍ୟ
କାଳର ଉପରେ କାଳ ସେହି ଭୂତନାଥ ।
ଅନ୍ତକ ଉପରେ ସେହି ଅନ୍ତକ ଅଟନ୍ତି
ଯମର ଉପରେ ଯମ ଦେବତା ମୂରତି ।
ମୃତ୍ୟୁର ଉପରେ ମୃତ୍ୟୁ ଅଟନ୍ତି ସେ ହର
ଚିତ୍ରର ଉପରେ ସେହି ବିଚିତ୍ର ଆବର ।
ଭୂତନାଥ ଜଗପତି ସେ ଶ୍ମଶାନ ବାସୀ
ତାଙ୍କନାମ ମହାକାଳ ଆହେ ଦେବଋଷି ।
ତାହାଙ୍କ ଦର୍ଶନ ପୂଜାକରିଣ ପ୍ରହ୍ଲାଦ
ତହୁଁ ପୁଣି ଗଲେ ସେହି ନଗରୀ ନିଷେଧ ।
ଅମରେଶ୍ୱରଙ୍କୁ କରି ସେଠାରେ ଦର୍ଶନ
ହୟଗ୍ରୀବ ପୂଜାକରି କଲେ ସେ ଗମନ ।
ଅଶ୍ୱତୀର୍ଥେ ସ୍ନାନ କରି ଆରାଧି ଶ୍ରୀଧର
ପଞ୍ଚାଳନଗରେ ଗଲେ ସେଠାରୁ ସତ୍ୱର ।
ଅଶ୍ୱପତି ପୁତ୍ରନାମ ଅଟେ ପାଞ୍ଚାଳିକ
ଈଶ୍ୱରଙ୍କ ତୁଲ୍ୟ ଗୁଣ ଲକ୍ଷଣ ବିବେକ ।

ତାହାଙ୍କୁ ଦର୍ଶନ କରି ପ୍ରୟାଗକୁ ଗଲେ
ବଟେଶ୍ୱର ରୁଦ୍ରଙ୍କୁ ସେ ସେଠାରେ ପୂଜିଲେ ।
ଯୋଗଶାୟୀ ମାଧବଙ୍କୁ କରି ଦରଶନ
ସେ ତୀର୍ଥରେ ମାଘମାସେ କରି ମାଘ ସ୍ନାନ ।
ତହୁଁ ଯାଇଁ ବାରାଣସୀ କ୍ଷେତ୍ରରେ ମିଳିଲେ
ତହିଁ ଯେତେ ତୀର୍ଥ ଅଛି ତହିଁରେ ବୁଡ଼ିଲେ ।
ପିତୃଦେବ ପୂଜା ଆଉ ପୁର ପ୍ରଦକ୍ଷିଣ
ଉମାଧବ ମାଧବଙ୍କୁ କ୍ରମେ ଆରାଧିଣ ।
ଲୋଳ ନାମେ ସୂର୍ଯ୍ୟଙ୍କୁ ସେ ଦରଶନ କଲେ
ମଧୁବନେ ଦେବଦେବ ସ୍ୱୟମ୍ଭୁ ପୂଜିଲେ ।
ତହୁଁ ଯାଇଁ ମିଳିଲେ ସେ ପୁଷ୍କରାରଣ୍ୟରେ
ତୀର୍ଥ ତ୍ରୟେ ସ୍ନାନ କରି ପିତୃ ଦେବଠାରେ ।
କହିଲେ ଅଗସ୍ତ୍ୟ ତହିଁ ପୁରାତନ ବାଣୀ
ଶୁଣି ପଢ଼ି ଯଶସ୍ୱୀ ଯେ ଧନୀ ହେବେ ପ୍ରାଣୀ ।
ସର୍ବ ପାପ ବିମୋଚନ ହୋଇବ ଆବର
ଗୋପୀନାଥ ଶରଣ ଯେ ପ୍ରହ୍ଲାଦ ପୟର ।

=✢=

## ବାମନ ପ୍ରାଦୁର୍ଭାବ

କହିଲେ ପୁଲସ୍ତ୍ୟ ଋଷି ଶୁଣ ହେ ନାରଦ
ତୀର୍ଥଯାତ୍ରା କରିଗଲେ ଦାନବ ପ୍ରହ୍ଲାଦ ।
ବିରୋଚନ ପୁତ୍ର ବଳୀ ଅସୁର ରାଜନ
କୁରୁକ୍ଷେତ୍ର ଦେଖିବାକୁ କଲେ ସେ ଗମନ ।
ସେ କ୍ଷେତ୍ରେ ମିଳନ୍ତେ ତହିଁ ଭୃଗୁବଂଶ ଜାତ
ବ୍ରାହ୍ମଣ - ପୁଙ୍ଗବ ଶୁକ୍ର ମହା ତେଜୋବନ୍ତ ।
ଦ୍ୱିଜଙ୍କୁ ସେ ନିମନ୍ତ୍ରଣ ପତ୍ର ପଠାଇଲେ
ବିପ୍ରେ ନିମନ୍ତ୍ରଣ ପାଇ ସେଠାରେ ମିଳିଲେ ।
ଗୌତମ କୁଶିକ ଅତ୍ରି ଅଙ୍ଗିରା ବ୍ରାହ୍ମଣେ
ଏ ଆଦି ଯେତେକ ଋଷି ମିଳି ତତକ୍ଷଣେ ।
ପ୍ରବେଶିଲେ ଯାଇଁ କୁରୁଜାଙ୍ଗଳ କ୍ଷେତ୍ରରେ
ଶାତଦ୍ରବୀ ନାମେ ନଦୀ ଅଛଇ ଉତ୍ତରେ ।
ତହିଁ ସ୍ନାନ କରି ପିତୃଦେବ ପୂଜା ସାରି
କିରଣା ନଦୀର ଜଳେ ଯାଇଁ ସ୍ନାନ କରି ।
ବେଗବତୀ ନଦୀଜଳେ କଲେ ଯାଇଁ ସ୍ନାନ
ଈଶ୍ୱରୀ ନଦୀକି କଲେ ସେଠାରୁ ପ୍ରସ୍ଥାନ ।
ସେ ନଦୀରେ ସ୍ନାନ କରି ତହୁଁ ଚଳିଗଲେ
ଦେବିକା ପୟୋଷ୍ଣୀନଦୀଜଳେ ସ୍ନାନକଲେ ।
ତହୁଁ ଯାଇ ସୁଭାନୁବୀ ଜଳେ କଲେ ସ୍ନାନ
ସ୍ୱ ସ୍ୱ ପ୍ରତିବିମ୍ବ କରି ସଲିଳେ ଦର୍ଶନ ।
ଅତ୍ୟନ୍ତ ବିସ୍ମିତ ହୋଇ ବ୍ରହ୍ମାଙ୍କୁ ପୂଜିଲେ
ତହୁଁ ଯାଇଁ ସରସ୍ୱତୀ ତୀର୍ଥରେ ମିଳିଲେ ।
କୋଟି ତୀର୍ଥ କୋଟି ରୁଦ୍ର କରି ଦରଶନ
ନୈମିଷ ମାଗଧ ସିନ୍ଧୁଦଣ୍ଡକ ଅରଣ୍ୟ ।
ଧର୍ମାରଣ୍ୟ ତାରକଚ୍ଛ ଚମ୍ପା ଯେ ପୁଷ୍କର
ଦେବିକା ଏ ଆଦି ତୀର୍ଥେ ଥିବା ଦ୍ୱିଜବର ।
ଶଙ୍କରଙ୍କ ଦଶନାର୍ଥେ ହେଲେ ଉପଗତ
ତାହାଙ୍କର କୋଟି ସଂଖ୍ୟା ସର୍ବେ ତପୋବନ୍ତ ।
ଶମ୍ଭୁ ଦରଶନ କାଳେ ଲଗାଇଲେ କଳି
ଜଣେ ଆଗ ଯାନ୍ତେ ଆର ଜଣ ଦିଏ ପେଲି ।
ଏହି ହେତୁ କେହି ଆଗ ଯାଇ ନ ପାରନ୍ତି
ତାହାଙ୍କର ମନ ଜାଣି ଦେବ ଉମାପତି ।
ଦୟା କରି କୋଟି ମୂର୍ତ୍ତି ହେଲେ ସେହିକାଳେ
ସେ ସମସ୍ତେ ଦରଶନ କଲେ ଏକାବେଳେ ।
କୋଟି ତୀର୍ଥ ହେଲା ରୁଦ୍ର କୋଟି ନାମ ତାର
ପ୍ରହ୍ଲାଦ ସେ ତୀର୍ଥେ ସ୍ନାନ କରିଣ ଆବର ।
ବସୁ ପିତୃ ତରପଣ ରୁଦ୍ର ପୂଜା ସାରି
କୁରୁ ଜାଙ୍ଗଳରେ ସ୍ଥାଣୁ ଦରଶନ କରି ।
ସରସ୍ୱତୀ ଜଳେ ବୁଡ଼ି ତହୁଁ ପୁଣି ଗଲେ
ଦଶାଶ୍ୱମେଧକୁ ଯାଇଁ ତହିଁ ସ୍ନାନ କଲେ ।
ଦେବ ପିତୃ ତରପଣ ସାରି ଶୁଚି ହୋଇ
ପୂଜିଲେ ସହସ୍ର ଲିଙ୍ଗ ହ୍ରଦେ ଅବଗାହି ।
ଗୁରୁଦେବ ଶୁକ୍ରଙ୍କୁ ଯେ କରି ନମସ୍କାର
ସୋମ ତୀର୍ଥେ ସ୍ନାନ ସାରି ପୂଜି ସୋମେଶ୍ୱର ।
କ୍ଷୀରିକା ତୀର୍ଥରେ ଯାଇ କଲେ ପୁଣି ସ୍ନାନ
ପ୍ରଦକ୍ଷିଣ କରି କଲେ ବରୁଣ ପୂଜନ ।
କୁରୁଧ୍ୱଜ ପୂଜା କଲେ ପଦ୍ମାକ୍ଷୀ ନଗରେ
ପୂଜା କରି ତହିଁ ମିତ୍ରାବରୁଣ ଭାସ୍କରେ ।
କୁମାରଧାରାରେ କଲେ ସ୍ୱାମୀଙ୍କ ଦର୍ଶନ
କପିଳଧାରାରେ ପୁଣି କଲେ ଯାଇଁ ସ୍ନାନ ।
ଦେବ ପିତୃ ଋଷିଙ୍କର ତରପଣ ସାରି
ସ୍କନ୍ଦଙ୍କର ଦରଶନ ପୂଜା ଶେଷ କରି ।
ନର୍ମଦା ଜଳରେ ବୁଡ଼ିପୂଜି ବାସୁଦେବ
ବରାହ ଦର୍ଶନ କଲେ ବହି ଭକ୍ତିଭାବ ।

ତହୁଁ ଯାଇଁ କୋକାମୁଖ ତୀର୍ଥେ ସ୍ନାନ କଲେ
ଧରଣୀଧରଙ୍କୁ ତହିଁ ଭକ୍ତିରେ ପୂଜିଲେ ।
ମଧୁଦେଶେ ନାରୀ ହ୍ରଦେ କଲେ ଯାଇଁ ସ୍ନାନ
ଶଙ୍କରଙ୍କୁ ପୂଜି କଲେ କାଳିଞ୍ଜି ଗମନ ।
ନୀଳକଣ୍ଠ ପୂଜା କରି ସେହି କାଳିଞ୍ଜିରେ
ସ୍ନାନ ସନ୍ଧ୍ୟା ଶେଷ କରି ନୀଳତୀର୍ଥ ନୀରେ ।
ପ୍ରଭାସ ତୀର୍ଥରେ ଯାଇଁ ପୂଜିଲେ ଈଶ୍ୱର
ସାଗର ସଙ୍ଗମେ ସ୍ନାନ କଲେ ସେ ସତ୍ୱର ।
ଦକ୍ଷ ଶାପେ ଚନ୍ଦ୍ର ହୋଇ କ୍ଷୟ ରୋଗଗ୍ରସ୍ତ
ମହାଦେବ ବାସୁଦେବ ପାଦେ ଦେଇ ଚିତ୍ତ ।
ଉପାସନା କଲେ ସେହି ହେଲେ ସୁପ୍ରସନ୍ନ
ତାଙ୍କ ଅନୁଗ୍ରହେ ଚନ୍ଦ୍ର ହେଲେ ରୋଗଶୂନ୍ୟ ।
ସେ ଦୁଇ ଦେବଙ୍କୁ ପୂଜା କରି ତହୁଁ ଗଲେ
ହିମାଳୟ ଶିଖେ ମହାରୁଦ୍ରଙ୍କୁ ପୂଜିଲେ ।
ଉତ୍ତର କୁରୁରେ ପଦ୍ମନାଭି ବିଷ୍ଣୁ ପୂଜି
ସପ୍ତ ଗୋଦାବରୀ ତୀର୍ଥ ଜଳରେ ନିମଜ୍ଜି ।
ସେଠାରେ ଭୀମଙ୍କୁ ପୂଜି ଦାରୁବନେ ଗଲେ
ଶ୍ରୀଲିଙ୍ଗ ଦର୍ଶନ କରି ତାହାଙ୍କୁ ପୂଜିଲେ ।
ବ୍ରାହ୍ମଣୀ ନଦୀରେ ତହୁଁ ଯାଇଁ କଲେ ସ୍ନାନ
ତ୍ରିଦଶେଶ୍ୱରଙ୍କୁ ତହିଁ କରି ଆରାଧନ ।
ଶ୍ରୀନିବାସୀ ପୂଜାକଲେ ପ୍ଲକ୍ଷାବତରଣେ
ତହୁଁ ଯାଇଁ ଉପଗତ ହୋଇଲେ କୁଣ୍ଡୀନେ ।
ଚତୁର୍ବାହୁ ଶୂର୍ପାରକ ପୂଜା କରି ତହିଁ
ମଗଧାରଣ୍ୟକୁ ଗଲେ ବିଶ୍ୱେଶ୍ୱର ଯହିଁ ।
ବସୁଧାଧିପଙ୍କୁ କରି ସେଠାରେ ଦର୍ଶନ
ପ୍ରଜା ସୁଖ ନାମେ ମହାତୀର୍ଥେ କଲେ ସ୍ନାନ ।
ବାସୁଦେବ ପୂଜି ତହୁଁ ଶୋଣ ନଦେ ଗଲେ
ରକ୍ମଧର୍ମା ଈଶ୍ୱରଙ୍କୁ ସେଠାରେ ପୂଜିଲେ ।
ମହାକୋଶୀ ତୀର୍ଥ କଲେ ହଂସାଖ୍ୟ ପୂଜନ
ସେଠାରୁ ଗମନ କଲେ ସଇନ୍ଧବାରଣ୍ୟ ।
ହରି ପୂଜା କରି ତହୁଁ କନଖଳ ଗଲେ
ଭଦ୍ରକାଳୀଶ୍ୱର ବୀରଭଦ୍ରଙ୍କୁ ପୂଜିଲେ ।
ଗିରିବ୍ରଜେ ଗଲେ ଯହିଁ ଦେବ ପଶୁପତି
ପୂଜା ଶେଷ କରି ତାଙ୍କ ପାଦେ ରଖି ମତି ।
କାମରୂପେ ପୂଜା କରି ମୃଡ଼ାନୀ ଶଙ୍କର
ମହାତୀର୍ଥେ ମହାଦେବ ପୂଜି ଅନନ୍ତର ।
ଚକ୍ରପାଣି ପୂଜା କରି ତ୍ରିକୂଟ ପର୍ବତେ
ଗଜେନ୍ଦ୍ର ମୋକ୍ଷଣ ସ୍ତୁତି ପଢ଼ିଲେ ସୁଚିତ୍ତେ ।
ଫଳ ମୂଳ ଜଳ ଭକ୍ଷି ପରମ ଆଦରେ
ତିନିମାସ ବାସ କରି ବିପ୍ରବର କରେ ।
ସ୍ୱର୍ଣ୍ଣଦାନ କରି ଗଲେ ଦଣ୍ଡକ କାନନେ
ପୁଣ୍ଡରୀକ ନୟନଙ୍କୁ ଦେଖିଲେ ସେ ସ୍ଥାନେ ।
କରିଛନ୍ତି ବନସ୍ପତି ବପୁକୁ ଧାରଣ
ତିନି ରାତ୍ର ତାର ମୂଳେ ରହି ତହିଁ ପୁଣ ।
ପଢ଼ିଲେ ସ୍ଥଣ୍ଡିଳେ ଶୋଇ ସାରସ୍ୱତ ସ୍ତୁତି
ସର୍ବପାପ ପ୍ରଣାଶନ ତୀର୍ଥେ ଉପସ୍ଥିତି ।
କଲେ ସର୍ବ ପାପ ହର ହରିଙ୍କି ଦର୍ଶନ
ପାପ ପ୍ରମୋଚନ ସ୍ତବ ଦୁଇ କଲେ ଗାନ ।
ଶୂକର ମୂରତି ଧରି ପୂର୍ବେ ଏହି ସ୍ତୁତି
ପଢ଼ିଥିଲେ ଜନାର୍ଦ୍ଦନ କମଳାଙ୍କ ସ୍ତୁତି ।
ଶାଳଗ୍ରାମେ ବିଷ୍ଣୁସ୍ତମ୍ଭ ମୂର୍ତ୍ତି ପୂଜା କଲେ
ଭକତିରେ ତାଙ୍କ ପାଦ ଯୁଗଳ ବନ୍ଦିଲେ ।
ଏ ଆଖ୍ୟାନ ଯେ କରଇ ଶ୍ରବଣ କୀର୍ତ୍ତନ
ତାହାର ସକଳ ପାପ ହୁଅଇ ମୋଚନ ।

=+=

## ଗଜେନ୍ଦ୍ର ମୋକ୍ଷଣ

ପଚାରିଲେ ପୁଲସ୍ତ୍ୟଙ୍କୁ ଦେବର୍ଷି ନାରଦ
ଯେଉଁ ସ୍ତବ ପଢ଼ିଥିଲେ ମହାତ୍ମା ପ୍ରହ୍ଲାଦ ।
କରନ୍ତୁ ସେ ସ୍ତବ ଚତୁଷ୍ଟୟକୁ କୀର୍ତ୍ତନ
କହନ୍ତି ପୁଲସ୍ତ୍ୟ ଋଷି ଶୁଣ ତପୋଧନ ।
ଯାହା ଶୁଣି ପଢ଼ି ନରେ ହରିବେ ଦୁରିତ
ଦୁଃସ୍ୱପ୍ନ ବିନାଶ ହେବ ନୁହଇ ଅସତ୍ୟ ।
ଗଜେନ୍ଦ୍ର ମୋକ୍ଷଣ ସ୍ତବ କହୁଛି ପ୍ରଥମେ
ତଦନ୍ତେ କହିବି-ପାପ ପ୍ରାଣାଶନ ନାମେ ।
ତଦନ୍ତେ ଶୁଣିବେ ପୁଣି ସ୍ତବ ସାରସ୍ୱତ
ତ୍ରିକୂଟ ନାମରେ ଅଛି ଏକ ପରବତ ।
ସର୍ବବିଧ ରତ୍ନମୟ ଅତ୍ୟନ୍ତ ଶ୍ରୀମତି
ସୁମେରୁ ପର୍ବତ ପୁତ୍ର ଦିବାକର ଦ୍ୟୁତି ।
କ୍ଷୀରୋଦ ସଲିଳ ମହାତରଙ୍ଗେ ଏହାର
ସୁନିର୍ମଳ ଶିଳାତଳ ଧୌତ ନିରନ୍ତର ।
ଦେବରଷିଗଣ ସେବା କରନ୍ତି ସତତ
ସାଗରକୁ ଭେଦକରି ହୁଅଇ ଉତ୍ଥିତ ।

ରହିଥାନ୍ତି ସେ ପର୍ବତେ ଅପସରାଗଣେ
ସର୍ବଦା ସେ ଆଚ୍ଛାଦିତ ଗିରି ପ୍ରସ୍ରବଣେ ।
ଗନ୍ଧର୍ବ କିନ୍ନର ଯକ୍ଷ ଗୁହ୍ୟକ ଚାରଣ
ତପୋଧନବର୍ଗ ସିଦ୍ଧ ବିଦ୍ୟାଧର ଗଣ ।
ବୃକ ଗଜ ଆଦି ଜୀବ ଥିବାରୁ ଶୋଭିତ
ପୁନ୍ନାଗ ପାଟଳ ବିଲ୍ୱ ଆମଳକ ଚୂତ ।
କଦମ୍ବ ଚନ୍ଦନ ନୀପ ଅଗୁରୁ ଚମ୍ପକ
ଅର୍ଜ୍ଜୁନ ପର୍ପଟ ଗୁଳ୍ମ କର୍ଣ୍ଣିକାର ଶାକ ।
ଶାଳ ତାଳ ପିଆସାଳ ତମାଳ ସରଳ
ଏ ଆଦି ବୃକ୍ଷରେ ଶୋଭା ପାଉଛି ଶଇଳ ।
ନାନାବିଧ ଧାତୁଦ୍ରବ୍ୟେ ଶୃଙ୍ଗ ବିରାଜଇ
ବିସ୍ତୀର୍ଣ୍ଣ ସାନୁରେ ଗିରି ଶୋଭା ପ୍ରକାଶଇ ।
ମୃଗ ଶାଖାମୃଗ ସିଂହ ଆଦି ପଶୁଗଣ
କରିବାରୁ ସେ ପର୍ବତେ ନିତ୍ୟ ବିଚରଣ ।
ମୟୁର ଚକୋର ଆଦି ପକ୍ଷୀଙ୍କର ନାଦେ
ମଦ ଗନ୍ଧ ପୁଷ୍ପ ଗନ୍ଧ ବିବିଧ ଆମୋଦେ ।
ବିରାଜଇ ଗିରିବର ଶୃଙ୍ଗେ ଦିବାକର
ଦ୍ୱିତୀୟ ରଜତମୟ ଶୃଙ୍ଗେ ନିଶାକର ।
ତୃତୀୟ ପଣ୍ଡୁର ବର୍ଣ୍ଣେ ପୟୋଦ ସଦୃଶ
ବଜ୍ରଇନ୍ଦ୍ର ନୀଳମଣି ବୈଦୁର୍ଯ୍ୟ ଉଭାସ ।
ହେବାରୁ ତା ତେଜେ ଦିଗ ହୁଏ ଉଭାସିତ
ବ୍ରହ୍ମାଙ୍କ ସଦନ ତହିଁ ରତ୍ନେ ସୁରଞ୍ଜିତ ।
କୃତଘ୍ନ ନୃଶଂଶ ଆଉ ପାପିଷ୍ଠ ରାକ୍ଷସ
ଏମାନଙ୍କୁ ସେ ସଦନ ନ ହୁଅଇ ଦୃଶ୍ୟ ।
ସେ ଗିରି ପୃଷ୍ଠରେ ଅଛି ଏକ ସରୋବର
ଅତି ସୁନିର୍ମଳ ଆଉ ସୁଶୀତଳ ନୀର ।
କାଞ୍ଚନ ପଙ୍କଜ ତହିଁ ଫୁଟିଛି ବହୁତ
କାରଣ୍ଡବ ରାଜହଂସ ହୋଇଛି ମଣ୍ଡିତ ।
ଫୁଟିଛି ତହିଁରେ ପୁଣି କୁମୁଦ ଉତ୍ପଳ
ଶତପତ୍ର କହ୍ଲାର ଯେ କନକ କମଳ ।
ପତ୍ର ସବୁ ମରକତମଣି ତୁଲ୍ୟ ଦିଶେ
କୁସୁମ ମୁକୁଳ ସବୁ କାଞ୍ଚନ ସଦୃଶେ ।
ତାର ଚାରିପାଶେ ଗୁଳ୍ମ କୀଚକ ଅନେକ
ସେହି ସରୋବର ଜଳେ ଅଛି ଗ୍ରାହ ଏକ ।
ମହାବଳବନ୍ତ ଦୁଷ୍ଟ ପ୍ରକୃତି ତାହାର
ବଳେ ତାକୁ ନ ପାରନ୍ତି ଗଜେନ୍ଦ୍ର ନିକର ।

ଦିନେ ସ୍ନାନ ଅର୍ଥେ ଏକ ଗଜ ଯୂଥପତି
ଐରାବତ କରୀ ପ୍ରାୟେ କରି ପାଦ ଗତି ।
ଆସନ୍ତେ ସେ ଗିରିବର ତାର ମହାଗନ୍ଧେ
ସୁବାସିତ ହୋଇବାରୁ ଷଟପଦ ବୃନ୍ଦେ ।
ଗୁଣୁଗୁଣୁ ନାଦେ କଲେ ଗିରିକି ରଞ୍ଜିତ
ଉଜ୍ଜ୍ୱଳ ତାହାର ଦନ୍ତ ଶରୀର ବୃହତ ।
ଅଞ୍ଜନପର୍ବତ ତୁଲ୍ୟ ତାର କଳେବର
ଘୂର୍ଣ୍ଣିତ ନୟନେ ସେହି ସରୋବର ତୀର ।
ପଦ୍ମବନେ ବିହରିଲା ଯୂଥ ମଧ୍ୟେ ରହି
ଏ ସମୟେ ଗ୍ରାହ ଆସି ତାହାକୁ ଧରଇ ।
କରେଣୁ ନିକର ଦେଖି ଦାରୁଣ ରବରେ
କମ୍ପାଇଲେ ସେ ପର୍ବତ ଭୀଷଣ ଚିତ୍କାରେ ।
ଅତି ବଳବନ୍ତ ଗ୍ରାହ ଅତ୍ୟନ୍ତ ଦୁର୍ଜ୍ଜନ
ବଳେ ଧରି ଓଟାରଇ ଗଜର ଚରଣ ।
ତୀରକୁ ଓଟାରେ ତାକୁ ମହାବଳ ରାଜ
ଜଳକୁ ଓଟାରେ ଗ୍ରାହ ଗର୍ଜେ କରୀରାଜ ।
ଏମନ୍ତେ ତୁମୁଳ ଯୁଦ୍ଧ ହେଲା ପଦ୍ମବନେ
ନ ଜାଣନ୍ତି ଦିନ ରାତି ସେହି ବେନି ଜନେ ।
ଦେବବର୍ଷେ ବହିଗଲା ସହସ୍ରେ ବରଷ
ଦାରୁଣ ବାରୁଣ ପାଶ ପାତିଗ୍ରାହ ଈଶ ।
ବାନ୍ଧିଲା ଗଜକୁ ଦୃଢ଼େ ନ ଚଳିଲା ପାଦ
ଭୟରେ ସେ କରୀବର କରି ଆର୍ତ୍ତନାଦ ।
ନାରାୟଣ ପାଦପଦ୍ମେ ଦୃଢ଼େ ରଖି ଚିତ୍ତ
ପୂର୍ବଜନ୍ମ କର୍ମଫଳେ ହୋଇଣ ବ୍ୟଥିତ ।
ଶ୍ରୀହରିଙ୍କି ସୁମରନ୍ତେ ପୂର୍ବଜନ୍ମାଭ୍ୟାସେ
ଭକତି ଉଦୟ ହେଲା ତାହାର ମାନସେ ।
ଅନ୍ତରାତ୍ମା ଶୁଦ୍ଧ ହେଲା ଦୃଢ଼ ହେଲା ମନ
ଭକ୍ତିବଳେ ଉପୁଜିଲା ତାର ସଦଜ୍ଞାନ ।
ଶ୍ରୀହରିଙ୍କି ପୂଜିବି ମୁଁ ବିଚାରିଲା ଚିତ୍ତେ
ମଥିତ ଅମୃତ ପ୍ରାୟ ଦିଶନ୍ତି ସାକ୍ଷାତେ ।
ଶଙ୍ଖ ଚକ୍ର ଗଦାଧର ସର୍ବ ଶୁଭମୟ
ସର୍ବବ୍ୟାପୀ ଆଦିଦେବ ଅଚ୍ୟୁତ ଅବ୍ୟୟ ।
ଏମନ୍ତ ବିଚାରି ସେହି ଗଜ ଯୂଥପତି
ଏକଧ୍ୟାନେ ଏକମନେ ଭଜିଣ ଶ୍ରୀପତି ।
କାଞ୍ଚନ-କମଳ ଏକ ଶୁଣ୍ଢ ଅଗ୍ରେ ଧରି
ଶ୍ରୀହରିଙ୍କ ପାଦପଦ୍ମେ ଅରପଣ କରି ।

ବୋଇଲା ହେ ପ୍ରଭୁ ମୂଳପ୍ରକୃତି - ଅଜିତ
ବିରାଟ - ମୂରତି ତୁମ୍ଭେ ଅନନ୍ତ ଅଚ୍ୟୁତ ।
କରୁଛି ମୁଁ ତୁମ୍ଭ ପାଦପଦ୍ମେ ନମସ୍କାର
ଏ ଘୋର ବିପଦ - ସିନ୍ଧୁ ମଧ୍ୟରୁ ଉଦ୍ଧାର ।
ତୁମ୍ଭର ଆଶ୍ରୟ ନାହିଁ ସ୍ପୃହା ନାହିଁ ପୁଣି
ତୁମ୍ଭେ ସ୍ୱୟଂ ପ୍ରକାଶ ହେ ଶଙ୍ଖଚକ୍ରପାଣି ।
ବାରମ୍ବାର ନମସ୍କାର ତୁମ୍ଭ ଶ୍ରୀଚରଣେ
କରୁଛି ମୁଁ ମୂଢ଼ମତି ମୂର୍ଖ ଆଚରଣେ ।
ସମସ୍ତଙ୍କ ଆଦି ତୁମ୍ଭେ ବାମନ ମୂରତି
ଋଷିଙ୍କୁ ସାହାଯ୍ୟ ତୁମ୍ଭେ କର ଦିବାରାତି ।
ଆଦ୍ୟ ପ୍ରବର୍ତ୍ତକ ତୁମ୍ଭେ ପ୍ରଭୁ ଭଗବାନ
ଶ୍ରୀପୟରେ ନମସ୍କାର କରୁଛି ମୁଁ ଦୀନ ।
ତୁମ୍ଭରି ପ୍ରକାଶ ନାହିଁ ଅନ୍ତରାୟ ନାହିଁ
ଅଦ୍ୱିତୀୟ ରୂପ ତୁମ୍ଭେ ପ୍ରଭୁ ଭାବଗ୍ରାହୀ ।
ତୁମ୍ଭ ପାଦେ ବାରମ୍ବାର ମୋର ନମସ୍କାର
ତୁମ୍ଭେ ପ୍ରଭୁ ଗୁହ୍ୟ ଗୂଢ଼ ସ୍ୱରୂପ ତୁମ୍ଭର ।
ତୁମ୍ଭେ ପ୍ରଭୁ ଗୁଣ ପୁଣି ଗୁଣ ପ୍ରବର୍ତ୍ତକ
ତୁମ୍ଭ ଅନ୍ତ ନ ପାଇଲେ କରି ନାନା ତର୍କ ।
ତୁମ୍ଭର ତୁଳନା ନାହିଁ ଇୟତ୍ତାହିଁ ନାହିଁ
ବାରମ୍ବାର ନମସ୍କାର କରୁଅଛି ମୁହିଁ ।
ତୁମ୍ଭେ ଶିବ ସ୍ୱରୂପ ଯେ ଚିନ୍ତାରୁ ଅତୀତ
ଶାନ୍ତ ସ୍ୱରୂପହିଁ ତୁମ୍ଭେ ମହାକୀର୍ତ୍ତିମନ୍ତ ।
ତୁମ୍ଭଙ୍କୁ ମୁଁ ନମସ୍କାର କରୁଅଛି ହରି
ତୁମ୍ଭେ ସନାତନ ତୁମ୍ଭେ ଅନାଦି ମୁରାରି ।
ପୁରାଣ ପୁରୁଷ ତୁମ୍ଭ ପାଦେ ନମସ୍କାର
ନିର୍ଗୁଣ ଗୁଣାତ୍ମା ତୁମ୍ଭେ ଗୁଣର ଆକର ।
ବାରମ୍ବାର ନମସ୍କାର ତବ ଶ୍ରୀପୟରେ
ଉଦ୍ଧାରି ଧରନ୍ତୁ ଘୋର ବିପଦରୁ ବାରେ ।
ଜଗତର ପ୍ରତିଷ୍ଠାତା ଅଟ ହେ ଗୋବିନ୍ଦ
ମୋର ନମସ୍କାର ଘେନ ପ୍ରଭୁ ଆଦିକନ୍ଦ ।
ପଦ୍ମନାଭ ବିଶ୍ୱେଶ୍ୱର ବିଶ୍ୱରୂପ ହରି
ତୁମ୍ଭେ ଅଟ ସାଂଖ୍ୟଯୋଗ ଉଦ୍ଭାବନକାରୀ ।
ତୁମ୍ଭ ଶ୍ରୀଚରଣ ତଳେ ପଶିଲି ଶରଣ
ତୁମ୍ଭେ ଭଗବାନ ତୁମ୍ଭେ ପ୍ରଭୁ ନାରାୟଣ ।
ତୁମ୍ଭେ ପରମାତ୍ମା ଶିବରୂପୀ ଦଇତାରି
ଶରଣ ପଶୁଛି ତବ ଚରଣେ ହେ ହରି ।

ବାମନ ସ୍ୱରୂପ ତୁମ୍ଭେ ଅମିତ ବିକ୍ରମ
ଜଗତକାରଣ ତୁମ୍ଭ ଚରଣେ ପ୍ରଣାମ ।
ତୁମ୍ଭେ ଶାର୍ଙ୍ଗ ଧନୁର୍ଦ୍ଧର ଚକ୍ର ଗଦାଧର
ଶ୍ରୀପୁରୁଷୋତ୍ତମ ତୁମ୍ଭ ପାଦେ ନମସ୍କାର ।
ତୁମ୍ଭେ ପ୍ରଭୁ ଗୁହ୍ୟ ତୁମ୍ଭେ ବେଦର ନିଳୟ
ତୁମ୍ଭେ ତ ବାସୁକି ଅହି ତୁମ୍ଭେ ଜଗନ୍ମୟ ।
ତୁମ୍ଭେ ନରସିଂହ ତୁମ୍ଭେ ଦୈତ୍ୟ - ନିସୂଦନ
ତୁମ୍ଭେ ଚତୁର୍ଭୁଜ ତୁମ୍ଭେ ଶ୍ରୀମଧୁସୂଦନ ।
ବ୍ରହ୍ମା ଇନ୍ଦ୍ର ମୁନିଗଣ ଯେତେକ ଚାରଣ
ପଢ଼ନ୍ତି ତୁମ୍ଭର ସ୍ତବ ଆହେ ନାରାୟଣ ।
ଦେବଗଣ ଅଗ୍ରଗଣ୍ୟ ହେ ପ୍ରଭୁ ଅଚ୍ୟୁତ
ମୋର ନମସ୍କାର ଘେନ ହେ ପ୍ରଭୁ ଅନନ୍ତ ।
ଶେଷଭୋଗ - ପର୍ଯ୍ୟଙ୍କର ତୁମ୍ଭର ଶୟନ
ତୁମ୍ଭେ ପ୍ରଭୁ ସର୍ବଜନ ପୀରତି ଭାଜନ ।
ଗୋକ୍ଷୀର ସଦୃଶ ତୁମ୍ଭେ କନକସନ୍ନିଭ
ନୀଳମେଘୋପମ ତୁମ୍ଭେ ସ୍ମିତ ପଦ୍ମନାଭ ।
ତୁମ୍ଭେ ପୀତାମ୍ବର ମଧୁକୈଟଭ ସୂଦନ
ସୁଚାରୁ ମୁକୁଟ ତୁମ୍ଭେ ବିଶ୍ୱାଦ୍ୟ ବନ୍ଦନ ।
ଅକ୍ଷର ସ୍ୱରୂପ ତୁମ୍ଭ ପାଦେ ନମସ୍କାର
ତୁମ୍ଭ ନାଭିକମଳ ଯେ ଚତୁର୍ମୁଖ ଘର ।
କ୍ଷୀରୋଦ ସାଗର ଅଟେ ତୁମ୍ଭ ନିକେତନ
ବିଚିତ୍ର କନକାଙ୍ଗଦ ତୋର ବିଭୂଷଣ ।
ସର୍ବଜନ ବରଦାତା ତୁମ୍ଭେ ଯେ ଈଶ୍ୱର
ବର ସ୍ୱରୂପ ହେ ଘେନ ମୋର ନମସ୍କାର ।
ତୁମ୍ଭେ ଭକ୍ତିପ୍ରିୟ ଭକ୍ତଜନ ହିତକାରୀ
ସୁଦର୍ଶନ ଚକ୍ର ବର ପ୍ରଭାବେ ତୁମ୍ଭରି ।
ଦୀପ୍ତି ପ୍ରକଟିତ ହୁଏ ତୁମ୍ଭେ ପୁରନ୍ଦର
ବିଘ୍ନନାଶ ଅର୍ଥେ ସଦା ପୌରୁଷ ତୁମ୍ଭର ।
ପ୍ରଫୁଲ୍ଲ ବିମଳାୟତ କମଳଲୋଚନ
ଯୋଗ ପ୍ରତିଷ୍ଠାତା ତୁମ୍ଭେ ବରଦ ମୋହନ ।
ନମସ୍ତେ ନମସ୍ତେ ବରରୂପୀ ଦୟାମୟ
ନମସ୍ତେ ନମସ୍ତେ ଦେବଗଣଙ୍କ ଆଶ୍ରୟ ।
ବ୍ରହ୍ମାର ଆଶ୍ରୟ ତୁମ୍ଭେ ଲୋକଙ୍କ ଆଶ୍ରୟ
ତୁମ୍ଭେ ଆତ୍ମହିତାଶ୍ରୟ ତୁମ୍ଭେ ବିଶ୍ୱମୟ ।
ଆତ୍ମା ବିକାଶକ ମହାବରାହ ମୂରତି
ନାରାୟଣ ! ତୁମ୍ଭ ପାଦେ କରଇ ପ୍ରଣତି ।

ଅବ୍ୟକ୍ତ ଅଚିନ୍ତ୍ୟ ତୁମ୍ଭେ କୂଟସ୍ଥ ହେ ହରି
କାରଣ ସ୍ୱରୂପ ତୁମ୍ଭେ କମଳା ବିହାରୀ ।
ଆଦିଦେବ ନାରାୟଣ ହେ ଯୁଗାନ୍ତ ଶେଷ
ତୁମ୍ଭେ ଦେବଦେବ ତୁମ୍ଭେ ପୁରାଣପୁରୁଷ ।
ତୁମ୍ଭ ଶ୍ରୀଚରଣତଳେ ପଶିଲି ଶରଣ
ଚାରୁଚିତ୍ର ମଉଳି ହେ କମଳାରମଣ ।
ଅଜ୍ଞେୟ ହେ ଅଗ୍ରରୂପି ପ୍ରକୃତିର ହିତ
କ୍ଷେତ୍ରଜ୍ଞ ଆତ୍ମଭୂ ତୁମ୍ଭେ ବରେଣ୍ୟ ସତତ ।
ଆହେ ବାସୁଦେବ ନେଲି ମୁଁ ତୁମ୍ଭ ଶରଣ
ମୁଁ ଗଜମୂରୁଖ ମୋତେ ରଖ ନାରାୟଣ ।
ଚିନ୍ତାର ଅତୀତ ତୁମ୍ଭେ ଦୃଷ୍ଟିର ଅତୀତ
ବ୍ୟକ୍ତିର ଅତୀତ ତୁମ୍ଭେ ବିନାଶ ରହିତ ।
ବ୍ରାହ୍ମଣେ ବୋଲନ୍ତି ତୁମ୍ଭେ ନିତ୍ୟ ବ୍ରହ୍ମମୟ
ଶାଶ୍ୱତ ସ୍ୱରୂପ ବନ୍ଦେ ତୁମ୍ଭ ପାଦଦ୍ୱୟ ।
ଦେବେ ଜାଣି ନ ପାରନ୍ତି ରୂପକୁ ତୁମ୍ଭର
କୃପାକରି ଘେନ ବାରେ ମୋର ନମସ୍କାର ।
ସର୍ବଦା ଅକ୍ଷର ବ୍ରହ୍ମ ବୋଲନ୍ତି ତୁମ୍ଭଙ୍କୁ
ସୁମରିଣ ଲୋକେ ମୁକ୍ତ ହୋନ୍ତି ମୃତ୍ୟୁମୁଖୁ ।
ସକଳ ଈଶ୍ୱର ତୁମ୍ଭେ ପରମ ଆଶ୍ରୟ
ସଦା ଆପ୍ତ କାମୀ ଅନୁ-ତ୍ତମ ପୁଣ୍ୟମୟ ।
ଶାଶ୍ୱତ ସ୍ୱରୂପ ବିଷ୍ଣୁ ପଙ୍କଜଚରଣେ
ଶରଣ ପଶିଲି ଏହି ସରସୀଜ ବଣେ ।
ଯେଉଁ ପ୍ରଭୁ କାର୍ଯ୍ୟ କ୍ରିୟା କାରଣ ସ୍ୱରୂପ
ଯାହାର ଇୟତ୍ତା ନାହିଁ ଯେ ପ୍ରଭୁ ଅରୂପ ।
ଯେ ପ୍ରଭୁ ହିରଣ୍ୟନାଭ ବର-ପଦ୍ମନାଭ
ମହାବଳ ଦେବନିଧି ସୁରେଶ - ଋଷଭ ।
ବିଶ୍ୱବ୍ୟାପୀ ଜନାର୍ଦ୍ଦନ ଚରଣେ ଶରଣ
ଏ ଘୋର ବିପଦୁଁ ମୋତେ ରଖ ନାରାୟଣ ।
ମହାମୂଲ୍ୟ ମଣିଗଣ କିରୀଟ କେୟୁର
ଏଥିରେ ଭୂଷଣ ସଦା ଶରୀର ଯାହାର ।
ଯେ କାଞ୍ଚନଭକ୍ତି ବିଚିତ୍ରିତ କଳେବର
ବନମାଳା ବିଭୂଷିତ ଯେହୁ ପୀତାମ୍ବର ।
ସେ କେଶବ ଚରଣରେ ପଶିଲି ଶରଣ
ଯେଉଁ ପ୍ରଭୁ ବେଦବିଦଗଣ ଅଗ୍ରଗଣ୍ୟ ।
ଯୋଗାତ୍ମା ଯେ ସାଂଖ୍ୟବିଦଗଣ ଶିରୋମଣି
ଯେ ଆଦିତ୍ୟ ରୁଦ୍ରଅଶ୍ୱୀ ଯେ ଓଁ କାରଯୋନି ।
ବସୁଙ୍କ ପ୍ରଭାବଯୁକ୍ତ ସର୍ବଜନ ପ୍ରଭୁ
ଆଦିଭୂତ ଅଚ୍ୟୁତ ଯେ ଶ୍ରୀବତ୍ସାଙ୍କ ବିଭୁ ।
ସେହି ମହାଦେବ ପାଦେ ପଶିଲି ଶରଣ
ଗ୍ରାହମୁଖୁଁ ତ୍ରାହିକର ପ୍ରଭୁ ନାରାୟଣ ।
ଯେଉଁ ପ୍ରଭୁ ଦେବଗୁହ୍ୟ ଜନମନୋହର
ଅନୁପମ ରୂପ ସ୍ଥୂଳ ସୂକ୍ଷ୍ମ କଳେବର ।
ଅଭୟବରଦ ପ୍ରଭୁ ନାରାୟଣ ପାଦେ
ଶରଣ ପଶିଲି ପଡ଼ି ଏ ଘୋର ବିପଦେ ।
ଗୁଣାତୀତ ସର୍ବଭୂତ ସୃଷ୍ଟିର କରତା
ପରମ ଈଶ୍ୱର ଯେହୁ ଦୁଃଖୀଜନ ତ୍ରାତା ।
ଯତିଙ୍କ ପରମଗତି ସେ ବିଷ୍ଣୁ ଚରଣେ
ଶରଣ ପଶିଲି ଏହି ସରସୀଜ ବଣେ ।
ଗୁଣାଧ୍ୟକ୍ଷ ଅକ୍ଷର ଯେ ପୁଷ୍କର ଈକ୍ଷଣ
ସକଳ ଆଶ୍ରୟଦାତା ଶରଣ ରକ୍ଷଣ ।
ଭକତବତ୍ସଳ ସେହି ଭଗବାନ ପାଦେ
ଶରଣ ପଶିଲି ପଡ଼ି ଏ ଘୋର ବିପଦେ ।
ଯେଉଁ ପ୍ରଭୁ ତ୍ରିବିକ୍ରମ ତ୍ରୈଲୋକ୍ୟ ଈଶ୍ୱର
ପ୍ରପିତାମହ ଯେ ଯୋଗମୟ କଳେବର ।
ସେ ମହାତ୍ମା ଜନାର୍ଦ୍ଦନ ଚରଣେ ଶରଣ
ପଶିଲି ଏ ଗ୍ରାହମୁଖୁ କର ପରିତ୍ରାଣ ।
ଆଦିଦେବ ଯେ ସକଳ କଲ୍ୟାଣର କ୍ଷେତ୍ର
ଅଜ ଅବିନାଶୀ ଯେହୁ ବିପ୍ର ପ୍ରିୟପାତ୍ର ।
ବ୍ୟକ୍ତାବ୍ୟକ୍ତ ସ୍ୱରୂପ ଯେ ପ୍ରଭୁ ନାରାୟଣ
ସେହି ପରମାଣୁ ରୂପୀ ଚରଣେ ଶରଣ ।
ନମୋ ନମଃ ସର୍ବଜନ ପୂଜନୀୟ ହରି
ଦେବଦେବ ଈଶ୍ୱର ପାଦେ ଶରଣ ମୋହର ।
ନମୋ ଅଣୀୟାଂସ ତନୁ ସଦା ତୁମ୍ଭେ ଏକା
ପରାତ୍ପର ପରମାତ୍ମା ନାହିଁ ତୁମ୍ଭ ଶାଖା ।
ନମସ୍ତେ ସହସ୍ର ଶିରା ମହାତ୍ମା ଅନନ୍ତ
ବେଦପରଗାମୀ ଯେତେ ଦେବ ଋଷିବ୍ରାତ ।
ତୁମ୍ଭଙ୍କୁ ବୋଲନ୍ତି ବ୍ରହ୍ମାଆଦିଙ୍କ ଆଶ୍ରୟ
ବିପଦେ ପଡ଼ିଛି ପ୍ରଭୁ ମୁହିଁ ନିରାଶ୍ରୟ ।
ନମସ୍ତେ ଭକତଜନ ଅଭୟଦ ହରି
ନମସ୍ତେ ପୁଣ୍ଡରୀକାକ୍ଷ ଶରଣ ତୋହରି ।
ନମୋ ନମଃ ଅବ୍ରହ୍ମଣ୍ୟ ତୋ ପାଦେ ଶରଣ
ଏ ଘୋର ବିପଦୁଁ ମୋତେ ରଖ ନାରାୟଣ ।

ପୁଲସ୍ତ୍ୟ କହିଲେ ଶଙ୍ଖ ଚକ୍ର ଗଦାଧର
ଗଜରାଜ ସ୍ତୁତି ଶୁଣି ପ୍ରଭୁ ଲୋକାଧାର ।
ପ୍ରସନ୍ନେ ବସିଲେ ଯାଇ ଗରୁଡ଼ ଉପରେ
ଜଗତର ସ୍ୱାମୀ ଗଲେ ସରୋବର ତୀରେ ।
ଜଳମଧ୍ୟୁଁ ଗ୍ରାହ ଗଜ ଆଣିଲେ ଉଦ୍ଧାରି
ସୁଦର୍ଶନ ଚକ୍ରେ ପ୍ରଭୁ ତାହାକୁ ବିଦାରି ।
ଦାରୁଣପାଶରୁ କଲେ ଗଜକୁ ମୋଚନ
ଗ୍ରାହକୁ ଶାପରୁ ମୁକ୍ତ କଲେ ଜନାର୍ଦ୍ଦନ ।
ପୂର୍ବେ ଏକ ହୁ ହୁ ନାମେ ଗନ୍ଧର୍ବ ସ୍ୱର୍ଗରେ
ଦେବଶାପେ ଗ୍ରାହ ହୋଇଥିଲା ସରୋବରେ ।
ବିଷ୍ଣୁ ହସ୍ତେ ମୋକ୍ଷ ପାଇ ସ୍ୱର୍ଗପୁରେ ଗଲା
ଗଜ ତହୁଁ ବିଷ୍ଣୁଙ୍କର ସଂସର୍ଗ ପାଇଲା ।
ଦିବ୍ୟବପୁ ଧରି ହେଲା ପୁରୁଷ ମୂରତି
ଗଜ ଗ୍ରାହ ଦୁହେଁ ତହିଁ ପାଇଲେ ମୁକତି ।
ତା ଦେଖି ଶରଣାଗତ ଭକତବତ୍ସଳ
କହିଲେ ପ୍ରସନ୍ନ ହୋଇ ପ୍ରଭୁ ଆଦିମୂଳ ।
ଭକତପ୍ରଧାନ ଆହେ ଗଜେନ୍ଦ୍ରଶିଖର
ଯେଉଁ ଜନ ତୋତେ ମୋତେ ଏହି ସରୋବର ।
ତ୍ରିକୂଟ ପର୍ବତ ଆଉ ଗ୍ରାହବିଦାରଣ
ସ୍ଥିରଚିତ୍ତେ ତ୍ରିକାଳରେ କରିବ ସ୍ମରଣ ।
ବିଷ୍ଣୁ ବୃକ୍ଷମୂଳେ କିମ୍ବା ଗଙ୍ଗାନଦୀ ତୀରେ
ନୈମିଷ ବନରେ ଅବା ଭାସ୍କର ତୀର୍ଥରେ ।
ଶୁଚି ହୋଇ ଏହି ସ୍ତୁତି ପଢ଼ିବ ଶୁଣିବ
ଦୁଃସ୍ୱପ୍ନ ବିନାଶ ପାଇ ସୁସ୍ୱପ୍ନ ଲଭିବ ।
ପ୍ରଭାତେ ଯେ ମତ୍ସ୍ୟ କୂର୍ମ ବରାହ ବାମନ
ନାଗେନ୍ଦ୍ର ଖଗେନ୍ଦ୍ର ନରସିଂହଙ୍କୁ ସ୍ମରଣ ।
କରଇ ସେ ସର୍ବପାପୁଁ ମୁକତ ହୁଅଇ
ଅକ୍ଷୟ ପରମ ପୁଣ୍ୟଲୋକରେ ବସଇ ।
ଏହା କହି ହୃଷୀକେଶ ଉଠିଲେ ସତ୍ୱରେ
ଗଜେନ୍ଦ୍ର ଗନ୍ଧର୍ବ ଦେହ ଆଉଁଷିଲେ କରେ ।
ନାରୟଣ ନାରାୟଣ ସେହି ମତ୍ତକାରୀ
ବିଷ୍ଣୁର ଶରଣ ନେଲା ଦିବ୍ୟବପୁ ଧରି ।
ଦେବ ଗୁହ୍ୟ ପରାୟଣ ଯେତେ ଋଷିଗଣ
ଇନ୍ଦ୍ର ଆଦି ଦେବଗଣ ମହର୍ଷି ଚାରଣ ।
ଗଜେନ୍ଦ୍ର ମୋକ୍ଷଣ ଦେଖି କଲେ ବହୁ ସ୍ତୁତି
କହିଲେ ସେ କାଳେ ପୁଣି ପ୍ରଜାପତି ପତି ।
ପ୍ରଭାତେ ଯେ ଜନ ଏହା କରିବ ସ୍ମରଣ
ଲଭିବ ପରମ ସିଦ୍ଧି ଯିବ ଦୁଃସ୍ୱପନ ।
ପଢ଼ିଲେ ଶୁଣିଲେ ପାପ ନ ରହିବ ଦେହେ
ଲେଖି ଯେ ପୂଜିବ ଏହା ନିତ୍ୟ ରଖି ଗୃହେ ।
ରଖିବେ ଶ୍ରୀହରି ତାକୁ ଦ୍ୱିରଦ ପରାୟ
ସୁରେଶ୍ୱର ନାରାୟଣ ଯେହୁ ବ୍ରହ୍ମମୟ ।
ବର ପଦ୍ମନାଭ ଅଜ ପୁରାଣ ପୁରୁଷ
ଲୋକପତି ଶ୍ରୀପତିର ଗୋପୀନାଥ ଦାସ ।

=✢=

## ସାରସ୍ୱତ ସ୍ତୋତ୍ର

ପୁଲସ୍ତ୍ୟ କହିଲେ ଥିଲା ଗୋଟିଏ କ୍ଷତ୍ରିୟ
ଘୃଣାଶୂନ୍ୟ ଅଧମ ସେ ଦାରୁଣ ହୃଦୟ ।
ପରପୀଡ଼ା ରତ କ୍ଷୁଦ୍ର ପ୍ରକୃତି ତାହାର
ଦ୍ୱିଜଗଣ ଦ୍ରୋହକାରୀ ଅତିଶୟ କ୍ରୂର ।
ଦେବ- ପିତୃ- ଦ୍ୱିଜସେବା ନ କରଇ ସେହି
ଏକାରଣୁ କ୍ରମେ କ୍ରମେ ଆୟୁ କ୍ଷୟ ଯାଇ ।
ପାପକାରୀ ନିଶାକର ହେଲା କର୍ମଦୋଷେ
ଯେ ପ୍ରାଣୀ ପଡ଼ଇ ଆସି ତାର ବାହୁପାଶେ ।
ତାହାକୁ ଭକ୍ଷଣ କରେ ଧରି ସେ ରାକ୍ଷସ
ଏରୂପେ ଦାରୁଣ କର୍ମେ ଗଲା ତା ବୟସ ।
ଦିନେ ନଦୀତଟେ ଦେଖେ ଏକ ତପୋଧନ
ଊର୍ଦ୍ଧ୍ୱବାହୁ ଜିତେନ୍ଦ୍ରିୟ ଅଟଇ ବ୍ରାହ୍ମଣ ।
ଯୋଗାଚାରୀ ଶୁଚି ଦକ୍ଷ ବିଷ୍ଣୁର ଭକତ
ବିଷ୍ଣୁର କବଚ ସେହି ପଢ଼େ ଅବିରତ ।
ପୂର୍ବଦିଗ ମୋର ବିଷ୍ଣୁ ରଖନ୍ତୁ ଚକ୍ରରେ
ଗଦା ଧରି ବିଷ୍ଣୁଥାନ୍ତୁ ମୋର ଦକ୍ଷିଣରେ ।
ରଖନ୍ତୁ ପଶ୍ଚିମ ଦିଗ ବିଷ୍ଣୁ ଧନୁର୍ଦ୍ଧାରୀ
ଉତ୍ତର ରଖନ୍ତୁ ମୋର ବିଷ୍ଣୁ ଖଡ଼୍‌ଗ ଧରି ।
ରଖନ୍ତୁ କୋଣ ବିକୋଣ ମୋର ହୃଷୀକେଶ
ଜନାର୍ଦ୍ଦନ ରଖନ୍ତୁ ଯେ କୋଣ ଛିଦ୍ରଦେଶ ।
ଶୂକର ରୂପରେ ହରି ରଖନ୍ତୁ ଭୂତଳେ
ନରସିଂହ ରଖନ୍ତୁ ଯେ ଆକାଶ ମଣ୍ଡଳେ ।
ଏହି ସୁଦର୍ଶନ ଚକ୍ର କରୁଛି ଭ୍ରମଣ
ଏହାର କିରଣ ନାଶୁ ନିଶାଚର ଗଣ ।
ସହସ୍ର କିରଣଧାରୀ ବିଷ୍ଣୁ ଗଦାବରେ
କରୁ ଊର୍ଦ୍ଧ୍ୱଭାଗେ ବୃକସମୂହ ସଂହାରେ ।

ରାକ୍ଷସ ପିଶାଚ ଭୂତ ଡାକିନୀ ନିକର
ଏହାଙ୍କୁ ସଂହାର କରୁ ସେ ଗଦା ଆବର ।
ତେଜୋମୟ ଶାର୍ଙ୍ଗଧନୁ ମନୁଷ୍ୟ ତିର୍ଯ୍ୟକ
କୁଷ୍ମାଣ୍ଡ ପ୍ରେତାଦି ରିପୁ ମୋହର ଯେତେକ ।
ତାହାଙ୍କୁ ବିନାଶ କରୁ ତେଜକୁ ବିସ୍ତାରି
ସଂସାରେ ଯେତେକ ପ୍ରାଣୀମୋ ଅହିତକାରୀ ।
ତାଙ୍କ ଉପଶମ କରୁ ବିଷ୍ଣୁ ଖଡ୍‌ଗଧାର
ଉଜ୍ଜ୍ୱଳ କିରଣ ରାଶି କରିଣ ବିସ୍ତାର ।
ଗରୁଡ଼ ଆସିବା ଦେଖି ପନ୍ନଗେ ଯେମନ୍ତେ
ତଥା ଶାନ୍ତ ମୂର୍ତ୍ତି ହୋଇ ରହନ୍ତୁ ଅଗ୍ରତେ ।
କୁଷ୍ମାଣ୍ଡ ଆବର ଯକ୍ଷ ପ୍ରେତ ଦୈତ୍ୟ ଖଗ
କ୍ରୂର ବିନାୟକ ଗଣ ମାନୁଷ ପନ୍ନଗ ।
ସିଂହାଦି ଯେତେକ ପଶୁ ଦଂନ୍ଦଶୁକଗଣ
ବିଷ୍ଣୁସଙ୍ଗେ ଶାନ୍ତ ମୂର୍ତ୍ତି କରନ୍ତୁ ଧାରଣ ।
ହରନ୍ତି ଯେ ଚିତ୍ତବୃତ୍ତି ସ୍ମରଣ ଶକତି
ତେଜବୀର୍ଯ୍ୟ ହରନ୍ତି ଯେ ଛାୟାକୁ ହରନ୍ତି ।
ଉପଭୋଗ କରନ୍ତି ଯେ ଆବର ଲକ୍ଷଣ
ଏ ସମସ୍ତେ ବିଷ୍ଣୁଚକ୍ରେ ଲଭନ୍ତୁ ମରଣ ।
ଦେବଦେବ ବାସୁଦେବ ନାମ ସଂକୀର୍ତ୍ତନେ
ମୋ ଇନ୍ଦ୍ରିୟବୁଦ୍ଧି ମନରହୁ ସୁସ୍ଥସ୍ଥାନେ ।
ମୋହର ପଛରେ ଥାନ୍ତୁ ଜନାର୍ଦ୍ଦନ ହରି
ହୁଅନ୍ତୁ ପାରୁଶ ଅଗ୍ରକୋଣ ରକ୍ଷାକାରୀ ।
ସର୍ବଜନ ପୂଜନୀୟ ନିୟନ୍ତା ସେ ଶୁଣି
ଅସ୍ତନାହିଁ ଭ୍ରଂଶନାହିଁ ଶଙ୍ଖଚକ୍ର ପାଣି ।
ପ୍ରାଣପତି ପରଂବ୍ରହ୍ମ ଜଗତ ସ୍ୱରୂପ
ସେହି ମହାପ୍ରଭୁ ନାମ କୀର୍ତ୍ତନ ପ୍ରତାପ ।
ବିନାଶୁ ମୋହର ଯେତେ ଅଶୁଭନିଚୟ
ଏମନ୍ତେ ଆତ୍ମାକୁ ରଖେ ବିପ୍ର ତପୋମୟ ।
ଏ ବିଷ୍ଣୁ ପଞ୍ଜର ପଢ଼ିସାରିବା ସମୟେ
ରାକ୍ଷସ ତାହାଙ୍କପାଶେ ବେଗେ ଧାଇଁଯାଏ ।
ବିପ୍ରତେଜେ ପାଖକୁ ସେ ନ ପାରିଲା ଯାଇ
ଚାରିମାସ ନିଶାଚର ରହେ ଉଭାହୋଇ ।
ପାଦ ନଚଳିଲା ତହୁଁ ଯାଇ ନ ପାରିଲା
ଦ୍ୱିଜ ରକ୍ଷା ପ୍ରଭାବରୁ ଗତିରୋଧ ହେଲା ।
ସମାଧିରେ ବସି ଜପକଲେ ଦ୍ୱିଜବର
ଜପଶେଷେ ଦେଖିଲେ ସେ ଅଛି ନିଶାଚର ।

ତେଜୋହୀନ ବଳହୀନ ଉତ୍ସାହ ବିହୀନ
ଆବର ତା ଦେହ ଦିଶେ ଅତିଶୟ କ୍ଷୀଣ ।
ଦୟାକରି ଦ୍ୱିଜ ତାକୁ କଲେ ଆଶ୍ୱାସନା
ବୋଇଲେ କିମ୍ପାଇଁ ତୁମ୍ଭେ ହୋଇଛ ବିମନା ।
କି ନିମନ୍ତେ ଆସିଅଛ କହ ତା କାରଣ
ରାକ୍ଷସ ସେ ସବୁକଥା କଲାକ ବର୍ଣ୍ଣନ ।
କହିସାରି ବୋଇଲା ହେ ବ୍ରାହ୍ମଣ ଗୋସାଇଁ
ସୁପ୍ରସନ୍ନ ହୁଅ ମୋର କର୍ମଦୋଷ ଏହି ।
କରିଅଛି ଅନେକ ମୁଁ ପାପ ଏ ଜୀବନେ
କେତେ ସାଧୁ ହତ୍ୟା ମୁହିଁକରିଅଛି ବନେ ।
କେତେ ରମଣୀଙ୍କି ମୁହିଁ ବିଧବା କରିଛି
କେତେ ଲୋକଙ୍କର ମୁହିଁ ପୁତ୍ର ସଂହାରିଛି ।
ନିର୍ଦ୍ଦୋଷ ପ୍ରାଣୀର ପ୍ରାଣ ହରିଛି ମୁଁ କେତେ
ଏ ପାପୁଁ ମୁକତ ମୁହିଁ ହୋଇବି କେମନ୍ତେ ।
ଆପଣଙ୍କ ଅନୁଗ୍ରହ ବିନା ନାହିଁ ଆନ
ଆପଣହିଁ କରିବେ ମୋ ପାପ ପ୍ରଶମନ ।
ଆପଣଙ୍କ ପ୍ରସାଦେ ମୁଁ ଅଧର୍ମୁ ତରିବି
ଯେ ଆଜ୍ଞା ହୋଇବ ତାହା ଅବଶ୍ୟ କରିବି ।
ଶୁଣି ଦ୍ୱିଜବର ନିଶାଚରର ବଚନ
ବୋଇଲେରେ ନିଶାଚର ତୁହି ପାପୀଜନ ।
ପ୍ରକୃତି ତୋ ମନ୍ଦ ତୁହି ସ୍ୱଭାବରେ କ୍ରୂର
କିରୂପେ ଏ ଧର୍ମମାର୍ଗେ ଗଲା ମନ ତୋର ।
ଏ କଥା ଆମ୍ଭଙ୍କୁ ଅତି ଆଶ୍ଚର୍ଯ୍ୟ ଲାଗଇ
ରାକ୍ଷସ ବୋଇଲା ଶୁଣହେ ଦ୍ୱିଜ ଗୋସାଇଁ ।
ଆସିଥିଲି ଯେଦିନୁ ମୁଁ ଆପଣଙ୍କ ପାଶେ
ଆଜକୁତ ରହିଲିଣି ଏଥେ ଚାରିମାସେ ।
ଆପଣଙ୍କ ମୁଖୁଁ ଶୁଣି ରକ୍ଷାର ବିଧାନ
ସାଧୁଜନ ସଂସର୍ଗରେ ପାଇଲି ମୁଁ ଜ୍ଞାନ ।
ଚିତ୍ତରେ ମୋହର ହେଲା ବଇରାଗ୍ୟ ଜାତ
ପୁଲସ୍ତ୍ୟ କହିଲେ ଶୁଣ ଆହେ ତପୋବନ୍ତ ।
ଏହା ଶୁଣି ବହୁକ୍ଷଣ ଭାବି ଦ୍ୱିଜବର
ରାକ୍ଷସକୁ ବୋଇଲେ ରେ ଶୁଣ ନିଶାଚର ।
ଏ ଦଶା ଲଭିଲୁ ତୋର କର୍ମଦୋଷେ ତୁହି
ଉପଦେଶ ମାଗୁଛୁ ଯା ଶୁଣ କହେ ମୁହିଁ ।
ପାପନାଶ କରିବାହିଁ ଲୋକ ଉପକାର
ତଥାପି କିମ୍ପାଇଁ ଚିତ୍ତ ନବଳେ ମୋହର ।

ଏଣୁ ଉପଦେଶ ମୁହିଁ ନ ପାରିବି ଦେଇ
ଅନ୍ୟବିପ୍ର ନିକଟକୁ ଏଥୁ ତୁମ୍ଭେ ଯାଇଁ ।
ପଚାର ସେ ଅବା ଦେଇ ପାରିବେ ତୁମ୍ଭଙ୍କୁ
ମୁହିଁ ଦେଇ ନ ପାରିବି କେଭେ ରାକ୍ଷସଙ୍କୁ ।
ଏହା କହି ଦ୍ୱିଜବର ଗଲେ ତହୁଁ ଚଳି
ନିଶାଚର ଆପଣାର ମନମଧ୍ୟେ ଭାଳି ।
ବୋଇଲା ନୋହିଲା ମୋର ପାପ ବିମୋଚନ
ଏତେଭାଳି ନ କଲା ସେ ପ୍ରାଣିଙ୍କି ଭକ୍ଷଣ ।
କଷ୍ଟେ କାଳ କଟାଇଲା ରହି କ୍ଷୁଧାତୁରେ
ଜନ୍ତୁଏ ଭକ୍ଷଇ ପ୍ରତି ଷଷ୍ଠ ଦିବସରେ ।
ଦିନେ କ୍ଷୁଧାତୁର ହୋଇ ଭ୍ରମଇ କାନନେ
ଦେଖିଲା ସେ ଫଳାହାରୀ ବ୍ରହ୍ମଚାରୀ ଜଣେ ।
ସେ ମୁନିପୁତ୍ରକୁ ବଳେ ଧଇଲା ରାକ୍ଷସ
ବୋଲଇ ହେ ଜଳାଞ୍ଜଳି ଦେଇ ମୁନିଶିଷ୍ୟ ।
ତୋହର ମଙ୍ଗଳ ହେଉ କି କାର୍ଯ୍ୟେ ତୁ ମତେ
ଧରି ନେଉଅଛୁ ତାହା କହ ମୋ ଅଗ୍ରତେ ।
ଯାହାତୁମ୍ଭେ କହିବ ତା କରିବି ଅବଶ୍ୟ
ଷଷ୍ଠଦିନ ଆଜି ମୋର ବୋଲଇ ରାକ୍ଷସ ।
ଭୋଜନର ପାଳି ମୁହିଁ ଅତି କ୍ଷୁଧାତୁର
ତେଣୁ ଦୟା ଘୃଣାନାହିଁ ପାପୀ ଦୁରାଚାର ।
ବିପ୍ରସୁତ କହେ ଯଦି କରିବ ଭୋଜନ
ଗୁରୁଙ୍କ ନିକଟେ ଫଳ କରି ସମର୍ପଣ ।
ପୁନରପି ଆସିବି ମୁଁ ତୁମ୍ଭ ନିକଟକୁ
ଏ ବନକୁ ଆସିଅଛି ଫଳ ତୋଳିବାକୁ ।
ମୁହୂର୍ତ୍ତେ ଅପେକ୍ଷାକରି ରହନ୍ତୁ ଏସ୍ଥାନେ
ରାକ୍ଷସ ବୋଇଲା ମୁନିନନ୍ଦନ ବଚନେ ।
ଆହାର ବେଳାରେ ପଡ଼ିଅଛ ମୋର ହସ୍ତେ
କେମନ୍ତେ ମୁଁ ଛାଡ଼ିଦେବି ମୁନିସୁତ ତୋତେ ।
ଏ ବେଳରେ ଦେବଯକ୍ଷ କିନ୍ନର ବା କେହି
ପଡ଼ିଲେ ମୋ ହସ୍ତେ ତାର ପ୍ରତିକାର ନାହିଁ ।
ଏ ପାପଜୀବିକା ମୋର ଜାଣ ଋଷିସୁତ
ଉପାୟେକ ଅଛି ଶୁଣ କହୁଛି ମୁଁ ସତ୍ୟ ।
ଯେବେ ତାହା କରିପାରୁ ଛାଡ଼ିଦେବି ତେବେ
କହଇ ସେ ବିପ୍ରସୁତ ଶୁଣ ତୁମ୍ଭେ ଏବେ ।
ଗୁରୁଙ୍କ ବିରୁଦ୍ଧ କର୍ମ ନୋହିଥିଲେ ସେହି
ତହିଁରେ ମୋ ବ୍ରତହାନି ଯଦ୍ୟପି ନ ହୋଇ ।
ଧର୍ମର ବିରୋଧ ଯେବେ ତହିଁରେ ନ ଘଟେ
ସତ୍ୟକରି କହୁଛି ମୁଁ ତୁମ୍ଭର ନିକଟେ ।
ଯାହା ବୋଲିବ ମୁଁ ତାହା କରିବି ଅବଶ୍ୟ
ରାକ୍ଷସ ବୋଇଲା ଶୁଣ ଆହେ ଦ୍ୱିଜଶିଷ୍ୟ ।
ସ୍ୱଭାବେ ବିଶେଷ ପୁଣି ନିଜ ଜାତିଦୋଷେ
ଅବିବେକେ ପାପକଲି ମୁଁ ବାଲ୍ୟ ବୟସେ ।
ଆଜିଯାଏ ପାପେ ରତ ଥାଇ ମୋର ଚିତ୍ତ
ଧର୍ମବୋଲି ନ ଜାଣଇ ଆହେ ମୁନିସୁତ ।
ସେ ପାପରାଶିକି ଧ୍ୱଂସ କରିପାର ଯେବେ
ଏ ଦୁଷ୍ଟ ଯୋନିରେ ଜାତହୋଇଛି ମୁଁ ଏବେ ।
ଏଥିରୁ ମୁକତ ହେବି କହ ତା କେମନ୍ତେ
କହିଲେ ମୁଁ ଛାଡ଼ିଦେବି ପଡ଼ିଛି ମୋ ହସ୍ତେ ।
ନ କହିଲେ ପରିତ୍ରାଣ ନାହିଁ ଯେ ତୁମ୍ଭର
ଏ ରୂପେ ମୁଁ ପାପାଚାରୀ ନୁହଇଁ ଆବର ।
ଯାହା ତାହା ଖାଇଦେବି କ୍ଷୁଧାତୃଷାତୁରେ
କେବଳ ମୋହର ଘୃଣା ଦୟାନାହିଁ ବାରେ ।
ତେଣୁ ଷଷ୍ଠ ଦିବସହିଁ ଭୋଜନର ପାଳି
ଶୁଣି ସେହି ଋଷିସୁତ ମନମଧ୍ୟେ ଭାଳି ।
ବୋଇଲେ ମୁଁ କରୁଥିବି ଗୁରୁସେବା ଯେବେ
ବ୍ରତୀ ହୋଇ ଅଗ୍ନିପୂଜା କରୁଥିବି ତେବେ ।
ସେ ଅଗ୍ନି ରଖନ୍ତୁ ମୋତେ ବିପଦରୁ ଆସି
ପିତାମାତାଠାରୁ ଗୁରୁଗଉରବ ବେଶି ।
ଏହି ଦୃଢ଼ ଜ୍ଞାନେ ମୋତେ ରଖନ୍ତୁ ଅନଳ
ମନରେ ବାକ୍ୟରେ ପୁଣି କାର୍ଯ୍ୟରେ କେବଳ ।
ଗୁରୁ ଅବମାନନା ମୁଁ କରି ନାହିଁ ଦିନେ
ସେ ଅନଳ ରକ୍ଷା ମୋତେ କରନ୍ତୁ ଏସ୍ଥାନେ ।
ଏରୂପେ ସେ ମନେ ମନେ କରନ୍ତି ଶପଥ
ଅନଳ ଆଦେଶେ ଆସି ସରସ୍ୱତୀ ମାତ ।
କହିଲେ ରେ ଦ୍ୱିଜସୁତ ନ କର ତୁ ଭୟ
ଏ ସଙ୍କଟୁ ତୋତେ ରକ୍ଷା କରିବି ନିଶ୍ଚୟ ।
ଯେମନ୍ତେ ଏ ରାକ୍ଷସର ହୋଇବ ମଙ୍ଗଳ
ତୋର ଜିହ୍ୱା ଅଗ୍ରେ ରହି କହିବି ସକଳ ।
ତହିଁରେ ତୋହର ହେବ ଆପଦ ମୋଚନ
ଏହା କହି ଦେବୀ ଗଲେ ହୋଇ ଅନ୍ତର୍ଦ୍ଧାନ ।
ଦେଖି ନ ପାରିଲା ତାଙ୍କୁ ପାପିଷ୍ଠ ରାକ୍ଷସ
ସରସ୍ୱତୀ ଉପଦେଶ ପାଇ ବିପ୍ରଶିଷ୍ୟ ।

ବୋଇଲା ରେ ନିଶାଚର କହୁଅଛି ଶୁଣ
ଯହିଁରେ ତୋ ପାପ ଯାଇ ହେବ ମହାପୁଣ୍ୟ ।
ପ୍ରାତଃ ସନ୍ଧ୍ୟା ମଧ୍ୟାହ୍ନରେ କରିବୁ ତୁ ଜପ
ତାହାର ବିଧାନ ଶୁଣ ହୋଇବୁ ନିଷ୍ପାପ ।
ନିଃସନ୍ଦେହେ ଶାନ୍ତି ପୁଷ୍ଟି ଲଭିବୁ ଆବର
ସେହି ଜପ ବିଧି ଏବେ ଶୁଣ ନିଶାଚର ।
ହୃଷୀକେଶ ବାସୁଦେବ ଜନାର୍ଦ୍ଦନ ହରି
କୃଷ୍ଣ ଜଗନ୍ନାଥଙ୍କୁ ଯେ ନମସ୍କାର କରି ।
କହିବ ମୋହର ପାପ ହର ବିମୋଚନ
ଚରାଚରଗୁରୁ ନାଥ ମୋ ପ୍ରଣାମ ଘେନ ।
ଶ୍ରୀ ଗୋବିନ୍ଦ ଶେଷଶାୟୀ ପରମ ଦେବତା
ମୋର ପାପ କ୍ଷୟ କର ଜଗତ କରତା ।
ବନମାଳୀ ଶଙ୍ଖ ଚକ୍ର ଶାର୍ଙ୍ଗ ଧନୁର୍ଧାରୀ
ଲକ୍ଷ୍ମୀପତି ଶ୍ରୀଚରଣେ ଶରଣ ମୋହରି ।
ମୋର ପାପ ବ୍ୟାପୋହନ କର ଦାମୋଦର ।
ସମଦରଶୀ ଯେ ପ୍ରଭୁ ତାଙ୍କୁ ନମସ୍କାର ।
ଯାହାଙ୍କୁ କରନ୍ତୁ ସ୍ତୁତି ସ୍ତୁତିଯୋଗ୍ୟ ପ୍ରାଣୀ
ପୁଣ୍ଡରିକ ନୟନ ଯେ ଗଦାପଦ୍ମପାଣି ।
ପ୍ରଣାମ କରୁଛି ପାପ ହର ହେ ଅଚ୍ୟୁତ
ନର ନାରାୟଣ ପ୍ରଭୁ ମହାଲକ୍ଷ୍ମୀକାନ୍ତ ।
ଶ୍ରୀଧର ଶ୍ରୀ ଧରାଧର ମାଧବ ମୁରାରି
ଶ୍ରୀ ମଧୁସୂଦନ ପାଦେ ପ୍ରଣାମ ମୋହରି ।
ମୋର ପାପ ବିନାଶନ କର ଦେବ ଶୌରୀ
କେଶବ ହେ କେଶୀହନ୍ତା କଉସ୍ତୁଭଧାରୀ ।
ମହାବାହୁ କଂସ ରିଷ୍ଟ ନିସୂଦନ ପାଦେ
ପ୍ରଣାମ କରୁଛି ପାପ ନ ରହୁ ମୋ ହୃଦେ ।
ଯାହାଙ୍କର ବକ୍ଷସ୍ଥଳେ ଶ୍ରୀବତ୍ସ ଲକ୍ଷଣ
ଶ୍ରୀକର ଯେ ଶ୍ରୀନିବାସ ଶ୍ରୀଶ ନାରାୟଣ ।
ତାହାଙ୍କ ଚରଣତଳେ ମୋ ପ୍ରଣାମ ରହୁ
ପାତକ ସମୂହ ଦୂର ହେଉ ମୋର ଦେହୁ ।
ଯେଉଁ ଦେବଦେବ ସର୍ବ ପ୍ରାଣିଙ୍କ ଈଶ୍ୱର
ବଚନେ କହି ନୋହିବ ବଚନ ଯାହାର ।
ଯତିମାନେ ଯାର ରୂପ କରୁଥାନ୍ତି ଧ୍ୟାନ
ଅକ୍ଷୟ ସ୍ୱରୂପ ପାଦ କରୁଛି ବନ୍ଦନ ।
ବାସୁଦେବ ଶ୍ରୀଚରଣେ ପଶିଲି ଶରଣ
ମନକୁ ଦମନ କରି ଧ୍ୟାନ ପରାୟଣ ।
ଧ୍ୟାନ କରୁଥାନ୍ତି ସେହି ବିଷ୍ଣୁ ଶ୍ରୀଚରଣେ
ଶରଣ ପଶିଲି ପାପ- ମୋଚନ- କାରଣେ ।
ସର୍ବଗ ଯେ ସର୍ବଭୂତ ସମସ୍ତ ଆଧାର
ପରଂବ୍ରହ୍ମରୂପୀ ପ୍ରଭୁ ପରମ ଈଶ୍ୱର ।
ସେହି ବାସୁଦେବ ପାଦେ ପଶିଲି ଶରଣ
କର୍ମ ଫଳ କ୍ଷୟ ହେଲେ ସୁପୁରୁଷ ଗଣ ।
ଯାହାଙ୍କୁ ଲଭନ୍ତି ସେହି ଅବ୍ୟୟ ଅକ୍ଷୟ
ସ୍ୱ ପ୍ରକାଶ ଅପ୍ରକାଶ କୃପାଜନମୟ ।
ପରମାତ୍ମା ବାସୁଦେବ ଚଇତନ୍ୟ ରୂପୀ
ଚରଣେ ଶରଣ ଗଲି ମୁହିଁ ମହାପାପୀ ।
ପୁଣ୍ୟ ନାହିଁ ପାପ ନାହିଁ ଯାହାର ଶରୀରେ
ଏଣୁ ଯୋଗିଜନ ଯାହା ଲଭି ଏ ସଂସାରେ ।
ପୁନରପି ଯୋନିମାର୍ଗେ ନ ହୁଅନ୍ତି ଜାତ
ସେହି ବାସୁଦେବ ପାଦେ ମୋର ପ୍ରଣମିତ ।
ଶରଣ ପଶିଲି ପ୍ରଭୁ ମୁହିଁ ପାପ ଭୟେ
ଯେଉଁ ଦେବ ବ୍ରହ୍ମରୂପେ ଅବତାର ହୁଏ ।
ଯେଉଁ ପ୍ରଭୁ ସୁରାସୁର ମନୁଷ୍ୟ ସହିତ
ନିଖିଳ ଜଗତ ସୃଷ୍ଟି କରନ୍ତି ଅନନ୍ତ ।
ସେ ଅଚ୍ୟୁତ ଭଗବାନ ଚରଣେ ଶରଣ
ଯାହାର ମୁଖରୁ ବେଦ ଜାତ ହୋଇ ପୁଣ ।
ଚତୁର୍ବେଦମୟ ବପୁ କରିଛି ଧାରଣ
ସେହି ବାସୁଦେବ ପାଦେ ପଶିଲି ଶରଣ ।
ଯେ ବିଭୁ ଜଗତଯୋନି ସୃଷ୍ଟିକାଳେ ବ୍ରହ୍ମା
ବିରାଜନ୍ତି ସୃଷ୍ଟିକର୍ତ୍ତାରୂପେ ମହାତମା ।
ସେହି ପ୍ରଭୁ ଭଗବାନ ଦେବ ଜନାର୍ଦ୍ଦନ
ପ୍ରଣାମ କରୁଛି ପାପ କରନ୍ତୁ ମୋଚନ ।
ପୃଥିବୀ କି କରିଛନ୍ତି ଯେ ପ୍ରଭୁ ଧାରଣ
କରିଛନ୍ତି ପୁଣି ଦେବ ଗଣ ପରିତ୍ରାଣ ।
ଦୈତ୍ୟଗଣ ସଂହାରଣ କରି ସର୍ବପାପୀ
ସେହି ଜନାର୍ଦ୍ଦନ ପାଦେ ପ୍ରଣାମେ ମୁଁ ପାପୀ ।
କରନ୍ତି ଯାହାର ପୂଜା ଯଜ୍ଞରେ ବ୍ରାହ୍ମଣେ
ସେ ଯଜ୍ଞ ପୁରୁଷ ଯଜ୍ଞ ଭାବନା ଚରଣେ ।
ପ୍ରଣମି ହେ ସର୍ବବ୍ୟାପି ପ୍ରଭୁ ଜନାର୍ଦ୍ଦନ
ଶରଣ ପଶିଲି କର ପାତକ ଦହନ ।
ସପତ ପାତଳ ଆଉ ସକଳ ଭୁବନ
ସଂହାର କରନ୍ତି ପୁଣି ଯେତେ ପ୍ରାଣୀଗଣ ।

ରୁଦ୍ରରୂପୀ ଜନାର୍ଦ୍ଦନ ସେ ଅନ୍ତ ପୁରୁଷ
ଚରଣେ ପ୍ରଣାମ କରେଁ ମୋ ପାତକ ନାଶ ।
ଜଗତ ରକ୍ଷଣ କରି ନୃତ୍ୟ ରଙ୍ଗେ ରତ
ରୁଦ୍ରରୂପୀ ଜନାର୍ଦ୍ଦନ ପାଦରେ ନିରତ ।
ପ୍ରଣାମ କରୁଛି ମୋର ପାପ କର ଦୂର
ସୁରାସୁର ପିତୃଗଣ ଗନ୍ଧର୍ବ ନିକର ।
ଯକ୍ଷ ରାକ୍ଷସ ଏ ସବୁ ଯାହାଙ୍କର ଅଂଶ
ସେ ସର୍ବଗ ଜନାର୍ଦ୍ଦନ ପାଦର ମୁଁ ଦାସ ।
ନମସ୍କାର କରୁଛି ମୋ ପାପ କର କ୍ଷୟ
ଯା ଅଂଶ ମନୁଷ୍ୟ ଜାତି ଦେବତା ନିଚୟ ।
ସେହି ସର୍ବଗତ ବିଭୁ ଜନାର୍ଦ୍ଦନ ପାଦେ
ମୋର ନମସ୍କାର ଯାଇଁ ରହୁ ଅପ୍ରମାଦେ ।
ବୃକ୍ଷ ଗୁଳ୍ମ ପଶୁ ମୃଗ ଆଦି ଯାର ଅଂଶ
ସେ ସର୍ବଗ ବାସୁଦେବ ପାଦର ମୁଁ ଦାସ ।
ନମସ୍କାର କରୁଛି ମୋ ପାପ ଯାଉ କ୍ଷୟ
ଯାହାଠାରୁ ଶ୍ରେଷ୍ଠ ନାହିଁ ସେହି କୃପାମୟ ।
ବିରାଟ ସ୍ୱରୂପୀ ସର୍ବ ବିଶ୍ୱର ଆଧାର
ଅନନ୍ତ ଅବ୍ୟୟ ରୂପୀ ସର୍ବଗ ଆବର ।
ସେହି ସର୍ବରୂପଙ୍କୁ ମୁଁ ନମସ୍କାର କରେଁ
କାଷ୍ଠ ମଧ୍ୟେ ରହିଥାଏ ଅଗ୍ନି ଯେ ପ୍ରକାରେ ।
ରହିଥାନ୍ତି ପ୍ରାଣିଦେହେ ଗୋପନେ ତେସନ
ଯେ ବିଷ୍ଣୁ ଅଶେଷ ପାପ କରନ୍ତି ଦହନ ।
ବ୍ରହ୍ମାଦି ସଚରାଚର ଜଗତ ସ୍ୱରୂପୀ
ସର୍ବମୟ ଜ୍ଞାନମୟ ବିଷ୍ଣୁ ସର୍ବବ୍ୟାପୀ ।
ତାହାଙ୍କ ପ୍ରଭାବେ ହେଉ ମୋ ପାପ ଦହନ
ମୋହର ଯେ ଅଛି ଶୁଭାଶୁଭ କର୍ମମାନ ।
ସତ୍ୱ ରଜ ତମୋମୟ ଅନେକ ଜନ୍ମର
ସଞ୍ଚିତ ସେ ସବୁ ପ୍ରଭୁ ବେଗେ ଦୂର କର ।
ଦିବାରାତ୍ର ପ୍ରାତଃ ସନ୍ଧ୍ୟା ମଧ୍ୟାହ୍ନରେ ମୁହିଁ
ଯେତେ ପାପ କରିଅଛି ଆହେ ଭାବଗ୍ରାହୀ ।
ମନ ବଚନରେ ପୁଣି କରିଛି ଯେତେକ
ବିନାଶ କରନ୍ତୁ ମୋର ସେ ସର୍ବ ପାତକ ।
ବସିବା ଶୋଇବା ବେଳେ ଯିବା ସମୟରେ
ଯେଉଁ ପାପ କରିଅଛି ଜ୍ଞାନ ଅଜ୍ଞାନରେ ।
ମଦମତ୍ତ ହୋଇ ପୁଣି କରିଅଛି ଯାହା
ନାମ ପ୍ରଭାବରେ ନାଶ ଯାଉ ଚଉବାହା ।
ପରଦାର ପରଧନ ପରର ଅନିଷ୍ଟ
ପର ପୀଡ଼ା ପର ନିନ୍ଦା ପାପ ହେଉ ନଷ୍ଟ ।
ଚତୁର୍ବିଧ ଭୋଜନରେ ଯେତେକ ପାତକ
ସେ ସମସ୍ତ ନାଶ କର ହେ ଲକ୍ଷ୍ମୀନାୟକ ।
ଜଳ ମଧ୍ୟେ ଲୁଣପାତ୍ର ମିଳାଇଲା ପରି
ଲୀନ ହୋଇଯାଉ ଦେହ ନ ରହୁ ମୋହରି ।
ବାଲ୍ୟକାଳେ ଯୁବାକାଳେ କୁମାର ବୟସେ
ବୃଦ୍ଧକାଳେ ଜନ୍ମାନ୍ତରେ ପ୍ରଭୃତ ବୟସେ ।
ଯେ ପାପ କରିଛି ତାହା ଲୀନ ହୋଇଯାଉ
ଜଳେ ଲୁଣ ଗଲା ପ୍ରାୟ ଆହେ ମହାବାହୁ ।
ଶ୍ରୀକୃଷ୍ଣ ଗୋବିନ୍ଦ ହରି ନାରାୟଣ ନାମ
ସଂକୀର୍ତ୍ତନ ପ୍ରଭାବରେ ଆହେ ଗୁଣଧାମ ।
ନ ରହୁ ପାପର ଲେଶ ଦେହରେ ମୋହର
କରୁଛି ଭୋ ପ୍ରଭୁ ତବ ପାଦେ ନମସ୍କାର ।
ଶ୍ରୀକୃଷ୍ଣ କେଶବ ବିଷ୍ଣୁ ବାସୁଦେବ ହରି
ବାସୁଦେବ କଂସାରି ଯେ ନରକାନ୍ତକାରୀ ।
ଏହାଙ୍କୁ ମୁଁ ବାରମ୍ବାର କରେଁ ନମସ୍କାର
ନ ରହୁ ପାତକ ରାଶି ଶରୀରେ ମୋହର ।
ଅରିଷ୍ଟ ଚାଣୁର କେଶୀନିସୂଦନ ହରି
ଦେବଗଣ ଅରିକୁଳ ବିନାଶନ କାରି ।
ନମସ୍କାର କରୁଛି ମୁଁ ତାଙ୍କ ଶ୍ରୀପୟରେ
ନ ରହୁ ପାତକରାଶି ମୋହର ଶରୀରେ ।
ତୁମ୍ଭ ବିନା ବ୍ରହ୍ମାଣ୍ଡରେ ଜଣେ କେହି ନାହିଁ
ବଳିକି ପାରିବ ବାନ୍ଧି ଆହେ ଭାବଗ୍ରାହୀ ।
ତୁମ୍ଭ ତୁଲ୍ୟ ବଳବାନ ଅଛି ଯେଉଁ ଜାଣ
ହଇହୟ ରାଜା ଦର୍ପ କରିବ ହରଣ ।
ତୁମ୍ଭ ଭିନ୍ନ କେ ପାରିବ ସାଗରକୁ ବାନ୍ଧି
ତୁମ୍ଭ ଭିନ୍ନ କେ ପାରିବ ରାବଣକୁ ବଧି ।
ନନ୍ଦଘରେ ଗୋପପୁରେ ତୁମ୍ଭପରି ରହି
ପ୍ରଳମ୍ବ ପୁତନା ନାଶ କରି ନ ପାରଇ ।
ଶାସନ କରତା ତୁମ୍ଭେ ଦମନ କରତା
ମୋର ପାପ ବିନାଶନେ ତୁ ଦେବ ଶକତା ।
ଏ ରୂପେ ବୈଷ୍ଣବ ମନ୍ତ୍ର ଯେ କରଇ ଜପ
ଇଷ୍ଟାନିଷ୍ଟ ଜ୍ଞାନାଜ୍ଞାନ ସାତଜନ୍ମ ପାପ ।
ଉପ ପାପ ମହା ପାପ ତାର ନାଶ ଯାଏ
ମିଳାଇ ପଡ଼ଇ ଜଳେ ଆମପାତ୍ର ପ୍ରାୟେ ।

ଷୋଳ ଗୋଟି ତିଳପାତ୍ର ବର୍ଷକ ପର୍ଯ୍ୟନ୍ତେ
ନିତ୍ୟ ଦାନ କଲେ ତାର ଫଳ ହୁଏ ଯେତେ ।
ଏ ବୈଷ୍ଣବ ମନ୍ତ୍ର ଜପେ ସେହି ଫଳ ପାଇ
ହରି ଧ୍ୟାନ ବ୍ରହ୍ମଚର୍ଯ୍ୟ ସମାନ ନ ଦୁଇ ।
ଏ ଦୁହିଁଙ୍କି କଲେ ନିଶ୍ଚେ ବିଷ୍ଣୁଲୋକେଯିବ
ସତ୍ୟ ସତ୍ୟ ଏ କଦାପିମିଥ୍ୟା ନ ହୋଇବ ।
ମୋହର ସର୍ବାଙ୍ଗ ବ୍ୟାପୀ ରହିଅଛି ପାପ
ତହିଁରୁ ମୋଚନ ମୋତେ କର ବିଶ୍ୱରୂପ ।
ପୁଲସ୍ତ୍ୟ କହିଲେ ସେହି ବ୍ରାହ୍ମଣ ନନ୍ଦନ
ଏରୂପେ କହିବା ମାତ୍ରେ ରାକ୍ଷସ ପ୍ରଧାନ ।
ଛାଡ଼ିଦିଅନ୍ତେ ସେ ପୁଣି କହିଲା ଏମନ୍ତ
ସରସ୍ୱତୀ କହିବାରୁ ବିଷ୍ଣୁର ଏ ସ୍ତୋତ୍ର ।
କହିଲଇଁ ସାରସ୍ୱତ ସ୍ତୋତ୍ର ଏହା ନାମ
ତୋ ପାପ ମୋଚନ ହେବ ଜପିଲେ ଏ ନାମ ।
ଅଗ୍ନି କହିବାରୁ ଦେବୀ ସରସ୍ୱତୀ ଆସି
ଏହି ସ୍ତୋତ୍ର କହିଦେଲେ ମୋ ଜିହ୍ୱାଗ୍ରେ ବସି ।
ଜଗନ୍ନାଥ ସେବାକର ପଢ଼ି ଏହି ସ୍ତବ
ତୋହର ଶରୀରେ ଆଉ ପାପ ନ ରହିବ ।
ଏହି ସ୍ତୋତ୍ରେ ହୃଷୀକେଶ ସ୍ତବ କର ନିତ୍ୟ
ତୋହର ଭକ୍ତିରେ ତୁହି ପାପୁଁ ହେବୁ ମୁକ୍ତ ।
ତ୍ରିଲୋକ୍ୟ ପାତକ ଧ୍ୱଂସ କରନ୍ତି ସେ ହରି
ଏଥିରେ ସନ୍ଦେହ ନାହିଁ କହେ ସତ୍ୟକରି ।
ପୁଲସ୍ତ୍ୟ କହିଲେ ଶୁଣ ସେହି ନିଶାଚର
ବିପ୍ରସୁତ ଶ୍ରୀପୟରେ କରି ନମସ୍କାର ।
ତପ ଅର୍ଥେ ଶାଳିଗ୍ରାମେ ରହି ପ୍ରତିଦିନ
ସାରସ୍ୱତ ମନ୍ତ୍ର ଜପ ତପେ ଗଲା ଦିନ ।
ପାପୁ ମୁକ୍ତ ହୋଇ ବିଷ୍ଣୁ ଲୋକେଗଲା ସେହି
ଦୁଃଖ ଦୂରହେବ ସ୍ତୋତ୍ରପଢ଼େ ଯେବେ କେହି ।

= + =

## ପାପ ପ୍ରଶମନ ସ୍ତୋତ୍ର

ପୁଲସ୍ତ୍ୟ କହିଲେ ଆହେ ଋଷି ତପୋଧନ
ଯେ ସ୍ତୋତ୍ର ପଢ଼ିଲେ ହୋଏ ପାପ ପ୍ରଶମନ ।
ତାହା ମୁଁ କହୁଛି ଶୁଣ ସାବଧାନ ହୋଇ
ପାତକ ରାଶିକି ଏକା ଏ ଦହି ପାରଇ ।
ନମସ୍ତେ ନମସ୍ତେ ଦେବଦେବ ଜଗନ୍ନାଥ
ନମସ୍ତେ ନମସ୍ତେ ଦେବ ବସୁଦେବ ସୁତ ।
ନମସ୍ତେ ନମସ୍ତେ ଏକଶୃଙ୍ଗ ବହୁରୂପୀ
ନମସ୍ତେ ନମସ୍ତେ ଶ୍ରୀନିବାସ ବୃଷାକପି ।
ନମସ୍ତେ ନମସ୍ତେ ପ୍ରଭୁ ହେ ଭୂତଭାବନ
ନମସ୍ତେ ନମସ୍ତେ ନାରାୟଣ ବିଶ୍ୱକ୍ସେନ ।
ନମସ୍ତେ ନମସ୍ତେ ବୃଷଧ୍ୱଜ ସତ୍ୟଧ୍ୱଜ
ନମସ୍ତେ ନମସ୍ତେ ଯଜ୍ଞଧ୍ୱଜ ଧର୍ମଧ୍ୱଜ ।
ନମସ୍ତେ ନମସ୍ତେ ପ୍ରଭୁ ହେ ଗରୁଡ଼ଧ୍ୱଜ
ନମସ୍ତେ ନମସ୍ତେ ବିଷ୍ଣୁ ଦେବ ତାଳଧ୍ୱଜ ।
ନମସ୍ତେ ନମସ୍ତେ ପ୍ରଭୁ ବୈକୁଣ୍ଠ ବରେଣ୍ୟ
ନମସ୍ତେ ନମସ୍ତେ ପ୍ରଭୁ ଶ୍ରୀପୁରୁଷୋତ୍ତମ ।
ନମସ୍ତେ ନମସ୍ତେ ପ୍ରଭୁ ବିଜୟ ଜୟନ୍ତ
ନମସ୍ତେ ନମସ୍ତେ ପ୍ରଭୁ ଜୟ ହେ ଅନନ୍ତ ।
ନମସ୍ତେ ନମସ୍ତେ ପ୍ରଭୁ ହେ ଅପରାଜିତ
ନମସ୍ତେ ନମସ୍ତେ କୃତବର୍ତ୍ତ ମହାବର୍ତ୍ତ ।
ନମସ୍ତେ ନମସ୍ତେ ମହାଦେବ ହେ ଅନାଦି
ନମସ୍ତେ ନମସ୍ତେ ପ୍ରଭୁ ଅନ୍ତ ମଧ୍ୟ ଆଦି ।
ନମସ୍ତେ ନମସ୍ତେ ପ୍ରଭୁ କମଳଜ ପ୍ରିୟ
ନମସ୍ତେ ନମସ୍ତେ ଅନ୍ତରୂପୀ ପୁରଞ୍ଜୟ ।
ନମସ୍ତେ ନମସ୍ତେ ଧନଞ୍ଜୟ ଶତ୍ରୁଞ୍ଜୟ
ନମସ୍ତେ ନମସ୍ତେ ଦେବଦେବ ଶତ୍ରୁଞ୍ଜୟ ।
ନମସ୍ତେ ନମସ୍ତେ ଦେବଦେବ ଶୁଚିଶ୍ରବା
ନମସ୍ତେ ନମସ୍ତେ ଦେବଦେବ ପୃଥୁଶ୍ରବା ।
ନମସ୍ତେ ନମସ୍ତେ ଦେବ ହେ ହରିଣ୍ୟଗର୍ଭ
ନମସ୍ତେ ନମସ୍ତେ ଦେବଦେବ ପଦ୍ମଗର୍ଭ ।
ନମସ୍ତେ ନମସ୍ତେ ପ୍ରଭୁ ହେ କମଳନେତ୍ର
ନମସ୍ତେ ନମସ୍ତେ ଦେବ ଦେବ କାଳନେତ୍ର ।
ନମସ୍ତେ ନମସ୍ତେ ଦେବଦେବ କାଳନାଭ
ନମସ୍ତେ ନମସ୍ତେ ଦେବଦେବ ମହାନାଭ ।
ନମସ୍ତେ ନମସ୍ତେ ଦେବଦେବ ବୃଷ୍ଟିମୂଳ
ନମସ୍ତେ ନମସ୍ତେ ଦେବଦେବ ମହାମୂଳ ।
ନମସ୍ତେ ନମସ୍ତେ ମୂଳାବାସ ଧର୍ମାବାସ
ନମସ୍ତେ ନମସ୍ତେ ଶ୍ରୀନିବାସ ଜଳାବାସ ।
ନମସ୍ତେ ନମସ୍ତେ ଧର୍ମାଧ୍ୟକ୍ଷ ପ୍ରଜାଧ୍ୟକ୍ଷ
ନମସ୍ତେ ନମସ୍ତେ ଲୋକାଧ୍ୟକ୍ଷ ସେନାଧ୍ୟକ୍ଷ ।
ନମସ୍ତେ ନମସ୍ତେ କାଳାଧ୍ୟକ୍ଷ ଗଦାଧର
ନମସ୍ତେ ନମସ୍ତେ ଶ୍ରୁତିଧର ଚକ୍ରଧର ।

ନମସ୍ତେ ନମସ୍ତେ ପ୍ରଭୁ ବନମାଳାଧର
ନମସ୍ତେ ନମସ୍ତେ ପ୍ରଭୁ ହେ ଧରଣୀଧର ।
ନମସ୍ତେ ନମସ୍ତେ ଶ୍ରୀଧର ହେ ମହାସେନ
ନମସ୍ତେ ନମସ୍ତେ ଦେବଦେବ ଆର୍ଷ୍ଟିସେନ ।
ନମସ୍ତେ ନମସ୍ତେ ପୁରୁଷ୍ଟୁତ ବହୁତଳ୍ପ
ନମସ୍ତେ ନମସ୍ତେ ଦେବଦେବ ମହାକଳ୍ପ ।
ନମସ୍ତେ ନମସ୍ତେ ପ୍ରଭୁ ହେ କଳ୍ପନାମୁଖ
ନମସ୍ତେ ନମସ୍ତେ ସର୍ବଆତ୍ମା ବିଶ୍ୱମୁଖ ।
ନମସ୍ତେ ନମସ୍ତେ ପ୍ରଭୁ ବିରଞ୍ଚି କେଶବ
ନମସ୍ତେ ନମସ୍ତେ ଶ୍ୱେତ ସର୍ବଜ୍ଞ ମାଧବ ।
ନମସ୍ତେ ନମସ୍ତେ ଅନିରୁଦ୍ଧ ମହାନୀଳ
ନମସ୍ତେ ନମସ୍ତେ ଆହେ ଦ୍ୱାଦଶାତ୍ମା ନୀଳ ।
ନମସ୍ତେ ନମସ୍ତେ ଆହେ କାଳାତ୍ମାସୋମାତ୍ମା
ନମସ୍ତେ ନମସ୍ତେ ଆହେ ବ୍ୟୋମାତ୍ମାଅର୍କାତ୍ମା ।
ନମସ୍ତେ ନମସ୍ତେ ଆହେ ବ୍ରହ୍ମ ପରମାତ୍ମା
ନମସ୍ତେ ନମସ୍ତେ ହରିକେଶ ହେ ସୂକ୍ଷ୍ମାତ୍ମା ।
ନମସ୍ତେ ନମସ୍ତେ ମହାକେଶ ଗୁଡାକେଶ
ନମସ୍ତେ ନମସ୍ତେ ଗୁଞ୍ଜାକେଶ ହୃଷୀକେଶ ।
ନମସ୍ତେ ନମସ୍ତେ ସ୍ଥୂଳ ମହାସ୍ଥୂଳ ସୂକ୍ଷ୍ମ
ନମସ୍ତେ ନମସ୍ତେ ଭୟଙ୍କର ମହାସୂକ୍ଷ୍ମ ।
ନମସ୍ତେ ନମସ୍ତେ ଶ୍ୱେତ ପୀତାମ୍ବରଧର
ନମସ୍ତେ ନମସ୍ତେ ନୀଳବସନ ଶ୍ରୀକର ।
ନମସ୍ତେ ନମସ୍ତେ ଜଳେଶୟ କୁଶେଶୟ
ନମସ୍ତେ ନମସ୍ତେ ପ୍ରୀତିକର୍ତ୍ତା ପଦ୍ମେଶୟ ।
ନମସ୍ତେ ନମସ୍ତେ ପ୍ରଭୁ ଗୋବିନ୍ଦ ହେ ହଂସ
ନମସ୍ତେ ନମସ୍ତେ ଦେବ ଦେବ ପୀତବାସ ।
ନମସ୍ତେ ନମସ୍ତେ ଶାର୍ଙ୍ଗଧ୍ୱଜ ହେ ବାମନ
ନମସ୍ତେ ନମସ୍ତେ ଅଧୋକ୍ଷଜ ଜନାର୍ଦ୍ଦନ ।
ନମସ୍ତେ ନମସ୍ତେ ପ୍ରଭୁ ଶ୍ରୀ ମଧୁସୂଦନ
ନମସ୍ତେ ନମସ୍ତେ ପ୍ରଭୁ ସହସ୍ର ନୟନ ।
ନମସ୍ତେ ନମସ୍ତେ ପ୍ରଭୁ ହେ ସହସ୍ରଶୀର୍ଷ
ନମସ୍ତେ ନମସ୍ତେ ସୋମନେତ୍ର ବ୍ରହ୍ମଶୀର୍ଷ ।
ନମସ୍ତେ ନମସ୍ତେ ଅଗ୍ନିନେତ୍ର ସୂର୍ଯ୍ୟନେତ୍ର
ନମସ୍ତେ ନମସ୍ତେ ଧର୍ମନେତ୍ର ମହାନେତ୍ର ।
ନମସ୍ତେ ନମସ୍ତେ ପ୍ରଭୁ ହେ ଅଥର୍ବଶିରା
ନମସ୍ତେ ନମସ୍ତେ ପ୍ରଭୁ ହେ ସହସ୍ରଶିରା ।

ନମସ୍ତେ ନମସ୍ତେ ପ୍ରଭୁ ହେ ସହସ୍ରଭୁଜ
ନମସ୍ତେ ନମସ୍ତେ ପ୍ରଭୁ ଅଜ ଦେବରାଜ ।
ନମସ୍ତେ ନମସ୍ତେ ପ୍ରଭୁ ହେ ସହସ୍ରପାଦ
ନମସ୍ତେ ନମସ୍ତେ ମହାରୂପ ସୁରବନ୍ଦ୍ୟ ।
ନମସ୍ତେ ନମସ୍ତେ ପ୍ରଭୁ ହେ ଯଜ୍ଞବରାହ
ନମସ୍ତେ ନମସ୍ତେ ବିଶ୍ୱସମ୍ଭବ ନୃସିଂହ ।
ନମସ୍ତେ ନମସ୍ତେ ବିଶ୍ୱରୂପ ବିଶ୍ୱଦେବ
ନମସ୍ତେ ନମସ୍ତେ ମହାଶାଖା ଦେବଦେବ ।
ନମସ୍ତେ ନମସ୍ତେ ମୂଳ କୁସୁମ ଅର୍ଚ୍ଚିତ
ନମସ୍ତେ ନମସ୍ତେ ବିଶ୍ୱଜନଙ୍କର ତାତ ।
ବ୍ରାହ୍ମଣ ତୋହର ମୂଳ କନ୍ଧ ତୋ କ୍ଷତ୍ରିୟ
ଶୁଦ୍ର ତୋର ତ୍ୱକ୍ ବୈଶ୍ୟ ତୋର ଶାଖାମୟ ।
ବନସ୍ପତି ସ୍ୱରୂପ ତୁ ତୋତେ ନମସ୍କାର
ତୁମ୍ଭେ ସ୍କନ୍ଧ ପତ୍ରଲତା ପଲ୍ଲବ ଅଙ୍କୁର ।
ସାତ୍ତ୍ୱିକ ବ୍ରାହ୍ମଣ ତୋର ବଦନମଣ୍ଡଳୁ
ସାୟୁଧ କ୍ଷତ୍ରିଗଣ ତୋର ବାହୁମୂଳୁଁ ।
ବୈଶ୍ୟ ଉରୁଯୁଗଳରୁ ଶୂଦ୍ର ପାଦୁଁ ଜାତ
ପୃଥିବୀ ଦେବୀ ତୋ ପାଦଯୁଗଳୁଁ ସମ୍ଭୁତ ।
ତୋହର ନେତ୍ରରୁ ଜାତ ଦେବ ଦିବାକର
ଦଶଦିଗ ତୋର କର୍ଣ୍ଣତଳୁଁ ଅବତାର ।
ଆକାଶ ତୋହର ନାଭି ଦେଶରୁ ସମ୍ଭୁତ
ଚନ୍ଦ୍ରମା ତୋହର ମନମଧ୍ୟୁ ହେଲା ଜାତ ।
ପ୍ରାଣରୁ ପବନ ବ୍ରହ୍ମା କମରୁ ଉତ୍ପନ୍ନ
ତୋହର କ୍ରୋଧରୁ ଜାତ ରୁଦ୍ର ତ୍ରିନୟନ ।
ତୋହର ଶୀର୍ଷରୁ ଜାତ ହେଲା ସ୍ୱର୍ଗପୁର
ଜନମିଲେ ଇନ୍ଦ୍ର ଅଗ୍ନି ବଦନୁ ତୋହର ।
ତୋହର ମନରୁ ଜାତ ପଶୁଗଣ ଯେତେ
ରୋମରୁ ଉତ୍ପନ୍ନ ହେଲେ ଓଷଧି ସମସ୍ତେ ।
ତତ୍‌ସ୍ୱୟଂ ବିରଜା ତୋତେ ମୋର ନମସ୍କାର
ତୁ ଓଁ କାର ବଷଟ୍‌କାର ସ୍ୱଧା ସ୍ୱାହାକାର ।
ନିରାକାର ବେଦାକାର ସର୍ବାକାର ତୁହି
ତୋର ପାଦେ ନମସ୍କାର କରୁଅଛି ମୁହିଁ ।
ସର୍ବ ଦେବମୟ ତୁହି ସର୍ବ ବେଦମୟ
ସର୍ବତୀର୍ଥମୟ ତୁହି ସର୍ବ ଯଜ୍ଞମୟ ।
ତୁ ରସ ସ୍ୱରୂପ ପୁଣି ତୁ ଯଜ୍ଞ ପୁରୁଷ
ତୋହର ଚରଣେ ମୋର ପ୍ରଣାମ ଅଶେଷ ।

ତୁହି ଯଜ୍ଞଭାଗଭାଗୀ ତୋତେ ନମସ୍କାର
ତୁହି ଶତଧାର ପୁଣି ତୁ ସହସ୍ରଧାର ।
ବ୍ୟାହୃତି ସ୍ୱରୂପୀ ତୋତେ ମୋହର ପ୍ରଣତି
ତୋ ପଦ ଅମୃତପଦ ଘେନ ମୋ ବିନତି ।
ତୁ ସୁବର୍ଣ୍ଣଦାତା ପୁଣି ତୁହି ବ୍ରହ୍ମଦାତା
ତୋତେ ନମସ୍କାର ତୁହି ନିଖିଳ ବିଧାତା ।
ବ୍ରହ୍ମ ଯେ ବ୍ରାହ୍ମଣ ତୁହି ବ୍ରହ୍ମରୂପଧର
ତୁ ପରମବ୍ରହ୍ମ ତୋର ପାଦେ ନମସ୍କାର ।
ତୁହି ଶବ୍ଦବ୍ରହ୍ମ ବନ୍ଦେ ତୋର ପାଦଦ୍ୱୟ
ତୁହି ବିଦ୍ୟା ତୁହି ବୈଦ୍ୟ ତୁହି ବନ୍ଦନୀୟ ।
ବୁଦ୍ଧି ତୁହି ବୋଧ ତୁହି ବୋଦ୍ଧା ଅଟୁ ତୁହି
ତୋର ପାଦେ ନମସ୍କାର କରୁଅଛି ମୁହିଁ ।
ତୁହି ହୋତା ତୁହି ହବ୍ୟ ତୁହି ହୂୟମାନ
ତୁହି ହୋମ ତୋର ପାଦ କରୁଛି ବନ୍ଦନ ।
ତୁହି ପାତା ତୁହି ପୋତା ପୂତ ପାବନୀୟ
ତୁହି ହନ୍ତା ମୁହିଁ ବନ୍ଦେ ତୋର ପାଦଦ୍ୱୟ ।
ହନ୍ୟମାନ କ୍ରିୟମାଣ ହନ୍ତା ନେତା ତୁହି
ତୋର ପାଦେ ନମସ୍କାର କରୁଅଛି ମୁହିଁ ।
ତୁହି ନୀତି ଅଗ୍ରପୂଜ୍ୟ ତୁହି ବିଶ୍ୱଧର
ବିଶ୍ୱଧାମଶ୍ରୁବ ଶ୍ରୁଚ ତୋତେ ନମସ୍କାର ।
କପାଳ ତୁ ଉଲୁଖଳ ତୁ ଅଭୟ ପାତ୍ର
ମୋର ତୋତେ ନମସ୍କାର ତୁହି ଯଜ୍ଞପାତ୍ର ।
ତୁ ଏକଧା ତୁ ବହୁଧା ତ୍ରିଧାରୂପୀ ତୁହି
ତୋର ପାଦେ ନମସ୍କାର କରୁଅଛି ମୁହିଁ ।
ଯଜମାନ ଯଜନୀୟ ତୁ ଯଜ୍ଞ ଯାଜକ
ତୁହି ଜ୍ଞାନ ତୁହି ଜ୍ଞାତା ତୁ ଜ୍ଞେୟ ଜ୍ଞାପକ ।
ତୁହି ଧାତା ତୁହି ଧେୟ ଧ୍ୟାନଯୋଗ ତୁହି
ତୋର ପାଦେ ନମସ୍କାର କରୁଅଛି ମୁହିଁ ।
ଯୋଗୀଗତି ମୋକ୍ଷ ଧୃତି ତୁ ସୁଖ ସ୍ୱରୂପ
ଯୋଗାଙ୍ଗ ଈଶାନ ତୁହି ସର୍ବଗ ଅରୂପ ।
ବ୍ରହ୍ମା ହୋତା ଉଦଗାତା ସୋମ ଯୂପ ତୁହି
ତୋର ପାଦେ ନମସ୍କାର କରୁଅଛି ମୁହିଁ ।
ତୁହି ଦୀକ୍ଷା ତୁ ଦକ୍ଷିଣା ତୁହି ପୁରୋଧୀଶ
ତୋହର ଚରଣେ ମୋର ପ୍ରଣତି ଅଶେଷ ।
ତୁ ପଶୁ ତୁ ପଶୁହନ୍ତା ଗୁହ୍ୟ ଧାତା ହର
ତୁହି ନାରାୟଣ ଘେନ ପ୍ରଣାମ ମୋହର ।
ତୁହି ନିରୟଣ ପୁଣି ତୁହି ମହାଜନ
ସହସ୍ର ଆଦିତ୍ୟ ଇନ୍ଦୁପ୍ରାୟ ରୂପବାନ ।
ଦ୍ୱାଦଶାର ଷଟନାଭି ତ୍ରିବ୍ୟୁହ ଯେ ତୁହି
ତୋର ପାଦେ ନମସ୍କାର କରୁଅଛି ମୁହିଁ ।
ମହାମେଧା କାଳଚକ୍ର ତୁ ପ୍ରଭୁ ଦ୍ୱିଗୁଣ
ତୁହି ଶମ୍ଭୁ ତୁହି ଶକ୍ର ତୁହି ପ୍ରଭଞ୍ଜନ ।
ନମସ୍କାର ଘେନ ମିତ୍ର ବରୁଣ ମୂରତି
ତୁ ଶୁଣ ସ୍ୱରୂପ ତୁହି ଅନଘ ଅମୂର୍ତ୍ତି ।
ତୁହି ଭୂତଗଣ ଆଦ୍ୟ ତୁହି ମହାଭୂତ
ତୋର ପାଦେ ନମସ୍କାର ହେ ଦ୍ୱିଜଅଚ୍ୟୁତ ।
ଊର୍ଦ୍ଧ୍ୱକେତୁ ଊର୍ଦ୍ଧ୍ୱଧର ଊର୍ଦ୍ଧ୍ୱରେତା ତୁହି
ତୋର ପାଦେ ନମସ୍କାର କରୁଅଛି ମୁହିଁ ।
ତୁହି ଉପପାତକର ବିନାଶ କରତା
ମୁନିଗଣ ଈଶ୍ୱର ତୁ ସର୍ବପାପ ହନ୍ତା ।
ତୋହର ଚରଣ ତଳେ ପଶିଲି ଶରଣ
ଏ ପରମ ସ୍ତୋତ୍ର ସର୍ବପାପ ବିନାଶନ ।
ପୂର୍ବେ ବାରାଣସୀ କ୍ଷେତ୍ରେ ପ୍ରଭୁ ମହେଶ୍ୱର
କରିଥିଲେ ଏ ପରମ ସ୍ତୋତ୍ରର ପ୍ରଚାର ।
ପରମ ପବିତ୍ର ତୀର୍ଥଜଳେ କରି ସ୍ନାନ
କେଶବ ଅଗ୍ରତେ କଲେ ଏ ସ୍ତୋତ୍ର ପଠନ ।
ସଂସାରରେ ଶାନ୍ତିଲାଭ କରେ ତହିଁ ରହି
ମହର୍ଷି ହେ ମହାଦେବ କୃତ ସ୍ତୋତ୍ର ଏହି ।
ପଢ଼ିଲେ ନିଶ୍ଚୟ ହେବ ପାପ ବିମୋଚନ
ଶାନ୍ତମୂର୍ତ୍ତି ହୋଇଯିବ ଶ୍ରୀ ବିଷ୍ଣୁ ଭବନ ।

=✢=

## ପାପନାଶନ ସ୍ତବ

କହିଲେ ପୁଲସ୍ତ୍ୟ ଋଷି ଶୁଣ ମୁନିବର
ଆଉ ଏକ ସ୍ତବ ଶୁଣ ମନ କରି ସ୍ଥିର ।
ପଢ଼ିଲେ ପାତକରାଶି ନ ରହିବ ଦେହେ
ସେ ପାପନାଶନ ସ୍ତୋତ୍ର ଶୁଣ ନିଃସନ୍ଦେହେ ।
ନମସ୍ତେ ନମସ୍ତେ ଦେବଗଣଙ୍କ ଈଶ୍ୱର
ମତ୍ସ୍ୟ କୂର୍ମ ଚରଣରେ ପ୍ରଣାମ ମୋହର ।
ଯେହୁ ହୟଶୀର୍ଷଭାବ ବିଷ୍ଣୁ ତ୍ରିବିକ୍ରମ
ତାହାଙ୍କ ଚରଣ ତଳେ ମୋହର ପ୍ରଣାମ ।
ଯେ ମାଧବ ଯେ ଈଶାନ ତାଙ୍କୁ ନମସ୍କାର
ହୃଷୀକେଶ ତୁଷାନଳ ଭବଭୟ ହର ।

ନାରାୟଣ ଶ୍ରୀଚରଣେ ପଶୁଛି ଶରଣ
ନମସ୍ତେ ଗରୁଡ଼ାସନ ଶରଣ ରକ୍ଷଣ ।
ଜୟ ଈଶ ନରସିଂହ ଜୟ ରୂପାଧାର
କୁରୂଧ୍ୱଜ ବିପ୍ରପ୍ରିୟ ପାଦେ ନମସ୍କାର ।
ଅଖଣ୍ଡ ସ୍ୱରୂପ ପ୍ରଭୁ କାମପାଳ ପାଦେ
ଦଣ୍ଡବତ ପ୍ରଣାମ ମୋ ରହୁ ଅପ୍ରମାଦେ ।
ଅଜିତ ଯେ ବିଶ୍ୱକର୍ମା ପୁଣ୍ଡରୀକ ହରି
ଶମ୍ଭୁ ପ୍ରଜାପତି ବ୍ରହ୍ମା ବିଷ୍ଣୁ ଚକ୍ରଧାରୀ ।
ଶୂଳବାହୁ ସୁବର୍ଣ୍ଣାକ୍ଷ ଶିବ ଯେ ଗୋମତି
ପୀତବାସ ଚରଣରେ ମୋହର ପ୍ରଣତି ।
ଗଦାପାଣି କୁଶେଶୟ ଅନ୍ଧକାରୀଶ୍ୱର
ପାପନାଶନଙ୍କ ପାଦେ ମୋର ନମସ୍କାର ।
ଗୋପାଳ ବୈକୁଣ୍ଠ ଶାର୍ଙ୍ଗଧର ଭଗବାନ
ଶ୍ରୀବିଷ୍ଣୁ ଜ୍ୟେଷ୍ଠଶ ମୋର ନମସ୍କାର ଘେନ ।
ଯେ ପରମ ଶାନ୍ତରୂପୀ ତାଙ୍କୁ ନମସ୍କାର
ଜମ୍ବୁକ ସହିତ ମାର୍କଣ୍ଡେୟଙ୍କୁ ମୋହର ।
ଶତ ଶତ ନମସ୍କାର ଆହେ ଭଗବାନ
ହେ ପଦ୍ମକିରଣ ମୋର ନମସ୍କାର ଘେନ ।
ନମସ୍ତେ ବଡ଼ବାମୁଖ ନମଃ କାର୍ତ୍ତିକେୟ
ନମସ୍ତେ ବାହ୍ଲିକ ନମୋ ନମଃ କୁଶେଶୟ ।
ଜୟ ସ୍ଥାଣୁ ଅନଘ ହେ ଜୟ ଶଙ୍ଖଧର
ଲାଙ୍ଗଳାଶ ନବମାଳୀ ପାଦେ ନମସ୍କାର ।
ଶ୍ରୀପତି ଯେ ତ୍ରିନୟନ ଯେ ହବ୍ୟବାହନ
ତାହାଙ୍କୁ ଯେ ନମସ୍କାର କରେ ଘନ ଘନ ।
ତ୍ରିସଉବର୍ଣ୍ଣ ଧରଣୀଧରଙ୍କର ପାଦେ
ମୋର ନମସ୍କାର ଯାଇଁ ରହୁ ଅପ୍ରମାଦେ ।
ଯେ ତ୍ରିଣଚିକେତ ପୁଣି ଯେ ଶଶିଭୂଷଣ
ଯେ ବ୍ରହ୍ମା ତାହାଙ୍କ ପାଦେ ପଶୁଛି ଶରଣ ।
ନମସ୍ତେ କପର୍ଦ୍ଦି ସର୍ବ ରୋଗ ବିନାଶନ
ଅବ୍ୟୟ ରୂପଙ୍କ ପାଦ କରୁଛି ବନ୍ଦନ ।
ଶଶୀ ସୂର୍ଯ୍ୟ ପଦ୍ମନାଭ ହିରଣାକ୍ଷ ସ୍କନ୍ଧ
ବନ୍ଦଇ ଯେ ଭୀମସିଂହ ହଟକେଶ ରୁଦ୍ର ।
ହଂସ ସ୍ୱରୂପ ଯେ ତାଙ୍କୁ ମୋର ନମସ୍କାର
ପ୍ରାଣ ତର୍ପଣଙ୍କ ପାଦ ବନ୍ଦେ ନିରନ୍ତର ।
ମହାଯୋଗୀ ଈଶ୍ୱରଙ୍କୁ ପ୍ରଣମଇଁ ମୁହିଁ
ରୁକ୍ମ କବଚଙ୍କ ପାଦ ପଦ୍ମରେ ନମଇଁ ।

ଶ୍ରୀ ନିବାସ ଚରଣରେ ଶରଣ ମୋହର
ଶ୍ରୀପୁରୁଷୋତ୍ତମଙ୍କୁ ମୁଁ କରେ ନମସ୍କାର ।
ବସୁଧାଧିପ ଯେ ଚତୁର୍ବାହୁଙ୍କୁ ବନ୍ଦଇ
ବନସ୍ପତି ମଧୁପତି ଚରଣେ ନମଇଁ ।
ଅସ୍ୟହ ସ୍ୱରୂପ ମନୁ ପାଦେ ନମସ୍କାର
ସଦାଶିବ ବାସୁଦେବ ଚରଣେ କିଙ୍କର ।
ଶ୍ରୀକଣ୍ଠ ଯେ ନୀଳକଣ୍ଠ ତାହାଙ୍କୁ ବନ୍ଦଇ
ସର୍ବସ୍ୱରୂପଙ୍କ ପାଦପଦ୍ମରେ ନମଇଁ ।
ଅପାପ ବିଦ୍ଧଙ୍କ ପାଦେ ମୋର ନମସ୍କାର
ନମସ୍ତେ ଲକୁଟେଶ୍ୱର ନମୋ ଗୌରୀଶ୍ୱର ।
ମନୋହର କୃଷ୍ଣଙ୍କର ଚରଣ ବନ୍ଦଇଁ
ଈଶ୍ୱର ସ୍ୱରୂପ ଚକ୍ରପାଣିଙ୍କି ନମଇଁ ।
ମହାବାହୁ କୁଶେଶୟ ପାଦେ ନମସ୍କାର
ଭୂଧର ଛଦିତ ପଦ୍ମପାଦରେ କିଙ୍କର ।
ସୁନେତ୍ର ଭଦ୍ରାଖ୍ୟ ବୀରଭଦ୍ରଙ୍କୁ ବନ୍ଦଇ
ଶଙ୍କୁବର୍ଣ୍ଣ ବୃକ୍ଷଧ୍ୱଜ ପାଦରେ ନମଇଁ ।
ବିଶ୍ୱମିତ୍ର ଶଶିପ୍ରଭ ଯେହୁ ମହେଶ୍ୱର
ଉପେନ୍ଦ୍ର ଗୋବିନ୍ଦ ସୁରଶଂସିତ ଆବର ।
ଏହାଙ୍କ ଚରଣତଳେ ମୋହର ପ୍ରଣତି
ପଙ୍କଜ ପ୍ରିୟଙ୍କ ପାଦେ କରୁଛି ବିନତି ।
ସହସ୍ରଶିରା ଯେ କୁନ୍ଦମାଳିଙ୍କି ବନ୍ଦଇ
ଦେବେଶ କାଳାଗ୍ନିରୁଦ୍ର ଚରଣେ ନମଇଁ ।
କୃତ୍ତିବାସ ଛଗଳେଶ ପଦେ ନମସ୍କାର
ସହସ୍ରାକ୍ଷ କୋକନଦ ଯେ ହରିଶଙ୍କର ।
ଅଗସ୍ତ୍ୟ ପଙ୍କଜାସନ ଗରୁଡ଼ କପିଳ
ବନ୍ଦଇ ମୁଁ ଏହାଙ୍କର ପାଦପଦ୍ମ ତଳ ।
ବାଙ୍ମୟ ବ୍ରହ୍ମଙ୍କ ପାଦପଦ୍ମକୁ ବନ୍ଦଇ
ବ୍ରହ୍ମ ସନାତନଙ୍କର ଚରଣେ ନମଇଁ ।
ଯେ ବ୍ରହ୍ମତପ୍ୱର ତାଙ୍କ ପାଦରେ ପ୍ରଣତି
ଅପ୍ରତର୍କ୍ୟ ଚତୁର୍ବାହୁ ଘେନ ମୋ ବିନତି ।
ସହସ୍ରାଂଶୁ ଚତୁର୍ବାହୁ ଦେବ ଧର୍ମରାଜ
ଗରୁଡ଼ ବାହନ ସର୍ବ ଭୂତପତି ଅଜ ।
ସର୍ବଲକ୍ଷଣ ସମ୍ପନ୍ନ ନିର୍ମଳ ଯେ ଶାନ୍ତ
ତାହାଙ୍କ ଚରଣ ତଳେ ମୋର ପ୍ରଣିପାତ ।
ନିରଞ୍ଜନ ନିରାକାର ନିର୍ଗୁଣ ନିଳୟ
ରକ୍ଷାକର୍ତ୍ତା ପାପହନ୍ତା ପାଦପଦ୍ମଦ୍ୱୟ ।

ବନ୍ଦଇ ହେ ପଦରୂପୀ ଘେନନ୍ତୁ ଶରଣ
ଏହି ସ୍ତବ ଗୋଟି ଜାଣ ଅତି ପୁରାତନ ।
ପରମ ପବିତ୍ର ସ୍ତବ ଅଗସ୍ତିଙ୍କ କୃତ
ପଢ଼ିବ ଶୁଣିବ ଯେଉଁ ଜନ ଏହା ନିତ୍ୟ ।
ଭକତିରେ କରିବ ବା ସ୍ମରଣ ଧାରଣ
ଯଶ ଲଭି ସର୍ବପାପୁଁ ହେବ ବିମୋଚନ ।

=+=

## ବାମନ ଜନ

କହିଲେ ପୁଲସ୍ତ୍ୟ ଋଷି ଶୁଣ ହେ ନାରଦ
ତୀର୍ଥଯାତ୍ରା କଲେ ଯହୁଁ ମହାତ୍ମା ପ୍ରହ୍ଲାଦ ।
ବିଲୋଚନ ସୁତ ବଳି କୁରୁକ୍ଷେତ୍ରେ ଗଲେ
ଦ୍ୱିଜାତି ମାନଙ୍କୁ ଭୃଗୁ ଆମନ୍ତ୍ରଣ ଦେଲେ ।
ଆତ୍ରେୟ ଗୌତମ ମୁନି କୌଶିକ ଆବର
ଅଙ୍ଗିରସ ତତ୍ତ୍ୱଜ୍ଞାନୀ ଯେତେ ଦ୍ୱିଜବର ।
ମିଳିଲେକ ଆସି କୁରୁଜାଙ୍ଗଳ ଉତ୍ତରେ
ଗଲେ ତହୁଁ ସ୍ନାନକରି ଶତଦ୍ରବୀ ନୀରେ ।
ପବିତ୍ର କିରଣ ନଦୀଜଳ ମଧ୍ୟେ ପଶି
ଦିନକର କିରଣହିଁ ପଡ଼େ ଯହିଁ ଖସି ।
ସ୍ନାନ ସାରି ଗଲେ ତହୁଁ ନଦୀ ଇରାବତୀ
ତହୁଁ ସ୍ନାନ ତରପଣ ସାରିଣ ଝଟତି ।
ଈଶ୍ୱର ନଦୀରେ ପଶି କଲେ ତହିଁ ସ୍ନାନ
ଦେବୀକା ନଦୀରେ ସ୍ନାନ ସାରି ତପିଜନ ।
ତହୁଁ ଯାଇ ପୟୋଷ୍ଣୀକେ ପଶି ସ୍ନାନ କଲେ
ନିଜ ନିଜ ପ୍ରତିବିମ୍ବ ଜଳରେ ଦେଖିଲେ ।
ପ୍ରତିବିମ୍ବ ଦେଖି ଜଳେ ହୋଇଲେ ବିସ୍ମିତ
ସ୍ନାନସାରି ଯିବାବେଳେ ତପୋଧନ ବ୍ରାତ ।
କଥୋପକଥନେ କରି ନ ପାରିଲେ ସ୍ଥିର
କି କାରଣେ ପ୍ରତିବିମ୍ବ ଦିଶିଲା ଆମ୍ଭର ।
ଏମନ୍ତେ ବିସ୍ମିତ ହୋଇ ଯାଉଁ କିଛି ଦୂରେ
ସୁବିସ୍ତୃତ ବନଖଣ୍ଡ ଦେଖିଲେ ମାର୍ଗରେ ।
ନିବିଡ଼ ଗହନ ଘନ ମଣ୍ଡଳି ପରାୟ
ଅଛନ୍ତି ଶ୍ୟାମଳବର୍ଣ୍ଣ ବିହଗ ନିଚୟ ।
ଉଚ୍ଚ ଉଚ୍ଚ ତରୁବରେ ଢ଼ାଙ୍କିଛି ଆକାଶ
ଭିତରକୁ ଢ଼ାଙ୍କିଅଛି ବେଢ଼ି ଲତାପାଶ ।
ଫଳ ପୁଷ୍ପେ ବିରାଜନ୍ତି ସେହି ତରୁବରେ
ତାରକା ସ୍ତବକ ଢ଼ାଙ୍କିଅଛି କି ଅମ୍ବରେ ।

ଫୁଟିଛି କମଳ କୋକନଦ ପୁଣ୍ଡରୀକ
ତା ଦେଖି ହୃଦୟେ ଜାତ ହୁଅଇ ପୁଲକ ।
ମହା ସରୋବରେ ହଂସ ପଶିଲା ପରାୟ
ପ୍ରବେଶି ଦେଖିଲେ ସେହି ତପୋଧନଚୟ ।
ଚାରିଗୋଟି ଆଶ୍ରମ ଯେ ବିରାଜୁଛି ତହିଁ
କି ବା ଧର୍ମ ଆଦି ବର୍ଗ ଚତୁଷ୍ଟୟ ସେହି ।
ପୂର୍ବମୁଖ ଧର୍ମାଶ୍ରମ ଦେଖିଲେ ପ୍ରଥମେ
ବହୁତ ପଲାଶ ବୃକ୍ଷ ସେହି ଧର୍ମାଶ୍ରମେ ।
ପଶ୍ଚିମ ମୁଖରେ ଅଛି ଅର୍ଥାଶ୍ରମ ରହି
ପବିତ୍ର କାନନ ମଧ୍ୟେ ବିରାଜଇ ସେହି ।
ଦକ୍ଷିଣରେ କାମାଶ୍ରମ ଅଶୋକ କାନନେ
ବହୁତ କଦଳୀ ବୃକ୍ଷ ଅଛି ସନ୍ନିଧାନେ ।
ଉତ୍ତର ମୁଖରେ ଅଛି ମୋକ୍ଷାଶ୍ରମ ରହି
ବିଶୁଦ୍ଧ ସ୍ଫଟିକପ୍ରାୟ ବିରାଜଇ ସେହି ।
ସତ୍ୟଯୁଗେ ମୋକ୍ଷାଶ୍ରମ ତ୍ରେତାଯୁଗେ କାମ
ଦ୍ୱାପର ଯୁଗରେ ଅର୍ଥ କଳିଯୁଗେ ଧର୍ମ ।
ଏମନ୍ତେ ଆଶ୍ରମୀ ହେଲେ ଯୁଗ ଅନୁସାରେ
ସେ ଆଶ୍ରମ ଦେଖି ଅତ୍ରିକୁଳ ମୁନିବରେ ।
ସ୍ନେହେ କଲେ ସେ ଅଖଣ୍ଡ ତୀର୍ଥଜଳେ ସ୍ନାନ
ଚତୁର୍ଦ୍ଧା ମୂର୍ତ୍ତିଙ୍କି କଲେ ତହିଁ ରହି ଧ୍ୟାନ ।
ବ୍ରହ୍ମଚର୍ଯ୍ୟ ବ୍ରତକରି ତପସ୍ୟା ଆଚରି
ଜଗନ୍ନାଥ ପୂଜାକଲେ ଅସୁରଙ୍କୁ ଡରି ।
ଅଶ୍ମକଟ୍ଟ ଯେ ମରୀଚି ପାୟୀ ଦ୍ୱିଜଗଣ
କାଳିନ୍ଦୀ ସଲିଳେ ସ୍ନାନକରି ତତକ୍ଷଣ ।
ଦକ୍ଷିଣ ମୁଖରେ ଗଲେ ଅବନ୍ତୀ ନଗରେ
ବିଷ୍ଣୁଙ୍କ ଶରଣ ନେଲେ ଅସୁରଙ୍କ ଡରେ ।
ବିଷ୍ଣୁର ପ୍ରସାଦେ ଦୈତ୍ୟେ ନ ପଶିବେ ତହିଁ
ଏ କାରଣୁ ତପକଲେ ସେ ନଗରେ ରହି ।
ବାଲଖିଲ୍ୟା ଆଦି ଯେତେ ଋଷି ତହୁଁ ଗଲେ
ଦାନବ ଭୟରେ ରୁଦ୍ର କୋଟିରେ ରହିଲେ ।
ଭୃଗୁକୁଳ ମୁନି ଘେନି ଶୁକ୍ର କଲେ ଯାଗ
ଋଷିଏ ନ ଆସିବାରୁ ମନେ ବହି ରାଗ ।
ସେ ଯଜ୍ଞରେ କଲେ ବଳିରାଜକୁ ଦୀକ୍ଷିତ
ଶ୍ୱେତାମ୍ବର ଧାରୀ ହେଲା ଦୈତ୍ୟକୁଳନାଥ ।
ଶ୍ୱେତବର୍ଣ୍ଣ ମାଲ୍ୟ ପୁଷ୍ପ ଗଳାରେ ଲମ୍ବାଇ
ସର୍ବାଙ୍ଗରେ ଶ୍ୱେତବର୍ଣ୍ଣ ଗନ୍ଧ ଲିପିହୋଇ ।

ମୃଗଛାଲେ କରି ପୃଷ୍ଠଦେଶ ଆଚ୍ଛାଦିତ
ବସିଲା ସଭାରେ ହୋଇ ସଦସ୍ୟେ ଆବୃତ ।
ମୟ ବାଣ ହୟ ଗ୍ରୀବ କ୍ଷୁର ଆଦି ଯେତେ
ଅସୁରେ ବସିଲେ ଆସି ତା ପାଶେ ସମସ୍ତେ ।
ବଳି ପତ୍ନୀ ବିନ୍ଧ୍ୟାବଳୀ ଦୀକ୍ଷିତା ହୋଇଲା
ଋଷିକନ୍ୟା ମାନଙ୍କୁ ସେ ସଙ୍ଗତେ ଘେନିଲା ।
ବସିଲା ଯଜ୍ଞରେ ଆସି ବଳିରାଜା ପାଶେ
ଶ୍ୱେତବର୍ଣ୍ଣ ସୁଲକ୍ଷଣ ଅଶ୍ୱ ମଧୁମାସେ ।
ଛାଡ଼ିଦେଲେ ଶୁକ୍ରାଚାର୍ଯ୍ୟ କରିଣ ମଣ୍ଡନ
ତାରକାକ୍ଷ ନାମେ ଏକ ଅସୁର ପ୍ରଧାନ ।
ଅଶ୍ୱ ପଛେ ପଛେ ଗଲା ସଙ୍ଗେ ଘେନି ବଳ
ଘୃତ ପାଇ ପ୍ରଜ୍ୱଳିତ ହୋଇଲା ଅନଳ ।
ତିନିମାସ ଅନ୍ତେ ହେଲା ମିଥୁନ ପ୍ରବେଶ
ଅଦିତି ପ୍ରସବ କଲେ ଅନାଦି ପୁରୁଷ ।
ବାମନ ରୂପରେ ଜାତ ଜଗତ ଈଶ୍ୱର
ଋଷିଗଣ ଘେନି ସ୍ତବ କଲେ ବେଦବର ।
ନମସ୍ତେ ମାଧବ ହରି ସମସ୍ତେ ସାତ୍ୱତ
ନମସ୍ତେ ହେ ବିଶ୍ୱମୂର୍ତ୍ତି ଜଗତର ନାଥ ।
ନମସ୍ତେ - ବଇରୀ -ବନ-ଇନ୍ଧନ-ଅନଳ
ନମସ୍ତେ ହେ ପାପରୂପ ମହା ଦାବାନଳ ।
ନମସ୍ତେ ପୁଣ୍ଡରୀକାକ୍ଷ ହେ ବିଶ୍ୱଭାଜନ
ନମସ୍ତେ ଜଗତଧାର ଶ୍ରୀମଧୁସୂଦନ ।
ନମସ୍ତେ ପୁରୁଷୋତ୍ତମ ପ୍ରଭୁ ନାରାୟଣ
ନମସ୍ତେ ଜଗତମୂର୍ତ୍ତି ଶରଣ ରକ୍ଷଣ ।
ନମସ୍ତେ ହେ ଗଦାଧର ପୀତାମ୍ବର ଧାରୀ
ନମସ୍ତେ ହେ ଜନାର୍ଦ୍ଦନ ଶ୍ରୀକାନ୍ତ ମୁରାରି ।
ନମସ୍ତେ ହେ ବିଶ୍ୱଆତ୍ମା ସର୍ବଗ ଅବ୍ୟୟ
ଧରାଧାରୀ ରୂପଧାରୀ ପ୍ରଭୁ ବିଶ୍ୱମୟ ।
ତ୍ରିଭୁବନ ପୂଜନୀୟ ଦେବଗଣ ପତି
ବାସବ ନେତ୍ରରୁ ଲୁହ ବହେ ଦିବାରାତି ।
ତୁମ୍ଭ ବିନା କିଏ ତାହା ନିବାରି ପାରିବ
ତୁମ୍ଭେ ଦାତା ତୁମ୍ଭେ ହର୍ତ୍ତା ତୁମ୍ଭେ ଆଦି ଦେବ ।
ମହାଳୟ ମହାଯୋଗୀ ମହେଶ୍ୱର ତୁହି
ତୁହି ଯୋଗଶାୟୀ ତୋତେ ପ୍ରଣମଇ ମୁହିଁ ।
ବ୍ରହ୍ମାସ୍ତୁତି ଶୁଣି ହରି ବୋଇଲେ ଏମନ୍ତ
ମୋର ଜାତ କର୍ମ ଆଦି କର ହେ ତ୍ୱରିତ ।
ବ୍ରହ୍ମାଙ୍କ ଆଜ୍ଞାରେ ତହୁଁ ଭରଦ୍ୱାଜ ମୁନି
ଦଶକର୍ମ-ସମାଧାନ କଲେ ସେହିକ୍ଷଣି ।
ପୁଲହ ପଇତା ଦେଲେ ପୁଲସ୍ତ୍ୟ ବସନ
ଭରଦ୍ୱାଜ ମେଖଳା ଯେ ଅଗସ୍ତି ଅଜିନ ।
ମରୀଚି ପଲାଶଦଣ୍ଡ ଦେଲେ ବାମନଙ୍କୁ
ଅକ୍ଷସୂତ୍ର ଆଣି ଦେଲେ ବାରୁଣୀ ତାହାଙ୍କୁ ।
ଅଙ୍ଗିରା କୌପୀନଦେଲେ ଦ୍ୟୁରାଜ ଯେ ଛତା
ବୃହସ୍ପତି କମଣ୍ଡଳୁ ଭୃଗୁ ଦେଲେ ଯୋତା ।
ଏମନ୍ତେ ସେ ଉପନିତ ହୋଇଣ ବାମନ
ଅଙ୍ଗ ସହିତରେ କଲ ବେଦ ଅଧ୍ୟୟନ ।
ସକଳ ସଂସ୍କାର କର୍ମ କଲେ ଭରଦ୍ୱାଜ
ମାସକରେ ଶିଖିଲେ ସେ କଶ୍ୟପ ଆତ୍ମଜ ।
ସର୍ବଶାସ୍ତ୍ର ପଢ଼ି କଲେ ସାମବେଦ ଗାନ
ଭରଦ୍ୱାଜ ଋଷିଙ୍କୁ ଯେ କହିଲେ ବାମନ ।
ମୋତେ ଆଜ୍ଞା ଦେଲେ ଯିବି କୁରୁକ୍ଷେତ୍ରେ ମୁହିଁ
ଅଶ୍ୱମେଧ ଯଜ୍ଞକଲେ ବଳିରାଜା ଯହିଁ ।
ଯାହାବଳେ ତେଜୋବନ୍ତ ହୋଇଛି ସେ ବଳି
ତାହାକୁ ବାନ୍ଧିବି ମୁହିଁ ଯଜ୍ଞେ ଆଜି ଛଳି ।
ଜଣାଯାଏ କୁରୁକ୍ଷେତ୍ରେ ଅଛଇ ରାଜନ
କହିଲେ ସେ ଭରଦ୍ୱାଜ ଋଷି ତପୋଧନ ।
ମୁଁ କି ଆଜ୍ଞାଦେବି ତୋତେ ତୋ ଇଚ୍ଛା ରେ ତୁହି
ଯାଇପାରୁ ବଳିଯଜ୍ଞେ ଯାଉଅଛି ମୁହିଁ ।
ଯାହା ପଚାରୁଛି ମୋତେ କହ ଜନାର୍ଦ୍ଦନ
କେଉଁ କେଉଁ ସ୍ଥାନେ ତୁମ୍ଭେ ଥାଅ ପ୍ରତି ଦିନ ।
ଶ୍ରୀହରି କହିଲେ ଗୁରୁ ବହୁରୂପ ଧରି
ପରମ ପବିତ୍ର ସ୍ଥାନେ ରହଣି ମୋହରି ।
ଆହେ ଗୁରୁ ସ୍ୱର୍ଗ ମର୍ତ୍ତ୍ୟ ପାତାଳ ସାଗର
ଦିଗ ଗିରି ମେଘ ବ୍ୟାପୀ ଅବତାର ମୋର ।
ଖେଚର ଭୂଚର ଜଳଚର ସ୍ୱର୍ଗଚର
ଇନ୍ଦ୍ର ଚନ୍ଦ୍ର ସୂର୍ଯ୍ୟ ଯମ ବସୁ ଯେ ଆବର ।
ବରୁଣ ଅନଳ ଖଗ ଦିଗପାଳ ଦ୍ୱିଜ
ବ୍ରହ୍ମାଦି ସ୍ଥାବର ଯାଏ ମୋର ମାନସଜ ।
ସୁର ସିଦ୍ଧ ଦାନବେ ଯେ ଯାହାକୁ ପୂଜନ୍ତି
ଯା ଦର୍ଶନ କୀର୍ତ୍ତନରେ ପାପ ନାଶ ଯାନ୍ତି ।
ସେ ପୁଣ୍ୟ ପୁରୁଷଗଣ ଅଛନ୍ତି ଭୂତଳେ
ଗୋପୀନାଥ ମନ ରହୁ ବିଷ୍ଣୁ ପାଦତଳେ ।

=+=

## ବିଷ୍ଣୁଙ୍କର ସ୍ୱସ୍ଥାନ କଥନ

ବାମନ କହିଲେ ମୋର ଆଦ୍ୟ ରୂପ ମୀନ
ଅଟଇ ମାନସହ୍ରଦ ମୋର ବାସସ୍ଥାନ ।
ପାପ ବିନାଶନକାରୀ କୂର୍ମରୂପ ମୋର
ବାସସ୍ଥାନ ତୀର୍ଥବର କଉଶିକୀ ତୀର ।
ହୟଶୀର୍ଷ ମୂର୍ତ୍ତି ମୋର କୃଷ୍ଣାନଦୀ ତୀରେ
ଗୋବିନ୍ଦ ମୂରତି ମୋର ହସ୍ତିନା ନଗରେ ।
କାଳିନ୍ଦୀରେ ତ୍ରିବିକ୍ରମ ବିଗ୍ରହ ମୋହର
ଭବରୂପେ ଲିଙ୍ଗଭେଦେ ରହିଛି ଆବର ।
ମାଧବ ମୂରତି ଈଶ ମୂରତି କେଦାରେ
କୃଷ୍ଣକେଶ ମୂରତି ମୋ କୁବ୍ଜାମ୍ର ତୀର୍ଥରେ ।
ନାରାୟଣ ମୂର୍ତ୍ତି ମୋର ବଦରିକା ବନେ
ଗରୁଡ଼ଧ୍ୱଜ ବିଗ୍ରହ ବାରାହ କାନନେ ।
ଜୟେଶ ମୂରତି ମୋର ତୀର୍ଥଭଦ୍ର କର୍ଣ୍ଣେ
ଦ୍ୱିଜପ୍ରିୟ ମୂରତି ମୋ ବିପାଶା କାନନେ ।
ରୂପଧାର ମୂର୍ତ୍ତି ମୋର ଇରାବତୀ ତୀରେ
କୁରୁଧ୍ୱଜ ରୂପେ ଅଛି କୁରୁକ୍ଷେତ୍ରବରେ ।
କୃତଶୌଚ ତୀର୍ଥେ ମୋର ନୃସିଂହ ମୂରତି
ବିଶ୍ୱ ଧାରଣ ରୂପରେ ଗୋକର୍ଣ୍ଣରେ ସ୍ଥିତି ।
ପ୍ରାଚୀନରେ କାମପାଳରୂପେ ଅଛି ରହି
ମହାଜଳେ ପୁଣ୍ଡରୀକରୂପେ ଥାଇ ମୁହିଁ ।
ବିଶାଖ ରୂପରେ ମୁହିଁ ବୋଲାଇ ଅଜିତ
ହଂସପଦେ ହଂସନାମ ମୋହର ବିଖ୍ୟାତ ।
ଯମଖଣ୍ଡରୂପେ ଅଛି ପୟୋଷ୍ଣୀର ତୀରେ
କୁମାରିଳରୂପେ ଅଛି ବିତସ୍ତା ପାଖରେ ।
ମଣିମତୀ ହ୍ରଦେ ଅଛି ମୋର ଶମ୍ଭୁ ମୂର୍ତ୍ତି
ବ୍ରହ୍ମଣ୍ୟ ତୀର୍ଥରେ ମୋର ନାମ ପ୍ରଜାପତି ।
ମଧୁ ନଦୀତୀରେ ମୋର ନାମ ଚକ୍ରଧର
ହିମାଳୟେ ଶୂଳବାହୁ ନାମ ଜାଣ ମୋର ।
ବିଷ୍ଣୁ ରୂପେ ରହିଛି ମୁଁ ଓଷଧି ପର୍ବତେ
ସୁବର୍ଣ୍ଣ ନାମରେ ଭୃଗୁତୁଙ୍ଗରେ ଏମନ୍ତେ ।
ପୀତବାସ ମୂର୍ତ୍ତି ମୋର ନୈମିଷ କାନନେ
ଗୋପତି ଗଦାଧର ଯେ ମୂର୍ତ୍ତି ଗୟାସ୍ଥାନେ ।
ଗୋପ୍ରତାରେ ବରଦ ମୁଁ ତ୍ରଇଲୋକ୍ୟ ନାଥ
କୁଶେଶୟ ନାମ ମୋର ଜଗତେ ବିଖ୍ୟାତ ।

ଅର୍ଦ୍ଧନାରୀଶ୍ୱର ମୂର୍ତ୍ତି ମୋର ଚକ୍ରତୀର୍ଥେ
ମହୀଧ୍ରରୂପରେ ଅଛି ଦକ୍ଷିଣ ପର୍ବତେ ।
ଉତ୍ତର ପର୍ବତେ ମୋର ଗୋପାଳ ଶରୀର
ମହୀନ୍ଦ୍ର ପର୍ବତେ ସୋମର୍ବିଥୀ ନାମ ମୋର ।
ବଇକୁଣ୍ଠରୂପ ମୋର ମହୀ ମହୀଧରେ
ପାରିପାତ୍ରେ ମୁଁ ଅପରାଜିତ ସ୍ୱରୂପରେ ।
କଶେରୁ ଦେଶରେ ବିଶ୍ୱରୂପ ତା ପ୍ରଧାନ
ମଳୟ ପର୍ବତେ ମୁହିଁ ସୁଗନ୍ଧି ପ୍ରଧାନ ।
ବିନ୍ଧ୍ୟ ପାଦେ ସଦାଶିବ ରୂପେ ଅଛି ରହି
ଅବନ୍ତୀ ଦେଶରେ ଅଛି ଧୃଷ୍ୟରୂପେ ମୁହିଁ ।
ନିଷେଧ ଅମରେଶ୍ୱର ନାମ ଜାଣ ମୋର
ପାଞ୍ଚାଳେ ମୁଁ ପାଞ୍ଚାଳିକ ରୂପେ ନିରନ୍ତର ।
ହୟଗ୍ରୀବ ବିଗ୍ରହ ମୋ ଥାଇ ମହୋଦୟେ
ପ୍ରୟାଗରେ ଯୋଗଶାୟୀରୂପରେ ମୁଁ ଥାଏ ।
ମଧୁବନେ ଥାଏ ମୁହିଁ ସ୍ୱୟମ୍ଭୁ ରୂପରେ
ଅବ୍ଜଗନ୍ଧି ନାମ ମୋର ପୁଷ୍କର ତୀର୍ଥରେ ।
ବାରାଣସୀ କ୍ଷେତ୍ରବରେ ମୋ ନାମ କେଶବ
କଣନ୍ତି କିନ୍ନର ସୁରେ ଏ ମୂର୍ତ୍ତିର ସ୍ତବ ।
ପମ୍ପା ସରୋବରେ ସୂର୍ଯ୍ୟ କିରଣ ମୂରତି
ସମୁଦ୍ରେ ବଡ଼ବାମୁଖ ନାମେ ଅବସ୍ଥିତି ।
ମୋ ନାମ କୁମାରଧାରେ ବାହ୍ଲୀଶ ଅଟଇ
କାର୍ତ୍ତିକେୟ ନାମ ମୁହିଁ ବର୍ହଣେ ବୋଲାଇ ।
ଓଜସେ କେଶବ ନାମ ଅଟଇ ମୋହର
କୁରୁ ଜାଙ୍ଗଳରେ ମୋର ସ୍ଥାଣୁ କଳେବର ।
କିଷ୍କିନ୍ଧ୍ୟାରେ ବନମାଳୀ ବୋଲନ୍ତି ସମସ୍ତେ
ଶ୍ରୀପତି ରୂପରେ ଥାଏ ନର୍ମଦା ବନସ୍ତେ ।
ମାହିଷ୍ମତୀରେ ମୋ ନାମ ଅଟେ ହୁତାଶନ
ଅର୍ବୁଦରେ ଅଛି ମୋର ମୂର୍ତ୍ତିତ୍ରିସୌପର୍ଣ୍ଣ ।
ଶୂକର ପର୍ବତେ ମୋ କ୍ଷ୍ମାଧର ମୂରତି
ପ୍ରଭାସେ ଶଶିଶେଖରରୂପେ ମୋର ସ୍ଥିତି ।
ଶଶୀସୂର୍ଯ୍ୟ ଧ୍ରୁବରୂପେ ଉଦୟ ପର୍ବତେ
ହିମକୂଟେ ହିରଣ୍ୟାକ୍ଷରୂପେ ଥାଇ ନିତ୍ୟେ ।
ଶରବଣେ ସ୍କନ୍ଦରୂପେ ଥାଇ ମୁଁ ନିରତ
ମହାଳୟେ ରୁଦ୍ରରୂପେ କରେ ଅବସ୍ଥିତ ।
ପଦ୍ମନାଭ ନାମ ମୋର ଉତ୍ତର କୁରୁରେ
ହଟକେଶ୍ୱର ମୋ ନାମସପ୍ତ ଗୋଦାବରେ ।

ପ୍ରୟାଗରେ ମୋର ନାମ ଅଟେ ମହେଶ୍ୱର
ଶୋଣେ କୁରୁକବଚ ମୋ ନାମ ନିରନ୍ତର ।
କୁଣ୍ଡିବନେ ଅଛି ଘ୍ରାଣ ତର୍ପଣ ମୂରତି
ଭିଲ୍ଲିବନେ ମହାଯୋଗ ନାମେ କରେ ସ୍ଥିତି ।
ମନ୍ତ୍ରେ ମୁଁ ପୁରୁଷୋତ୍ତମ ରୂପେ ବିରାଜଇ
ପ୍ଲକ୍ଷାବତରଣେ ବିଶ୍ୱରୂପେ ମୁହିଁ ଥାଇ ।
ସୂପାରକେ ଚତୁର୍ବାହୁ ମୋହର ମୂରତି
ମଗଧ ଦେଶରେ ମୋର ନାମ ସୁଧାପତି ।
ଗିରିବ୍ରଜେ ପଶୁପତି ରୂପେ ବିରାଜଇ
ଶ୍ରୀକଣ୍ଠରୂପରେ ମୁହିଁ ଯମୁନାରେ ଥାଇ ।
ଦଣ୍ଡକାରଣ୍ୟରେ ମୋର ନାମ ବନସ୍ପତି
କାଳିନ୍ଦୀରେ ଅଛି ମୋର ନୀଳକଣ୍ଠ ମୂର୍ତ୍ତି ।
ସରଯୂର ମନୁ ମହାକୌଶିକୀରେ ହଂସ
ଏହିରୂପେ କରେ ସର୍ବପାପକୁ ବିନାଶ ।
ଦକ୍ଷିଣ ଗୋକର୍ଣ୍ଣେ ମୁହିଁ ହଂସରୂପେ ଥାଇ
ପ୍ରଜାମୁଖେ ବାସୁଦେବରୂପେ ବିରାଜଇ ।
ବିନ୍ଧ୍ୟଶୃଙ୍ଗେ ମୋର ନାମ ଅଟେ ମହାଗୌର
କଛକ୍ଷେତ୍ରେ ନାମ ମଧୁସୂଦନ ମୋହର ।
ଚକ୍ରପାଣି ନାମ ମୋର ତ୍ରିକୂଟ ଶିଖରେ
ଲୌହଦଣ୍ଡେ ଥାଇ ହୃଷୀକେଶକଳବରେ ।
କୌଶଳାରେ ମହୋଦୟ ମୂରତି ମୋହର
ସୁରାଷ୍ଟ୍ରରେ ଥାଇ ମହାବାସ କଳେବର ।
ନରରାଷ୍ଟ୍ରେ ଯଶୋଧର ରୂପେ ବିରାଜଇ
ଭୂଧରରୂପରେ ମୁହିଁ ଦେବୀକରେ ଥାଇ ।
ବିହେଦରେ କୁଶପ୍ରିୟ ନାମ ଅଟେ ମୋର
ଗୋମତୀରେ ମୋର ନାମ ଅଟେ ଗଦାଧର ।
ଶଙ୍ଖୋଦ୍ଧାରେ ଶଙ୍ଖଧର ରୂପେ ବିରାଜଇ
ସୈନ୍ଧବାରଣ୍ୟରେ ମୁହିଁ ସୁନେତ୍ର ବୋଲାଇ ।
ଶୂରପୁରେ ଶୂର ହିରଣ୍ୱତୀରେ ମୁଁ ରୁଦ୍ର
ତ୍ରିପିଷ୍ଟପେ ମୋର ନାମ ଅଟେ ବୀରଭଦ୍ର ।
ଶଙ୍କୁକର୍ଣ୍ଣେ ଲୀନାଭ ଯେ ଶାଳ ବନେ ଭୀମ
ଘଟୀରେ ବିଖ୍ୟାତ ମୋର ବିଶ୍ୱାମିତ୍ର ନାମ ।
କୈଳାସରେ ବୃଷଧ୍ୱଜ ନାମେ ବିରାଜଇ
ମହିଳ ଶଇଳେ କାମରୂପଧାରୀ ମୁହିଁ ।
ଶଶୀପ୍ରଭେ ମୋର ନାମ ଅଟଇ ମହେଶ
ଗୋମିତ୍ର ରୂପରେ କରେ ବଲ୍ଲଭୀରେ ବାସ ।
କଟାହେ ବ୍ରାହ୍ମଣପ୍ରିୟ ନାମ ଜାଣ ମୋର
ସିଂହଳଦ୍ୱୀପରେ ଅଛି ଉପେନ୍ଦ୍ର ଶରୀର ।
ଶକ୍ରାହ୍ୱରେ କୁନ୍ଦମାଳୀରୂପେ ମୁହିଁ ଥାଇ
ରସାତଳେ ମୁଁ ସହସ୍ରଶିରା ଯେ ବୋଲାଇ ।
କପିଳରେ ମୋର ନାମ ଅଟେ କୃତ୍ତିବାସ
ସୁତଳରେ କୂର୍ମରୂପେ କରିଥାଇ ବାସ ।
ବିତଳେ ପଙ୍କଜାନନ ନାମ ଜାଣ ମୋର
ମହାତଳେ ମୋର ନାମ ବୃଷଳ ଈଶ୍ୱର ।
ସହସ୍ର ରୂପରେ ମୁହିଁ ବିରାଜଇ ତଳେ
ହରିହର ମୂର୍ତ୍ତି ମୋର ବିରାଜେ ପାତାଳେ ।
ଧରାତଳେ କୋକନଦ ନାମେ ବିରାଜଇ
ମେଦିନୀରେ ଚକ୍ରପାଣି ନାମ ମୁଁ ବୋଲାଇ ।
ଗରୁଡ଼ ମୁଁ ଭୁବଲୋକେ ବିଷ୍ଣୁ ସ୍ୱର୍ଗଲୋକେ
ଅଗସ୍ତ୍ୟ ନାମ ବୋଲାଇ ମୁହିଁ ମହଲୋକେ ।
କପିଳରୂପରେ ମୁହିଁ ଜନଲୋକେ ଥାଇ
ତପୋଲୋକେ ମୁହିଁ ଜାଣ ବାଙ୍ମୟ ବୋଲାଇ ।
ଶିବଲୋକେ ସନାତନ ଅଟେ ମୋର ନାମ
ବିଷ୍ଣୁଲୋକେ ମୋର ନାମ ଜାଣ ପରଂବ୍ରହ୍ମ ।
ନିରାଲମ୍ବେ ଅପ୍ରତର୍କ୍ୟ ନାମ ଜାଣ ମୋର
ନିରାକାରେ ମୋର ତପୋମୟ କଳେବର ।
ଜମ୍ବୁଦ୍ୱୀପେ ଚତୁର୍ବାହୁ ରୂପେ ବିରାଜଇ
କୁଶଦ୍ୱୀପେ କୁଶେଶୟ ନାମ ମୁଁ ବୋଲାଇ ।
ପ୍ଲକ୍ଷଦ୍ୱୀପେ ମୋର ନାମ ଗରୁଡ଼ ବାହନ
କ୍ରୌଞ୍ଚଦ୍ୱୀପେ ପଦ୍ମନାଭ ନାମ ମୋର ଜାଣ ।
ମୋ ନାମ ବୃଷଭଧ୍ୱଜ ଶାଳ୍ମଳୀ ଦ୍ୱୀପରେ
ଶାକଦ୍ୱୀପେ ସହସ୍ରାକ୍ଷ ବାମନ ପୁଷ୍କରେ ।
ଏ ବାମନ ରୂପେ ମୁହିଁ ଶାଳିଗ୍ରାମେ ଥାଇ
ପୁରାତନ ଘର ମୋର ଏ ସବୁ ଅଟଇ ।
ଏ ଘରେ ଯେ ରହଇ ସେ ବ୍ରହ୍ମକୁ ଦେଖଇ
ପାତକର ଲେଶ ତାର ଦେହେ ନ ରହଇ ।
କୀର୍ତ୍ତନ ଦର୍ଶନ କଲେ ହୁଏ ପାପ ନାଶ
ଧର୍ମ ଅର୍ଥ କାମ ମୋକ୍ଷ ଲଭଇ ଅବଶ୍ୟ ।
କହିଲି ହେ ଗୁରୁ ମୋର ବାସସ୍ଥାନ ଯେତେ
ବଳିଯଜ୍ଞେ ଯିବା ଚାଲ ଦେବତାଙ୍କ ହିତେ ।

= + =

## ଶୁକ୍ର ବଳି ସମ୍ବାଦ

କହିଲେ ପୁଲସ୍ତ୍ୟ ମୁନି ସେ ବିଷ୍ଣୁ ବାମନ
ଦୈତ୍ୟରାଜ ବଳିଯଜ୍ଞେ କରନ୍ତେ ଗମନ ।
ପୃଥିବୀ କମ୍ପିଲା ଗିରି ଟଳଟଳ ହେଲା
ସ୍ୱର୍ଗହିଁ କମ୍ପିଲା ସିନ୍ଧୁକୂଳକୁ ଲଙ୍ଘିଲା ।
ବ୍ୟାକୁଳ ହୋଇଲେ ବଳିଯଜ୍ଞରେ ସମସ୍ତେ
ଏହାଦେଖି ବଳିରାଜ ବିଚାରଇ ଚିତ୍ତେ ।
ଆସି କି କରିବେ ମୋର ଶ୍ରୀମଧୁସୂଦନ
ଜାଣି ନ ପାରଇ ମୁହିଁ ତାହାଙ୍କ ବିଧାନ ।
ଯେହ୍ନେ ଦଗ୍ଧକରି ଥିଲେ ମୋତେ ମହାଦେବ
ସେହିପରି କରିବେ କି ଅବା ବାସୁଦେବ ।
ଦେବମନ୍ତେ ଅନଳରେ ଦିଅନ୍ତେ ଆହୁତି
ଅଗ୍ନିତାହା ନ ଘେନିଲେ କରି ମହାଭୀତି ।
ଏ ଘୋର ନିମିତ୍ତ ଦେଖି ଦାନବ ଈଶ୍ୱର
ଶୁକ୍ରଙ୍କ ଚରଣତଳେ କରି ନମସ୍କାର ।
କୃତାଞ୍ଜଳିପୁଟେ ତାଙ୍କୁ ବୋଇଲେ ଏମନ୍ତ
କାହିଁପାଇଁ କମ୍ପୁଅଛି ପୃଥିବୀ ପର୍ବତ ।
ସ୍ୱର୍ଗପୁର ବାତାହତ କଦଳୀ ପରାୟ
ଏହାର କାରଣ କହ ଗୁରୁ ମହାଶୟ ।
ଆସୁରୀୟ ହବିର୍ଭାଗ ଅନଳ ନ ଘେନେ
ସାଗର ଲଙ୍ଘଇ କୂଳ କହ କି କାରଣେ ।
କି ନିମନ୍ତେ ଦିଗସବୁ ଦିଶଇ ଅନ୍ଧାର
କି ଦୋଷେ ଏ ସବୁ ଘଟେ କହ ମୁନିବର ।
ପୁଲସ୍ତ୍ୟ କହିଲେ ଶୁକ୍ର ଶୁଣି ଏ ବଚନ
ବୋଇଲେ କହୁଛୁ ଶୁଣ ଦାନବ ରାଜନ ।
ବାସୁଦେବ ଆସୁଛନ୍ତି ଯଜ୍ଞକୁ ତୋହର
ସହି ନ ପାରଇ ପୃଥ୍ୱୀ ତାଙ୍କ ପାଦଭାର ।
ତେଣୁ କମ୍ପମାନ ହୁଏ ସାଗର ପର୍ବତ
ଘୋରଅନ୍ଧକାରେ ଦିଗସବୁ ଆଚ୍ଛାଦିତ ।
ତାହାଙ୍କ ଭୟରେ ଅଗ୍ନି ନଘେନେ ଆହୁତି
ଶୁକ୍ରଙ୍କ ମୁଖରୁ ଶୁଣି ଏସନ ଭାରତୀ ।
ବୋଇଲେ ହେ ଗୁରୁଦେବ କହ କୃପାକରି
କେମନ୍ତେ ପ୍ରସନ୍ନହେବେ ସେ ଦେବ ମୁରାରି ।
ମଣି ରତ୍ନ ରାଜ୍ୟ ଧନଅଛି ଯାହା ମୋର
ତହିଁରୁ କି ଦେବି କହ ଆହେ ମୁନିବର ।
କହିବି ତାହାଙ୍କୁ ମୁହିଁ କିପରି ବଚନ
କରିବି ମୁଁ କେଉଁଧର୍ମ କର୍ମ ଅନୁଷ୍ଠାନ ।
କି କଲେ ମୋହର ସତ୍ୟ ରହିବ ଆବର
ତହିଁରେ ହୋଇବ ମୋର ପୁଣି ଉପକାର ।
ସେଥିରେ ହୋଇବ ମୋର ମଙ୍ଗଳ ଯେମନ୍ତେ
ବିଚାରିଣ ଗୁରୁଦେବ କହ ତାହା ମୋତେ ।
ପୁଲସ୍ତ୍ୟ କହିଲେ ଶୁଣ ଶୁକ୍ର ଦ୍ୱିଜବର
ବଳିକି କହିଲେ ଆହେ ଅସୁର ଈଶ୍ୱର ।
ଅସୁରଙ୍କୁ ଯଜ୍ଞଭାଗୀ କଲ ତୁମ୍ଭେ ଯେଣୁ
ବେଦର ବାହାର କର୍ମକଲା ସେ କାରଣୁ ।
ଆସୁଛନ୍ତି ବାସୁଦେବ ଯଜ୍ଞକୁ ତୋହର
ପଚାରିଲ ଯାହା ଶୁଣ ଦାନବ - ଈଶ୍ୱର ।
ଯେତେବେଳେ ଯଜ୍ଞସ୍ଥାନେ ମିଳିବେ ସେ ହରି
ନଦେଇ ତୋ ରାଜ୍ୟ-ରତ୍ନ-ଧନ ଦଣ୍ଡଧାରୀ ।
ପୃଥିବୀ ନଦେବୁ ତୁହି ତୃଣାଗ୍ର ପ୍ରମାଣେ
ତାହାଙ୍କୁ ତୋଷିବୁ କହି ମଧୁର ବଚନେ ।
ବୋଲିବୁ ହେ ପ୍ରଭୁ ତୁମ୍ଭେ ଜଗତ ଈଶ୍ୱର
ତ୍ରିଭୁବନେ ତୁମ୍ଭଙ୍କୁ କେ ଦେଇପାରେ ବର ।
ତୁମ୍ଭ ଗର୍ଭେ ସ୍ୱର୍ଗ ମର୍ତ୍ତ୍ୟପାତାଳ ଭୁବନ
କି ଦେବଇଁ ତୁମ୍ଭର ଏସବୁ ରାଜ୍ୟ ଧନ ।
ଶୁକ୍ରଙ୍କ ମୁଖରୁ ଶୁଣି ଦାନବ ଈଶ୍ୱର
ବୋଇଲା ଭୋ ଗୁରୁଦେବ ଶୁଣ ମୋ ଉତ୍ତର ।
ସତ୍ୟକରିଅଛି ଯଜ୍ଞେ ମାଗିବ ଯେ ଯାହା
ନିରାଶ ନକରି ତାଙ୍କୁ ଦେବଇଁ ମୁଁ ତାହା ।
ଶାସ୍ତ୍ରରେ ଅଛଇ ଯେବେ ମାଗଇ ଚାଣ୍ଡାଳ
ନ ଦେଇ ଫେରାଇଦେଲେ ତା ପାପ ସକଳ ।
ତା ଦେହୁଁ ଆସି ନଦେବା ଲୋକକୁ ଗ୍ରାସନ୍ତି
ଯେବେ ବାସୁଦେବ ଆସି ମୋ ଯଜ୍ଞେ ମିଳନ୍ତି ।
ମାଗିଲେ ତାହାଙ୍କୁ ମୁହିଁ ନଦେବି କେମନ୍ତେ
ଲୋକେଶୁଣି କି ବୋଲିବେ କହ ଗୁରୁ ମୋତେ ।
ସାଧୁଜନେ କହିଛନ୍ତି ଧନବନ୍ତ ପ୍ରାଣୀ
ଦାନ ଦେଉଥିବେ ନିତ୍ୟବିପ୍ର ଡାକି ଆଣି ।
ପୂର୍ବାଭ୍ୟାସ କର୍ମ ହୁଏ ଏ ଜନ୍ମେ ପ୍ରକଟ
ଏକ ପୁରାତନ କଥା ଶୁଣ ଦ୍ୱିଜଶ୍ରେଷ୍ଠ ।
ମଳୟ ପର୍ବତେ ଥିଲେ ଏକ ଦ୍ୱିଜବର
ମୁଦ୍‌ଗଲ ଋଷିଙ୍କ ପୁତ୍ର ନାମ କୋଶକାର ।

ଜ୍ଞାନ ବିଜ୍ଞାନାଦି ଶାସ୍ତ୍ରେ ସେ ତପୀ ନିପୁଣ
ତାହାର ଭାରିଯା ନାମ ଧର୍ମିଷ୍ଠାହିଁ ଜାଣ ।
ବାତ୍ସ୍ୟାୟନ ନନ୍ଦିନୀ ସେ ପତିବ୍ରତା ସତୀ
ପୁତ୍ର ଏକ ଜାତ କଲା ସେହି ଜଡ଼ାକୃତି ।
ମୂକପ୍ରାୟ କଥା କିଛି ନ କହେ କାହାକୁ
ଅନ୍ଧପ୍ରାୟ ନ ଦିଶଇ କିଛି ହିଁ ତାହାକୁ ।
ଷଷ୍ଠ ଦିନେ ସେ ବ୍ରାହ୍ମଣୀ ସେ ପୁତ୍ରକୁ ନେଇ
ଗୃହର ବାହାର ପାଖେ ପକାଇ ଦିଅଇ ।
ସୂପାକ୍ଷୀ ନାମରେ ଏକ ରାକ୍ଷସୀ ଅଇଲା
ଆପଣା ପୁତ୍ରକୁ ନେଇ ସେଠାରେ ଥୋଇଲା ।
ସେ ଦ୍ୱିଜପୁତ୍ରକୁ ଘେନିଗଲା ଅତିବେଗେ
ଦେଲା ନେଇ ତାର ପତି ଘଟୋଦର ଆଗେ ।
ଚକ୍ଷୁହୀନ ବାକ୍ୟହୀନ ଦେଖି ସେ ଅସୁର
ବୋଇଲା ଗୋ ପ୍ରିୟେ କହ କାହାର କୁମର ।
ରାକ୍ଷସୀ କହଇ ମୁହିଁ ନିଜପୁତ୍ର ଦେଇ
ଆଣିଲଇଁ କୋଶକାର ଦ୍ୱିଜପୁତ୍ର ଏହି ।
ଅସୁର କହିଲା ସେହି ଦ୍ୱିଜ ମହାଜ୍ଞାନୀ
କିମ୍ପାଇଁ ଆଣିଲୁ ପରପୁତ୍ର ଜାଣି ଶୁଣି ।
କୋପ କଲେ ଶାପ ଦେବ ନାଶଯିବା ଆମ୍ଭେ
ଏଣୁ ଏ ପୁତ୍ରକୁ ନେଇ ଛାଡ଼ିଆସ ଏବେ ।
ଆଉ କାହା ପୁତ୍ର ଧରି ଆଣ ଗୋ ସୁନ୍ଦରି
ଉଚ୍ଛୁର ଆହାର ବେଳ ହେଲାଣି ମୋହରି ।
ଯେତେବେଳେ ରାକ୍ଷସୀ ତା ପୁତ୍ର ରଖି ଗଲା
ମୁଖରେ ଅଙ୍ଗୁଳି ଭରି ସେ ରୋଦନ କଲା ।
ରୋଦନ ଶବଦ ଶୁଣି ଧର୍ମିଷ୍ଠା ସୁନ୍ଦରୀ
କହିଲା ସ୍ୱାମୀକି ଚାହିଁ ଆହେ ତପଚାରି ।
ଆପଣା ପୁତ୍ରର ଶୁଣ ସୁନ୍ଦର ରୋଦନ
ପତିପତ୍ନୀ ଦୁହେଁ ତହିଁ କଲେ ଆଗମନ ।
ଦେଖିଲେ ଆପଣା ପୁତ୍ର ପରି ରୂପ ଦିଶେ
ଦେଖି ଭାରିଯାକୁ କହେ ଦ୍ୱିଜ ଉପହାସେ ।
ଭୂତ ଲାଗିଅଛି ଏହି ପୁତ୍ରକୁ ଗୋ ସତୀ
ଏହା କହି ଭାରିଯାକୁ ସେହି ମହାମତି ।
କୁଶପାଣି ମନ୍ତ୍ରି ସିଞ୍ଚି ଦେଲେ ତା ଉପରେ
ତିନିଗାର କାଟି ତାକୁ ବାନ୍ଧିଲେ ମନ୍ତ୍ରରେ ।
ଏ ସମୟେ ପତି ଆଜ୍ଞାପାଇ ନିଶାଚରୀ
କୋଶକାର କୁମରକୁ କୋଳକରି ଧରି ।
ମିଳିଲା ଯେ ସ୍ଥାନେ ଅଛି ଆପଣା ନନ୍ଦନ
ଶୂନ୍ୟମାର୍ଗେ ଥାଇଁ କଲା ପୁତ୍ରକୁ ଦର୍ଶନ ।
ଦ୍ୱିଜକୁମରକୁ ତହିଁ ଥାଇ ଫିଙ୍ଗିଦେଲା
ବ୍ରାହ୍ମଣ ପାଖରେ ଆସି ସେ ଶିଶୁ ପଡ଼ିଲା ।
ବ୍ରାହ୍ମଣ ପୁତ୍ରକୁ ପାଇ ରଖିଲା ଯତ୍ନରେ
ରାକ୍ଷସୀ ତା ପୁତ୍ର ନେବାପାଇଁ ଚେଷ୍ଟାକରେ ।
ମନ୍ତ୍ର ପ୍ରଭାବରେ ପଶି ନ ପାରିଲା ସେହି
ଫେରିଗଲା ସେ ରାକ୍ଷସୀ କିଛିକ୍ଷଣ ରହି ।
ଆପଣାର ସ୍ୱାମୀ ଆଗେ କହିଲା ସମସ୍ତ
କୋଶକାର ଘେନିଗଲେ ସେ ରାକ୍ଷସ ସୁତ ।
ଆପଣା ପତ୍ନୀକି ଦେଲେ କଲେ ସେ ପାଳନ
ବଢ଼ିଲେ ସେ ଦୁଇଶିଶୁ କରି କ୍ଷୀର ପାନ ।
ସପତମବର୍ଷେ ପିତା କଲେ ତାଙ୍କୁ ବ୍ରତ
ଦିବାକର ନିଶାକର ନାମଦେଲେ ତାତ ।
ଦିବାକର ବେଦଶାସ୍ତ୍ର କଲା ଅଧ୍ୟୟନ
ନିଶାକର ଅଟଇ ଯେ ଆପଣା ନନ୍ଦନ ।
ମୂକଅନ୍ଧ ଯୋଗୁ ପଢ଼ି ନ ପାରିଲା ସେହି
ବନ୍ଧୁ ବାନ୍ଧବ ଯେ ଥିଲେ ସେ ପର୍ବତେ ରହି ।
ସେ ମଳୟବାସୀ ଜନେ ନିନ୍ଦିଲେ ତାହାକୁ
କୋଶକାର କ୍ରୁଦ୍ଧହୋଇ ଧରି ସେ ଶିଶୁକୁ ।
କୂପରେ ପକାଇ ଶିଳା ଚାପିଲେ ଉପରେ
ବହୁତ ବରଷ ଶିଶୁ ରହିଲା କୂପରେ ।
ଏକ ଆମଳକୀ ଗୁଳ୍ମ ଥିଲା ସେହି କୂପେ
ସେ ବୃକ୍ଷ ଫଳିଲା ତାର ପୋଷଣାର୍ଥ ଆପେ ।
ଦଶବର୍ଷ ବଞ୍ଚିଲା ସେ ତାର ଫଳ ଖାଇ
ଦିନେ ତାର ମାତ ଦେଲା ସେ କୂପକୁ ଚାହିଁ ।
ବୃହତ୍ ପଥର ତଳେ ରହିଛି କୁମର
ଉଚ୍ଚସ୍ୱରେ କହିଲା କେ ଏପରି ନିଷ୍ଠୁର ।
ପଥର ଲଦିଛି ମୋର ପୁତ୍ରର ଉପରେ
ମାତାବାଣୀ ଶୁଣି ପୁତ୍ର ଥାଇ ସେ କୂପରେ ।
ବୋଇଲା ଗୋ ମାତା ପିତା କରିଛନ୍ତି ଏହା
ସେ ପଥର ଗୋଟିକାଢ଼ିଦେଲା ସେ ସୁଦେହା ।
ନିଶାକର ଆସି ମାତା ଚରଣ ବନ୍ଦିଲା
ପୁତ୍ରକୁ ବ୍ରାହ୍ମଣୀ ନେଇ ସ୍ୱାମୀ ପାଶେ ଦେଲା ।
ପିତାକୁ ପ୍ରଣାମ କଲା ପୁତ୍ର ନିଶାକର
ବୋଇଲେ ପୁତ୍ରକୁ ଚାହିଁ ଦ୍ୱିଜ କୋଶକାର ।

ବାଲ୍ୟକାଳୁ ଅନ୍ଧ ମୂକ ଦେଖି ତୋତେ ମୁହିଁ
ଲୋକଙ୍କର ନିନ୍ଦାବାଣୀ ନ ପାରିଲି ସହି ।
ଜଳଶୂନ୍ୟ କୂପେ ତୋତେ ପିଙ୍ଗି ଦେଲି କୋପେ
ପଥର ଢାଙ୍କୁଣୀ ଏକ ଦେଇ ସେହି କୂପେ ।
କେମନ୍ତେ ବଞ୍ଚିଲୁ କଥା କହୁଛୁ କେମନ୍ତେ
ଏହାର କାରଣ ପୁତ୍ର କହୁକିନା ମୋତେ ।
ନିଶାକର କହେ ଶୁଣ ଆହେ ତାତ ମାତ
ପୂର୍ବଜନ୍ମେ ବୃନ୍ଦାରକ ବଂଶେ ମୁହିଁ ଜାତ ।
ବୃଷାକପି ମୋର ପିତା ମାଳା ମୋର ମାତା
ଶ୍ରୁତି ସ୍ମୃତି ଆଦି ଶାସ୍ତ୍ର ପଢ଼ାଇଲେ ପିତା ।
ଜ୍ଞାନ ପାଇବାରୁ ହେଲି ମୁହିଁ ଦୁରାଚାରୀ
ମଦରୁ ଯେ ଲୋଭଜାତ ହୋଇଲା ମୋହରି ।
ଲୋଭରୁ ବିବେକ ଧ୍ୱଂସ ହୋଇଲା ଭୋତାତ
ନିରନ୍ତର ହେଲି ମୁହିଁ ପାପକର୍ମେ ରତ ।
ପରଦାର ପରଧନ ହରଣ ମୁଁ କଲି
ଦେହାନ୍ତେ ରୌରବ ନାମ ନରକେ ପଡ଼ିଲି ।
ସହସ୍ରବରଷ ଅନ୍ତେ ହେଲି ପୁଣି ବ୍ୟାଧ
ସେ ଜନମେ କଲି ବହୁ ପଶୁପକ୍ଷୀ ବଧ ।
ତଦନ୍ତେ ମୁଁ ବ୍ୟାଘ୍ର ହୋଇ ରହିଲି ନବରେ
ବାନ୍ଧିନେଲେ ବଳବନ୍ତ ଏକ ନରବରେ ।
ରହିଲି ପିଞ୍ଜରାବଦ୍ଧ ହୋଇ କେତେ କାଳ
ଦିନେ ଗଦା ହସ୍ତେ ଧରି ସେହି ମହୀପାଳ ।
ନଗର ଭ୍ରମଣ ଅର୍ଥେ ହୁଅନ୍ତେ ଅନ୍ତର
ତାହାର ଭାରିଯାକୁ ଯେ ନାହିଁ ପଟାନ୍ତର ।
ତା ନାମ ଅଜିତା ସେହି ଅଇଲା ମୋ ପାଶେ
ମୋର ଚିତ୍ତ ତରଳିଲା ପୂର୍ବାଭ୍ୟାସ ବଶେ ।
ବୋଇଲି ସୁନ୍ଦରୀ ମୋତେ ଦିଅ ଅଙ୍ଗ ସଙ୍ଗ
ସୁନ୍ଦରୀ ବୋଇଲା ହେବ କିରୂପେ ସଂଯୋଗ ।
ମୁଁ ବୋଇଲି ଦ୍ୱାର ଫେଡ଼ି ଦିଅ ଗୋ ସୁନ୍ଦରୀ
ସୁନ୍ଦରୀ ବୋଇଲା ରହ ହେଉ ଯେ ଶର୍ବରୀ ।
ମୁଁ ବୋଇଲି ଏତେକାଳ ନ ପାରିବି ରହି
ତତକ୍ଷଣେ ଦ୍ୱାରଫେଡ଼ି ଦେଲା ସେ ସୁମୁହିଁ ।
ପାଶକୁ ଛିଣ୍ଡାଇଦେଲି ବଳବନ୍ତ ପଣେ
ରାଣୀକି କାଖରେ ଯାକି ଯାଉଁ ଭୃତ୍ୟଗଣେ ।
ଚାରିଦିଗେ ଘେରି ଅସ୍ତ୍ର ଶସ୍ତ୍ର ମାରି ମୋତେ
ବଟବୃକ୍ଷେ ବାନ୍ଧି ପ୍ରାଣ ଘେନିଲେ ତୁରିତେ ।
ନରକେ ପଡ଼ିଲି ପୁଣି ସହସ୍ରେ ବରଷ
ଶ୍ୱେତଗଧ ହେଲି ମୋତେ ଦ୍ୱିଜଅଗ୍ନିବୈଶ୍ୟ ।
ପାଳିଲେ ମୁଁ ତାଙ୍କ ଘରେ ରହିଲି ହେ ତାତ
ତହିଁ ରହି କରାଇଲି ପୁତ୍ରକନ୍ୟା ଜାତ ।
ଦିନେ ସେ ବ୍ରାହ୍ମଣୀ ବୋଲେ ସେହି ବ୍ରାହ୍ମଣକୁ
ଆଜ୍ଞା କର ଯିବି ମୁହିଁ ମୋ ପିତା ଘରକୁ ।
ଗଧଚଢ଼ି ଯାଇ ମାସ ଶେଷରେ ଆସିବୁ
ଏଥିରୁ ଅଧିକ ପିତାଗୃହେ ନ ରହିବୁ ।
ସେହି ମୋ ଉପରେ ଚଢ଼ି ଗଲା ବାପଘର
ଅଧବାଟେ ଦେଖିଲା ସେ ଏକ ନଦୀତୀର ।
ସ୍ନାନ କରିବାକୁ ଗଲା ସେ ନଦୀକି ଚଳି
ଓଦାବସ୍ତ୍ର ପିନ୍ଧି ଜଳୁ ଅଇଲା ସେ ବାଳୀ ।
ସର୍ବାଙ୍ଗ ସୁନ୍ଦରୀ ତାକୁ ଦେଖି ହେଲି ମତ୍ତ
ଧାଇଁଯାନ୍ତେ ତା ପାଖକୁ ସୁନ୍ଦରୀର ଚିତ୍ତ ।
ଭୟେ ବିହ୍ୱଳିତ ହୋଇ ପଡ଼ିଲା ଭୂମିରେ
ମୁଁ ଯାଇଁ ପଡ଼ିଲି ସେହି ସୁନ୍ଦରୀ ଉପରେ ।
ସଙ୍ଗେ ଯାଇଥିବା ଲୋକେ ଦେଖି ଗଲେ ଧାଇଁ
ଭୟେ ସୁନ୍ଦରୀକି ଛାଡ଼ି ଗଲି ମୁଁ ପଳାଇ ।
ସେ ଦିନୁ ମୁଁ ଷଡରାତ୍ରେ ତେଜିଲି ଜୀବନ
ସେ ଦୋଷେ ନରକ ଭୋଗ କରି କିଛି ଦିନ ।
ଶୁକଜନ୍ମ ଲଭି ପୁଣି ରହିଲି ବନରେ
ଦୁରାତ୍ମା ଶବର ନେଇ ରଖିଲା ପିଞ୍ଜରେ ।
ଧନବନ୍ତ ବଣିକକୁ ବିକିଦେଲା ମୋତେ
ନିର୍ଦ୍ଦୋଷ ଶାସ୍ତ୍ରଜ୍ଞ ଏହା ବିଚାରି ସେ ଚିତ୍ତେ ।
ଅନ୍ତଃପୁରେ ଯୁବତୀଙ୍କ ସମୀପେ ରଖିଲା
ବେଳୁବେଳ ତାଙ୍କ ସ୍ନେହ ମୋ ପ୍ରତି ବଢ଼ିଲା ।
ପାଚିଲା ଦାଡ଼ିମ୍ବ ଫଳ ଓଦନାଦି ଦେଇ
ଯତ୍ନରେ ପାଳିଲେ ମୋତେ ଯୁବତୀଏ ତହିଁ ।
ଦିନେ ସେ ବଣିକ ସୁତା ଚନ୍ଦ୍ରାବଳୀ ଆସି
ସ୍ନେହେ ମୋତେ ପଞ୍ଜରାରୁ ନେଇ ଶୁଭ୍ରକେଶି ।
ତାର ଚାରୁ ପୟୋଧର ଉପରେ ରଖିଲା
ସୁନ୍ଦରୀକି ଦେଖି ମୋର ଚିତ୍ତ ତରଳିଲା ।
ହରିବା ଇଚ୍ଛାରେ ତହୁଁ ପଡ଼ନ୍ତେ ମୁଁ ଡେଇଁ
ତାର ହାର ଯଷ୍ଟିରେ ମୁଁ ପଡ଼ିଗଲି ଯାଇଁ ।
ମର୍କଟ ବନ୍ଧନ ଦ୍ୱାରେ ପଡ଼ିଗଲି ମରି
ଯମଦୂତେ ଆସି ମୋତେ ବେଗେ ନେଲେ ଧରି ।

ପକାଇଲେ ନେଇ ଘୋର ନରକ କୁଣ୍ଡରେ
ତହୁଁ ପୁଣି ଜନ୍ମ ହେଲି ବୃଷଭ ରୂପରେ ।
ବଢ଼ିଲି ଶବର ଘରେ ଦିନେ ସେ ଶବର
ଆପଣାର ଭାରିଯାକୁ ଘେନି ସଙ୍ଗତର ।
ଶଗଡ଼ରେ ଯୋଚି ମୋତେ ବସିଲେକ ଦୁହେଁ
ବନ ମଧ୍ୟେ ସେ ଶବର ଭାରିଯାକୁ କହେ ।
ଏଠାରେ ଶଗଡ଼ ରଖି ଅରଣ୍ୟକୁ ଯିବା
ପାରିଧି ଶେଷରେ ପୁଣି ଶଗଡ଼େ ବସିବା ।
ଏହାକହି ସେ ଶବର ପଶିଲା ବନରେ
ଗୀତ ଗାଇ ଗାଇ ଯାଏ ଶବରୀ ପଛରେ ।
ତାର ଗୀତ ଶୁଣି କାମେ ହେଲି ମୁଁ ଅସ୍ଥିର
ବେକେ ପଘା ଥିବାରୁ ମୋ ନାହିଁ ପ୍ରତିକାର ।
ଛାଟିପିଟି ହୋଇ କଷ୍ଟେ ତେଜିଲି ଜୀବନ
ସହସ୍ର ବରଷ ହେଲି ନରକେ ପତନ ।
ଏବେ ଆସି ହେଲି ତୁମ୍ଭ ଦୁହିଙ୍କ କୁମର
ପୂର୍ବାଭ୍ୟାସରୁ ଭୋ ତାତ ହେଲି ଜାତିସ୍ମର ।
ଅରଣ୍ୟ ମଧ୍ୟକୁ ଏବେ ଯାଉଅଛି ମୁହିଁ
ତୁମ୍ଭ ପୁତ୍ର ଦିବାକର ହେଉ ଗୃହେ ଗୃହୀ ।
ଜ୍ଞାନ ବିଜ୍ଞାନାଦି ବଳେ କରିବି ମୁଁ ତପ
ତପୋବନେ ବିନାଶିବି ଜନ୍ମାନ୍ତର ପାପ ।
ପିତା ମାତା ପାଦତଳେ କରି ନମସ୍କାର
ବଦରିକାଶ୍ରମେ ଗଲା ସେହି ନିଶାକର ।
ନାରାୟଣ ଆଶ୍ରୟରେ ରହିଲାକ ତହିଁ
ବଳିକହେ ଆହେ ଗୁରୁ କି କହିବି ମୁହିଁ ।
ଦାନ ଧ୍ୟାନ ଜ୍ଞାନ ଧର୍ମ ତପ ଅଧ୍ୟୟନ
ଅଗ୍ନିଦାହ ଚୋରି ମହାପାପ ଯଶ ଧନ ।
ଏ ସମସ୍ତ ପୂର୍ବାଭ୍ୟାସ ବଶରୁ ଘଟଇ
ବଳିରାଜା ଗୁରୁଆଗେ ଏହିପରି କହି ।
ନାରାୟଣ ପାଦପଦ୍ମେ ନିବେଶିଲା ଚିତ୍ତ
ଧ୍ୟାନକଲା ଶଙ୍ଖ-ଚକ୍ର- ଗଦା- ପଦ୍ମ- ହସ୍ତ ।

= + =

## ବଳୀ ବନ୍ଧନ

କହିଲେ ପୁଲସ୍ତ୍ୟଋଷି ଏହି ଅବସରେ
ମିଳିଲେ ବାମନ ଆସି ଯଜ୍ଞ ସମୀପରେ ।
ଉଚ୍ଚସ୍ୱରେ ବୋଇଲେ ସେ ବାମନ ମୂରତି
ଓଁ କାର ସ୍ୱରୂପ ଯେତେ ଅଛି ଶ୍ରୁତି ସ୍ମୃତି ।
ସେ ସମସ୍ତ ଶାସ୍ତ୍ର ତପୋଧନ ରୂପଧରି
ବସିଛନ୍ତି ଏହି ଯଜ୍ଞେ ଆହେ ଦଣ୍ଡଧାରୀ ।
ଅଶ୍ୱମେଧ ଯଜ୍ଞ ସବୁ ଯଜ୍ଞ ମଧ୍ୟେ ସାର
ଯାହାକି ବିହିତ ତାହା କର ଦୈତ୍ୟେଶ୍ୱର ।
ବାମନଙ୍କ କଥା ଶୁଣି ଦାନବ ରାଜନ
ଯେଉଁସ୍ଥାନେ ରହିଛନ୍ତି ସେ ପ୍ରଭୁ ବାମନ ।
ସେ ସ୍ଥାନକୁ ଗଲା ଉଠି ଅର୍ଘ୍ୟପାତ୍ର ଧରି
ଦେବଦେବ ବାମନଙ୍କ ପାଦପୂଜା କରି ।
କହିଲା ହେ ପ୍ରଭୁ ତୁମ୍ଭେ ସମ୍ମାନ ରକ୍ଷକ
କି ଦେବି ତୁମ୍ଭଙ୍କୁ କହ ହେ ଦ୍ୱିଜ ନାୟକ ।
ଏହା ଶୁଣି ମଧୁରିପୁ ହସି ବହୁକ୍ଷଣ
ଭରଦ୍ୱାଜ ମୁନିଙ୍କି ସେ କରି ନିରୀକ୍ଷଣ ।
ବୋଇଲେ ଗୁରୁଙ୍କ ଗୁରୁ ଅଟନ୍ତି ସାଗ୍ନିକ
ନ ରଖିବେ ସେହି ପରଭୂମିରେ ପାବକ ।
ସେଥିପାଇଁ ମୁଁ ଆସିଛି ମାଗିବାକୁ ଦାନ
ତିନିପାଦ ଭୂମି ଦିଅ ଦାନବ - ରାଜନ ।
କ୍ରମତ୍ରୟ ଭୂମିଦେବ ଶରୀର ପ୍ରମାଣେ
ବଳିରାଜା ମୁରାରିଙ୍କ ବଚନ ଶ୍ରବଣେ ।
କହିଲା ଭାରିଯା ପୁତ୍ର ମୁଖକୁ ଅନାଇ
ପ୍ରମାଣାନୁସାରେ ଏହି ବାମନ ନୁହଇ ।
ଯେପରି ଏହାର ଦେହ ମନ ସେହିପରି
ଜଣାଯାଏ ଲଘୁପ୍ରିୟ ସ୍ୱଭାବ ଏହାରି ।
ତିନିପାଦ ଭୂମିମାଗେ ମୋପରା ରାଜାକୁ
ଧାତା ଅଳ୍ପବୁଦ୍ଧି ପୁଣ୍ୟରହିତ ଜନଙ୍କୁ ।
ବହୁ ପରିମାଣେ ଧନ ନ ଦିଅଇ କେଭେ
ଏ ବିପ୍ର ବହୁତ ଆଶା ନ କଲେଟି ତେବେ ।
ଭାଗ୍ୟହୀନ ଲୋକଙ୍କୁ କି ଭୂମି ଦିଏ ଧାତା
ଦିନିପାଦ ମାଗୁଛି ଏ ମୁଁ ତହିଁରେ ଦାତା ।
ବାମନକୁ ଚାହିଁ କହେ ସେ ବଳି ରାଜନ
ଆହେ ବିଷ୍ଣୁ ଗଜବାଜୀ ଭୂମି ଦାସୀ ଧନ ।
ଏଥିରୁ ଯେ ଦାନ ଘେନ ଇଚ୍ଛା ଅନୁସାରେ
ଜଗତର ପତିମୁହିଁ ତାହା ଦେଇପାରେ ।
ପଦତ୍ରୟ ଦାନକଲେ ମୋତେ ହେବ ଲାଜ
ରସାତଳ ପୃଥିବୀ ବା ସ୍ୱର୍ଗପୁରୁ ଆଜ ।
ଯାହାକି ମାଗିବ ତାହା ଦେବି ହେ ବାମନ
ମିଥ୍ୟା ନ ହୁଅଇ କେଭେ ବଳିର ବଚନ ।

ସ୍ୱଚ୍ଛ ହୋଇ ଦାନ ମାଗ ଭୟ ତ୍ୟାଗ କରି
ବାମନ କହିଲେ ଶୁଣ ବଳି ଦଣ୍ଡଧାରୀ ।
ଯେ ମାଗିବେ ଗଜ ଅଶ୍ୱ ଭୂମି ଧନ ଧାନ୍ୟ
ତାହାଙ୍କୁ ଏ ଯଜ୍ଞେ ତୁମ୍ଭେ କରିବ ପ୍ରଦାନ ।
ମୁଁ ମାଗୁଛି ତିନିପାଦ ଭୂମି ଦିଅ ମୋତେ
ଶୁଣି ବଳୀ ଜଳଗଡୁ ଧଇଲାକ ହସ୍ତେ ।
ବାମନ ପାତିଲେ ହସ୍ତ ବଳିଦେଲା ଜଳ
ଚାହୁଁ ଚାହୁଁ ବିଶ୍ୱମୂର୍ତ୍ତି ହେଲେ ଆଦିମୂଳ ।
ପାଦଦେଶେ ଭୂମି ଢ଼ାଙ୍କି ଜଘନେ ଆକାଶ
ଆବୋରିଛି ସତ୍ୟ ତପଲୋକ ଜାନୁଦେଶ ।
ଉରୁଦେଶେ ଅଛି ମେରୁ ମନ୍ଦର ପର୍ବତ
କଟୀଭାଗେ ବିଶ୍ୱଦେବଗଣ ବିରାଜିତ ।
ଅଛନ୍ତି ମରୁତବଣ ବସ୍ତିରେ ଶୀର୍ଷରେ
ବୃଷଣରେ ପ୍ରଜାପତି ମନ୍ମଥ ଲିଙ୍ଗରେ ।
କୁକ୍ଷିଦେଶେ ବିରାଜଇ ସପତ ସାଗର
ସମସ୍ତ ଉଦରପୂର୍ଣ୍ଣ ହୋଇଛି ଜଠର ।
ତ୍ରିବଳିରେ ନଦୀମାନେ ଯଙ୍କହିଁ ଅନ୍ତରେ
କ୍ରିୟା ମନ୍ତ ଯନ୍ତ୍ର ସବୁ ଘେନି ସଙ୍ଗତରେ ।
ଅଷ୍ଟବସୁ ବିଜେ କରିଛନ୍ତି ପୃଷ୍ଠଦେଶେ
ସ୍କନ୍ଧର ଉପରେ ବିଜେ ରୁଦ୍ର ଏକାଦଶେ ।
ଅଷ୍ଟଭୁଜେ ଅଷ୍ଟଦିଗ ହୃଦୟରେ ବ୍ରହ୍ମା
ହୃଦୟ ଅସ୍ଥିରେ ବଜ୍ର ମନରେ ଚନ୍ଦ୍ରମା ।
ବକ୍ଷସ୍ଥଳେ ଶ୍ରୀ ସହସ୍ର ଗ୍ରୀବାରେ ଅଦିତି
ବଳୟରେ ଅଷ୍ଟାଦଶ ବିଦ୍ୟା ବିରାଜନ୍ତି ।
ବଦନେ ସାଗ୍ନିକ ବିପ୍ର ଅଧରେ ସଂସ୍କାର
ଲଲାଟରେ ଲକ୍ଷ୍ମୀ କର୍ଣ୍ଣେ ଅଶ୍ୱିନୀ କୁମାର ।
ନିଃଶ୍ୱାସରେ ମାତରିଶ୍ୱା ସନ୍ଧିରେ ମରୁତ
ଦଶନପଂକ୍ତିରେ ଅଛି ସମୁଦାୟ ସୂକ୍ତ ।
ରସନାରେ ସରସ୍ୱତୀ ଚନ୍ଦ୍ର ସୂର୍ଯ୍ୟ ନେତ୍ରେ
ପକ୍ଷ୍ମରେ କୃତ୍ତିକା ଆଦି ସକଳ ନକ୍ଷତ୍ରେ ।
ଭ୍ରୂମଧ୍ୟେ ବିଶାଖା ଲୋମକୂପେ ତାରାଗଣ
ରୋମେ ରୋମେ ବିରାଜନ୍ତି ମହାଋଷି ଗଣ ।
ଏହିରୂପେ ବିଶ୍ୱମୟ ସେ ଭୂତ ଭାବନ
ପାଦେ କଲେ ଚରାଚର ଜଗତୀ ହରଣ ।
ଦ୍ୱିତୀୟ କ୍ରମେଣ ନେଲେ ଚନ୍ଦ୍ର ସୂର୍ଯ୍ୟ ଲୋକ
ତାଙ୍କ ବାମେ ଚନ୍ଦ୍ର ଦକ୍ଷେ ଦିବସ ନାୟକ ।
ତୃତୀୟ କ୍ରମଣ ପୁଣି ଅର୍ଦ୍ଧକ ମଧ୍ୟରେ
ନେଲେ ସ୍ୱର୍ଗ ମହାଜନ ତପକୁ ସତ୍ୱରେ ।
ଅପର ଅର୍ଦ୍ଧରେ ନେଲେ ସମସ୍ତ ଅମ୍ବର
କ୍ରମେ ବଢ଼ି ଭେଦିଲେ ସେ ବ୍ରହ୍ମାଣ୍ଡ ଉଦର ।
ଆକାଶରୁ ବିଶ୍ୱବ୍ୟାପୀ ପାଦକୁ ପ୍ରସାରି
ଫୋପଡ଼ାଇ ଦେଲେ ଅଣ୍ଡ କଟାହକୁ ହରି ।
ଆକୁଳେ କୁଟିଳ ହୋଇ ବିଷ୍ଣୁ ପାଦୁଁ ଗଲା
ସେ ଦିନୁ ସେ ବିଷ୍ଣୁପତି ନାମକୁ ବହିଲା ।
ଋଷିଗଣେ ମିଳି କଲେ ବିଷ୍ଣୁପଦୀ ସ୍ତୁତି
ତୃତୀୟ କ୍ରମଣ ଅନ୍ତେ ବାମନ ମୂରତି ।
କହିଲେ ଈଷତହାସ୍ୟେ ବଳୀକୁ ଅନାଇ
ଋଣଶୋଧ ନ ହେଲେଟି ହେ ଦାନବ ସାଇଁ ।
ଦୁଇପାଦ ପୂର୍ଣ୍ଣହେଲା ଆଉ ନାହିଁ ସ୍ଥାନ
ତୃତୀୟ ପାଦକ ଭୂମି କର ତୁ ପୂରଣ ।
ନୋହିଲେ ବନ୍ଧନ ତୋତେ କରୁଛି ଏକ୍ଷଣି
ମୁରାରୀଙ୍କ କଥା ବଳୀପୁତ୍ର ବାଣ ଶୁଣି ।
ହାସ୍ୟକରି ବୋଇଲାକ ହେ ଜଗତପତି
ଆପଣତ ଈଶ୍ୱରଙ୍କ ବିଧାତା ଅଟନ୍ତି ।
ଏ ପୃଥ୍ୱୀକି ଅତିଅଳ୍ପ ପରିମାଣ କରି
କିରୂପେ ବିସ୍ତୃତ ଭୂମି ମାଗୁଛ ଶ୍ରୀହରି ।
ପୂର୍ବୁ ଏ ପୃଥ୍ୱୀକି ବଡ଼ କରିଛ ଆପଣ
କରିଅଛ ତୁମ୍ଭେ ଯେଉଁ ସୃଷ୍ଟି ପରିମାଣ ।
ମୋ ପିତା ଦେଇଛି ତାହା ତୁମ୍ଭଙ୍କୁ ହେ ହରି
କାହିଁପାଇଁ କୋପକର ବିଚାର ନ କରି ।
ଯେଉଁରୂପେ ମାଗିଅଛ ଶକ୍ତି ଅନୁସାରେ
ଯଥାଶକ୍ତି-ପୂଜାକରି ମୋ ପିତା ଆଦରେ ।
ଦେଇଛନ୍ତି ଦାନ ଏବେ ହୁଅ ସୁପ୍ରସନ୍ନ
କାହିଁପାଇଁ ମୋ ପିତାକୁ କରିବ ବନ୍ଧନ ।
ବେଦରେ କହିଛ ତୁମ୍ଭେ ପାତ୍ରେ ଦେଲଦାନ
ମୁଁ ନିଶ୍ଚେ ତାହାକୁ କରେ ସଉଖ୍ୟ ପ୍ରଦାନ ।
ପୁଣ୍ୟସ୍ଥାନେ ସତପାତ୍ରେ ଦେଲେ ପୁଣ୍ୟକାଳେ
ସେ ଜନକୁ ସୁଖ ମୁହିଁ ଦିଏ କାଳେ କାଳେ ।
ପିତା ରକ୍ଷା କରିଛନ୍ତି ସେ କଥା ତୁମ୍ଭର
ସବୁ ଦାନ ମଧ୍ୟରେ ଯେ ଭୂମିଦାନ ସାର ।
ଦାନପାତ୍ର ପୁଣି ସର୍ବ କାମପ୍ରଦ ହରି
ଜ୍ୟେଷ୍ଠା ମୂଳା ଚନ୍ଦ୍ର ଏହି ଶୁଭଯୋଗ ଧରି ।

କୁରୁକ୍ଷେତ୍ରଠାରୁ ପୁଣି ପୁଣ୍ୟସ୍ଥାନ ନାହିଁ
ବିଶେଷରେ ବୁଦ୍ଧିହୀନ ଜନ ଅଟେ ମୁହିଁ ।
ତୁମ୍ଭେତ ଜଗତରୂପୀ ବେଦର କରତା
ତୁମ୍ଭଙ୍କୁ ମୁଁ କି କହିବି ତୁମ୍ଭେ ସର୍ବଜ୍ଞାତା ।
ମାଗିଲ ବାନମରୂପେ ତିନି ପାଦ ଭୂମି
ଧଇଲ ବିରାଟ ରୂପ କହ କିମ୍ପା ସ୍ୱାମୀ ।
ତିନିପାଦ ଭୂମିଛାଡ଼ି ନେଲ ତ୍ରିଭୁବନ
ତଥାପି କରୁଛ ପୁଣି ପିତାଙ୍କୁ ବନ୍ଧନ ।
କ୍ରମ ତ୍ରୟେ ନେଲ ଏହା ନୋହେ ଆଚମ୍ବିତ
ଏକ ପାଦେ ଲଙ୍ଘିପାର ଅଖିଳ ଜଗତ ।
ଯେଣୁ ତୁମ୍ଭେ ଲୋକନାଥ ମାଧବ ମୁରାରି
ଜଗତ ତୋହର ଲୋମମୂଳେ ଅଛି ପୂରି ।
ଆହେ ପଦ୍ମନାଭ ତୁମ୍ଭେ ବିଭୁ ହର୍ତ୍ତା କର୍ତ୍ତା
ତୁମ୍ଭର ଯେ ଇଚ୍ଛା ତାହା କେ କରେ ଅନ୍ୟଥା ।
ପୁଲସ୍ତ୍ୟ କହିଲେ ମହାବଳୀ ବାଣାସୁର
କହନ୍ତେ ଏପରି କଥା ଶୁଣି ଦାମୋଦର ।
ବୋଇଲେ ହେ ବଳୀପୁତ୍ର କହିଲୁ ତୁ ଯାହା
କହୁଅଛି ଶୁଣ ତାର ପ୍ରତ୍ୟୁତ୍ତର ଏହା ।
ତୋ ପିତାକୁ ମାଗିଥିଲି ପ୍ରମାଣାନୁସାରେ
ତିନିପାଦ ଭୂମିଦାନ କର ନୃପବରେ ।
ତୋ ପିତାକି ଜାଣେ ନାହିଁ ମୋହର ପ୍ରମାଣ
ନିର୍ଭୟରେ ଦେଲା ମୋତେ ତିନିପାଦ ଦାନ ।
ମୋ ହସ୍ତେ ଦେଇଛି ଜଳହେବ ସେ କଳ୍ପାୟୁ
ବଳୀକି କହିଲେ ଯାଇ ପୁଣି ମହାବାହୁ ।
ରହ ତୁ ଭୂତଳେ ଯାଇ ନିରାମୟ ଦେହେ
ବିଷ୍ଣୁ ମୁଖୁଁ ଏହା ଶୁଣି ବଳିରାଜା କହେ ।
ସେଠାରେ ଅକ୍ଷୟ ଭୋଗ ମୁଁ ପାଇବି କାହୁଁ
ଏହା ଶୁଣି ବୋଇଲେକ ସେହି ମହାବାହୁ ।
ଅବିଧିରେ ଦାନ ଦେବା ଫଳକୁ ପାଇବ
ଆବର ଆବୃତ ପାଠ ଫଳକୁ ଭୁଞ୍ଜିବ ।
ଆଶ୍ରୋତ୍ରିୟ ଶ୍ରାଦ୍ଧଫଳ ପାଇବ ଆବର
ଇନ୍ଦ୍ରୋତ୍ସବ ଦିନ ହେବ ଉତ୍ସବ ତୁମ୍ଭର ।
ସେ ମହୋତ୍ସବ ନାମ ହେବ ଦୀପ ଦାନ
ବସ୍ତ୍ର ଅଳଙ୍କାର ପିନ୍ଧି ପୃଥିବୀର ଜନ ।
ତୁମ୍ଭଙ୍କୁ ପୂଜିବେ ପୁଷ୍ପ ଧୂପ ଦୀପ ଦେଇ
ତୁମ୍ଭଙ୍କୁ ତୋଷିବେ ନୃତ୍ୟ ଗୀତେ ହୃଷ୍ଟ ହୋଇ ।
ବଳୀରାଜୋତ୍ସବ ନାମ ଦେଇଲେ ହେ ରାଜନ
ଏଥେ ତୁମ୍ଭ ଅଧିକାର ଥିଲାଟି ଯେସନ ।
ତେସନ ଉତ୍ସବ ଜନେ କରିବେ ତୁମ୍ଭର
କୌମୁଦୀ ଉତ୍ସବ ନାମ ହୋଇବ ଏହାର ।
ସୁଖେ ତହିଁ ରହ ଯାଇ ଭାର୍ଯ୍ୟା ପୁତ୍ର ଘେନି
ବାସବକୁ ସମର୍ପଣ କରି ପୁର ତିନି ।
ଅନ୍ତର୍ଦ୍ଧାନେ ଗଲେ ପ୍ରଭୁ ଶ୍ରୀମଧୁସୂଦନ
ଶାମ୍ବ ନାମେ ଥିଲା ଏହି ଅସୁର ପ୍ରଧାନ ।
ଅନ୍ତରୀକ୍ଷେ ସୌରନାମେ ପୁରେକ ନିର୍ମାଣି
ରହିଲା ସେ ବଳବନ୍ତ ଦୈତ୍ୟ ଶିରୋମଣି ।
ମୟ ନାମେ ଥିଲା ତହିଁ ଦାନବ ପ୍ରଧାନ
ସ୍ୱର୍ଣ୍ଣ ଲୌହ ତାମ୍ରେ କଲା ତ୍ରିପୁର ନିର୍ମାଣ ।
ତାରକ ବୈଦ୍ୟୁତ ନାମେ ନିର୍ମାଣିଲା ପୁର
ମିତ୍ର ବନ୍ଧୁ ଘେନି ତହିଁ ରହିଲେ ଅସୁର ।
ପାତାଳକୁ ନ ଗଲା ସେ ବଳୀପୁତ୍ର ବାଣ
ଶୋଣିତ ନାମରେ କଲା ପୁରେକ ନିର୍ମାଣ ।
ଦାନବକୁ ଘେନି ତହିଁ ରହିଲା ସେ ବୀର
ଏ ଚରିତ ଯେ ଶୁଣିବ ପଢ଼ିବ ଆବର ।
ତାହାର ସକଳ ପାପ ହୋଇବ ଦହନ
ସେ ବାମନ ପାଦେ ରହୁ ଗୋପୀନାଥ ମନ ।

=+=

## ବ୍ରହ୍ମା ସ୍ତବ

ବୋଇଲେ ନାରଦମୁନି କହ ତପୋଧନ
ସେଠାବରୁ କେଉଁସ୍ଥାନେ ଗଲେ ଯେ ବାମନ ।
ପୁଲସ୍ତ୍ୟ କହିଲେ ବ୍ରହ୍ମା ପାଦ ପୂଜାକରି
ପଚାରିଲେ କି କାରଣେ ଆସିଛ ହେ ହରି ।
ଶ୍ରୀବିଷ୍ଣୁ ବୋଇଲେ ମୁହିଁ ଦେବଲୋକହିତେ
ବାନ୍ଧିଲି ବାନମରୂପେ ଦୈତ୍ୟଙ୍କୁ ପୁରତେ ।
ବିଧାତା ବୋଇଲେ ହେଲ କିରୂପେ ବାମନ
କେଉଁସ୍ଥାନେ କରିଅଛ ବଳୀକୁ ବନ୍ଧନ ।
ଦେଖିବାକୁ ବଡ଼ ଇଚ୍ଛା ହେଉଛି ମୋହର
ତକ୍ଷଣେ ବାନମରୂପ ଧଇଲେ ଶ୍ରୀଧର ।
ସେ ରୂପର ଦୀର୍ଘ ଅଟେ ଆୟୁତ ଯୋଜନ
ପ୍ରତି ତାର ଅଟଇ ଯେ ଅୟୁତ ଯୋଜନ ।
ଏମନ୍ତ ରୂପକୁ ଦେଖି ପ୍ରଣମି ବିଧାତା
କରଯୋଡ଼ ସ୍ତୁତିକଲେ ହେ ଜଗତକର୍ତ୍ତା ।

ନମସ୍ତେ ନମସ୍ତେ ପ୍ରଭୁ ଓଁକାର ସ୍ୱରୂପୀ
ଦେବାଧିଦେବ ହେ ବାସୁଦେବ ବୃଷାକପି ।
ଏକଶୃଙ୍ଗ ବହୁରୂପ ହେ ଭୂତଭାବନ
ହେ କପିଳ ନାରାୟଣ ହେ ବିଶ୍ୱକେସନ ।
ବୈକୁଣ୍ଠ ବରଣ୍ୟେ ପ୍ରଭୁ ଶ୍ରୀ ପୁରୁଷୋତ୍ତମ
ଜୟନ୍ତ ବିଜୟ ଜୟ ଚରାଚର ଧାମ ।
ପୁରଞ୍ଜୟ ଧନଞ୍ଜୟ ହେ ହିରଣ୍ୟଗର୍ଭ
ପଦ୍ମାପ୍ରିୟ ପଦ୍ମନେତ୍ର ଆହେ ପଦ୍ମନାଭ ।
ବାରମ୍ବାର ନମସ୍କାର କରୁଛି ହେ ହରି
ଏମନ୍ତେ ବହୁତ ନାମ ତୁଣ୍ଡରେ ଉଚ୍ଚାରି ।
ବାରମ୍ବାର ପାଦପଦ୍ମେ କଲେ ନମସ୍କାର
ପ୍ରସନ୍ନେ ବୋଇଲେ ପ୍ରଭୁ ମାଗିଘେନ ବର ।
ବିଧାତା ବୋଇଲେ ଯେବେ ବର ଦେବହରି
ଏହିରୂପେ ଥିବ ତୁମ୍ଭେ ଭୁବନେ ମୋହରି ।
ରହିଲେ ବାନମରୂପେ ତାହାଙ୍କ ଭବନେ
ତାଙ୍କ ଅଗ୍ରେ ନୃତ୍ୟ କଲେ ଅପସରାଗଣେ ।
ଗାନ କଲେ ସୁରପୁର ରମଣୀଏ ଆସି
ବିଦ୍ୟାଧରଗଣ ନିତ୍ୟ ବାଦ୍ୟନାଦେ ତୋଷି ।
ଦେବଗଣ ସିଦ୍ଧଗଣ ସ୍ତବ ପାଠ କଲେ
ପିତାମହ ନିତ୍ୟ ପାଦଉଦକ ପିଇଲେ ।
ସେ ବାମନ ମୂରତି କି ସହସ୍ରଲୋଚନ
ବ୍ରହ୍ମପୁରୁ ଆଣିଲେକ ଆପଣା ଭବନ ।
ରହିଲେ ଅମରାବତୀ କଟକେ ସେ ହରି
ପ୍ରତିଦିନ ତାଙ୍କୁ ପୂଜା କରେ ବଜ୍ରଧାରୀ ।
ଯାହା ପଚାରିଲ ତାହା କହିଲି ନାରଦ
ଦୀନ ଗୋପୀନାଥ ଚିନ୍ତେ ସେ ବାମନ ପାଦ ।

=+=

## ଭଗବଦ୍ ପ୍ରଶଂସା

ପୁଲସ୍ତ୍ୟ କହିଲେ ବାଳୀ ଗଲା ରସାତଳେ
ବିଶ୍ୱକର୍ମା ନିର୍ମାଣିଲା ପୁର ସେହି କାଳେ ।
ଶୁଦ୍ଧ ସ୍ଫଟିକେରେ କଲା ପାହାଚ ଅନେକ
ତା ମଧରେ କଲା ମଣିମୟ ପ୍ରାସାଦେକ ।
ତହିଁରେ ବହୁତ ଦେବୀ ରତ୍ନ ମୟ ସେହି
ସେ ପ୍ରାସାଦଦ୍ୱାରେ ମୁକ୍ତା ଜାଲ ଅଛି ରହି ।
ଦେବଯୋଗ୍ୟ ନରଯୋଗ୍ୟ ଭୋଗ୍ୟବସ୍ତୁ ପାଇ
ଆନନ୍ଦେ ରହିଲା ପୁରେ ଦୈତ୍ୟକୁଳସାଇଁ ।
ବିନ୍ଧ୍ୟାବଳି ନାମେ ତାର ଭାରିଯା ସୁନ୍ଦରୀ
ସହସ୍ରେ ଯୁବତୀ ଘେନି ସୁଖରେ ବିହରି ।
ସୁଦର୍ଶନଚକ୍ର ଯାଇଁ ମିଳିଲା ସେ ପୁରେ
କୋଳାହଳ ଶବ୍ଦ କଲେ ଦୈତ୍ୟଗଣ ଡରେ ।
କି ହେଲା କି ହେଲା କହ ମହାରୋଷେ ବଳୀ
ହସ୍ତେ ଖଡ୍ଗଧରି ଗଲା ସେ ସ୍ଥାନକୁ ଚଳି ।
ବିନ୍ଧ୍ୟାବଳି ଛଡ଼ାଇଣ ନେଲା ସେ ଖଡ୍ଗ
ବୋଇଲା ମଧୁର ବାକ୍ୟେ ଛାଡ଼ ଛାଡ଼ ରାଗ ।
ସୁଦର୍ଶନ ନାମଧାରୀ ଏହି ବିଷ୍ଣୁ ଚକ୍ର
କ୍ଷଣକରେ କ୍ଷୟ କରି ପାରେ ଦୈତ୍ୟଚକ୍ର ।
ଏ ଚକ୍ରବରର ପୂଜା କରିବା ବିହିତ
ଏହା କହି ବିନ୍ଧ୍ୟାବଳି ଗଲାକ ତ୍ୱରିତ ।
ଚକ୍ର ପୂଜା କରି ସ୍ତବ କଲା ଯୋଡ଼ି କର
ଦୈତ୍ୟଚକ୍ର ବିଦାରଣ ହରି ଚକ୍ରବର ।
ସହସ୍ରାଂଶୁ ସହସ୍ରାଭ ସହସ୍ରାର ତୁହି
ତୋତେ ଶତ ନମସ୍କାର କରୁଅଛି ମୁହିଁ ।
ତୋ ନାଭିରେ ପିତାମହ ଥାନ୍ତି ନିରନ୍ତର
ମହାଦେବ ରହିଥାନ୍ତି ଭୁଜରେ ତୋହର ।
ତୋର ଅରମୂଳେ ମହାପର୍ବତ ଯେତେକ
ତୋର ଅରସମୂହରେ ସର୍ବ ବୃନ୍ଦାରକ ।
ତୋ ଅର ସନ୍ଧିରେ ମେଘ ବିଦ୍ୟୁତ ତାରକା
ତ୍ରିଭୁବନେ ତୁ ବୋଲାଉ ଚକ୍ରବର ଏକା ।
ମୋହର ତ୍ରିବିଧ ପାପ ବିଷ୍ଣୁଚକ୍ର ନାଶ
ତୋହର ବାହ୍ୟରେ ଋଷିଗଣଙ୍କର ବାସ ।
ତୋର ନାମ ସଂକୀର୍ତ୍ତନେ ବିପଦେ ନରହୁ
ସକଳ ଦୁରିତ ଆଧି ବ୍ୟାଧି କ୍ଷୟ ଯାଉ ।
ଦୈତ୍ୟଙ୍କୁ ନିସ୍ତେଜ କରି ବଳିପୂଜା ପାଇଁ
ଦକ୍ଷିଣକୁ ଗଲା ଚକ୍ର ସୁପ୍ରସନ୍ନ ହୋଇ ।
ହେବାରୁ ବିପଦ ଗ୍ରସ୍ତ ଦାନବରାଜନ
ସମାଧିରେ ବସି କଲା ପ୍ରହ୍ଲାଦକୁ ଧ୍ୟାନ ।
ସ୍ମରଣ କରିବା ମାତ୍ରେ ବିଷ୍ଣୁର ଭକତ
ସୁତଳରେ ବଳୀ ପାଶେ ହେଲା ଉପଗତ ।
ପିତାମହ ପାଦ ବନ୍ଦୀ ବୋଲେ ଦୈତ୍ୟଶ୍ୱର
ଯହିଁରେ କି ହେବ ପ୍ରଭୁ ମୋର ଉପକାର ।

ସାଧୁର କି କାର୍ଯ୍ୟ ଏହା ବୋଲ ମୋ ଆଗରେ
ଯାହା କଲେ ନ ପଡ଼ିବ ସଂସାର ସାଗରେ ।
ପ୍ରହ୍ଲାଦ କହିଲେ ବିଷ୍ଣୁ ନାବ ଆଶ୍ରାକଲେ
ସଂସାର ସାଗରୁ ଲୋକେ ତରିଯିବେ ଭଲେ ।
ଯେଉଁ ହରି ସୁରଗୁରୁ ଗରୁଡ଼ ବାହନ
ସେହି ଏକା କାଟି ପାରେ ଶମନ ବନ୍ଧନ ।
ଯମ ନିଜେ କହିଛନ୍ତି ଦୂତଙ୍କୁ ଗୋପନେ
ନ ଯିବଟି ଯହିଁଥିବେ ବିଷ୍ଣୁଭକ୍ତ ଜନେ ।
ପ୍ରଭୁପଣ ନାହିଁ ମୋର ତାହାଙ୍କ ଉପରେ
କହିଛନ୍ତି ଯାହା ଶୁଣ ଇକ୍ଷ୍ୱାକୁ ନୃବରେ ।
ବିଷ୍ଣୁଭକ୍ତ ଠାରେ ନାହିଁ ଯମ ଅଧିକାର
ଯେଉଁ ଜିହ୍ୱା କହେ ହରି ବିଷ୍ଣୁ ଦାମୋଦର ।
ଜିହ୍ୱାପଦବାଚ୍ୟ ସେହି ଜାଣ ଏ ସଂସାରେ
ଯେଉଁ ମନ ରହିଥାଏ ବିଷ୍ଣୁ ଶ୍ରୀପୟରେ ।
ସେହି ମନପଦବାଚ୍ୟ ଜାଣିଥାରେ ଦୂତ
ଯେଉଁ ହସ୍ତ ବିଷ୍ଣୁ ପୂଜେ ଜାଣ ସେହି ହସ୍ତ ।
ଆଉ ସବୁ ହସ୍ତ ଶାଖା ଅଗ୍ରପତ୍ର ପରି
ଆଉ ସବୁ ଜିହ୍ୱା ଜାଣ ରୋଗ ସଙ୍ଗେ ସରି ।
ବିଷ୍ଣୁରୁ ଅଭକ୍ତ ମଲେ ନ କରିବ ଶୋକ
କେଶବର ଆତ୍ମା ଜାଣ ଏ ସଂସାରଯାକ ।
ଯେହୁ ପୂଜା କରେ ନିତ୍ୟ ଚତୁର୍ଦ୍ଧା ମୂରତି
ସେହି ସର୍ବ ଦେବତାଙ୍କୁ ପୂଜେ ଜାଣ ନିତି ।
ବିଷ୍ଣୁର ଅସଂଖ୍ୟ ଗୁଣ ସିନ୍ଧୁ ରତ୍ନ ପରି
ବିଷ୍ଣୁ ଆଶ୍ରାକଲେ ଯିବ ଏ ସଂସାରୁ ତରି ।
ହେ ଦାନବ ରାଜ ତୁହି ବିଷ୍ଣୁ ପୂଜାକର
ତାଙ୍କ ପାଦେ ମନ ତୁହି ଦିଅ ନିରନ୍ତର ।
ବଳୀବୋଲେ ପୂଜାବିଧି କହନ୍ତୁ ଆପଣେ
ପ୍ରହ୍ଲାଦ କହିଲେ ଏବେ ଫୁଲନାମ ଶୁଣ ।
ଜାତି କୁନ୍ଦ ଚମ୍ପା ଜୁଇ ଅଶୋକ ମାଳତୀ
ତଗର କେତକୀ ପୁଷ୍ପେ ପୂଜିବ ଶ୍ରୀପତି ।
ପତ୍ର ମଧ୍ୟରେ ତୁଳସୀ ପତ୍ରରେ ପୂଜିବ
ନାନାବିଧ ଧୂପ ଦୀପ ନଇବେଦ୍ୟ ଦେବ ।
ମାଘମାସେ ବିଷ୍ଣୁଙ୍କର ତିଳ ଧେନୁ ଦାନ
ଫାଲଗୁନରେ ଦେବ ବ୍ରୀହି ବସ୍ତ୍ର କୃଷ୍ଣଜିନ ।
ଚୈତ୍ରେ ଦେବ ଚିତ୍ର ବସ୍ତ୍ର ଶୟନ ଆସନ
ବୈଶାଖେ ଚନ୍ଦନ ଉଦକୁମ୍ଭ ଧେନୁ ଧାନ ।
ଜ୍ୟେଷ୍ଠମାସେ ଗନ୍ଧଦ୍ରବ୍ୟ ଶ୍ରୀହରିଙ୍କି ଦେବ
ଆଷାଢ଼ ମାସରେ ଛତ୍ର ଲୁଣ ସମର୍ପିବ ।
ଶ୍ରାବଣରେ ଶଯ୍ୟାଦାନ ବିଷ୍ଣୁପ୍ରୀତି ଅର୍ଥେ
ଭାଦ୍ରେ ମଧୁ ଦୁଗ୍ଧ ଗୁଡ଼ ଦେୟ ଏ ସମସ୍ତେ ।
ଆଶ୍ୱିନରେ ମଣିମୁକ୍ତା ଫଳ ସମର୍ପିବ
କାର୍ତ୍ତିକରେ ଘୃତପୂର୍ଣ୍ଣ ପ୍ରଦୀପ ଜାଳିବ ।
ମାର୍ଗଶିରେ ଜୀବଦାନ ଅଟଇ ପ୍ରଶସ୍ତ
ପୌଷେ ଦେବ ଦାସଦାସୀ ଗୃହ ଏ ସମସ୍ତ ।
ବିଷ୍ଣୁ ପୂଜା ଏ ବିଧିରେ କର ତୁହି ବଳୀ
ଏହା କହି ସେ ପ୍ରହ୍ଲାଦ ଗଲେ ତହୁଁ ଚଳି ।
ଶ୍ରୀବିଷ୍ଣୁଙ୍କୁ ପୂଜାକଲେ ଦାନବ ରାଜନ
କହିଲେ ପୁଲସ୍ତ୍ୟଋଷି ଶୁଣ ତପୋଧନ ।
ଏ ବାମନ ପୁରାଣ ଯେ ପଢ଼ିବ ଶୁଣିବ
ଅଥବା ଗୃହରେ ଯତ୍ନେ ରଖିଣ ପୂଜିବ ।
ନିରୋଗ ହୋଇବ ସେହି ସୁଖେ ଯିବ ଦିନ
ପୁରାଣ ଯେ କହୁଥିବ ତାକୁ ଦେବ ଦାନ ।
ଗୋରୁ ଭୂମି ଅଳଙ୍କାର ବସନ ଭୂଷଣ
ଯେମନ୍ତେ ସନ୍ତୁଷ୍ଟ ହେବ ପୌରାଣିକ ଜନ ।
ତ୍ରିସନ୍ଧ୍ୟାରେ ଯେ ପଢ଼ିବ ଅଥବା ଶୁଣିବ
ସକଳ ପାପରୁ ସେହି ମୁକତି ହୋଇବ ।
ଶ୍ରୀ ବିଷ୍ଣୁଙ୍କ ପ୍ରସାଦରୁ ଯିବ ବୈକୁଣ୍ଠକୁ
ଯେତେ ଫଳ ଅଛି କେତେ କହିବି ତୁମ୍ଭଙ୍କୁ ।
ପୁରାଣ ମଧ୍ୟରେ ସାର ବାମନ ପୁରାଣ
ଦ୍ୱିଜ ଗୋପୀନାଥ ଭଜେ ବାମନ ଚରଣ ।

=※=

ମୁଦ୍ରଣ : କେ.ଜେ.ପି. ପ୍ରିଣ୍ଟର୍ସ, ଅଲିଶାବଜାର, କଟକ-୨, ଫୋନ୍-୨୫୦୮୨୯୬


ଧର୍ମ